# ନିତ୍ୟପୂଜା ବିଧାନ ଓ ସ୍ତବକଦମ୍ବ




ମହାମେଧାନନ୍ଦ ନାଥ

ପ୍ରକାଶକ
ନାରାୟଣ ବୈରାଗୀ ସ୍ମୃତି ପରିଷଦ

# ନିତ୍ୟପୂଜାବିଧାନ
# ଓ
# ସ୍ତବରତ୍ନ

(ଦେବତାତତ୍ତ୍ୱ, ପୂଜାତତ୍ତ୍ୱ ଓ ଯନ୍ତ୍ରତତ୍ତ୍ୱସମ୍ବଳିତ ଅନୁବାଦ
ସହ ବହୁ ସୁନ୍ଦର ସ୍ତୋତ୍ରର ଭବ୍ୟ ସଂକଳନ)

ଲେଖକ ଓ ସମ୍ପାଦକ
**ମହାମେଧାନନ୍ଦନାଥ**

ପ୍ରକାଶକ
**ନାରାୟଣ ବୈଶିଲ୍ୟ ସ୍ମୃତିପରିଷଦ୍**
ଶବର ସାହି, ଭୁବନେଶ୍ୱର

ମୂଲ୍ୟ : ପଞ୍ଚସ୍ତରି ଟଙ୍କା]  ୧୯୮୭  [ମୂଲ୍ୟ : ୭୫ ଟଙ୍କା

# ନିତ୍ୟ ପୂଜାବିଧାନ ଓ ସ୍ତବରତ୍ନ

(ଦେବତାତତ୍ତ୍ୱ, ପୂଜାତତ୍ତ୍ୱ ଓ ଯଜ୍ଞତତ୍ତ୍ୱସମ୍ବଳିତ ଅନୁବାଦସହ ବହୁ ସୁନ୍ଦର ସ୍ତୋତ୍ରର ଭବ୍ୟ ସଙ୍କଳନ)

ଲେଖକ ଓ ସମ୍ପାଦକ :
**ମହାମେଧାନନ୍ଦନାଥ**
ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ
ଡି-୧୧୭, ମ୍ୟୁଜିୟମ୍ ଫ୍ଲାଟ୍ସ,
ଭୁବନେଶ୍ୱର-୭୫୧୦୧୪

ପ୍ରଥମ ସଂସ୍କରଣ-୧୯୮୭

ପ୍ରକାଶକ :
**ଶୈଳବାଳା ବରିଶାଲ୍**
ନାରାୟଣ ବୈରିଶଲ୍ୟ ସ୍ମୃତିପରିଷଦ୍
ଶବରସାହି, ଭୁବନେଶ୍ୱର-୭୫୧୦୦୬

ମୁଦ୍ରକ :
ଶ୍ରୀ ଜଗନ୍ନାଥ ପ୍ରିଣ୍ଟର୍ସ
୭, ବୁଦ୍ଧନଗର, ଭୁବନେଶ୍ୱର-୧୪

ପ୍ରଚ୍ଛଦପଟ୍ଟ (ବିଶ୍ଳେଷଣ ପାଇଁ ଦ୍ରଷ୍ଟବ୍ୟ ଗ୍ରନ୍ଥପୃଷ୍ଠା-୧୫-୧୮)
ଶିଳ୍ପୀ-ଅଧ୍ୟାପକ ଶ୍ରୀ ଶିବ ପାଣିଗ୍ରାହୀ

**ମୂଲ୍ୟ : ପଞ୍ଚଚାଳିଶି ଟଙ୍କା**

# NITYA PUJAVIDHANA O' STAVARATNA

(a marvellous collection of beautiful sanskrit stotras translated into Oriya with a description of the cencept of Gods, purport of worship and sacrifice etc)

Writer & Editor :
**Mahamedhanandanath**
**Srj Dukhisyama Pattanayak**
D-117, Museum Flats,
Bhubaneswar-751014

First Edition : 1987

Publisher :
Sailabala Barishal
Narayana Bairisalya Smruti Parisad
Sabar sashi,
Bhubaneswar-751006

Printers :
Sri Jagannath Printers
7, Budhanagar
Bhubaneswar-14

Cover design :
(for explanation vide text pp. 15-18)
Artist-Sri Siba Panigrahi

**Price:Rupees Forty-five**

# ସୂଚୀପତ୍ର

# ମୁଖବନ୍ଧ

ବିଂଶ ଶତାବ୍ଦୀର ଶେଷ ଅର୍ଦ୍ଧରେ ଆଜି ମଣିଷ ବିଜ୍ଞାନର ଚରମ ସୋପାନରେ ଯେତେବେଳେ ଉପନୀତ ହେଲାଣି, ସେତେବେଳେ ଆମ ଭାରତୀୟ ସଂସ୍କୃତିର ପରମ ତଥା ଶାଶ୍ୱତ ସମ୍ପଦ ଜ୍ଞାନ ଓ ଧର୍ମର ପ୍ରସଙ୍ଗ ଉତ୍ଥାନକୁ ବହୁ ଜଡ଼ବାଦୀ ତଥାକଥିତ ଶିକ୍ଷିତ ବ୍ୟକ୍ତି ଅବାନ୍ତର ମନେ କରନ୍ତି । କିନ୍ତୁ ମଣିଷ ପକ୍ଷରେ ନିଜକୁ ଚିହ୍ନିବା ପାଇଁ ଏହି ଜ୍ଞାନ ଓ ଧର୍ମ, ତା'ର ସାଧନ ଓ ଆଚରଣ ଯେ ଏକମାତ୍ର ଶ୍ରେଷ୍ଠ ତଥା ସାର୍ବକାଳିକ ମାଧ୍ୟମ, ଏହା ନିଜର କର୍ତ୍ତୃତ୍ୱାଭିମାନରେ ସେ ଭୁଲିଯାଉଛି ।

ଆମର ଦେହସର୍ବସ୍ୱ ଜଡ଼ବାଦୀମନ ଏହି ଜ୍ଞାନ, ଧର୍ମ ଓ ଜୀବନର ଚରମ ଲକ୍ଷ୍ୟ ଆତ୍ମତତ୍ତ୍ୱ ଉପଲବ୍ଧି ବା ଭଗବତ୍ ସାକ୍ଷାତ୍କାରକୁ ଅବାସ୍ତବ ତଥା ଅବାନ୍ତର ମନେ କରେ । ଏହି ଶତକରେ ଏହି ବସ୍ତୁବାଦୀ ଚିନ୍ତାଧାରାର ଉତ୍କଟ ବିଷମୟ ଫଳ ଆମକୁ ଭୋଗିବାକୁ ହେଉଛି । ଏହାରି ଫଳରେ ପ୍ରତ୍ୟେକ ଅନ୍ୟଠାରୁ ବିଚ୍ଛିନ୍ନ ମଣୁଛନ୍ତି; ପରସ୍ପର ପ୍ରତି ମଣିଷର ବିଶ୍ୱାସ ତୁଟି ଯାଉଛି । ସ୍ନେହ, ପ୍ରେମ, ସେବା, ତ୍ୟାଗ, ସହିଷ୍ଣୁତା ଏ ଗୁଡ଼ା ତୁଚ୍ଛ ହୋଇପଡ଼ୁଛି । ବିଷୟ ସମ୍ଭୋଗ ଓ କ୍ଷଣିକ ଇନ୍ଦ୍ରିୟ ତୃପ୍ତି ଇହକାଳ ସର୍ବସ୍ୱ ଜୀବନର ଏକମାତ୍ର ଲକ୍ଷ୍ୟ ହୋଇ ପଡ଼ିଥିବାରୁ ଲୋଭ, ସ୍ୱାର୍ଥପରତା, ସଂକୀର୍ଣ୍ଣତା ମଣିଷକୁ ଆଜି ଅତି ଭ୍ରଷ୍ଟ କରିଦେଇଛି । କ୍ଷମତା, ପ୍ରତିପତ୍ତି, ଯେକୌଣସି ଉପାୟରେ କେବଳ ଅର୍ଥ ସଂଗ୍ରହ ଆଜିର ମଣିଷର ଧ୍ୟାନ ହୋଇପଡ଼ୁଛି । ସେଥିପାଇଁ ନୀତି ଅନୀତିର କିଛି ବାଛବିଚାର ନାହିଁ । ନିର୍ଲଜ୍ଜତା; ନିଷ୍ଠୁରତା, ପରିବାର, ସମାଜ, ରାଷ୍ଟ୍ରପ୍ରତି ସ୍ଥୂଳତଃ ମଣିଷ ପ୍ରତି ତା'ର ଦାୟିତ୍ୱହୀନତା ଚରମ ଅବସ୍ଥାକୁ ଆସି ଯାଇଛି । ସେ ଯେଉଁ କ୍ଷେତ୍ରରେ ରହୁଛି, ନିଜର ଅଯୌକ୍ତିକ (?) ଦାବୀ ସମ୍ପର୍କରେ ଯେତେଦୂର ସଚେତନ, ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ

ସମ୍ପର୍କରେ ତିଳେମାତ୍ର ସେ ସଚେତନତା ଦେଖାଯାଉ ନାହିଁ । କେବଳ ଭାରତ ନୁହେଁ, ସମଗ୍ର ପୃଥିବୀର ଏଇ ଅବସ୍ଥା । ଫଳରେ ଦେଶ ତଥା ଆନ୍ତର୍ଜାତିକ ସ୍ତରରେ କେଉଁଠି ଶାନ୍ତି ନାହିଁ । ପାରସ୍ପରିକ ସନ୍ଦେହ ଓ ଅବିଶ୍ୱାସ ଭିତରେ ମାନବ ଜାତିର ଐକ୍ୟ ସମ୍ଭବ ହୋଇପାରୁନାହିଁ । ବିଜ୍ଞାନର ଅପପ୍ରୟୋଗ ଫଳରେ ସମଗ୍ର ବିଶ୍ୱରେ ମାନବ ଜାତି ନାନା ଆଶଙ୍କାରେ କାଳ କାଟୁଛି । ସଂଗ୍ରାମ ଓ ଶୀତଳ ଯୁଦ୍ଧର ବିଭୀକ୍ତ କୁହେଳିରେ ସମଗ୍ର ବିଶ୍ୱ ଆଚ୍ଛନ୍ନ । ପ୍ରାଚୁର୍ଯ୍ୟ ମଧ୍ୟରେ ଅଭାବ ଓ ବୈଷମ୍ୟର ମାତ୍ରା ବଢ଼ିଚାଲିଛି । ପୃଥିବୀର ଏକ ପ୍ରାନ୍ତରେ ଅଧିକ ଉତ୍ପାଦନ ଫଳରେ ସାମ୍ରାଜ୍ୟବାଦୀ ଶୋଷଣ ତୃଷ୍ଣା ହେତୁ କୋଟି କୋଟି କୁଇଣ୍ଟାଲ ଖାଦ୍ୟଶସ୍ୟ ସାଗରରେ ଉଜୁଡ଼ା ଚାଲିଥିବାବେଳେ, ଅନ୍ୟ ପ୍ରାନ୍ତରେ ଲୋକେ ଅନାହାର ଓ ରୋଗରେ ପୋକ ମାଛି ପରି ମରୁଛନ୍ତି । ସେବା, ସମ୍ବେଦନା, ଦୟା, ସହାନୁଭୂତି ମଣିଷଠାରୁ ଦୂରଛଡ଼ା ହୋଇ-ଗଲାଣି । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ମଣିଷକୁ ଆପାଦମସ୍ତକ ଗ୍ରାସ କରି ତାକୁ ଦାନବରେ ପରିଣତ କରିଦେଲାଣି । ଲୋକେ ନିଜର ଜୀବନ, ଇଜ୍ଜତ, ସମ୍ପଦକୁ ବିପନ୍ନ ମଣୁଛନ୍ତି । ଚୋରି, ଲୁଣ୍ଠନ, ଗୁଣ୍ଡାମି, ନାରୀ ଚୋରି-ହତ୍ୟା, ମଣିଷର ନିର୍ଯ୍ୟାତନା ପ୍ରଭୃତି ଅପରାଧ ଦିନକୁ ଦିନ ବଢ଼ି ଚାଲିଛି । ସମାଜ ତଥା ରାଷ୍ଟ୍ରର ରକ୍ଷକ ଭକ୍ଷକ ପାଲଟିଛି । ଚିନ୍ତାଶୀଳ ବୁଦ୍ଧିଜୀବୀ ସାଧୁ ନିରପେକ୍ଷ ବ୍ୟକ୍ତି ନିଜକୁ ନିଃସହାୟ ଓ ହତାଶ ମଣୁଛନ୍ତି । ଆମେ ଏ ପୃଥିବୀର ମଣିଷ ହୋଇ ଏ ପୃଥିବୀ ପାଇଁ ନିଜକୁ ଅଯୋଗ୍ୟ କରି ଦେଇଛୁ । ଜୀବନ ଓ ଜଗତ୍ ସମ୍ପର୍କରେ ଆମର ମହାନ୍ ସଂସ୍କୃତିର ପାରମ୍ପରିକ ଉଚ୍ଚାଙ୍ଗ ମୂଲ୍ୟବୋଧ ହରାଇ ଆମର ଜୀବନ ହାହୁତାଶମୟ ହୋଇପଡ଼ୁଛି ।

କାହିଁ କେତେ କାଳରୁ ସୌରମଣ୍ଡଳର ଏଇ ଗ୍ରହଟି (ପୃଥିବୀ) ଜଳ, ସ୍ଥଳ, ଆକାଶ, ବାୟୁ ଓ ତେଜର ସତ୍ତା ବହନ କରି ତା'ର ବୈଚିତ୍ର୍ୟମୟ ରୂପବିଭବ ମଧ୍ୟରେ କୋଟି କୋଟି ଜୀବ ଓ ଉଦ୍ଭିଦ ବକ୍ଷରେ ଧରି ଅହରହ ଘୂରିଚାଲିଛି । ସୂର୍ଯ୍ୟ ଚାରିପାଖରେ ଏହା ସହ ଅନ୍ୟ ଗ୍ରହ ଉପଗ୍ରହମାନେ ଏକ ଶାଶ୍ୱତ ଶୃଙ୍ଖଳାରେ ଘୂରି ଚାଲିଛନ୍ତି,

କେହି କଳ୍ପନା ହେଉନାହାନ୍ତି । କିନ୍ତୁ ଅଗଣିତ ଗ୍ରହ ଜ୍ୟୋତିଷ୍କପୂର୍ଣ୍ଣ ମହାକାଶ, ଏଇ ସୌରମଣ୍ଡଳର ସମସ୍ତ ଗ୍ରହ ଉପଗ୍ରହ ଏପରିକି ଆମର ଜନ୍ମଦାତ୍ରୀ ଧରିତ୍ରୀ ତୁଳନାରେ ମଣିଷର ସ୍ଥିତି ସାମାନ୍ୟ ରେଣୁ କଣିକା-ଠାରୁ କେତେ କ୍ଷୁଦ୍ର, ନଗଣ୍ୟ ! ଅଥଚ ଏଇ ସ୍ୱଳ୍ପଜୀବୀ ନଗଣ୍ୟ ମଣିଷର ଅହମିକା ଆଜି ନଭସ୍ପର୍ଶୀ । ଏଇ ଅହମିକା, ଏଇ କ୍ଷୁଦ୍ରତା, ତୁଚ୍ଛତା ତାକୁ ତା'ର ଅଲକ୍ଷ୍ୟରେ ଯେ ଏଇ ଗ୍ରହରୁ ତାକୁ ନିଶ୍ଚିହ୍ନ କରିବାକୁ ବସିଲାଣି, ଏ ସମ୍ପର୍କରେ ତା'ର ଚେତନା ହେଉନାହିଁ । .

ପୃଥିବୀ କେଉଁ ଅଜଣା ଅତୀତରୁ ଘୂରିବାରେ ଲାଗିଛି, ଜୀବନଚକ୍ର ମଧ୍ୟ ଘୂରିଚାଲିଛି । ଆମର ଆବିର୍ଭାବ ଓ ତିରୋଭାବ ଅନନ୍ତକାଳ ଧରି ଘଟି ଚାଲିଛି । କେହି ଅନନ୍ତ ଜୀବନ କାଳ ନେଇ ଆସିନାହିଁ; କିନ୍ତୁ ଯେଉଁ ଅବ୍ୟୟ ଓ ଶାଶ୍ୱତ ଉତ୍ସରୁ ସେ ଆସିଛି, ତା'ର ସତ୍ତା ସେ ନିଜଠାରେ ରହିଛି ଏବଂ ସେଇ ସତ୍ତାର ଉପଲବ୍ଧି ଯେ ତା'ର ଜୀବନର ଲକ୍ଷ୍ୟ, ତା'ର ଜୀବନର ସାର୍ଥକତା. କାହିଁ କେଉଁ ସୁଦୂର ଅତୀତରୁ ଆମର ମନ୍ତ୍ରଦ୍ରଷ୍ଟା ଋଷି, ମହାପୁରୁଷ, ଦାର୍ଶନିକ. ଚିନ୍ତାଶୀଳ ବ୍ୟକ୍ତିମାନେ ଆମକୁ ଚେତାଇ ଆସିଛନ୍ତି; କିନ୍ତୁ ଆମର ଚେତନା ହୁଏନାହିଁ । ଆଜି ବ୍ୟକ୍ତି ତଥା ସମଷ୍ଟି ଜୀବନସତ୍ତାକୁ ଯଦି ଆମେ ସାର୍ଥକ କରିବାକୁ ଚାହୁଁ, ଜୀବନ; ସମାଜ ଓ ବିଶ୍ୱରେ ସହାବସ୍ଥାନ ସୂତ୍ରରେ ଶାନ୍ତି ଚାହୁଁ, ତା'ହେଲେ ଆମ ସଂସ୍କୃତିର ଶାଶ୍ୱତ ମୂଲ୍ୟବୋଧ ପ୍ରତି ଦୃଷ୍ଟି ଫେରାଇ-ବାକୁ ହେବ । ଆମର ପ୍ରାତଃ ସ୍ମରଣୀୟ ମନ୍ତ୍ରଦ୍ରଷ୍ଟା ବ୍ରହ୍ମଜ୍ଞ ଋଷି, ମହାପୁରୁଷ ଓ ଚିନ୍ତାଶୀଳ ବ୍ୟକ୍ତି ଶାଶ୍ୱତ ବାଣୀର ମନନ କରି ଆଚରଣରେ ଫୁଟାଇବାକୁ ହେବ । ସେଇ ବାଣୀ ଆମର ବେଦ, ସଂହିତା ବ୍ରାହ୍ମଣ, ଉପନିଷଦ, ବେଦାନ୍ତ, ଗୀତା. ପୁରାଣ, ଧର୍ମଶାସ୍ତ୍ର ଓ ସାହିତ୍ୟରେ ସଂଚିତ ରହିଛି । ଆମତ୍ୱ ଉପଲବ୍ଧି, ଏଇ ଶାଶ୍ୱତ ଆଧ୍ୟାତ୍ମିକ ଚେତନା ମଣିଷ ପ୍ରାଣରେ ସଞ୍ଚାର କରିବାପାଇଁ ସେ ଗୁଡ଼ିକ ଉନ୍ମୁଖ ହୋଇ ବସିଛନ୍ତି । ଆମକୁ ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ତା'ର ସୁଯୋଗ ନେବାକୁ ହେବ ; ତା'ହେଲେ ସୀମିତ କାଳ ମଧ୍ୟରେ ଆମେ ଜୀବନକୁ ନିଜପାଇଁ ଓ ଜଗତ୍ ପାଇଁ ସାର୍ଥକ ଓ ସୁନ୍ଦର କରିପାରିବା ।

ଜଗତ୍, ଜୀବ ଓ ତା'ର ସ୍ରଷ୍ଟା (ପରମାତ୍ମା ବା ପରଂବ୍ରହ୍ମ) ସଂପର୍କରେ ବୈଦିକ କାଳରୁ ଏ ଅବଧି ଯେଉଁ ପ୍ରତ୍ୟକ୍ଷ ତଥା ପରୋକ୍ଷ ଅନୁଭବ ପ୍ରକାଶ ପାଇ ଆସିଛି, ଆମପାଇଁ ସେ ଗୁଡ଼ିକ ଶାଶ୍ୱତ ସଂପଦ । ସାଂପ୍ରତିକ କାଳରେ ତା'ର ଅଧ୍ୟୟନ, ମନନ ଓ ସାଧନାର ଆବଶ୍ୟକତା ଯେ କେତୁଶ ଏହା ବୁଝାଇ କହିବାକୁ ପଡ଼ିବ ନାହିଁ । ସେଇ ଅପାର୍ଥିବ ଚିନ୍ମୟ ଅନୁଭବର ବାଙ୍ମୟ ରୂପ ମନ୍ତ୍ର, ସୂକ୍ତ, ଶ୍ଳୋକ ଗୁଡ଼ିକ କେବଳ କଣ୍ଠସ୍ଥ ଓ ଆବୃତ୍ତି ସର୍ବସ୍ୱ କରିଦେଲେ ଯେ ଆତ୍ମାର-ଉପଲବ୍ଧି ହୋଇଯିବ, ତାହା ନୁହେଁ, ସେ ଗୁଡ଼ିକ ଜୀବନର ସାଧନାରେ ଫୁଟାଇବାକୁ ହେବ ।

ପ୍ରସଙ୍ଗ କ୍ରମେ ଏଠାରେ ଆମର ଭାରତୀୟ ସଂସ୍କୃତିରେ ଧର୍ମ କ'ଣ ଏବଂ ଜୀବନରେ ତା'ର ପ୍ରୟୋଜନ ସଂପର୍କରେ ଶ୍ରୁତି-ପ୍ରମାଣ ଭିତ୍ତିରେ ସୂଚନା ଦିଆଯାଉଛି ।

## ଧର୍ମ —

ଭାରତର ଧର୍ମ ହିନ୍ଦୁଧର୍ମ ନାମରେ ପରିଚିତ ହେଲେ ମଧ୍ୟ (ବିଦେଶୀଙ୍କ ଦ୍ୱାରା ଏ ପ୍ରକାର ନାମ ପ୍ରଦତ୍ତ) ଏହାର ପ୍ରକୃତ ନାମ ବୈଦିକ ଧର୍ମ ବା ସନାତନ ଧର୍ମ । ପଞ୍ଚନଦ ବିଶେଷତଃ ସରସ୍ୱତୀ ଓ ଦୃଷଦ୍‌ବତୀ ମଧ୍ୟରେ ଅବସ୍ଥିତ ଉର୍ବର ଶସ୍ୟ ଶ୍ୟାମଳ ଭୂଖଣ୍ଡରେ ବାସ କରି ପ୍ରାଚୀନ ଆର୍ଯ୍ୟଋଷିଗଣ ଜଳ, ସ୍ଥଳ, ଆକାଶ ପ୍ରକୃତିର ରୁଦ୍ର, ସୁନ୍ଦର ବୈଚିତ୍ର୍ୟମୟୀ ରୂପରେ ମୁଗ୍ଧ ଓ ବିସ୍ମିତ ହୋଇ ଦେବତା ଜ୍ଞାନରେ ତା'ର ସ୍ତୁତି କରି ଯାଇଛନ୍ତି । ଅଗ୍ନି, ବରୁଣ, ବାୟୁ, ସୂର୍ଯ୍ୟ, ଚନ୍ଦ୍ର, ଉଷା ପ୍ରଭୃତି ପ୍ରକୃତି ରୂପରେ ପରିଦୃଷ୍ଟା ଐଶୀଶକ୍ତିର ସ୍ତୁତି ଋଗ୍‌ବେଦର ବିଭିନ୍ନ ଋକ୍ ବା ମନ୍ତ୍ର ଗୁଡ଼ିକରେ କରିଯାଇଛି । ପରିଦୃଶ୍ୟମାନ ବିଶ୍ୱ ସୃଷ୍ଟିରେ ପ୍ରକାଶିତ ଏହି ପ୍ରକୃତିର ଶକ୍ତିକୁ (ଭଗବତ୍ ବା ଐଶୀଶକ୍ତି) ଋଷିମାନେ ଦେବତା ରୂପରେ ଉପାସନା କରିଛନ୍ତି ଏବଂ ଏହି ଦେବତା ମାନେ ଏକ ଅଦ୍ୱିତୀୟ ପରଂବ୍ରହ୍ମ (ପରମାତ୍ମା), ଏକ ପରମ ସତ୍ୟର ଶକ୍ତି

ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ସେଥିପାଇଁ ଋଗ୍‌ବେଦର କୋଟିଏ ମନ୍ତ୍ରରେ କୁହାଯାଇଛି—'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି' [୧], ଅର୍ଥାତ୍ ଏକ ପରମ ସତ୍ୟକୁ ପଣ୍ଡିତମାନେ ନାନା ରୂପରେ ବର୍ଣ୍ଣନା କରନ୍ତି ।

ଆଜି ଭାରତ ତଥା ସମଗ୍ର ପୃଥିବୀରେ ଧର୍ମକ୍ଷେତ୍ରରେ ଏକେଶ୍ୱରବାଦ, ବହୁଦେବବାଦ, ବହୁଧର୍ମମତ ଓ ଦାର୍ଶନିକ ମତବାଦ, ସେମାନଙ୍କ ମଧ୍ୟରେ ବିଭେଦ ଓ ସଂଘର୍ଷ ଲକ୍ଷିତ ହେଲେ ମଧ୍ୟ ବୈଦିକ ବହୁଦେବ ବା ଈଶ୍ୱରବାଦ ( Poly Theism ) ଏବଂ ବୈଦିକ ଏକେଶ୍ୱରବାଦ (Spiritual Monotheism) (ବହୁମଧ୍ୟରେ ଏକ ) ମଧ୍ୟରେ ବିରୋଧ ନାହିଁ । ବହୁଦେବବାଦରେ ଏକ ସମନ୍ୱୟର ପ୍ରଣାଳୀ ଅବଲମ୍ବିତ ହୋଇଛି । ଏଥିରେ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ଲୋକଙ୍କ ଦ୍ୱାରା କଳ୍ପିତ ସମସ୍ତ ପ୍ରକାର ଦେବତାଙ୍କୁ ସ୍ୱାଗତ କରାଯାଇ ଲୋକଙ୍କ ଧର୍ମ ଜୀବନକୁ ପରିପୁଷ୍ଟ କରାଯାଇଛି । ଶେଷରେ ବୈଦିକ ଏକେଶ୍ୱରବାଦ ଦ୍ୱାରା ଆଧ୍ୟାତ୍ମିକ ସମନ୍ୱୟ ଅଣାଯାଇଛି, ଯେଉଁଥିରେ ଅନ୍ୟ ଦେବତାଙ୍କ ପ୍ରତି କେବଳ ସହିଷ୍ଣୁତା ତଥା ଆତିଥେୟତା ପ୍ରଦର୍ଶନ କରାଯାଇ ନାହିଁ ବରଂ ଏକ ଦିବ୍ୟସତ୍ତା ଭାବରେ ନିଜର ଦେବତା ପରି ଅନ୍ୟ ଦେବତାଙ୍କୁ ଗ୍ରହଣ କରାଯାଇଛି । ବୈଦିକ ଏକେଶ୍ୱରବାଦୀ ଦେବତା ଅନ୍ୟ ଦେବତାଙ୍କ ସଂପର୍କରେ ଈର୍ଷାନ୍ୱିତ ନୁହେଁ ; ସମସ୍ତ ପ୍ରକୃତ ଉପାସନା ହେଉଛି ଈଶ୍ୱରଙ୍କ ଉପାସନା [୨] । ଶ୍ରୀମଦ୍ ଭଗବତ୍ ଗୀତାର ଭାଷାରେ କହିବାକୁ ଗଲେ—

ଯେଽପ୍ୟନ୍ୟଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକମ୍ ॥
[ ଶ୍ରୀଗୀତା, ୨।୨୩ ]

---

[୧] ଋଗ୍‌ବେଦ, ୧. ୧୬୪. ୪୬

[୨] A. C. Bose, The Call of the Vedas. Bharatiya Vidya Bhavan, PP 18-32

ଅର୍ଥାତ୍ ହେ କୌନ୍ତେୟ · ଯେଉଁମାନେ ଅନ୍ୟ ଦେବତାଙ୍କ ପ୍ରତି ଭକ୍ତିଯୁକ୍ତ ହୋଇ ଶ୍ରଦ୍ଧା ସହକାରେ ସେମାନଙ୍କୁ ପୂଜା କରନ୍ତି, ସେମାନେ ମଧ୍ୟ ନିର୍ଦ୍ଦିଷ୍ଟ ବିଧି ବ୍ୟତିରେକେ ଆମରହିଁ ଉପାସନା କରନ୍ତି ।

ଭାରତରେ ବୈଦିକ ଧର୍ମ ବା ସନାତନ ଧର୍ମର ଆକର୍ଷଣୀୟ ବୈଶିଷ୍ଟ୍ୟ ହେଲା ଏହାର ଉଦାରତା, ସମନ୍ୱୟାତ୍ମକ ଦୃଷ୍ଟିଭଙ୍ଗୀ, ବିଶ୍ୱଜନୀନତା । ତାତ୍କାଳିକତାର ସଂକୀର୍ଣ୍ଣ ସୀମା ମଧ୍ୟରେ ଏହା ଆବଦ୍ଧ ନୁହେଁ । ଏହାର ଶାଶ୍ୱତ ଓ ସାର୍ବକାଳିକ ସ୍ୱରୂପ ବିଶ୍ୱର ସାଧୁ, ଚିନ୍ତାଶୀଳ ବ୍ୟକ୍ତି ଓ ଦାର୍ଶନିକଙ୍କ ଦୃଷ୍ଟି ଆକର୍ଷଣ କରେ ।

ଏଇ ବୈଦିକ ବା ସନାତନ ଧର୍ମର ଭିତ୍ତି ହେଉଛି ମାନବ ଜୀବନକୁ ନିୟନ୍ତ୍ରିତ କରୁଥିବା ଆଧ୍ୟାତ୍ମିକ ଶୃଙ୍ଖଳା ଭିତ୍ତିକ ନୈତିକ ନିୟମ । ଏଇ ନିୟମ ବା ଶୃଙ୍ଖଳାପାଇଁ ପ୍ରଯୁକ୍ତ ହେଉଥିବା ସାଧାରଣ ଜନପ୍ରିୟ ପରିଭାଷା ହେଉଛି ଧର୍ମ । ଧର୍ମ ହେଉଛି ଆଚରଣର ଆଦର୍ଶ ରୂପ (୩) ।

ବୈଦିକ ଈଶ୍ୱରବାଦର ପୂର୍ବସ୍ୱୀକୃତ ହେଉଛି ଧର୍ମର ସ୍ଥିତି; ତା'ର ଅର୍ଥ ଶାଶ୍ୱତ ନିୟମ । ଋଗ୍‌ବେଦର ବିଷ୍ଣୁଙ୍କ ସମ୍ପର୍କରେ କୁହାଯାଏ ଯେ ସେ ପ୍ରାଚୀନ ଧର୍ମ (ଧର୍ମାଣି) ଧାରଣ କରିଛନ୍ତି (୪) । ଅଗ୍ନିଙ୍କୁ ଶାଶ୍ୱତ ନିୟମର ଅଧ୍ୟକ୍ଷ (ଅଧ୍ୟକ୍ଷଂ ଧର୍ମାଣାମ୍) ବୋଲି କୁହାଯାଇଛି (୫) ।

ମହାଭାରତରେ ଧର୍ମର ମୌଳିକ ଅର୍ଥର ସୂଚନା ଦିଆଯାଇ କୁହାଯାଇଛି : ସୃଷ୍ଟିକୁ ଧାରଣ କରିଥିବାରୁ ଏହା ଧର୍ମ ନାମରେ ଅଭିହିତ । ବୁଦ୍ଧଙ୍କ ମତରେ ଧର୍ମ ଶାଶ୍ୱତ ଓ ନୈତିକ ନିୟମଗୁଡ଼ିକୁ

(୩) A. C Bose, The Call of the Vedas, Bharatiya Vidya Bhavan, Vedic Theism, 1970, PP. 18-32
(୪) Ibid, P. 39.
(୫) ଋକ୍‌ବେଦ, ୮-୪୩-୨୪

ସୂଚିତ କରେ; ସେଥିପାଇଁ ସେ ପଞ୍ଚଶୀଳ ନୀତି ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ପ୍ରାଚୀନ ଭାରତରେ ବିଭିନ୍ନ ମତବାଦର ପ୍ରବର୍ତ୍ତକମାନେ ଯଥାର୍ଥ ଜୀବନଯାପନର ଭିତ୍ତିରୂପେ ଗୃହୀତ ହୋଇଥିବା ଆଚରଣର ଆଦର୍ଶରୂପକୁ ଧର୍ମ ନାମରେ ଅଭିହିତ କରିଥିଲେ । ଏହା ଥିଲା ସମାଜକୁ ଶୃଙ୍ଖଳିତ ଭାବରେ ଧରି ରଖିଥିବା ମୌଳିକ ନୀତି ।

ଧର୍ମର ଆଧେୟ (Content) ସମ୍ପର୍କରେ ଅଥର୍ବ ବେଦରେ ନିର୍ଦ୍ଦିଷ୍ଟ ଉକ୍ତି ରହିଛି, ଯଥା—'ପୃଥିବୀ ଧର୍ମଣାଧୃତମ୍' ଅର୍ଥାତ୍ ଧର୍ମଦ୍ୱାରା ପୃଥିବୀ ଧୃତ ହୋଇଛି [୭] । ସେଇ ସୂକ୍ତରେ ପୃଥିବୀକୁ ଧରି ରଖିଥିବା ନୀତିଗୁଡିକ ସମ୍ପର୍କରେ ଉଲ୍ଲେଖ ରହିଛି; ଯଥା:—

ସତ୍ୟଂ ବୃହଦ୍ ଋତଂ ଉଗ୍ରଂ ଦୀକ୍ଷା ତପୋ ।
ବ୍ରହ୍ମ ଯଜ୍ଞଃ ପୃଥିବୀଂ ଧାରୟନ୍ତି ॥

ଅର୍ଥାତ୍ ସତ୍ୟ, ମହାନ୍ ତଥା ଉଗ୍ର ଋତ (ଶାଶ୍ୱତ ଶୃଙ୍ଖଳା), ଦୀକ୍ଷା, ତପଃ, ପ୍ରାର୍ଥନା (ବ୍ରହ୍ମ) ଓ ଯଜ୍ଞ : ଏଇଗୁଡ଼ିକ ପୃଥିବୀକୁ ଧାରଣ କରିଛନ୍ତି ।

ବୈଦିକ ଆଦର୍ଶରେ ଏଇ ଛ'ଟି ଧର୍ମକୁ ରୂପ ଦାନ କରନ୍ତି, ଯେଉଁଗୁଡ଼ିକ ଧର୍ମର ମୌଳିକ ନୀତି । ବର୍ତ୍ତମାନ ସେଇ ଛ'ଟି ନୀତି ସମ୍ପର୍କରେ ଆଲୋଚନା କରାଯାଉଛି ।

ବୈଦିକ ଧର୍ମରେ ସତ୍ୟକୁ ପ୍ରଥମରେ ଏବଂ ଯଜ୍ଞକୁ (Ritual) ଶେଷରେ ସ୍ଥାନ ଦିଆଯାଇଛି । ଏଇ ଧର୍ମର ଇତିହାସରେ ସତ୍ୟକ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଛି । ଏ ଧର୍ମରେ ବିଶ୍ୱାସର ବାଧ୍ୟ ବୋଲି କିଛି ନାହିଁ । ପ୍ରତ୍ୟେକ ଯୁଗରେ ସତ୍ୟାନୁସନ୍ଧାନ ହୋଇଛି ସମସ୍ୟା, ବିଶ୍ୱାସରେ ଜଡ଼ିତ ରହିବା ବା ପରିନିଷ୍ଠିତ ହେବା ସମସ୍ୟା ନୁହେଁ । ଭାରତ ଇତିହାସର ପ୍ରତ୍ୟେକ ଯୁଗରେ ଋଷି ଓ ସତ୍ୟାନୁସନ୍ଧିତ୍ସୁମାନଙ୍କର

(୭) ଅଥର୍ବ ବେଦ, ୧୨-୧-୧୭

ଆନ୍ତରିକତା ଓ ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ହେତୁ ଧାର୍ମିକ ତଥା ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀ ସଂରକ୍ଷଣ ସମ୍ଭବ ହୋଇପାରିଛି ।

ବେଦରେ ସତ୍ୟକୁ ଦିବ୍ୟସତ୍ତାଙ୍କ (Divinity)ର ପର୍ଯ୍ୟାୟ ବୋଲି ବର୍ଣ୍ଣନା କରାଯାଇଛି । ଋଗ୍‌ବେଦ ମତରେ ଦେବତାମାନେ ହେଉଛନ୍ତି ସତ୍ୟର ଆଧାର । ପ୍ରାଚୀନ ଭାରତରେ ଧର୍ମ କହିଲେ ଏହା ଆସ୍ତିକତା ଓ ନାସ୍ତିକତାର ଏକ ପ୍ରଶ୍ନ ନଥିଲା, ଯେପରି ଏହା ଥିଲା ସତ୍ୟ ଓ ଅସତ୍ୟର ପ୍ରଶ୍ନ । ଋଗ୍‌ବେଦର ଏକ ସୂକ୍ତରେ କୁହାଯାଇଛି- 'ଚାଲ ଆମେ ଇନ୍ଦ୍ରଙ୍କୁ ସ୍ତବ କରିବା, ଯେକି ହେଉଛନ୍ତି ସତ୍ୟ —

ସତ୍ୟଂ ଇଦ୍‌ବା ଉତଂ ବୟଂ
ଇନ୍ଦ୍ରଂ ସ୍ତବାବ ନାନୃତମ୍ ॥
(ଋଗ୍‌ବେଦ, ୮-୬୨-୧୨)

ସତ୍ୟନିଷ୍ଠଜୀବନ ଓ ସତ୍ ହୃଦୟରୁ ଯଥାର୍ଥ ମୁକ୍ତି ଓ ଯଜ୍ଞ ଆସିଥାଏ । ଧର୍ମୋନ୍ନତିର ପଥ ହେଉଛି ସତ୍ୟର ପଥ । ଜଣେ ଉପନିଷଦ୍‌ର ଋଷି ସତ୍ୟର ଜୟଗାନ କରି କହିଛନ୍ତି—

ସତ୍ୟମେବ ଜୟତି ନାନୃତମ୍ ।
ସତ୍ୟେନ ପନ୍ଥା ବିତତୋ ଦେବଯାନଃ ।
ଯେନାକ୍ରମନ୍ତ୍ୟୃଷୟୋ ହ୍ୟାପ୍ତକାମା ।
ଯତ୍ରତତ୍ ସତ୍ୟସ୍ୟ ପରଂ ନିଧାନମ୍ ॥
(ମୁଣ୍ଡକ ଉପନିଷଦ୍, ୩-୧-୬)

ସତ୍ୟର ଜୟ ହୁଏ, ଅସତ୍ୟର ନୁହେଁ । ସତ୍ୟଦ୍ୱାରା ଦିବ୍ୟପଥ ବିସ୍ତୃତ ହୋଇଛି । ଏହି ପଥରେ ଇପ୍‌ସିତ ବସ୍ତୁ ଲାଭ କରି ଋଷିମାନେ ସତ୍ୟର ପରମ ଧାମକୁ ଯାତ୍ରା କରନ୍ତି ।

ଏହି ସତ୍ୟଦ୍ୱାରା ଆତ୍ମୋପଲବ୍‌ଧି ହୋଇଥାଏ । ନୈତିକ ଅର୍ଥରେ ସତ୍ୟ ହେଉଛି ସତ୍ୟପରାୟଣତା, ସାଧୁତା । ଆଧିବିଦ୍ୟକ (Metaphysical) ଅର୍ଥରେ ଏହା ସତ୍ୟକୁ (Reality) ସୂଚିତ କରେ ଏବଂ ସତ୍ୟ ହୋଇଥାଏ ସତ୍ ।

ଆଚରଣ ସହ ସତ୍ୟର ନିବିଡ଼ ସମ୍ପର୍କ । ସତ୍ ହେଉଛି ଜ୍ଞାନର ଅନୁସନ୍ଧେୟ ବସ୍ତୁ ବା ସାକ୍ଷାତ୍କାର । ସେଥିପାଇଁ ଉପନିଷଦୀୟ ପ୍ରାର୍ଥନା ହେଉଛି—

ଅସତୋ ମା ସଦ୍‌ଗମୟ ।
ତମସୋ ମା ଜ୍ୟୋତିର୍ଗମୟ ।
ମୃତ୍ୟୋର୍ମା ଅମୃତଂ ଗମୟ ॥
(ବୃହଦାରଣ୍ୟକ ଉପନିଷଦ୍, ୧-୩-୨୮)

ଅର୍ଥାତ୍ ଅସତ୍ୟରୁ ମୋତେ ସତ୍ୟ ଆଡ଼କୁ ନେଇଯାଅ, ଅନ୍ଧକାରରୁ ଆଲୋକକୁ ମୋତେ ନେଇଯାଅ, ମୃତ୍ୟୁରୁ ମୋତେ ଅମୃତ ଆଡ଼କୁ ନେଇଯାଅ ।

•

କିନ୍ତୁ ଆଧିବିଦ୍ୟକ ଅର୍ଥରେ ସତ୍ ହେଉଛି ଦୁର୍ବୋଧ ଓ ରହସ୍ୟାଚ୍ଛନ୍ନ । ସମୟେ ସମୟେ ଋଷି ନମ୍ରତାର ସହ ପ୍ରଶ୍ନ କରନ୍ତି— "ମୁଁ ହେଉଛି ଅଜ୍ଞ; ଋଷିମାନଙ୍କୁ ମୋର ପ୍ରଶ୍ନ : ଅଜନ୍ମା ରୂପରେ ସେହି ଏକକ ସତ୍ତା କିଏ ? (୭) । ସେହି ପ୍ରଶ୍ନରେ ଉପାସନା ଉପରେ ମଧ୍ୟ ଜୋର ଦିଆଯାଇ କୁହାଯାଇଛି—

'କସ୍ମୈ ଦେବାୟ ହବିଷା ବିଧେମ'

ଅର୍ଥାତ୍ କେଉଁ ଦେବତାଙ୍କୁ ଆମର ଆହୁତି ଦ୍ୱାରା ଉପାସନା କରିବୁଁ ?

ବିଶ୍ୱରେ ସେହି ରହସ୍ୟମୟ ସତ୍ତାର ପ୍ରଚ୍ଛନ୍ନ ସ୍ଥିତି ସମ୍ପର୍କରେ ଜଣେ ଋଷି ନିଜର ଅନୁଭୂତି ବର୍ଣ୍ଣନା କରି କହିଛନ୍ତି—

ବେନସ୍ତତ୍ ପଶ୍ୟନ୍ ନିହିତଂ ଗୁହାସଦ୍
ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ମ୍ ।
ତସ୍ମିନ୍ନିଦଂ ସଂ ଚ ବି ଚୈତି ସର୍ବଂ
ସ ଓତଃ ପ୍ରୋତଶ୍ଚ ବିଭୂଃ ପ୍ରଜାସୁ ॥
(ଯଜୁର୍ବେଦ, ବାଜସନେୟୀ ସଂହିତା, ୩୨-୮)

---

(୭) ଋଗ୍‌ବେଦ, ୧-୧୬୪-୬

ଅର୍ଥାତ୍ ଗୃହରେ ମନୁଷ୍ୟମାନେ ରହିଲା ପରି ବିଶ୍ୱ ତାଙ୍କଠାରେ (ପରମ-ସତ୍ତାଠାରେ) ରହିଛି ।

ଜୀବନର ପ୍ରତି ମୁହୂର୍ତ୍ତରେ ଆମର ସତ୍ୟ ସହ ସମ୍ପର୍କ ରହିଛି । ଜୀବନର ମୂଲ୍ୟ ହିସବରେ ସତ୍ୟ ହେଉଛି ଆମର ଆଚରଣୀୟ । ଋଗ୍-ବେଦୀୟ ଶାନ୍ତିବଚନରେ କୁହାଯାଇଛି –

"ଋତଂ ବଦିଷ୍ୟାମି, ସତ୍ୟଂ ବଦିଷ୍ୟାମି"

ଅର୍ଥାତ୍ ମୁଁ ମାନସିକ ସତ୍ୟ କହିବି, ବାଚନିକ ସତ୍ୟ କହିବି ।

**ଋତ :**

ସତ୍ୟ ହେଉଛି ଧର୍ମର ପ୍ରଥମ ଅପରିହାର୍ଯ୍ୟ ବିଭବ, ଦ୍ୱିତୀୟଟି ହେଉଛି 'ଋତ' ଅର୍ଥାତ୍ ଶାଶ୍ୱତ ବା ସନାତନ ନିୟମ । ସତ୍ୟର ନୈତିକ ବିଭବ ଦୃଷ୍ଟିରୁ ଋତ ସତ୍ୟ ସହ ନିବିଡ଼ ଭାବରେ ସଂପୃକ୍ତ । ଋଗ୍‌ବେଦ କହେ —ସତ୍ୟ ଯେପରି ପୃଥିବୀକୁ ଧାରଣ କରିଛି, ଋତ ସେହିପରି ସ୍ୱର୍ଗକୁ ଧାରଣ କରିଛି (୮) ।

ଋତ ତା'ର ନୈତିକ ବୈଶିଷ୍ଟ୍ୟ ଦୃଷ୍ଟିରୁ ସତ୍ୟ ଅପେକ୍ଷା ବ୍ୟାପକ । ନ୍ୟାୟ ଓ ଶ୍ରେୟଃ (କଲ୍ୟାଣ) ଏହାର ଅନ୍ତର୍ଭୁକ୍ତ । ନୈତିକ ଚିନ୍ତା ଭାବରେ ଏହା ଧର୍ମର ତୁଲ୍ୟାର୍ଥ ବାଚକ ।

---

(୮) ପୃଥିବୀ, ଅନ୍ତରୀକ୍ଷ ଓ ସ୍ୱର୍ଗ ସହ ଜୀବର ସମ୍ପର୍କ ଜାଣିବା ପାଇଁ ଗାୟତ୍ରୀ ମନ୍ତ୍ର, ପ୍ରଣବ ତତ୍ତ୍ୱ, ସପ୍ତବ୍ୟାହୃତି, ଗାୟତ୍ରୀ ଶୀର୍ଷ, ସଙ୍କଳ୍ପିତ ଓ ପ୍ରାଣାୟାମ ବୁଝିବା ଆବଶ୍ୟକ । ବେଦର ସାର ହେଉଛି ପ୍ରଣବ ଗାୟତ୍ରୀ । ଏହା ଜୀବନର ବେଦ । ସୂର୍ଯ୍ୟମଣ୍ଡଳର ମଧ୍ୟବର୍ତ୍ତୀ ଶକ୍ତି ସାବିତ୍ରୀ, ଧରିତ୍ରୀର ଅନ୍ତର୍ନିହିତ ଶକ୍ତି ଗାୟତ୍ରୀ । ପରମ ପୁରୁଷ ଜୀବର ହୃଦୟାକାଶରେ ପରମାତ୍ମାରୂପେ ଏବଂ ବହିର୍ଜଗତରେ ଆକାଶରେ ସୂର୍ଯ୍ୟରୂପେ ବିରାଜିତ । ଅଷ୍ଟାଦଶ ବିଦ୍ୟା ମଧ୍ୟରେ ମୀମାଂସା ପ୍ରଧାନ । ମୀମାଂସାଠାରୁ ତର୍କଶାସ୍ତ୍ର, ତର୍କଶାସ୍ତ୍ରରୁ

ଏହା ପୁଣି ମହାଜାଗତିକ ଶୃଙ୍ଖଳା (Cosmic Order) । ଏହା ବିଶ୍ୱ ପ୍ରକୃତିର ଅପରିବର୍ତ୍ତନୀୟ ଶାଶ୍ୱତ ନିୟମ, ଯାହାଦ୍ୱାରା ବିଶ୍ୱ ସୁବ୍ୟବସ୍ଥିତ ଓ ସଂହତ ହୋଇଥାଏ । ନୈତିକ ଭୂମିରେ ଏହା ଯେପରି 'କୁ' ଉପରେ 'ସୁ'ର ବିଜୟ ବୁଝାଇଥାଏ, ମହାଜାଗତିକ କ୍ଷେତ୍ରରେ ସେହିପରି ଏହା ଅନ୍ଧକାର ଉପରେ ଆଲୋକର ବିଜୟ ସୂଚିତ କରେ । ସୂର୍ଯ୍ୟ ଓ ଚନ୍ଦ୍ର ଦ୍ୱାରା ଅନ୍ଧକାର ଦୂରୀଭୂତ ହୋଇ ଆଲୋକ ପ୍ରକାଶିତ ହେଉଥିବାରୁ ଜଣେ ଋଗ୍‌ବେଦୀୟ ଋଷିଙ୍କ ହୃଦୟରୁ ସ୍ୱତଃ ଉଚ୍ଚାରିତ ହୋଇଛି –

"ସ୍ୱସ୍ତି ପନ୍ଥାନ୍ ଅନୁଚରେମ ସୂର୍ଯ୍ୟାଚନ୍ଦ୍ରମସାବିବ ।"

ଅର୍ଥାତ୍ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ପଥ ଅନୁସରଣ କରି ଆମେ ସୁପଥ (ସଦ୍‌ଗୁଣ ଓ ଉତ୍କର୍ଷର ପଥ) ଅନୁସରଣ କରିବୁଁ ।

ଯେଉଁ ଲୋକ ଶାଶ୍ୱତ ନିୟମ (ଋତ) ହୃଦୟଙ୍ଗମ କରେ ସେ ଆସ୍ତିକ ଏବଂ ଯା'ର ଏଇ ମୂଲ୍ୟବୋଧରେ ବିଶ୍ୱାସ ନାହିଁ, ସନାତନ ନିୟମାନୁଯାୟୀ ଯେ ସଦ୍‌ଗୁଣର ଆଶ୍ରୟ ନ ନେଇ ମନ୍ଦର ପ୍ରତିରୋଧ କରେ ନାହିଁ, ତାକୁ ନାସ୍ତିକ କୁହାଯାଏ । ବିଶ୍ୱ ପ୍ରକୃତି ଓ ମାନବ ଜୀବନରେ ଯାହା ଶାଶ୍ୱତ ନିୟମର (ଋତ) କ୍ରିୟାଶୀଳତା ସମ୍ପର୍କରେ ଚେତନା, ତାହା ଦିବ୍ୟସତ୍ତ୍ୱର ପ୍ରକାଶ ବ୍ୟତୀତ କିଛି ନୁହେଁ ।

ଋତ ବିଶୃଙ୍ଖଳାକୁ ଦୂରୀଭୂତ କରି ବିଶ୍ୱ ବ୍ରହ୍ମାଣ୍ଡକୁ ସଂଯତ ଓ ଶୃଙ୍ଖଳିତ କରେ । ଶୃଙ୍ଖଳା ଓ ସଂହତି ଫଳରେ ବସ୍ତୁ ସୌନ୍ଦର୍ଯ୍ୟ ଓ ଐକ୍ୟ ମଣ୍ଡିତ ହୁଏ; ତେଣୁ ଋତ ଚିନ୍ତାଧାରାର ଏକ ସୌନ୍ଦର୍ଯ୍ୟତାତ୍ତ୍ୱିକ

---

ପୁରାଣ, ପୁରାଣରୁ ଧର୍ମଶାସ୍ତ୍ର, ଧର୍ମଶାସ୍ତ୍ରରୁ ବେଦ ପ୍ରଧାନ । ବେଦଠାରୁ ଉପନିଷଦ୍ ପ୍ରଧାନ, ଉପନିଷଦ୍‌ଠାରୁ ଗାୟତ୍ରୀ ଶ୍ରେଷ୍ଠ । ଗାୟତ୍ରୀ ମନ୍ତ୍ର ହେଉଛି ଶ୍ରେଷ୍ଠ ମନ୍ତ୍ର । ଗାୟତ୍ରୀଙ୍କୁ ବେଦମାତା, ବ୍ରାହ୍ମଣ ପ୍ରସବକାରିଣୀ ବୋଲାଯାଏ ।

ଯୋଗେନ୍ଦ୍ରନାଥ ବସୁ, ସଂକଳକ : ଗାୟତ୍ରୀ ଉପାସନା, କଲିକତା, ଶକାବ୍ଦ ୧୮୪୦, ଇଂ ୧୯୧୮ ।

ବୈଶିଷ୍ଟ୍ୟ ରହିଛି । ଋତ ଯେଉଁ ପ୍ରାକୃତିକ ନିୟମ ଦ୍ୱାରା ବିଶ୍ୱ ବ୍ରହ୍ମାଣ୍ଡକୁ ଧାରଣ କରିଛି, ତାହା ହେଉଛି ନୈତିକ ବିଧାନ ମାଧ୍ୟମରେ ଜୀବନର ଶୃଙ୍ଖଳା ଏବଂ ତାହାହିଁ ହେଉଛି ରୂପର ଶୃଙ୍ଖଳା; ଯାହା ସୌନ୍ଦର୍ଯ୍ୟ ସୃଷ୍ଟି କରେ । ଏଥିପାଇଁ ବୈଦିକ ଦେବତାମାନେ ଋତକୁ ଧାରଣ କରି ସମସ୍ତେ ନିୟମାଧୀନ, ସୁନ୍ଦର ଓ ଶୁଭପ୍ରଦ । ଦେବତାମାନଙ୍କ ପାଇଁ ଶ୍ରୀ (ସୌନ୍ଦର୍ଯ୍ୟ, ଔଜ୍ଜ୍ୱଲ୍ୟ), ଭର୍ଗ (ମହିମା), ବପୁସ (ସୁନ୍ଦର ବିଗ୍ରହ), ବାମ (ମଧୁର), ଶୁଭ୍ର (ସୁନ୍ଦର), ଚିତ୍ର (ଆଶ୍ଚର୍ଯ୍ୟ) ଶବ୍ଦ ବାରମ୍ବାର ବ୍ୟବହୃତ ହୋଇଛି (୯ । ମହାଜାଗତିକ ଶୃଙ୍ଖଳାର ପଶ୍ଚାଦ୍ଦେଶରେ ଯେଉଁ ସୁନ୍ଦର ରୂପ ରହିଛି, ବରୁଣ ତା'ର ପ୍ରତିନିଧିତ୍ୱ କରନ୍ତି, ଯଥା—ଯେ ଜୀବ ଜଗତର ଧାରକ, ଯେ ପ୍ରତ୍ୟୁଷ କିରଣରେଖାର ଗୁପ୍ତରହସ୍ୟାତ୍ମକ ନାମ ଜାଣନ୍ତି, ସେ ହେଉଛନ୍ତି କବି, ଯେ ତାଙ୍କର କବିତ୍ୱ ଶକ୍ତି ଦ୍ୱାରା ବହୁ ପ୍ରକାର ରୂପ ଧାରଣ କରନ୍ତି (୧୦) ।

ଇନ୍ଦ୍ରଙ୍କ ସମ୍ପର୍କରେ ବର୍ଣ୍ଣିତ ଅଛି ଯେ ଗୃହିଁରହିବା ପାଇଁ ସ୍ୱର୍ଗପରି ସେ ସୁନ୍ଦର । ସେ ହେଉଛନ୍ତି ଜଣେ ନର୍ତ୍ତକ ଯେ ଶ୍ରୀ (ସୌନ୍ଦର୍ଯ୍ୟ) ଦ୍ୱାରା ଚିତ୍ତ ଆକର୍ଷଣ କରନ୍ତି [୧୧] । ଏଠାରେ ଇନ୍ଦ୍ର ଜଣେ ନର୍ତ୍ତକ ଭାବରେ ବର୍ଣ୍ଣିତ । ନୃତ୍ୟ ହେଉଛି ପଦକ୍ଷେପର ସୌନ୍ଦର୍ଯ୍ୟ, ଜୀବନର ଛନ୍ଦ; ଏହା ଦିବ୍ୟସତ୍ତାଙ୍କଠାରେ ଆରୋପ କରାଯାଇଛି । କୁମାରୀ ଉଷାଙ୍କର ସୌନ୍ଦର୍ଯ୍ୟ ଚିତ୍ରଣରେ ଋଗ୍‌ବେଦର ଚିତ୍ରକଳ୍ପ ଯେ କୌଣସି କବି-କଳ୍ପନାକୁ ଉଜ୍ଜୀବିତ କରେ । ଋତାନୁଶାସନର ଆଜ୍ଞା ବହନକାରୀ ସୁନ୍ଦରୀ ଉଷା ସମସ୍ତ ଶ୍ରେୟସ୍କର ଚିନ୍ତା ପ୍ରେରଣ କରିବାକୁ ପ୍ରାର୍ଥନା କରାଯାଇଛି [୧୨] ।

ମହାଜାଗତିକ ଶୃଙ୍ଖଳାର ଅଭ୍ୟନ୍ତରରେ ଥିବା ସୌନ୍ଦର୍ଯ୍ୟର ପ୍ରକାଶ ଦ୍ୱାରା ବୈଦିକ ଋଷିମାନେ ମନୁଷ୍ୟଙ୍କର କଳ୍ପନାଶ୍ରିତ ସମୁନ୍ନତ

(୯) ଋଗ୍‌ବେଦ, ୬-୬-୭
(୧୦) ଅଥର୍ବବେଦ; ୮-୪୧-୫
[୧୧] ଋଗ୍‌ବେଦ, ୭-୨୯ ୩
[୧୨] ଋଗ୍‌ବେଦ, ୧-୧୨୩-୪

ଉଠାଇଥିଲେ । ସୌନ୍ଦର୍ଯ୍ୟ ସଂପର୍କରେ ଏଇ ଗ୍ରାହକତା ନୈତିକ ଭାବର ପ୍ରେରଣା ଅପେକ୍ଷା ଚରିତ୍ର ଓ ସାଧୁଜୀବନ ଯାପନର ଭିତ୍ତିକୁ ଦୃଢ଼ କରିଥିଲା । ସତ୍ୟରେ ପ୍ରତିଷ୍ଠିତ ହୋଇଛନ୍ତି ଯେଉଁ ସବିତାଙ୍କର ଶକ୍ତି, ତାଙ୍କ ସୁନ୍ଦର ଓ କଲ୍ୟାଣକର ବସ୍ତୁ ପ୍ରଦାନ ପାଇଁ ପ୍ରାର୍ଥନା କରାଯାଇଛି, ଯଥା—

ବିଶ୍ୱାନି ଦେବ ସବିତର୍ ଦୁରିତାନି ପରାସୁବ ।
ଯଦ୍ ଭଦ୍ରଂ ତନ୍ନ ଆ ସୁବ ॥
ଅନାଗସୋ ଅଦିତୟେ ଦେବସ୍ୟ ସବିତୁଃ ସବେ ।
ବିଶ୍ୱା ବାମାନି ଧୀମହି ॥
ଆ ବିଶ୍ୱଦେବଂ ସତ୍ପତିଂ ସୂକ୍ତୈରଦ୍ୟା ବୃଣୀମହେ ।
ସତ୍ୟ ସବଂ ସବିତାରମ୍ ॥
[ ଋଗ୍‌ବେଦ, ୫ । ୧ । ୫ । ୭ ]

ବୈଦିକ ଯଜ୍ଞ ପ୍ରତି ମଧ୍ୟ 'ଋତ' ଶବ୍ଦ ପ୍ରୟୋଗ କରାଯାଏ । ଋତ ହେଉଛି ଯଜ୍ଞ ପୁଣି ଧର୍ମ । ଯଜ୍ଞ ଭାବରେ ଏହା (ଋତ) ଉପାସନାର ଶୃଙ୍ଖଳିତ ଉତ୍ସବାନୁଷ୍ଠାନକୁ ବୁଝାଇଥାଏ । ପୁଣି ସମୟାନୁସାରେ ପରିବର୍ତ୍ତିତ ହେବାପାଇଁ ମଧ୍ୟ ବେଦରେ ସୂଚନା ରହିଛି । [ନବ୍ୟୋ ଜାୟତାଂ ଋତମ୍ ] ।

ସାମାଜିକ ଶୃଙ୍ଖଳା ଭାବରେ ମଧ୍ୟ 'ଋତ' ଶବ୍ଦର ପ୍ରୟୋଗ ରହିଛି । ବେଦରେ ପ୍ରତ୍ୟେକ ଦେବ ବା ଦେବୀ 'ଋତ'ର ରକ୍ଷାକର୍ତ୍ତା ଭାବରେ ବର୍ଣ୍ଣିତ । ବିଶେଷତଃ କେତେକ ଦେବତା ରାଜା ଭାବରେ ବର୍ଣ୍ଣିତ, ଯେଉଁମାନେ ଋତର ତତ୍ତ୍ୱାବଧାରକ ଏବଂ କ୍ଷତ୍ରିୟ ଭାବରେ ରକ୍ଷାକର୍ତ୍ତା ଓ ଶାସକ । ଋଗ୍‌ବେଦରେ ମିତ୍ର ଓ ବରୁଣଙ୍କ ସମ୍ପର୍କରେ ଏହିପରି ବର୍ଣ୍ଣନା କରାଯାଇଛି, ଯଥା—

ଋତାବାନା ନିଷେଦତୁଃ ସାମ୍ରାଜ୍ୟାୟ ସୁକ୍ରତୂ ।
ଧୃତବ୍ରତା କ୍ଷତ୍ରିୟା କ୍ଷତ୍ରଂ ଆଶତୁଃ ॥
( ଋଗ୍‌ବେଦ, ୮।୨୫।୮)

ଅର୍ଥାତ୍ ଋତର ଧାରକ ଭାବରେ ସେମାନେ ଏକାନ୍ତ ଶକ୍ତିଶାଳୀ । ସାର୍ବଭୌମତା ପାଇଁ ସେମାନେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ସେମାନେ ବୀର, ନିର୍ଭୀକ, ଯେଉଁମାନଙ୍କର ବିଧାନ ପ୍ରଥମ ସ୍ଥାନ ଅଧିକାର କରେ । ସେମାନେ ପୃଥିବୀ ରକ୍ଷାର ଦାୟିତ୍ୱ ବହନ କରିଛନ୍ତି ।

ଋତ ମଧ୍ୟ ସାମାଜିକ ନିୟମ ପ୍ରତି ପ୍ରଯୋଜ୍ୟ, ରାଜା ହେଉଛନ୍ତି ଯା'ର ରକ୍ଷକ ବା ତତ୍ତ୍ୱାବଧାରକ । ସେଥିପାଇଁ ସେମାନେ କ୍ଷତ୍ରିୟ ଭାବରେ ବର୍ଣ୍ଣିତ ହୋଇଛନ୍ତି । ପୃଥିବୀର ରାଜନ୍ୟବର୍ଗ ମିତ୍ର ଓ ବରୁଣଙ୍କ ତାଙ୍କର ଆଦର୍ଶ ରୂପେ ଗ୍ରହଣ କରନ୍ତି । ରାଜା ଯେତେବେଳେ ରାଜପଦର ଦୀକ୍ଷା ଗ୍ରହଣ କରନ୍ତି; ତାଙ୍କୁ କୁହାଯାଏ—'ତୁମେ ମିତ୍ର, ତୁମେ ବରୁଣ (୧୩) । କ୍ଷତ୍ରିୟ ରକ୍ଷାକର୍ତ୍ତା ଓ ଧୃତବ୍ରତଧାରୀ ହୋଇଥିବାରୁ ସ୍ୱଭାବତଃ ସେ ହେଉଛନ୍ତି ଯୋଦ୍ଧା । ସମର ନିପୁଣତା ଓ ବଧି ପ୍ରଦାତା ଭାବରେ ଇନ୍ଦ୍ରଙ୍କର କ୍ଷାତ୍ର ପ୍ରତିଭା ଋଗ୍‌ବେଦରେ ସ୍ୱୀକାର କରାଯାଇଛି (୧୪) । ଇନ୍ଦ୍ରଙ୍କ ଆଦର୍ଶରେ ଶୌର୍ଯ୍ୟସମ୍ପନ୍ନ ହେବାପାଇଁ ମାନବ ଜାତି ପ୍ରତି ଉତ୍ତେଜନାମୟ ଉଦ୍‌ବୋଧନ ରହିଛି, ଯଥା—

ଗୋତ୍ରଭିଦଂ ଗୋବିଦଂ ବଜ୍ରବାହୁଂ
ଜୟନ୍ତଂ ଅଜ୍ମ ପ୍ରମୃଣନ୍ତ ଓଜସା ।
ଇମଂ ସଜାତା ଅନୁବୀରୟଧ୍ୱମ୍
ଇନ୍ଦ୍ରଂ ସଖାୟୋ ଅନୁସଂରଭଧ୍ୱମ୍ ।।
( ଋଗ୍‌ବେଦ, ୧୦।୧୦୩।୬ )

ତାଙ୍କର ବୀରତ୍ୱ ସହ ତାଙ୍କ ଦାକ୍ଷିଣ୍ୟର ବର୍ଣ୍ଣନା ମଧ୍ୟ ରହିଛି । ବିଶ୍ୱ-ପାଳନକାରୀ ବିଷ୍ଣୁ ମଧ୍ୟ ରାଜକାର୍ଯ୍ୟ ଓ ଦିବ୍ୟ ଦାକ୍ଷିଣ୍ୟର ମୂର୍ତ୍ତିମନ୍ତ ବିଗ୍ରହ । ସୋମଙ୍କର ଦାକ୍ଷିଣ୍ୟର ଆଦର୍ଶ ସମ୍ପର୍କରେ ବର୍ଣ୍ଣନା କରାଯାଇ କୁହାଯାଇଛି —ସେ ନଗ୍ନମାନଙ୍କୁ ବସ୍ତ୍ରଦାନ କରନ୍ତି, ରୋଗୀମାନଙ୍କପାଇଁ

(୧୩ ଯଜୁର୍ବେଦ, ବା·ସଂ,୧୦-୧୭,
[୧୪] ଋଗ୍‌ବେଦ, ୩-୪୬·୨

ଭିଁଷକ୍‌ର କାମ କରନ୍ତି । ତାଙ୍କ ଦୟାରେ ଅନ୍ଧ ଚକ୍ଷୁଷ୍ମାନ୍‌ ହୁଏ, ପଙ୍ଗୁ ଗତିଶୀଳ ହୁଏ (୧୫) । ସ୍ୱର୍ଗର ରାଜାମାନଙ୍କ ଆଦର୍ଶରେ ପୃଥିବୀର ରାଜାମାନେ ସମାଜରେ ନିଜର କ୍ଷାତ୍ର ଓ ଶାସନ ଶକ୍ତି ପ୍ରୟୋଗ କରି କ୍ଷତ୍ରିୟ ଓ ରକ୍ଷାକର୍ତ୍ତା ହୋଇଛନ୍ତି ।

ଋତ ପୁଣି ଗ୍ରୀକ୍‌ମାନଙ୍କର ନିୟତି ପରି ମନୁଷ୍ୟ ଭାଗ୍ୟରେ ନିର୍ମମ ନିୟନ୍ତ୍ରଣକର୍ତ୍ତା ନୁହେଁ, ଏହା ଚିରକାଳ ଶାଶ୍ୱତ ନିୟମ ଓ ନ୍ୟାୟ ହୋଇ ରହିଛି । ଶାଶ୍ୱତ ନିୟମ ଯେଉଁଠି ସକ୍ରିୟ, ମନୁଷ୍ୟ ସେଠି ନିଜର କର୍ମଫଳରୁ ମୁକ୍ତିପାଏନା— ନିଜର କର୍ମାନୁଯାୟୀ ନିଶ୍ଚିତ ଭାବରେ ଫଳ ଭୋଗ କରିବ । ତେଣୁ ଉକ୍ତ ଋତର ଚିନ୍ତାଧାରାରୁ କର୍ମବାଦ ଆସି ଯାଇଛି । ବେଦରେ ଅବଶ୍ୟ ମନୁଷ୍ୟ ଭାଗ୍ୟର ପୂର୍ବ ନିର୍ଦ୍ଧାରଣ କରିନାହିଁ । ବିଶୃଙ୍ଖଳା ବିରୁଦ୍ଧରେ ଶୃଙ୍ଖଳାର ପ୍ରତିଷ୍ଠା ପାଇଁ ଋତର ଅନୁସରଣରେ ମନୁଷ୍ୟର ଶକ୍ତି ସମ୍ପର୍କରେ ବେଦର ଦୃଢ଼ ବିଶ୍ୱାସର ସଂକେତ ରହିଛି । ଜୀବନ ସମ୍ପର୍କରେ ବୈଦିକ ଦୃଷ୍ଟିଭଙ୍ଗୀ ହେଉଛି ବୀରତ୍ୱ ବ୍ୟଞ୍ଜକ । ଜୀବନର ଗତିପଥ ବଡ଼ ବନ୍ଧୁର । ଆମ ମଧ୍ୟରେ ସତ୍‌ ରହିଛି, ଅସତ୍‌ ବି ରହିଛି । ସାହସ ଓ ସଙ୍କଳ୍ପବଦ୍ଧ ହୋଇ ସତ୍ୟର ଅନୁସରଣ କଲେ ବିଜୟ ସୁନିଶ୍ଚିତ । ସାହସର ସହିତ ଜୀବନ ସଂଗ୍ରାମର ସମ୍ମୁଖୀନ ହେବାପାଇଁ ଚମତ୍କାର ଉଦ୍‌ବୋଧନ ରହିଛି, ଯଥା—

ଅଶ୍ମନ୍ୱତୀ ରୀୟତେ ସଂରଭଧ୍ୱମ୍‌
ଉତ୍ତିଷ୍ଠତ ପ୍ରତରତା ସଖାୟଃ ।
ଅତ୍ରା ଜହାମ ଯେ ଅସନ୍ନଶେବାଃ
ଶିବାନ୍‌ ବୟଂ ଉତ୍ତରେମ ମାଭି ବାଜାନ୍‌ ।।

( ଋଗ୍‌ବେଦ, ୧୦।୫୩।୮)

ଅର୍ଥାତ୍‌ ପ୍ରସ୍ତର ଶଯ୍ୟାକୁଳ ଝରଣା ବହିଯାଉଛି । ସାଥି ! ଦୃଢ଼ ହୋଇ ଠିଆ ହୁଅ ଏବଂ ଏହାକୁ ପାର ହୋଇ ଯାଅ । ଯାହା ଅଶିବ, ଖଳ ଏଠାରେ ଛାଡ଼ିଯିବା ଏବଂ ଝରଣା ପାର ହୋଇ ଆମେ ଶିବ ଶକ୍ତିର

(୧୫) ଋଗ୍‌ବେଦ, ୮-୭୯-୨୭,

ନକଟବର୍ତ୍ତୀ ହେବା ( ଏଠାରେ ଡ଼୍ୟୁରର ଶଯ୍ୟାକୁଳ ଝରଣାର ଅର୍ଥ ଆମର ପ୍ରତିବନ୍ଧକ ପୂର୍ଣ୍ଣ ଜୀବନ ) ।

ଋଗ୍‌ବେଦର ଜୀବନର ତ୍ରିବିଧ ଆଗ୍ରହ ସମ୍ପର୍କରେ କୁହାଯାଇଛି, ଯଥା—

ହେ ବ୍ରହ୍ମନ୍ ! (ଆମର) ଜ୍ଞାନଶକ୍ତି ବର୍ଦ୍ଧିତ କର,
ଧୀଶକ୍ତି ବର୍ଦ୍ଧିତ କର,
କ୍ଷତ୍ରଶକ୍ତି ବର୍ଦ୍ଧିତ କର ।
ଦୁଗ୍‌ଧବତୀ ଗାଈ ମାନଙ୍କୁ ବଳ ଦିଅ ଏବଂ
ଲୋକମାନଙ୍କୁ ଶକ୍ତି ଶାଳୀ କର । (୧୭)

ଏ ଗୁଡ଼ିକ ମଧ୍ୟରେ ସତ୍ୟର ତତ୍ତୁଲ୍ୟ ବ୍ରହ୍ମଶକ୍ତି (ସାଂସ୍କୃତିକ ଶକ୍ତି ), ଋତର ତତ୍ତୁଲ୍ୟ କ୍ଷତ୍ରଶକ୍ତି (ରାଜନୈତିକ ଶକ୍ତି) ଏବଂ ଦୁଗ୍‌ଧବତୀ ଗାଭୀ (ପଶୁ ଓ ଐଶ୍ୱର୍ଯ୍ୟ) ସମାଜର ଆର୍ଥନୀତିକ ଶକ୍ତିର ପ୍ରତିନିଧିତ୍ୱ କରନ୍ତି । ଗୁଣକର୍ମାନୁସାରେ ସମାଜରେ ବ୍ରାହ୍ମଣ (ଦାର୍ଶନିକ ବ୍ୟକ୍ତି), କ୍ଷତ୍ରିୟ (ରାଜନୈତିକ ବ୍ୟକ୍ତି ) ଓ ବୈଶ୍ୟର (ସାଧାରଣ ମନୁଷ୍ୟ) ସୃଷ୍ଟି ହୋଇଛି । ବୈଶ୍ୟ ସମାଜର ସମ୍ପଦ ସୃଷ୍ଟି କରିବା ବେଳେ କ୍ଷତ୍ରିୟ ସମାଜର ଶୃଙ୍ଖଳା ଓ ନିରାପତ୍ତା ପାଇଁ କାର୍ଯ୍ୟ କରିବ ; ବ୍ରାହ୍ମଣ ବୌଦ୍ଧିକ ଓ ଆଧ୍ୟାତ୍ମିକ କାର୍ଯ୍ୟର ଦାୟିତ୍ୱ ବହନ କରିବ ; କିନ୍ତୁ ସମାଜକୁ ତା'ର ସୁରକ୍ଷା ଏବଂ ମନ ଓ ଆତ୍ମାରେ ଉଚ୍ଚତର ଜୀବନ ଯାପନ ପାଇଁ ବିଶେଷ ପ୍ରଚେଷ୍ଟା କରିବାକୁ ହେବ; ଯେପରି ପ୍ରଥମ ଦୁଇଟି ଶ୍ରେଣୀ ଦକ୍ଷ ଭାବରେ କାର୍ଯ୍ୟ ସମ୍ପାଦନ କରନ୍ତି । ସେଥିପାଇଁ ଯଜୁର୍ବେଦରେ କୁହାଯାଇଛି—

ଯତ୍ର ବ୍ରହ୍ମଚ କ୍ଷତ୍ରଂଚ ସମ୍ୟଞ୍ଚୌ ଚରତଃ ସହ ।
ତଂ ଲୋକଂ ପୁଣ୍ୟଂ ପ୍ରଜ୍ଞେଷଂ ଯତ୍ର ଦେବାଃ ସହାଗ୍ନିନା ॥
( ଯଜୁର୍ବେଦ, ବା·ସଂ, ୨୦-୨୫ ]

[୧୭] ଋଗ୍‌ବେଦ, ୮-୩୫-୧୬-୧୮

ଅର୍ଥାତ୍ ମୁଁ ସେଇ ପବିତ୍ର ଲୋକକୁ [ଜଗତକୁ] ଜାଣିବାକୁ ଚାହେଁ, ଯେଉଁଠି ଆଧ୍ୟାତ୍ମିକ ଶକ୍ତି [ବ୍ରହ୍ମ] ଓ ଶାସକ ଶକ୍ତି [କ୍ଷତ୍ର] ସମନ୍ୱିତ ଭାବରେ ଗତି କରନ୍ତି ଏବଂ ଯେଉଁଠି ଦେବତା ଓ ଅଗ୍ନି ଅଧିଷ୍ଠାନ କରନ୍ତି ।

ଏହିପରି ଭାବରେ ଦେଖାଯିବ ଯେ ବ୍ରହ୍ମ ଓ କ୍ଷତ୍ର ବୈଦିକ ଯୁଗରେ ନିଜ ନିଜ ମଧ୍ୟରେ ଧର୍ମୀୟ ଓ ରାଜନୈତିକ ଆଦର୍ଶ ପ୍ରତିଷ୍ଠା କରିଥିଲେ ।

ବେଦରେ କଳ୍ପିତ ପ୍ରଧାନ ଦେବତାମାନଙ୍କ ମଧ୍ୟରେ ଅଗ୍ନି ବିଶେଷତଃ ବ୍ରାହ୍ମଣ ଆଦର୍ଶର ପ୍ରତିନିଧିତ୍ୱ କରନ୍ତି, ଯଦିଓ ରାଜାଭାବରେ ମଧ୍ୟ ତାଙ୍କର ବର୍ଣ୍ଣନା କରାଯାଇଛି (୧୭) । ବରୁଣ, ଇନ୍ଦ୍ର ଓ ଅନ୍ୟ ଦେବତାମାନେ କ୍ଷତ୍ର ଶକ୍ତିର ପ୍ରତିନିଧିତ୍ୱ କରନ୍ତି ବୋଲି ପୂର୍ବରୁ ତା'ର ସୂଚନା ଦିଆଯାଇଛି ।

ବେଦରେ ବ୍ରହ୍ମର ଜ୍ଞାନ ଓ କ୍ଷତ୍ରର ଶୌର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏଥିରେ ବୌଦ୍ଧିକ ଶକ୍ତି (ଧୀ), ଜ୍ଞାନ (କ୍ରତୁ), ଦକ୍ଷତା (ଦକ୍ଷ), ଆଧ୍ୟାତ୍ମିକ ଶକ୍ତି (ବର୍ଚ୍ଚସ୍), ଉଚ୍ଚତର ପ୍ରତିଭା (ମେଧା), ଇତ୍ୟାଦି ପାଇଁ ସୂକ୍ତ ରହିବା ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ବଳ (ଶବସ୍), ବୀର୍ଯ୍ୟ, ମନୁଷ୍ୟତ୍ୱ (ନୃମ୍ଣ), ଆଧ୍ୟାତ୍ମିକ ଶକ୍ତି (ଓଜସ୍), ବିଜୟ ଶକ୍ତି (ସାହସ), କ୍ରୋଧ (ମନ୍ୟୁ), ଅଭୟ, ବଳ ଓ ବୀରତ୍ୱ ସମ୍ପର୍କରେ ପ୍ରାର୍ଥନା ରହିଛି, ଯଥା –

[କ] ହେ ବରୁଣ ! ଆଲୋକ (ଜ୍ଞାନ) ପାଇଁ ପ୍ରୟାସ କରୁଛି, ତା'ର ବୁଦ୍ଧି (ଧୀ), ଜ୍ଞାନ (କ୍ରତୁ) ଓ ଅନ୍ତର୍ଦୃଷ୍ଟିକୁ (ଦକ୍ଷ) ତୀକ୍ଷ୍ଣତର [୧୮] ।

(୧୭) ଋଗ୍‌ବେଦ, ୮-୪୪-୨୧
[୧୮] ତତୈବ, ୮-୪୨-୩

[ଖ] ତୁମେ ତେଜ, ଆମ୍ଭମାନଙ୍କୁ ତେଜସ୍ୱୀକର, ତୁମ୍ଭେ ବୀର୍ଯ୍ୟ, ଆମ୍ଭମାନଙ୍କୁ ବୀର୍ଯ୍ୟବାନ୍ କର; ତୁମେ ବଳ, ଆମ୍ଭମାନଙ୍କୁ ବଳବାନ୍ କର; ତୁମେ ଓଜଃ, ଆମ୍ଭମାନଙ୍କୁ ଓଜସ୍ୱୀ କର; ତୁମେ କ୍ରୋଧ ସ୍ୱରୂପ (ଅନ୍ୟାୟ ଦ୍ରୋହୀ), ଆମ୍ଭମାନଙ୍କୁ ଅନ୍ୟାୟଦ୍ରୋହୀ କର; ତୁମେ ସହନ-ଶକ୍ତି, ଆମ୍ଭମାନଙ୍କୁ ସହନଶୀଳ କର (୧୯)।

## ଦୀକ୍ଷା :

ଦୀକ୍ଷା, ତପସ୍ୟା, ପ୍ରାର୍ଥନା (ବ୍ରହ୍ମନ୍) ଓ ଯଜ୍ଞ : ଧର୍ମର ଅବଶିଷ୍ଟ ଏଇ ଗୁଡ଼ିକ ମତ ଦାର୍ଶନିକ ତଥା ଧର୍ମୀୟ ଲକ୍ଷଣାକ୍ରାନ୍ତ ବ୍ରହ୍ମନ୍ ଶ୍ରେଣୀର ଅନ୍ତର୍ଭୁକ୍ତ । ଦୀକ୍ଷା ଓ ତପସ୍ୟା ଏଇ ଦୁଇଟି ଚରମ ସତ୍ୟର (Ultimate Reality) ଉପଲବ୍ଧି ପାଇଁ ଉଦ୍ଦିଷ୍ଟ । ଏ ଦୁଇଟି ଆଧ୍ୟାତ୍ମିକ ଅଗ୍ରଗତି ସମ୍ପର୍କୀୟ ବ୍ୟବସ୍ଥାକୁ ସୂଚିତ କରିଥାନ୍ତି ।

ଯଜୁର୍ବେଦରେ ଉଲ୍ଲେଖଅଛି ଯେ ବ୍ରତ ବା ଆତ୍ମୋତ୍ସର୍ଗଦ୍ୱାରା ସାଧକ ଦୀକ୍ଷାଲାଭ କରେ, ଦୀକ୍ଷା ଦ୍ୱାରା ଦକ୍ଷିଣା (Grace), ଦକ୍ଷିଣାଦ୍ୱାରା ଶ୍ରଦ୍ଧା ଏବଂ ଶ୍ରଦ୍ଧାଦ୍ୱାରା ସତ୍ୟର ଉପଲବ୍ଧି ହୋଇଥାଏ [୨୦] ।

ଦୀକ୍ଷା ଏଠାରେ ଗତାନୁଗତିକ ଦୀକ୍ଷା ନୁହେଁ । ଏହାଦ୍ୱାରା ଆଚାର୍ଯ୍ୟ ଓ ଶିଷ୍ୟ ମଧ୍ୟରେ ଗଭୀର ବ୍ୟକ୍ତିଗତ ସମ୍ପର୍କ ଘଟିଥାଏ । ଦୀକ୍ଷାଦାନ ଫଳରେ ବ୍ରହ୍ମଚାରୀର ଆଧ୍ୟାତ୍ମିକ ବ୍ୟକ୍ତିତ୍ୱର ବିକାଶ ହେତୁ ସେ ଦ୍ୱିଜ ନାମରେ ଅଭିହିତ ହୁଏ [୨୧] । ଏହି ଦୀକ୍ଷା ହେଉଛି ଅନ୍ଧକାରରୁ ଆଲୋକକୁ; ମାନବତ୍ୱରୁ ଦେବତ୍ୱକୁ, ଅସତ୍ୟରୁ ସତ୍ୟକୁ ଯାତ୍ରା କରିବାର ମଧ୍ୟବର୍ତ୍ତୀକାଳୀନ ପଥ । ଅଗ୍ନିଦେବଙ୍କୁ ବ୍ରହ୍ମଚାରୀର [ଦୀକ୍ଷାଧାରୀ] ପ୍ରାର୍ଥନା ହେଉଛି—

(୧୯) ଯଜୁର୍ବେଦ, ବାଜସନେୟୀ ସଂହିତା, ୧୯-୩୦
[୨୦] ଯଜୁର୍ବେଦ, ବା·ସଂ, ୧୯-୩୦
[୨୧] ଅଥର୍ବବେଦ, ୧୧-୫-୩

ହେ ବ୍ରତର ଦେବତା ଅଗ୍ନି ! ମୁଁ ବ୍ରତ ପାଳନ କରିବି ।
ମୁଁ ଅସତ୍ୟ ଅତିକ୍ରମ କରି ସତ୍ୟର ନିକଟବର୍ତ୍ତୀ ହେଉଛି । [୨୨]

ଆଚାର୍ଯ୍ୟଙ୍କର ବ୍ରହ୍ମଚାରୀଙ୍କୁ ଉପଦେଶ ନବାଗତ ଏକ ପଥିକକୁ ନୂତନରାଜ୍ୟ ସମ୍ପର୍କରେ ଦିଗ୍‌ଦର୍ଶନ ଦେବା ସଦୃଶ [ଋଗ୍‌ବେଦ, ୧୦-୩୨-୭] ।

**ତପଃ :**

ନିରବଚ୍ଛିନ୍ନ କଠୋର ସାଧନା ଫଳରେ ସାଧକ ବୌଦ୍ଧିକ ଓ ଆଧ୍ୟାତ୍ମିକ ଚେତନା ଲାଭକରେ । ସାଧନ ପଥରେ ଆଳସ୍ୟର ସ୍ଥାନ ନାହିଁ, ଅତଏବ ସାଧକମାନେ ଯା'ର ନିନ୍ଦା କରିଥାନ୍ତି (୨୩) । ସାଧକ-ମାନଙ୍କର ପ୍ରାର୍ଥନା ହେଉଛି—

ତ୍ରାତାରୋ ଦେବା ଅଧିବୋଚତା ନୋ ।
ମାନୋ ନିଦ୍ରା ଇଶତ ମୋତ ଜଳ୍ପିଃ ॥
[ଋଗ୍‌ବେଦ, ୮-୪୮-୧୪]

ଅର୍ଥାତ୍ ହେ ତ୍ରାଣକର୍ତ୍ତାଗଣ ! ଆମକୁ ଆଶୀର୍ବାଦ କର, ଯେପରି ନିଦ୍ରା ଓ ଅଳସ-କଥନ ଆମକୁ ପ୍ରଭାବିତ କରେ ।

ଉଚ୍ଚତର ବସ୍ତୁ ଲାଭକରିବା ପାଇଁ ତପସ୍ୟା ହେଉଛି ନିରବଚ୍ଛିନ୍ନ କଠୋର ଉଦ୍ୟମ । ଜୀବନରେ କିଛି ସାର୍ଥକ ଲକ୍ଷ୍ୟଲାଭ ନିମିତ୍ତ ଏହା ହେଉଛି ଅସୀମ କଷ୍ଟବରଣ । ପ୍ରତ୍ୟେକ ମହତ୍ ବସ୍ତୁ ମୂଳରେ ରହିଛି ତପସ୍ୟା । ଆଧ୍ୟାତ୍ମିକ ଅଗ୍ନିରୁ ସତ୍ୟ ଓ ଋତ ଜାତ ହୋଇଥିଲେ ବୋଲି ଋଗ୍‌ବେଦୀୟ ସୂକ୍ତ ରହିଛି (୨୪) । ତପଃ ସାହାଯ୍ୟରେ ଦେବତ ଋଷିମାନେ ମହତ୍ କାର୍ଯ୍ୟ ଅନୁଷ୍ଠାନ କରିବାର ବର୍ଣ୍ଣନା ରହିଛି ।

ବୈଦିକ ଶିକ୍ଷାର୍ଥୀଙ୍କ ପକ୍ଷରେ ଶ୍ରେଷ୍ଠ ତପସ୍ୟା ହେଉଛି ବ୍ରହ୍ମଚର୍ଯ୍ୟ । ପ୍ରାରମ୍ଭିକ ସ୍ତରରେ ବୈଦିକ-ଜ୍ଞାନ ହାସଲ କରିବା ପାଇଁ

---

[୨୨] ଯଜୁର୍ବେଦ, ବା·ସଂ, ୧-୫
(୨୩) ଋଗ୍‌ବେଦ, ୮-୨-୧୮
(୨୪) ଋଗ୍‌ବେଦ, ୧୦-୧୯୦-୧

ଏବଂ ସାଧାରଣ ଅର୍ଥରେ ଶିକ୍ଷା ଓ ସଂସ୍କୃତି ଅର୍ଜନ କରିବା ପାଇଁ ଏହା ଏକ ଉପାୟ । ଅଥର୍ବ ବେଦରେ ବ୍ରହ୍ମଚାରୀର ଲକ୍ଷଣ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ବାଳକ-ବ୍ରହ୍ମଚାରୀ ବୌଦ୍ଧିକ ତଥା ଆଧ୍ୟାତ୍ମିକ ଉତ୍କର୍ଷ ଲାଭ ପରେ ପରିପକ୍ୱ ଯୌବନାବସ୍ଥାରେ ନୂତନ ପରିଚ୍ଛେଦ ଓ ନୂତନ ଶକ୍ତି ଲାଭକରି ସମାଜକୁ ଫେରିଆସେ । ତେଣୁ ସାର୍ଥକ ଜୀବନ-ଯାପନ ନିମିତ୍ତ ବ୍ରହ୍ମଚର୍ଯ୍ୟର ସର୍ବାଧିକ ଆବଶ୍ୟକତା ରହିଛି । ଅଥର୍ବ ବେଦରେ ଉଲ୍ଲେଖ ଅଛି—

ବ୍ରହ୍ମଚର୍ଯ୍ୟେଣ ତପସା ରାଜା ରାଷ୍ଟ୍ରଂ ବି ରକ୍ଷତି ।
ଆଚାର୍ଯ୍ୟୋ ବ୍ରହ୍ମଚର୍ଯ୍ୟେଣ ବ୍ରହ୍ମଚାରିଣଂ ଇଚ୍ଛତେ ॥
ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍ ।
ବ୍ରହ୍ମଚର୍ଯ୍ୟେଣ ତପସା ଦେବା ମୃତ୍ୟୁଂ ଅପାଘ୍ନତ ॥

[ଅଥର୍ବବେଦ, ୧୧.୫.୧୭-୧୯]

ଅର୍ଥାତ୍ ରାଜା ବ୍ରହ୍ମଚର୍ଯ୍ୟ-ତପଃ ଦ୍ୱାରା ରାଜ୍ୟକୁ ରକ୍ଷାକରେ । ଆଚାର୍ଯ୍ୟ ବ୍ରହ୍ମଚର୍ଯ୍ୟ ମାଧ୍ୟମରେ ତାଙ୍କର ଶିଷ୍ୟଙ୍କୁ ଗ୍ରହଣ କରନ୍ତି । କୁମାରୀ ବ୍ରହ୍ମଚର୍ଯ୍ୟ ମାଧ୍ୟମରେ ଯୁବ-ସ୍ୱାମୀ ଲାଭ କରେ । ଦେବତ୍ୱର ମୂଳରେ ରହିଛି ବ୍ରହ୍ମଚର୍ଯ୍ୟ । ତେଜୋଦ୍ଦୀପ୍ତମାନେ ବ୍ରହ୍ମଚର୍ଯ୍ୟ-ତପଃ ଦ୍ୱାରା ମୃତ୍ୟୁକୁ ପରାଜିତ କରନ୍ତି ।

ବୈଦିକ ଜ୍ଞାନର ଯୋଗ୍ୟତା ଲାଭ ନିମିତ୍ତ ବ୍ରହ୍ମଚର୍ଯ୍ୟ ଥିଲା ଦେହ ଓ ମନର ସଂଯମ । ସେତେବେଳେ ଯୌନଶକ୍ତିର ସଂଯମ ଓ ଉତ୍ତରଣ ପାଇଁ ବିଶେଷ ଜୋର ଦିଆଯାଉଥିଲା । ଦୈହିକ ପରିଚ୍ଛନ୍ନତା ପ୍ରତି ପ୍ରତ୍ୟେକ ଧ୍ୟାନ ଦିଆଯାଉଥିଲା । ସୂର୍ଯ୍ୟାଲୋକ ଓ ବିଶୁଦ୍ଧ ବାୟୁରେ ସାଧାରଣ ଜନପଦଠାରୁ ଦୂରରେ ସଂଯତ ଜୀବନଯାପନ, ନଦୀ ଓ ହ୍ରଦରେ ସ୍ନାନ, ସାତ୍ତ୍ୱିକ ଆହାର, କଠିନ ଶାରୀରିକ ତଥା ବୌଦ୍ଧିକ ଶ୍ରମ, ଅଗ୍ନିହୋତ୍ର, କଠିନ ଶଯ୍ୟା, ପ୍ରାତରୁତ୍ଥାନ, ଆଚାର୍ଯ୍ୟଙ୍କର ବ୍ୟକ୍ତି-ଗତ ତତ୍ତ୍ୱାବଧାନ ଫଳରେ ବ୍ରହ୍ମଚାରୀଠାରେ କଷ୍ଟସହିଷ୍ଣୁତା ଓ ନମ୍ରତା ଗୁଣ ପରିସ୍ଫୁଟ ହେଉଥିଲା । ବ୍ରହ୍ମଚାରୀ ସମାଜରୁ ବିଚ୍ଛିନ୍ନ ହୋଇ ସନ୍ନ୍ୟାସୀ ପରି ବଞ୍ଚୁନଥିଲା । ସେ ନିକଟବର୍ତ୍ତୀ ଜନପଦମାନଙ୍କରୁ ଭିକ୍ଷା

ସଂଗ୍ରହ କରୁଥିଲା ଏବଂ ଭିକ୍ଷା ସଂଗ୍ରହ କାଳରେ ତା'ର ସ୍ତ୍ରୀଲୋକମାନଙ୍କ ପ୍ରତି ଏକ ଜନନୀ ଦୃଷ୍ଟିଭଙ୍ଗୀର ବିକାଶ ଘଟୁଥିଲା । ବ୍ରହ୍ମଚାରୀ ଥିଲା ବିଦ୍ୟାଜନନୀ ସରସ୍ୱତୀଙ୍କର ଉପାସକ । ବ୍ରହ୍ମଚାରୀ ଆଚାର୍ଯ୍ୟଙ୍କ ପରିବାର ମଧ୍ୟରେ ପୁତ୍ର ପ୍ରାୟ ପାଳିତ ହେଉଥିଲା ।

ଭାବୀ ଜୀବନର ପ୍ରସ୍ତୁତି ପାଇଁ ବ୍ରହ୍ମଚର୍ଯ୍ୟର ଆଦର୍ଶ ଅନୁସୃତ ହେଉଥିଲା । ସାମାଜିକ ଜୀବନରେ ବ୍ରାହ୍ମଣର ଆଦର୍ଶ କ୍ଷେତ୍ର ସହ ସମ୍ପୃକ୍ତ ଥିଲା ପରି ବ୍ୟକ୍ତିର ବ୍ୟକ୍ତିଗତ ଜୀବନ କ୍ଷେତ୍ରରେ ବ୍ରହ୍ମଚର୍ଯ୍ୟ ଗାର୍ହସ୍ଥ୍ୟ (ଗାର୍ହସ୍ଥ୍ୟ ଜୀବନ ସହ ସଂଯୁକ୍ତ ଥିଲା । ଯୁବକ ବ୍ରହ୍ମଚର୍ଯ୍ୟ ମାଧ୍ୟମରେ ବୈବାହିକ ଜୀବନ ଓ ପରିବାରର ନେତୃତ୍ୱ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲା । କଥିତ ଅଛି ଉଗ୍ରଋଷି ଅଗସ୍ତ୍ୟ ବ୍ରହ୍ମଚର୍ଯ୍ୟ ଓ ଗାର୍ହସ୍ଥ୍ୟ ପାଳନ କରୁଥିଲେ । ବ୍ରହ୍ମଚର୍ଯ୍ୟର ପୁନରନୁସରଣ ପାଇଁ ଜୀବନର ତୃତୀୟ ସ୍ତରର ଆଦର୍ଶ ଥିଲା ବାନପ୍ରସ୍ଥ । ଶେଷରେ ଜୀବନର ଚତୁର୍ଥ ସ୍ତର ପାଇଁ ସମ୍ପୂର୍ଣ୍ଣ ତ୍ୟାଗର (ସନ୍ନ୍ୟାସ) ଆଦର୍ଶ ଥିଲା । ଅବଶ୍ୟ ପ୍ରାଚୀନ କାଳରେ ଏପରି ସ୍ତ୍ରୀ ପୁରୁଷ ଥିଲେ, ଯେଉଁମାନେ ବ୍ୟକ୍ତିଗତ ଭାବରେ ଆଧ୍ୟାତ୍ମିକ ଜ୍ଞାନର ସନ୍ଧାନରେ ବ୍ରହ୍ମଚାରୀ ରହୁଥିଲେ ।

### ବ୍ରହ୍ମନ୍ :

ପ୍ରାରମ୍ଭିକ ମୌଳିକ ଅର୍ଥ ଦୃଷ୍ଟିରୁ ବିଚାର କଲେ ବ୍ରହ୍ମନ୍‌ର ଅର୍ଥ ହେଉଛି ସ୍ତବ ବା ଉପାସନା । ତା'ପରେ ଏକ ସମୟରେ ଏହା ଉଚ୍ଚାର୍ଯ୍ୟ ଶବ୍ଦାଂଶ, ପ୍ରାର୍ଥନା ବା ସ୍ତବ ପାଇଁ ବେଦର ମନ୍ତ୍ର ସମୂହକୁ ବୁଝାଇଲା । ତାପରେ ଉପାସନା ଓ ଜ୍ଞାନର ଗ୍ରନ୍ଥ ଭାବରେ ବେଦକୁ ସୂଚିତ କଲା । ଉପାସନା ବା ସ୍ତବର ଦେବତା ହେଉଛନ୍ତି 'ବ୍ରହ୍ମଣସ୍ପତି' । ପୁଣି ବେଦ ଓ ବୈଦିକ ଜ୍ଞାନ ଆୟତ୍ତ କରିବାର ଶୃଙ୍ଖଳାକୁ ବ୍ରହ୍ମଚର୍ଯ୍ୟ କୁହାଗଲା । ତା'ପରେ 'ବ୍ରହ୍ମନ୍' ସାଧକର ଉପାସ୍ୟ ଦିବ୍ୟସତ୍ତା ବିଶେଷତଃ ନିର୍ବ୍ୟକ୍ତିକ ପରମ ସତ୍ୟକୁ (Ultimate Reality) ବୁଝାଇଲା ।

ଏଇ 'ବ୍ରହ୍ମନ୍' ହେଉଛି ଧର୍ମୀୟ ଦାର୍ଶନିକ ପ୍ରବଣତା (ସତ୍ୟର ସନ୍ଧାନ ନିମିତ୍ତ ସଂଶ୍ଳିଷ୍ଟ କ୍ରିୟାକଳାପ ପାଇଁ ଯେହେତୁ ବ୍ରହ୍ମନ୍ ଶବ୍ଦର ପ୍ରୟୋଗ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି), ଯେଉଁଥିରୁ ଆମେ ବ୍ରାହ୍ମଣ ଶବ୍ଦ ପାଉଁ, ଅର୍ଥାତ୍ ଯେ ବ୍ରହ୍ମଙ୍କର ସନ୍ଧାନରେ ଅଭିନିବିଷ୍ଟ । କିନ୍ତୁ ପୂର୍ବର ଆଲୋଚନା ଅନୁଯାୟୀ ବ୍ରାହ୍ମଣ ଶବ୍ଦର ବିଶେଷ ଅର୍ଥ ଯେ ବ୍ରହ୍ମନ୍ ବା ବେଦ ଜାଣେ । ଶ୍ରୁତି (ଶ୍ରବଣ) ପରମ୍ପରା ଦ୍ୱାରା ଭାରତୀୟ-ମାନେ ଯେପରି ବେଦ ରକ୍ଷା କରିଥିଲେ, ଏହା ପୃଥିବୀର ସମଗ୍ର ସାଂସ୍କୃତିକ ଇତିହାସ କ୍ଷେତ୍ରରେ ଏକ ମହାନ୍ କୃତିତ୍ୱ । ଭାରତର ଆଭ୍ୟନ୍ତରୀଣ ତଥା ବାହ୍ୟ ବିପ୍ଳବ ଓ ସଂଘର୍ଷ କାଳରେ କେବଳ ଏଇ ଶ୍ରୁତି ପରମ୍ପରା ହେତୁ ବେଦ ସଂରକ୍ଷଣ ସମ୍ଭବ ହୋଇ ପାରିଥିଲା । ସ୍ମୃତିକୋଷରେ ବେଦକୁ ସଞ୍ଚିତ କରିଥିବା ବ୍ୟକ୍ତିମାନେ ସମାଜରେ ସମ୍ମାନନୀୟ ଥିଲେ ଏବଂ ସମାଜରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ । ବେଦପରମ୍ପରା ବ୍ୟାହତ ହୋଇଯିବା ଆଶଙ୍କାରେ କୌଣସି ଅପରାଧ ପାଇଁ ସେମାନଙ୍କ ପ୍ରତି ମୃତ୍ୟୁଦଣ୍ଡ ବିଧାନ ନଥିଲା । ଶତପଥ ବ୍ରାହ୍ମଣରେ ବ୍ରାହ୍ମଣର ଅବଧ୍ୟତା ସମ୍ପର୍କରେ ଉଲ୍ଲେଖ ରହିଛି ।

ହିନ୍ଦୁ ଧର୍ମଶାସ୍ତ୍ରବିତ୍‌ମାନେ ବୈଦିକ ମନ୍ତ୍ରଗୁଡ଼ିକର ଧ୍ୱନିର ପବିତ୍ରତା ସମ୍ପର୍କରେ ପ୍ରଶଂସା କରି ଯାଇଛନ୍ତି । ଯୁଗଯୁଗ ଧରି ମୌଖିକ ସଞ୍ଚାର ପ୍ରଣାଳୀରେ ବେଦଗୁଡ଼ିକ ଯେ ପ୍ରଚାରିତ ଓ ସଂରକ୍ଷିତ ହୋଇପାରିଥିଲା, ଏହା କେତେକ ପରିମାଣରେ ମନ୍ତ୍ରଗୁଡ଼ିକର ବିସ୍ମୟକର ସ୍ମୃତି-କ୍ଷମ ପ୍ରକୃତି ଯୋଗୁଁ ସମ୍ଭବ ହୋଇ ପାରିଛି । ଏଇ ସ୍ମରଣ ଯୋଗ୍ୟତା ପାଇଁ ବୈଦିକ ସ୍ତୋତ୍ରଗୁଡ଼ିକ ବିଶ୍ୱର ବିଚାର ମାନଦଣ୍ଡରେ ନିଶ୍ଚିତ ଭାବରେ ଉଚ୍ଚସ୍ଥାନ ଅଧିକାର କରିବ ।

## ଯଜ୍ଞ :

ଯଜ୍ଞ ହେଉଛି ବେଦୀରେ ସନ୍ଦୀପିତ ଅଗ୍ନି ସମକ୍ଷରେ ତର୍ପଣ ବା ନୈବେଦ୍ୟ । ଉପାସ୍ୟ ଦେବତାଙ୍କର ନାମ ଯାହା ହେଉ ପଛେ ଯଜ୍ଞ

ଥିଲା ଏକ । ସେତେବେଳେ ସରଳ ଗାର୍ହପତ୍ୟ ଯଜ୍ଞ (ଅଗ୍ନିହୋତ୍ର) ସହ ମୁକ୍ତ ସ୍ଥାନରେ ରାଜୁ ବିଶେଷରେ ପ୍ରକାଣ୍ଡ ଯଜ୍ଞ ଅନୁଷ୍ଠିତ ହେଉଥିଲା, ଯେଉଁଥିରେ ବହୁଲୋକ ଯୋଗଦାନ କରୁଥିଲେ । ଅଧୀନସ୍ଥ ରାଜ୍ୟ-ମାନଙ୍କରୁ ସମ୍ମାନ ଓ ଆନୁଗତ୍ୟଲାଭ କରିବାପାଇଁ ରାଜା ଓ ସମ୍ରାଟ-ମାନେ ଅଶ୍ୱମେଧ ଓ ରାଜସୂୟ ଯଜ୍ଞାନୁଷ୍ଠାନ କରୁଥିଲେ ।

ଯଜ୍ଞ ଏକ ମହାନ୍ ସାଧାରଣ ଅନୁଷ୍ଠାନ ହୋଇ ଥିବାରୁ ଏଥିରେ ଜଟିଳ କ୍ରିୟାକର୍ମର ବିକାଶ ଘଟିଥିଲା, ଯାହାକି ଉପାସନା ଉପରେ ଆକର୍ଷଣ ବଢ଼ାଇଥିଲା । ଉପଯୁକ୍ତ କ୍ରିୟାକର୍ମ ଦ୍ୱାରା ଯଜ୍ଞାନୁଷ୍ଠାନ ପାଇଁ କାଳକ୍ରମେ ବ୍ରାହ୍ମଣମାନଙ୍କ ମଧ୍ୟରେ ଏକ ବିଶେଷଜ୍ଞ ଗୋଷ୍ଠୀର ଆବଶ୍ୟକତା ଦେଖାଯାଇଥିଲା । ବୈଦିକ ଉପାସନାର ଏହି ଔପଚାରିକ ଭାଗ କର୍ମକାଣ୍ଡ (ଧର୍ମର କ୍ରିୟାଭାଗ) ନାମରେ ପରିଚିତ ହେଲା । ପରବର୍ତ୍ତୀ କାଳରେ ବୈଦିକ ଭାଷା ଯେତେବେଳେ ଅପ୍ରଚଳିତ ହୋଇଗଲା ଏବଂ ଅର୍ଥ ଠିକ୍ ଭାବରେ ବୁଝାପଡ଼ିଲା ନାହିଁ, ଯଜ୍ଞର ଔପଚାରିକ ପ୍ରକୃତି ବିଶେଷଭାବରେ ଅବଧାରିତ ହୋଇଗଲା ଏବଂ ସମସ୍ତ ବୈଦିକ ସଂହିତା କର୍ମକାଣ୍ଡର ଅଂଶଭାବରେ ପରିଚିତ ହେବାକୁ ଲାଗିଲା । ଏହାର ଆଧ୍ୟାତ୍ମିକ ଓ ଆଧିବିଦ୍ୟକ ପ୍ରଶ୍ନ ସହିତ କୌଣସି ସମ୍ପର୍କ ରହିଲା ନାହିଁ ।

କିନ୍ତୁ ବେଦର ଏହି ଔପଚାରିକତା ସମାଜରେ ପ୍ରତିକ୍ରିୟା ସୃଷ୍ଟି କଲା । ଯେଉଁ ସମାଜରେ ଚିନ୍ତା ଓ ଅଭିବ୍ୟକ୍ତିର ସ୍ୱାଧୀନତା ରହିଛି ସେଠାରେ କେବଳ ଔପଚାରିକତା ପ୍ରତି ବିରୋଧ ରହିବା ଓ ଘଟିବା ସ୍ୱାଭାବିକ । ସେଥିପାଇଁ ମୁଣ୍ଡକ ଉପନିଷଦ ବେଦର ସମ୍ପୂର୍ଣ୍ଣ ଔପ-ଚାରିକତା ବାଦଦେଇ ଆଧ୍ୟାତ୍ମିକ ଦିଗ ଉପରେ ଗୁରୁତ୍ୱ ପ୍ରଦାନ କରିଛି ।

ପୁଣି ଶ୍ରୀମଦ୍ ଭଗବଦ୍ ଗୀତାର ଭକ୍ତିଯୋଗତତ୍ତ୍ୱରେ ଏହି ବୈଦିକ ଔପଚାରିକତା ପ୍ରତି ଉତ୍ସାହ ପ୍ରଦର୍ଶନ କରାଯାଇନାହିଁ । ଭକ୍ତିଯୋଗରେ ଦିବ୍ୟକୃପା ଆଧ୍ୟାତ୍ମିକ ବିକାଶର ଏକମାତ୍ର ଉତ୍ସ ରୂପେ ଗୃହୀତ । ଶ୍ରୀ ଗୀତାର ଆଲୋଚନାରୁ ଜଣାଯାଏ, ଦିବ୍ୟସତ୍ତ୍ୱର ଅନୁଭବ ବେଦ,

ଯଜ୍ଞ, ଧର୍ମ-ଗ୍ରନ୍ଥ ଅଧ୍ୟୟନ, ଦାନ କ୍ରିୟା ଓ କଠୋର ତପ ଦ୍ୱାରା ହୋଇ ନପାରେ। ବେଦରେ ମଧ୍ୟ ତତ୍ତ୍ୱ ଚିନ୍ତା ଅଭିବ୍ୟକ୍ତ ରହିଛି(୨୪)।

କିନ୍ତୁ ପରବର୍ତ୍ତୀ କାଳରେ ପଞ୍ଚମହାଯଜ୍ଞର କଳ୍ପନାଦ୍ୱାରା ଯଜ୍ଞ-ଚିନ୍ତାଧାରା ବିସ୍ତୃତ ହୋଇଥିଲା। ଏଥିରେ ପ୍ରଚଳିତ ଅଗ୍ନିହୋତ୍ର ସହ ବ୍ରହ୍ମଯଜ୍ଞ (ବେଦ,ଅଧ୍ୟୟନ ଓ ଶିକ୍ଷା), ନୃଯଜ୍ଞ [ଅତିଥି ସେବା], ଭୂତଯଜ୍ଞ (ନିମ୍ନସ୍ତରର ପ୍ରାଣୀମାନଙ୍କୁ ଆହାର ପ୍ରଦାନ), ପିତୃଯଜ୍ଞ [ପିତୃଙ୍କ ଉଦ୍ଦେଶ୍ୟରେ ତର୍ପଣ ବା ସେବା] ମହାଯଜ୍ଞ ଭାବରେ ଗୃହୀତ ହୋଇଥିଲା।

ଶ୍ରୀମଦ୍‌ଭଗବଦ୍‌ ଗୀତା ଚମତ୍କାର ଭଙ୍ଗୀରେ ଯଜ୍ଞର ରୂପ ଓ ତା'ର ଆଙ୍ଗିକ ମଧ୍ୟରେ ପାର୍ଥକ୍ୟ ନିର୍ଣ୍ଣୟ କରିଛି। ଯଦି ଆତ୍ମିକ ଗୃହୀତ ହୁଏ, ତା'ହେଲେ ଅଗ୍ନି, ସମିଧଭିତ୍ତି ନୈବେଦ୍ୟ ସହ ସଂପୃକ୍ତ ଯଜ୍ଞର ବ୍ୟବହାରିକ ଉପାଦାନ କେବଳ ଯେ ଆକ୍ଷରିକ ଭାବରେ ଗ୍ରହଣ କରାଯିବ ତା' ନୁହେଁ, ପ୍ରତୀକ ଓ ଆଦର୍ଶ ଭାବରେ ଗ୍ରହଣ କରାଯିବ। ଶ୍ରୀ ଗୀତାର ବିଚାର ଅନୁସାରେ କର୍ମକାଣ୍ଡର ଯଜ୍ଞ ହେଉ ବସ୍ତୁଯଜ୍ଞ; କିନ୍ତୁ ତପଃ ଯଜ୍ଞ ଅଛି, ଯେଉଁଥିରେ ସଂଯମର ଅଗ୍ନି ପ୍ରଜ୍ୱଳିତ ହୁଏ ଏବଂ ଐନ୍ଦ୍ରିକ ସୁଖ ନୈବେଦ୍ୟ ହୁଅନ୍ତି; ଯୋଗ-ଯଜ୍ଞ ଅଛି, ଯେଉଁଥିରେ ଅଗ୍ନିଙ୍କ ପ୍ରତି ନୈବେଦ୍ୟ ହୁଏ ଆତ୍ମ-ସଂଯମ ଏବଂ ବ୍ରହ୍ମଯଜ୍ଞ [ପବିତ୍ର ଅଧ୍ୟୟନ ଯଜ୍ଞ] ଓ ଜ୍ଞାନ-ଯଜ୍ଞ ଅଛି, ଯେଉଁଥିରେ ପରମ ସତ୍ୟ ବ୍ରହ୍ମ ହେଉଛନ୍ତି ଅଗ୍ନି, ସମିଧ, ନୈବେଦ୍ୟ ଅର୍ପଣକାରୀ। ଯଜ୍ଞର ଏଇ ପ୍ରଶସ୍ତ ଦୃଷ୍ଟିରୁ ଯଜ୍ଞାବଶେଷରେ ଅମୃତ ଆସ୍ୱାଦନ କାରୀ ସେଇ ସନାତନ ଅପରିବର୍ତ୍ତନୀୟ ଶାଶ୍ୱତ ଈଶ୍ୱର ନିକଟବର୍ତ୍ତୀ ହୋଇଥାନ୍ତି। ଏଇ ଦୃଷ୍ଟିରୁ ଯଜ୍ଞ ସମ୍ପର୍କରେ ବିଚାରକଲେ ଏହା ସମ୍ପର୍କରେ ତ ବିରୋଧ ରହିବ ନାହିଁ, ଉଚିତର ଜୀବନର ଶୃଙ୍ଖଳାରେ ଏହା ଏକ ମୁଖ୍ୟ ବସ୍ତୁ ଭାବରେ ଗୃହୀତ ହେବ। ଯେଉଁମାନେ ଅମୃତ ସ୍ୱରୂପ ଯଜ୍ଞର ଅବଶିଷ୍ଟ ଅନ୍ନଭୋଜନ କରନ୍ତି ସେମାନେ ସନାତନ ବ୍ରହ୍ମପଦ ଲାଭ କରନ୍ତି ବୋଲି ଶ୍ରୀ ଗୀତାରେ ଉଲ୍ଲେଖ ଅଛି [୨୫]।

---

[୨୪] ଋଗ୍‌ବେଦ, ୮-୭୦-୩; ଅଥର୍ବ ୭୦-୯୬-୧୮

[୨୫] ଶ୍ରୀ ଗୀତା, ୪-୩୧

ଏପରିକି ବେଦରେ ଯଜ୍ଞ ପ୍ରତୀକ ଅର୍ଥରେ ଗୃହୀତ ହୋଇଥିବାର ଲକ୍ଷ୍ୟ କରାଯାଏ । ଯଜୁର୍ବେଦ କହେ : ଯଜ୍ଞ ହେତୁ ଜୀବନ ସମୃଦ୍ଧିଶାଳୀ ହୁଏ । ଏଠାରେ ଯଜ୍ଞ ତ୍ୟାଗ ଅର୍ଥରେ ପ୍ରଯୁକ୍ତ ହୋଇଛି । କିନ୍ତୁ କ୍ରିୟାକର୍ମଭାବରେ ଯଜ୍ଞାନୁଷ୍ଠାନର ନିଜସ୍ୱ ବୈଶିଷ୍ଟ୍ୟ ଅସ୍ୱୀକାର କରିହେବ ନାହିଁ । ଜ୍ୱଳନ୍ତ ଅଗ୍ନିଶିଖାର ମହିମାନ୍ୱିତ ଦୀପ୍ତି, ଆହୁତ ପ୍ରଦତ୍ତ ଘୃତର ମଧୁର ସୁଗନ୍ଧ, ତୃଣଗୁଚ୍ଛ, ଚରୁଅନ୍ନ, ସୋମରସ ଇତ୍ୟାଦିର ଉପାସକମାନଙ୍କ ମନ ଉପରେ ପ୍ରତ୍ୟକ୍ଷ ପବିତ୍ରୀକରଣର ପ୍ରଭାବ ରହିଥିଲା । ପୁରୋହିତମାନଙ୍କର ମୁଦ୍ରା, ମନ୍ତ୍ରପାଠ, ସଙ୍ଗୀତ ଓ ଅନୁକ୍ରମ ଅର୍ଘ୍ୟ ଅର୍ପଣ କାଳରେ ସାମୂହିକ କ୍ରିୟାର ଆଧ୍ୟାତ୍ମିକ ମୂଲ୍ୟ ଅସ୍ୱୀକାର କରିହେବ ନାହିଁ ।

## ବେଦରେ ବାସ୍ତବ ଦୃଷ୍ଟିଭଙ୍ଗୀ :

ବେଦରେ ଜଗତ୍ ଓ ଜୀବନ ସମ୍ପର୍କରେ ବୈଦିକ ଋଷିମାନଙ୍କର ବାସ୍ତବ ଦୃଷ୍ଟିଭଙ୍ଗୀ ଏବଂ ସମଷ୍ଟି ଭାବନାର ସୁନ୍ଦର ଦୃଷ୍ଟାନ୍ତ ଲକ୍ଷିତ ହୁଏ । ଏକ ପରିପୂର୍ଣ୍ଣ ବଳିଷ୍ଠ ଶରୀର ଏବଂ ଏକ ଅନଧିକୃତ ଆତ୍ମା ହେଉଛି ଜୀବନର ବାସ୍ତବ ଆଦର୍ଶ । ଋଗ୍‌ବେଦରେ ଜଣେ ଋଷିଙ୍କର ପ୍ରାର୍ଥନା ରହିଛି—

ଚକ୍ଷୁର୍ନୋ ଧେହି ଚକ୍ଷୁଷେ
ଚକ୍ଷୁର୍ ବିଖ୍ୟୈ ତନୂଭ୍ୟଃ ।
ସଂ ଚେଦଂ ବିଚ୍ ପଶ୍ୟେମ ॥

(ଋଗ୍‌ବେଦ, ୧୦-୧୫୮-୪)

ଅର୍ଥାତ୍ ଆମର ଚକ୍ଷୁକୁ ଦୃଷ୍ଟିଶକ୍ତି ଦାନକର, ଆମର ଦେହକୁ ଦୃଷ୍ଟିଶକ୍ତି ଦାନକର, ସେଗୁଡ଼ିକ ଯେପରି ଦେଖିପାରିବେ । ଜଗତକୁ ସମଗ୍ର ଭାବରେ ଦେଖିବାର ଶକ୍ତି ଯେପରି ଆମେ ଲାଭ କରୁଁ । ଏଠାରେ କେବଳ ସ୍ଥୂଳଦୃଷ୍ଟି ନୁହେଁ, ମାନସିକ ଦୃଷ୍ଟି ପାଇଁ ପ୍ରାର୍ଥନା କରାଯାଇଛି । ଆଉ ଏକ ସୂକ୍ତରେ ସ୍ତବ କରାଯାଇଛି—

ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍
ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତମ୍ ।

ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମ୍
ଅଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥
(ଶୁକ୍ଳଯଜୁର୍ବେଦ, ୩୬ ୨୪)

ଅର୍ଥାତ୍ ଦେବତାମାନଙ୍କର ପ୍ରିୟ ଓ ଶୁଭ୍ର ହେବା ନେତ୍ରରୂପ ଜଗତର ଚକ୍ଷୁରୂପେ ପୂର୍ବ ଦିଗରେ ଉଦିତ ହୁଅନ୍ତୁ । ତାଙ୍କ ପ୍ରସାଦରେ ଆମେ ଶତବର୍ଷ ପର୍ଯ୍ୟନ୍ତ ଦର୍ଶନ କରୁଁ, ଶତବର୍ଷ ଜୀବନ ଧାରଣ କରୁଁ, ଶତବର୍ଷ ଶ୍ରବଣ କରୁଁ, ଶତବର୍ଷ ବାକ୍ୟାଳାପ କରୁଁ, ଶତବର୍ଷ ଦୈନ୍ୟହୀନ ହେଉଁ ଏବଂ ଶତବର୍ଷରୁ ଦୀର୍ଘକାଳ ଯେପରି ଏହିପରି କରୁଁ ।

ହିନ୍ଦୁ ଓ ଗ୍ରୀକ୍ ପୁରାଣମାନଙ୍କରେ ସ୍ୱର୍ଗ ସମ୍ପର୍କରେ ଯେତେ ବର୍ଣ୍ଣନା ରହିଛି, ଆମର ବାସସ୍ଥାନ ଧରଣୀ ସମ୍ପର୍କରେ ସେତେ ବର୍ଣ୍ଣନା ନାହିଁ । ବେଦଗ୍ରନ୍ଥରେ ଧରଣୀର ସୌନ୍ଦର୍ଯ୍ୟ, ମହିମା ଓ ଜୀବନର ବସ୍ତୁ ସମ୍ପର୍କରେ ଉଲ୍ଲେଖ ରହିଛି । ଅଥର୍ବ ବେଦରେ ପୃଥିବୀ ସମ୍ପର୍କିତ ଜୟଗୀତ ବିଶ୍ୱସାହିତ୍ୟରେ ଅପୂର୍ବ, ଯଥା –

ଗିରୟସ୍ତେ ପର୍ବତା ହିମବନ୍ତୋଽରଣ୍ୟଂ
ରଣ୍ୟଂ ତେ ପୃଥିବୀସ୍ୟୋନମସ୍ତୁ ।
ବଭ୍ରୁଂ କୃଷ୍ଣାଂ ରୋହିଣୀଂ ବିଶ୍ୱରୂପାମ୍
ଧ୍ରୁବାଂ ଭୂମିଂ ପୃଥିବୀଂ ଇନ୍ଦ୍ରଗୁପ୍ତାମ୍ ।
ଅଜୀତୋଽହତୋ ଅକ୍ଷତୋଽଧ୍ୟଷ୍ଠାଂ ପୃଥିବୀମହମ୍ ॥
(ଅଥର୍ବବେଦ, ୧୨-୧-୧୧)

ଅର୍ଥାତ୍ ହେ ପୃଥିବି ! ତୋର ଗିରି, ତୁଷାରାଚ୍ଛନ୍ନ ପର୍ବତ ଏବଂ ଅରଣ୍ୟ ଆନନ୍ଦଦାୟକ ହେଉ । ବଭ୍ରୁ, କୃଷ୍ଣ, ରୋହିଣୀ ଏବଂ ସମସ୍ତ ବର୍ଣ୍ଣରେ ଦୃଢ଼ ଓ ଇନ୍ଦ୍ରଙ୍କ ଦ୍ୱାରା ସୁରକ୍ଷିତ ଏହି ପୃଥିବୀରେ ଅଜିତ, ଅହତ, ଅକ୍ଷତ ମୁଁ ପଦାର୍ପଣ କରିଛି ।

ବେଦର ବହୁ ପରବର୍ତ୍ତୀକାଳରେ ଜଗତର ନଶ୍ୱରତା ସମ୍ପର୍କରେ ବହୁ ବର୍ଣ୍ଣନା ଲକ୍ଷିତ ହୁଏ, କିନ୍ତୁ ଅଥର୍ବ ବେଦ ଏହି ଧରଣୀକୁ ସମସ୍ତ-

ଙ୍କର ସର୍ବୋପରି ପ୍ରିୟ [ଅୟଂ ଲୋକଃ ପ୍ରିୟତମଃ] ବୋଲି ରୋଗଗ୍ରସ୍ତ ଲୋକଙ୍କୁ ବାର୍ଦ୍ଧକ୍ୟ ପୂର୍ବରୁ ମୃତ୍ୟୁବରଣ ନକରିବା ପାଇଁ ଆଶ୍ୱାସନା ଦେଉଛନ୍ତି ।

ପୃଥିବୀରେ ଜୀବନର ସ୍ଥିତି ପାଇଁ ଯେଉଁ ବାୟୁ ଏକ ପ୍ରୟୋଜନୀୟ ବସ୍ତୁ; ସ୍ୱାସ୍ଥ୍ୟ ଓ ସୁଖ ପାଇଁ ସେହି ବାୟୁକୁ ଋଗ୍‌ବେଦରେ ପ୍ରାର୍ଥନା କରିଯାଉଛି—

ବାତ ଆ ବାତୁ ଭେଷଜମ୍
ଶଂ ଭୂ ମୟୋଭୁ ନୋ ହୃଦେ ।
ପ୍ରାଣ ଆୟୁଂଷି ତାରିଷତ୍ ॥

[ଋଗ୍‌ବେଦ, ୧୦-୧୮୬-୧]

ଅର୍ଥାତ୍ ବାୟୁ ତାଙ୍କର ଭେଷଜଗୁଣ ବହନ କରି ପ୍ରବାହିତ ହୁଅନ୍ତୁ, ଯେଉଁ ବାତ ଆମ ହୃଦୟର ମଙ୍ଗଳ ଓ ଦେହର ସ୍ୱାସ୍ଥ୍ୟ ସମ୍ପାଦନ କରନ୍ତି, ସେ ଆମର ଜୀବନକୁ ଦୀର୍ଘ କରନ୍ତୁ । ଋଗ୍‌ବେଦର ପ୍ରଖ୍ୟାତ ମଧୁମତୀ ସୂକ୍ତରେ ପ୍ରାର୍ଥନା କରାଯାଇଛି—

ମଧୁ ବାତା ଋତାୟତେ    ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନ ସନ୍ତ୍ୱୋଷଧୀଃ ।
ମଧୁ ନକ୍ତମୁତୋଷସୋ    ମଧୁମତ୍ ପାର୍ଥିବଂ ରଜଃ
ମଧୁ ଦ୍ୟୌରସ୍ତୁ ନଃ ପିତା ।
ମଧୁମାନ୍ନୋ ବନସ୍ପତି    ର୍ମଧୁମାଁ ଅସ୍ତୁ ସୂର୍ଯ୍ୟଃ ।
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ॥

[ଋଗ୍‌ବେଦ, ୧।୯୦।୬-୯]

ଅର୍ଥାତ୍ ସତ୍‌କର୍ମପରାୟଣ ବ୍ୟକ୍ତିପ୍ରତି ବାୟୁ ସବୁ ମଧୁର ହେଉ, ନଦୀସବୁ ମଧୁମୟରସ କ୍ଷରଣ କରୁ ଔଷଧି ସମୂହ ଆମ ନିକଟରେ ମଧୁମୟ ହେଉ ।୧। ରାତି ଓ ଦିବସ ସକଳ ମଧୁମୟ ହେଉ, ପୃଥିବୀ ଲୋକ ମଧୁମୟ ହେଉ; ପିତୃସ୍ଥାନୀୟ ଦ୍ୟୁଲୋକ ଆମ ନିକଟରେ ମଧୁମୟ ହେଉ ।୨।

ଅରଣ୍ୟାଧିପତି ଦେବ ଆମ୍ଭମାନଙ୍କୁ ମିଷ୍ଟଫଳ ଦାନ କରନ୍ତୁ, ସର୍ଯ୍ୟ ଆନନ୍ଦ ପ୍ରଦାୟକ ହେଉ; ଗାଭୀ ସକଳ ଆମ ନିକଟରେ ମଙ୍ଗଳପ୍ରଦ ହୁଅନ୍ତୁ ।୩।

ବେଦରେ ମୃତ୍ୟୁକୁ ରୂଢ଼ ବାସ୍ତବ ଘଟଣାରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିର୍ଭୀକ ଓ ଶାନ୍ତଭାବରେ ତା'ର ସମ୍ମୁଖୀନ ହେବାପାଇଁ ପ୍ରାର୍ଥନା କରାଯାଇଛି (୨୬) । କିନ୍ତୁ ଆନନ୍ଦରେ ଜୀବନର ପୂର୍ଣ୍ଣକାଳ ବଞ୍ଚିବା ପାଇଁ ଜୋର ଦିଆଯାଇଛି ।

ଉପାସନାର ଦୃଷ୍ଟିଭଙ୍ଗୀରେ ବାସ୍ତବବାଦୀ ଜୀବନର ଆନନ୍ଦ ପରିସ୍ଫୁଟ ହୋଇଉଠିଛି । ବେଦରେ ଉପାସନା ମନୋଭଙ୍ଗୀ ବିଷଣ୍ଣତାର ଦ୍ୟୋତକ ନୁହେଁ । ସଙ୍ଗୀତ, କବିତା ପରି ଉପାସନା ହେଉଛି ଆତ୍ମାର ଉଚ୍ଛ୍ୱସିତ ଆନନ୍ଦ । ଅଗ୍ନିଙ୍କ ସ୍ତବରେ ଯେପରି କୁହାଯାଇଛି 'ସମସ୍ତଙ୍କର ପ୍ରିୟ, ଉଜ୍ଜ୍ୱଳ, ପବିତ୍ର ଓ ପବିତ୍ରକାରୀ ସେହି ଆନନ୍ଦମୟ ଦେବତା ଅଗ୍ନିଙ୍କୁ ଆମେ ଆନନ୍ଦପୂର୍ଣ୍ଣ ଚିତ୍ତରେ ଉପାସନା କରୁଛୁ' [୨୭] ।

ଖ୍ରୀଷ୍ଟିୟାନ୍ ଉପାସନା ମାର୍ଗରେ ମନୁଷ୍ୟ ସମ୍ପର୍କରେ ଯେଉଁ ପାପବୋଧ ଏବଂ ପାପମୁକ୍ତି ପାଇଁ ବ୍ୟାକୁଳତା ପ୍ରକାଶ ପାଇଛି, ବେଦରେ ଏ ପାପବୋଧର ସୂଚନା ନାହିଁ କହିଲେ ଚଳେ । ସେଥିରେ ମନୁଷ୍ୟକୁ ଏକ ମାତ୍ର ପାପୀ ପ୍ରାଣୀଭାବରେ କେଉଁଠି ବିବେଚନା କରାଯାଇ ନାହିଁ—ପକ୍ଷାନ୍ତରେ ସେ ନିଜ ମଧ୍ୟରେ ଥିବା ଦେବତ୍ୱ ସମ୍ପର୍କରେ ସଚେତନ । ଜଣେ ଋଗ୍‌ବେଦର ଋଷି ଦେବତାମାନଙ୍କୁ ସମ୍ବୋଧନ କରି କହିଛନ୍ତି—ହେ କଲ୍ୟାଣକାରୀ ବିଶ୍ୱଦେବଗଣ, ଆମେ ଜନନୀ ଗର୍ଭରେ ସମ୍ପତାସହ ଶାଶ୍ୱତ ଭ୍ରାତୃତ୍ୱ ପ୍ରତିଷ୍ଠା କରିଛୁ (୨୮) । ଅଥର୍ବବେଦ କହିଛି—ମରଣଶୀଳ ମନୁଷ୍ୟ ସୃଷ୍ଟି ପରେ ଦେବତାମାନେ ସେମାନଙ୍କ-ଠାରେ ପ୍ରବେଶ କରିଛନ୍ତି (୨୯) । ସେଥିପାଇଁ ଯେ ମନୁଷ୍ୟକୁ ଜାଣେ,

(୨୬) ଯଜୁର୍ବେଦ, ୪୦-୧୫
[୨୭] ଋଗ୍‌ବେଦ, ୮-୪୩-୩୧
(୨୮) ଋଗ୍‌ବେଦ, ୮-୮୩-୮
(୨୯) ଅଥର୍ବବେଦ, ୧୧ ୮-୧୩

ସେ ତାଙ୍କୁ ବ୍ରହ୍ମପଣ ସମ୍ମାନିତ କରେ । ଗୋଟରେ ଗାଈମାନେ ରହିବା ପରି ସବୁ ଦେବତା ତାଙ୍କଠାରେ ରହନ୍ତି—

ତସ୍ମାଦ୍ ବୈ ବିଦ୍ୱାନ୍ ପୁରୁଷଂ
ଇଦଂ ବ୍ରହ୍ମେତି ମନ୍ୟତେ ।
ସର୍ବାହ୍ୟସ୍ମିନ୍ ଦେବତା
ଗାବୋ ଗୋଷ୍ଠ ଇବାସତେ ॥

[ଅଥର୍ବବେଦ, ୧୧-୮-୩୨]

ଋଗ୍‌ବେଦରେ କୁହାଯାଇଛି : ଦେବତାମାନେ ମନୁଷ୍ୟ ସହ ଏକ ଆତ୍ମା; ସମସ୍ତେ କଲ୍ୟାଣର ଅଧିକାରୀ । ପରବର୍ତ୍ତୀକାଳରେ ଉପନିଷଦ୍‌ରେ ସେଥିପାଇଁ ମନୁଷ୍ୟଙ୍କୁ 'ଅମୃତପୁତ୍ର' ବୋଲି ସମ୍ବୋଧନ କରାଯାଇଛି ।

ବୈଦିକ ବାସ୍ତବବାଦୀ ଋଷିଙ୍କ ଦୃଷ୍ଟିରେ ଈଶ୍ୱର ବିଶ୍ୱରେ ପରିପୂର୍ଣ୍ଣ ଭାବରେ ରହିଛନ୍ତି (ଅଶ୍ୱମେଧ : ମୋତେ ଏଇଠି ଦେଖ) । ସେ ଗୃହରେ ମନୁଷ୍ୟମାନଙ୍କ ହୃଦୟରେ ଅଛନ୍ତି । ମଣିଷର ଗୃହ ଦେବତା ଅଗ୍ନିଙ୍କ ଦ୍ୱାରା ଅଧିଷ୍ଠିତ । ତାଙ୍କୁ ପ୍ରିୟତମ ଗୃହର ମିତ୍ର, ଗୃହର ଅତିଥି ଭାବରେ କୁହାଯାଇଛି (୩୦)—

ପ୍ରେଷ୍ଠଂ ବୋ ଅତିଥିଂ ସ୍ତୁଷେ
ମିତ୍ରଂ ଇବ ପ୍ରିୟମ୍ ।
ଅଗ୍ନିଂ ରଥଂ ନ ବେଦ୍ୟମ୍ ॥

(ଋଗ୍‌ବେଦ, ୮-୮୪-୧)

ଅର୍ଥାତ୍ ତୁମର ପ୍ରିୟତମ ଅତିଥି, ପ୍ରିୟତମ ମିତ୍ରଭାବରେ ମୁଁ ଅଗ୍ନି ଦେବତାଙ୍କୁ ସ୍ତୁତି କରୁଛି । ତାଙ୍କର ଆଶୀର୍ବାଦ ପାଇଁ ରଥପରି ତାଙ୍କର ନିକଟବର୍ତ୍ତୀ ହେବାକୁ ହେବ ।

ଯଥୋଚିତ ଭାବରେ ଜନିତ ଓ ପ୍ରତିଷ୍ଠିତ ହେଲେ ମଣିଷର ବାସଗୃହରେ ଦିବ୍ୟ-ସୌନ୍ଦର୍ଯ୍ୟ ଲକ୍ଷିତ ହୁଏ । ଉଦାର ଦାତାଙ୍କ ପାଇଁ

(୩୦) ଋଗ୍‌ବେଦ, ୮-୪୧-୧; ସାମବେଦ, ୫-୧୨୪୪

ତାଙ୍କ ଗୃହ ପଦ୍ମ-ପୁଷ୍କରିଣୀ ପରି ଭୂଷିତ ଓ ବସ୍ତ୍ରସୁକର ବୈଚିତ୍ର୍ୟାଧାର ପରି ହୋଇଥାଏ—

ଭୋଜସ୍ୟେଦଂ ପୁଷ୍କରିଣୀବ ବେଶ୍ମ
ପରିଷ୍କୃତଂ ଦେବ ମାନେନ ଚିତ୍ରମ୍ ॥
[ଋଗ୍‌ବେଦ, ୧୦-୧୦୭-୧୦]

ବୈଦିକ ଋଷିଙ୍କ ଦୃଷ୍ଟିରେ ସ୍ୱାଭାବିକ ଭାବରେ ଦାମ୍ପତ୍ୟ ସମ୍ପର୍କରେ ସଶ୍ରଦ୍ଧ କୋମଳ ଅନୁଭୂତି ପ୍ରକାଶ ପାଇଥିଲା, ଯଥା—

ମଧୁମନ୍ ମେ ପରାୟଣମ୍
ମଧୁମତ୍ ପୁନରାୟଣମ୍ ॥
[ଋଗ୍‌ବେଦ, ୧୦-୨୪-୬]

## ବୈଦିକ ସମଷ୍ଟି ଭାବନା :

ବେଦରେ ଯେଉଁ ସମାଜ ଓ ପରିବାରର ପରିକଳ୍ପନା ରହିଛି, ତା'ର ମୂଳରେ ରହିଛି ଜୀବନର ସମ୍ମିଳିତ ବା ସମଷ୍ଟିଗତ ଆଦର୍ଶ ।

ଦାମ୍ପତ୍ୟ ମିଳନକୁ ବେଦରେ ଏକ ପବିତ୍ର ମିଳନ ରୂପେ ଚିନ୍ତା କରାଯାଇଛି । ଋଗ୍‌ବେଦର ବିବାହମନ୍ତ୍ରଗୁଡ଼ିକ ଭାରତରେ ହଜାର ହଜାର ବର୍ଷ ଧରି ବିବାହ ବନ୍ଧନକୁ ପବିତ୍ର ରଖିବାର ଏକ ମାଧ୍ୟମ ହୋଇ ଆସିଛି । ଦାମ୍ପତ୍ୟ ଜୀବନ ଏକପତ୍ନୀବ୍ରତ ଆଦର୍ଶ ଉପରେ ପ୍ରତିଷ୍ଠିତ । ଦମ୍ପତିଙ୍କୁ ନିମ୍ନୋକ୍ତ ବାକ୍ୟରେ ଆଶୀର୍ବାଦ କରାଯାଏ—

ଇହୈବ ସ୍ତଂ ମା ବି ଯୌଷ୍ଟଂ
ବିଶ୍ୱଂ ଆୟୁର୍ ବ୍ୟଶ୍ନୁତମ୍ ।
କ୍ରୀଳନ୍ତୌ ପୁତ୍ରୈର୍ନପ୍ତୃଭିର୍
ମୋଦମାନୌ ସ୍ୱେ ଗୃହେ ॥
(ଋଗ୍‌ବେଦ, ୧୦-୮୫-୪୨;
ଅଥର୍ବବେଦ, ୧୪-୧-୨୨,

ଅର୍ଥାତ୍ ତୁମେ ଦୁଇଜଣ ଅବିଚ୍ଛିନ୍ନ ଭାବରେ ଏଠାରେ ରହ; ପୁତ୍ର ନାତି ସହ କ୍ରୀଡ଼ା କରି ଗୃହରେ ଆନନ୍ଦ ଉପଭୋଗ କରି ଜୀବନର ପୂର୍ଣ୍ଣକାଳ ବଞ୍ଚିରହ ।

ଦାମ୍ପତ୍ୟ ଜୀବନ ସମ୍ପର୍କରେ ଅନ୍ୟତମ ବୈଶିଷ୍ଟ୍ୟଟି ହେଲା; ପତିପତ୍ନୀଙ୍କୁ ସମାନ ମର୍ଯ୍ୟାଦା ପ୍ରଦାନ । ଗୃହରେ ସ୍ୱାମୀର କର୍ତ୍ତୃତ୍ୱ ସହିତ ସ୍ତ୍ରୀର କର୍ତ୍ତୃତ୍ୱ ମଧ୍ୟ ସ୍ୱୀକାର କରାଯାଇଛି [୩୧] । ନିଜର ଶାଶୁ, ଶ୍ୱଶୁର; ନଣନ୍ଦ ଓ ଦେବରମାନଙ୍କ ଉପରେ ସାମ୍ରାଜ୍ଞୀ ହେବାକୁ ଗୃହପତ୍ନୀଙ୍କୁ ଉଦ୍‌ବୁଦ୍ଧ କରାଯାଇଛି (୩୨) ।

ଋଗ୍‌ବେଦୀୟ ବିବାହମନ୍ତ୍ରରେ ପତିପତ୍ନୀଙ୍କର ପାରସ୍ପରିକ ପ୍ରେମ ସମ୍ପର୍କରେ ମଧ୍ୟ ଚମତ୍କାର ଚିନ୍ତା ରହିଛି । ଗୋଟିଏ ମନ୍ତ୍ରରେ ରହିଛି : କନ୍ୟା ଯାହାକୁ ମନ ମଧ୍ୟରେ ପ୍ରଶଂସା କରେ, ପିତା ତା'ପାଇଁ ସେଇ ବର ନିର୍ବାଚନ କରନ୍ତି । ଅଥର୍ବବେଦରେ ବିବାହ ଶପଥ ପରେ ପରେ କନ୍ୟା ସ୍ୱାମୀ ପାଇଁ ପ୍ରାର୍ଥନା କରି କହେ—ମୋ ସ୍ୱାମୀ ଦୀର୍ଘଜୀବୀ ହୁଅନ୍ତୁ, ସେ ଶତବର୍ଷ ଜୀବନଧାରଣ କରନ୍ତୁ (ଦୀର୍ଘାୟୁରସ୍ତୁ ମେ ପତିର୍ଜୀବାତି ଶରଦଃ ଶତମ୍ (୩୩) । ନବ ବିବାହିତ ସ୍ୱାମୀ ସ୍ତ୍ରୀକୁ ସମ୍ବୋଧନ କରି କହେ—

ସାମାହଂ ଅସ୍ମିନ୍ ଋକ୍ ତ୍ୱଂ
ଦ୍ୟୌରହଂ ପୃଥିବୀତ୍ୱମ୍ ।।

(ଅଥର୍ବବେଦ, ୧୪-୨-୭୧)

ଅର୍ଥାତ୍ ମୁଁ ହେଉଛି ସାମ, ତୁମେ ଋକ୍; ମୁଁ ହେଉଛି ଆକାଶ, ତୁମେ ପୃଥିବୀ ।

ପ୍ରେମ, ବିବାହ ଓ ଗାର୍ହସ୍ଥ୍ୟ ଜୀବନ ସମ୍ପର୍କରେ ବୈଦିକ ଚିନ୍ତାଧାରାରେ ଆଧୁନିକ କାଳର ମଣିଷ ପାଇଁ ସବୁଠାରୁ ଉଲ୍ଲେଖଯୋଗ୍ୟ

---

[୩୧] ଋଗ୍‌ବେଦ, ୧୦-୮୫-୨୬
(୩୨) ଋଗ୍‌ବେଦ, ୧୦-୮୫-୪
(୩୩) ଅଥର୍ବବେଦ, ୧୪-୨-୬୩

ବିଷୟ ହେଉଛି : ପିତୃଭକ୍ତି ଓ ମାତୃଭକ୍ତିର ଚିନ୍ତା । ପ୍ରେମ ଓ ପରସ୍ପରକ ଆକର୍ଷଣର ଚରମରେ ଋଷିମାନଙ୍କର ମନ ସଂସାରାଭିଜ୍ଞ ଥିଲା । କନ୍ୟାକୁ ଆଶୀର୍ବାଦ କରାଯାଉଥିଲା : ବୀର ସନ୍ତାନର ଜନନୀ ହୁଅ (୩୪) । ଅଥର୍ବବେଦରେ ଜଣେ ଋଷି ଏକ ପରିବାରକୁ ଏକ ମନ, ଏକ ହୃଦୟ, ଦ୍ୱେଷମୁକ୍ତ ଓ ମଧୁର ବଚନ କହିବା ପାଇଁ ଉଦ୍‌ବୋଧନ ଦେଇଛନ୍ତି ।

ଗାର୍ହସ୍ଥ୍ୟ ଜୀବନ ଶାଶ୍ୱତ ନିୟମ ବା 'ଋତ'ର ନିୟନ୍ତ୍ରଣାଧୀନ ଥିବାରୁ ବୈବାହିକ ସମ୍ପର୍କ ଥିଲା ପବିତ୍ର । ନାରୀ ପ୍ରତି ମନୋଜ୍ଞ ସମ୍ମାନବୋଧ ବେଦର ଅନ୍ୟତମ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଦେବୀଙ୍କ ପରି ସେମାନଙ୍କ ପ୍ରତି ଶିଷ୍ଟାଚାରପୂର୍ଣ୍ଣ ସମ୍ବୋଧନ କରାଯାଉଥିଲା, ଯଥା— ସୁଭଗ (ଲାବଣ୍ୟମୟୀ), କଲ୍ୟାଣୀ ଇତ୍ୟାଦି ।

ବୈଦିକ ଋଷିମାନଙ୍କ ଦୃଷ୍ଟିରେ ଉଷା, ସରସ୍ୱତୀ ଓ ଅଦିତି ପ୍ରଭୃତି ମହିମାମୟୀ ଦେବୀ ଓ ମହୀୟସୀ ନାରୀ ଥିଲେ । କାହିଁ କେଉଁ ସୁଦୂର ଅତୀତରୁ ନାରୀମାନେ ସମାଜରେ ଅତି ଉନ୍ନତ ସ୍ଥାନ ଅଧିକାର କରିଥିଲେ ।

ଶାନ୍ତିପୂର୍ଣ୍ଣ ମଧୁମୟ ଦାମ୍ପତ୍ୟ ଜୀବନ, ଆଦର୍ଶ ପରିବାର ଓ ବୃହତ୍ତର ଉନ୍ନତ ସମାଜର ଚିନ୍ତା ବେଦର ସୂକ୍ତଗୁଡ଼ିକରେ ରହିଛି । ବୈଦିକ ଆଦର୍ଶ କହେ—ମନୁଷ୍ୟ ଏକାକୀ ନିଜପାଇଁ ବଞ୍ଚିବା ଉଚିତ ନୁହେଁ । ଯେ ନିଜର ସାଥୀ ଓ ବନ୍ଧୁଙ୍କୁ ନ ଖୁଆଇ ନିଜେ ସ୍ୱାର୍ଥବଶତଃ ଭୋଜନ କରେ ସେ ସବୁ ପାପ ଅର୍ଜନ କରେ, ଏହା ମୃତ୍ୟୁ ସହ ସମାନ—

ମୋଘଂ ଅନ୍ନଂ ବିନ୍ଦତେ ଅପ୍ରଚେତାଃ
ସତ୍ୟଂ ବ୍ରବୀମି ବଧ ଇତ୍ ସ ତସ୍ୟ ।

(ଋଗ୍‌ବେଦ, ୧୦-୧୧୭ ୬)

---

(୩୪) ଋଗ୍‌ବେଦ, ୧୦-୮୫-୪୪

ପାରିବାରିକ ଓ ସାମାଜିକମାନଙ୍କ ପ୍ରତି ଋଗ୍‌ବେଦର ପବିତ୍ର ଚର୍ଯ୍ୟାର ସଂଜ୍ଞାନସୂକ୍ତ ଯୁଗଯୁଗଧରି ପ୍ରତିଧ୍ୱନିତ ହୋଇଆସୁଛି, ଯେଉଁଥିରେ ଶୁଣାଇ ଦିଆଯାଇଛି ଏକ ଶାଶ୍ୱତ ଉଦ୍‌ବୋଧନ—

ସଂଗଚ୍ଛଧ୍ୱଂ ସଂ ବଦଧ୍ୱଂ ସଂ ବୋ ମନାଂସି ଜାନତାମ୍
ଦେବା ଭାଗଂ ଯଥାପୂର୍ବେ ସଂଜାନାନା ଉପାସତେ ॥
(ଋଗ୍‌ବେଦ, ୧୦-୧୯୧-୨)

ଅର୍ଥାତ୍ ତୁମ୍ଭେମାନେ ସମ୍ମିଳିତ ହୁଅ, ଏକ ପ୍ରକାର ବାକ୍ୟ ପ୍ରକାଶ କର। ତୁମ୍ଭମାନଙ୍କର ମନ ସବୁ ସମରୂପେ ଜ୍ଞାତ ହେଉ। ପୂର୍ବବର୍ତ୍ତୀ ଦେବତା-ମାନେ ଯେପରି ସମ୍ମତ ହୋଇ ହବିର୍ଭାଗ ଗ୍ରହଣ କରିଥିଲେ, ତୁମ୍ଭେମାନେ ସେହିପରି ଧନାଦି ଗ୍ରହଣ କର।

ଉତ୍ତମ ସାମାଜିକ ତଥା ନାଗରିକ ଜୀବନ ପାଇଁ ବେଦରେ ଯେଉଁ ସବୁ ଆଦର୍ଶର ଉଲ୍ଲେଖ ରହିଛି, ସାଂପ୍ରତିକ କାଳରେ ତା'ର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ। ମନୁଷ୍ୟ ତା'ର ବ୍ୟକ୍ତିଗତ ପରିସରର ଊର୍ଦ୍ଧ୍ୱରେ ଜୀବନ ଧାରଣ କରି ସମଷ୍ଟିଗତ ଜୀବନ ପ୍ରତି ଅବଦାନ ଦେବା ଆବଶ୍ୟକ। ପାରିବାରିକ ଓ ସାମାଜିକ ଗୋଷ୍ଠୀର ସୀମିତ ସ୍ୱାର୍ଥ ଊର୍ଦ୍ଧ୍ୱରେ ରାଷ୍ଟ୍ରର ବୃହତ୍ତର ସ୍ୱାର୍ଥ ରହିଛି, ଯା'ର ସଂରକ୍ଷଣ ଜ୍ଞାନାଲୋକ-ପ୍ରାପ୍ତ ସାମାଜିକ ବ୍ୟକ୍ତିଙ୍କର ବିଶେଷ ଦାୟିତ୍ୱ। ନାଗରିକମାନଙ୍କର ପ୍ରମୁଖ ପଦବୀରେ ଅବସ୍ଥାପିତ ହୋଇଥିବାରୁ ସମାଜର ନେତୃବୃନ୍ଦ ରାଷ୍ଟ୍ର ଉପରେ ତୀର ସତର୍କ ଦୃଷ୍ଟି ରଖିବା ବିଧେୟ।

## ବୈଦିକ ସାର୍ବଜନୀନତା :

ପୂର୍ବରୁ କୁହାଯାଇଛି ଯେ ବେଦ କୌଣସି ସାଂପ୍ରଦାୟିକ ରଚନା ନୁହେଁ, ଏହା ସାର୍ବକାଳୀନ ଓ ସାର୍ବଜନୀନ। ତା'ର ସମସ୍ତ ଉପଦେଶ ଓ ପରାମର୍ଶ ସମଗ୍ର ମାନବ ସମାଜ ପ୍ରତି ଉଦ୍ଦିଷ୍ଟ। ଏଥିରେ ଏକାଧିକ ସ୍ଥଳରେ କୁହାଯାଇଛି ଯେ ଦେବତା ହେଉଛନ୍ତି ସମସ୍ତଙ୍କ ପକ୍ଷେ ସାଧାରଣ। ଋଗ୍‌ବେଦର ଏକ ସୂକ୍ତରେ କୁହାଯାଇଛି—

ତ୍ୱଂ ବଶ୍ୱେ ମାନୁଷା ଯୁଗେନ୍ଦ୍ର ହବନ୍ତେ ।
(ଋଗ୍‌ବେଦ, ୮-୪୬ ୧୨)

ହେ ଇନ୍ଦ୍ର ! ବିଶ୍ୱର ସମସ୍ତ ମାନବଜାତି ଉଦ୍ଦେଶ୍ୟପ୍ରେରିତ ସ୍ତୁତି ଦ୍ୱାରା ତୁମକୁ ଆବାହନ କରୁଛନ୍ତି ।

ଗୃହରେ ବାହାରେ ସମସ୍ତଙ୍କ ପାଇଁ (ସମଗ୍ର ମାନବ ଜାତି ପାଇଁ) ଋଷିମାନେ ବେଦ ପ୍ରଚାର କରିଥିଲେ । ଯଜୁର୍ବେଦର ଜଣେ ଋଷି କହିଛନ୍ତି—

ଯଥେମାଂ ବାଚଂ କଲ୍ୟାଣୀମ୍
ଆବଦାନି ଜନେଭ୍ୟଃ ।
ବ୍ରହ୍ମରାଜନ୍ୟାଭ୍ୟାମ୍
ଶୂଦ୍ରାୟ ଚାର୍ଯ୍ୟାୟ ଚ
ସ୍ୱାୟ ଚାରଣାୟ ଚ । (୩୫)
[ଯଜୁର୍ବେଦ, ବା·ସଂ., ୨୬-୨୬]

ଅର୍ଥାତ୍ ଯେଉଁ ମୁଁ ଏହି କଲ୍ୟାଣ ବଚନ ଲୋକ ସାଧାରଣଙ୍କୁ କହୁଛି, ବ୍ରାହ୍ମଣ କ୍ଷତ୍ରିୟଙ୍କୁ, ଶୂଦ୍ର ଓ ବୈଶ୍ୟଙ୍କୁ, ନିଜଲୋକ ଓ ବିଦେଶୀମାନଙ୍କୁ ।

ବ୍ରହ୍ମପଥରେ (ଆଧ୍ୟାତ୍ମିକ ଜ୍ଞାନ ପଥରେ) ଅଗ୍ରଗତି କଲେ ମନୁଷ୍ୟ ଅଧିକ ଉଦାର ହୁଏ, ତା'ର ଦୃଷ୍ଟିକୋଣ ପ୍ରସାରିତ ହୁଏ । ନିଜର ଲୋକ

(୩୫) ଅଣଆର୍ଯ୍ୟ ଜାତିମାନଙ୍କର ବେଦରେ ପ୍ରବେଶ ଥିବାର ରାମାୟଣରେ ଲକ୍ଷିତ ହୁଏ । ରାମଲକ୍ଷ୍ମଣ ସୀତାଙ୍କ ଅନ୍ୱେଷଣରେ ଅରଣ୍ୟରେ ଭ୍ରମଣ କରୁଥିବାବେଳେ ହନୁମାନଙ୍କୁ ଭେଟିଥିଲେ, ସେ ସେମାନଙ୍କ ସହ ସଂସ୍କୃତରେ କଥାବାର୍ତ୍ତା କରିଥିଲେ । ରାମ ହନୁମାନଙ୍କର ଭାଷା- ଶୁଦ୍ଧିର ପ୍ରଶଂସା କରିଛନ୍ତି [କିଷ୍କିନ୍ଧ୍ୟା କାଣ୍ଡ] । ହନୁମାନ୍ ଲଙ୍କାରେ ନିଶାଭାଗରେ ରାକ୍ଷସମାନେ ପବିତ୍ର ଧର୍ମଶାସ୍ତ୍ର (ବେଦ) ଆବୃତ୍ତି କରୁଥିବାର ଲକ୍ଷ୍ୟ କରିଛନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଏ : ବେଦ ସମଗ୍ର ମାନବଜାତି ପାଇଁ ଉଦ୍ଦିଷ୍ଟ ଥିବାର ବାଲ୍ମୀକ ବୁଝିଥିଲେ ।

ଓ ବିଦେଶୀଙ୍କ ସହ ଭ୍ରାତୃତ୍ୱ ତଥା ମୈତ୍ରୀ ବନ୍ଧନ ପାଇଁ ବେଦଗୁଡ଼ିକ ଅଗ୍ରସର ହେଉଛନ୍ତି —

ସଂଜ୍ଞାନଂ ସ୍ୱେଭିଃ ସଂଜ୍ଞାନଂ ଅରଣେଭିଃ ।

[ଅଥର୍ବବେଦ, ୭ ୫୨]

କେବଳ ମନୁଷ୍ୟ ନୁହେଁ, ଅନ୍ୟ ଜୀବନ୍ତ ପ୍ରାଣୀମାନଙ୍କ ସହ ମିତ୍ରତା ପାଇଁ ବେଦରେ ସଙ୍କେତ ରହିଛି । ଯଜୁର୍ବେଦରେ ଉଲ୍ଲେଖ ଅଛି —

ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍
ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ ।
ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ।

[ଯଜୁର୍ବେଦ, ୩୮-୧୮]

ଅର୍ଥାତ୍ ସମସ୍ତ ପ୍ରାଣୀ ମୋତେ ମିତ୍ର ଦୃଷ୍ଟିରେ ଦେଖନ୍ତୁ; ମୁଁ ସମସ୍ତ ପ୍ରାଣୀଙ୍କୁ ମିତ୍ର ଦୃଷ୍ଟିରେ ଦେଖେଁ; ଆମେ ପରସ୍ପରକୁ ମିତ୍ର ଦୃଷ୍ଟିରେ ଦେଖୁଁ ।

ପ୍ରାୟ ସାଢ଼େ ତିନିହଜାର ବର୍ଷ ଧରି ଭାରତ ବୈଦିକ ଧର୍ମ ଅନୁସରଣ କରି ଆସିଛି । ଭାରତର ବିଭିନ୍ନ ଅଞ୍ଚଳରେ ଏପରି ଲୋକଙ୍କର ଆବିର୍ଭାବ ହୋଇଛି, ଯେଉଁମାନେ ଆଧ୍ୟାତ୍ମିକ ଶକ୍ତି, ଜ୍ଞାନ ଓ ବିଶ୍ୱଜନୀନ ଦୃଷ୍ଟିଭଙ୍ଗୀ ହେତୁ ସବୁକାଳରେ ସ୍ମରଣୀୟ ହୋଇ ରହିଛନ୍ତି ।

ଆଧୁନିକ କାଳରେ ମଧ୍ୟ ପୂର୍ବାଲୋଚିତ ଧର୍ମର ଛଅଟି ମତ ସେଗୁଡ଼ିକର ପ୍ରାସଙ୍ଗିକତା (Relevance) ହରାଇ ନାହାନ୍ତି । ବୈଦିକ ଗ୍ରନ୍ଥ ଓ ଶବ୍ଦ ବ୍ରହ୍ମ ଭାରତର ବିଭିନ୍ନ ଅଞ୍ଚଳର ଲୋକଙ୍କ ଦ୍ୱାରା ଆଦୃତ ହେଉଅଛି । ମାକ୍ସମୂଲର୍ ପ୍ରଭୃତି ପ୍ରାଚ୍ୟବିଦ୍ୟାବିତ୍ ପାଶ୍ଚାତ୍ୟ ପଣ୍ଡିତମାନେ ବେଦର ପ୍ରାମାଣିକ ଗ୍ରନ୍ଥମାନ ପ୍ରକାଶ କରି ପାଶ୍ଚାତ୍ୟ ସଭ୍ୟତା-ଲାଳିତ ଭାରତୀୟମାନଙ୍କର ଚକ୍ଷୁ ଉନ୍ମୋଚନ କରିଛନ୍ତି । ଏହି ଆତ୍ମନିବେଦିତ ଜ୍ଞାନନିଷ୍ଠ ପଣ୍ଡିତମାନେ ଆଧୁନିକ କାଳରେ ଏକ ପ୍ରକାର

ସାଂସ୍କୃତିକ ସ୍ୱେଚ୍ଛାସେବକର କାର୍ଯ୍ୟ କରୁଛନ୍ତି । ପାଶ୍ଚାତ୍ୟ ପଣ୍ଡିତ ଓ ବୈଜ୍ଞାନିକମାନଙ୍କର ଏକନିଷ୍ଠ ଜ୍ଞାନାନୁସନ୍ଧାନରେ ବୈଦିକ ଧାରା ଓ ତପଃର ଚମତ୍କାର ସଙ୍କେତ ରହିଛି । ବର୍ତ୍ତମାନ ସନ୍ଦେହ, ଅବିଶ୍ୱାସ ପ୍ରଭୃତି ବିଶୃଙ୍ଖଳା ଦ୍ୱାରା ବିପର୍ଯ୍ୟସ୍ତ ପୃଥିବୀରେ ଶାନ୍ତିର ବାତାବରଣ ଫେରାଇ ଆଣିବାକୁ ହେଲେ ବୈଦିକ 'ଋତ'ର ମହତ୍ତ୍ୱ ଉପଲବ୍ଧି କରି କାର୍ଯ୍ୟ କରିବାର ଉପଯୁକ୍ତ ସମୟ ପହଞ୍ଚିଛି । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ସଂହତି ଅର୍ଥରେ ବୈଦିକ ଧର୍ମର ପ୍ରଥମ ମନ୍ତ୍ର 'ସତ୍ୟ' ସର୍ବଦା ଆଚରଣୀୟ ହୋଇ ରହିବ । ଏ ଯୁଗର ପ୍ରାତଃ ସ୍ମରଣୀୟ ମହାପୁରୁଷ ମହାତ୍ମାଗାନ୍ଧୀ ଜୀବନ, ସମାଜ ଓ ରାଷ୍ଟ୍ରର ପ୍ରତ୍ୟେକ କ୍ଷେତ୍ରରେ ସତ୍ୟ, ଅହିଂସା, ସେବା ଓ ପ୍ରେମର କିପରି ପ୍ରୟୋଗ କରି ଯାଇଛନ୍ତି, ତାହା ପୃଥିବୀର ସବୁ ପ୍ରାନ୍ତର ଲୋକେ ଅବଗତ ଅଛନ୍ତି । ମହାତ୍ମାଗାନ୍ଧୀଙ୍କ ସହ ଅନ୍ୟ ଭାରତୀୟ ଚିନ୍ତାନାୟକମାନେ କେବଳ ଉପଲବ୍ଧି କରି ନାହାନ୍ତି, ଲୋକଚିତ୍ତରେ ଗଭୀର ଭାବରେ ସଂକ୍ରମିତ କରାଇବାକୁ ଚେଷ୍ଟା କରିଛନ୍ତି ଯେ ଧର୍ମ ଓ ସତ୍ୟ ହେଉଛି ଏକ, ଯେ ସତ୍ୟ ସେ ହେଉଛନ୍ତି ଈଶ୍ୱର । ବୈଦିକ ଋଷିମାନଙ୍କର ବୌଦ୍ଧିକ ପ୍ରଚେଷ୍ଟା ଓ ଆଧ୍ୟାତ୍ମିକ ଅନୁସନ୍ଧାନ ସାଂପ୍ରତିକ କାଳର ଦଳ ଓ ଗୋଷ୍ଠୀର ପ୍ରତିବନ୍ଧକ ଭାଙ୍ଗି ଐକ୍ୟ, ଶୃଙ୍ଖଳା, ନ୍ୟାୟ ଓ ବିଶ୍ୱଭ୍ରାତୃତ୍ୱ ଆଦର୍ଶ ମାଧ୍ୟମରେ ମାନବ ଜାତିକୁ ମିଳିତ କରାଇବା ଦିଗରେ ଯେ କାଳୋପଯୋଗୀ ପ୍ରେରଣା ଦେବ ଏଥିରେ ସନ୍ଦେହ ନାହିଁ ।

ପ୍ରଗତିଶୀଳତା ବୈଦିକ ଦୃଷ୍ଟିଭଙ୍ଗୀର ବୈଶିଷ୍ଟ୍ୟ । ଋଷିଙ୍କ ସ୍ୱର ବୈଦିକ ଆତ୍ମା କହେ—ଆଗେଇ ଚାଲ, ସାହସୀ ହୁଅ, ଶତ୍ରୁର ସମ୍ମୁଖୀନ ହୁଅ, ତୁମର ବଜ୍ର କେବେ ଶାନ୍ତ ହେବ ନାହିଁ । ବୈଦିକ ଆଦର୍ଶକୁ ଫେରିଯିବା ଅର୍ଥ ବୈଦିକ ଯୁଗର ଲକ୍ଷଣାକ୍ରାନ୍ତ ଜୀବନର ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀକୁ ଫେରିଯିବା । 'ଐତରେୟ ବ୍ରାହ୍ମଣ' କାହିଁ କେଉଁ ସୁଦୂର ଅତୀତରୁ ମାନବଜାତିକୁ ଆଗେଇବା ପାଇଁ ଉଦ୍‌ବୋଧନ ଶୁଣାଇଆସିଛି—

କଳିଃ ଶୟାନୋ ଭବତି ସଞ୍ଜିହାନସ୍ତୁ ଦ୍ୱାପରଃ
ଉତ୍ତିଷ୍ଠଂସ୍ତ୍ରେତାଭବତି କୃତଂ ସଂପଦ୍ୟତେ ଚରନ୍ ।
ଚରୈବେତି, ଚରୈବେତି ।

ଶୋଇପଡ଼ିବାଟା ହେଉଛି କଳି, ଜାଗିଲେ ହୁଏ ଦ୍ୱାପର, ଉଠି ଠିଆ-ହେଲେ ହୁଏ ତ୍ରେତା, ଆଗେଇ ଚାଲିବାଟା ହେଲା ସତ୍ୟଯୁଗ । ଅତଏବ ଆଗେଇ ଚାଲ, ଆଗେଇ ଚାଲ ।

ଚରନ୍ ବୈ ମଧ୍ୱିନ୍ଦତି ଚରନ୍ ସ୍ୱାଦୁମୁଦୁମ୍ବରମ୍ ।
ସୂର୍ଯ୍ୟସ୍ୟ ପଶ୍ୟଶ୍ରେମାଣଂ ଯୋ ନ ତନ୍ଦ୍ରୟତେ ଚରନ୍ ।
ଚରୈବେତି, ଚରୈବେତି ।

ଚାଲିବାଟା ହେଲା ଅମୃତଲାଭ, ଚାଲିବାଟା ତା'ର ସ୍ୱାଦୁଫଳ; ଚାହିଁ ଦେଖ ଏଇ ସୂର୍ଯ୍ୟଙ୍କର ଆଲୋକ ସମ୍ପଦ, ଯେ ସୃଷ୍ଟିର ଆଦିକାଳରୁ ଚାଲି ଚାଲି ଦିନେକ ପାଇଁ ମଧ୍ୟ ଶୋଇପଡ଼ିନାହାଁନ୍ତି । ଅତଏବ ଆଗେଇ ଚାଲ, ଆଗେଇ ଚାଲ ।

ବେଦଗୁଡ଼ିକ ଲକ୍ଷ୍ୟବିହୀନ ଗତିଶୀଳତା କଥା ଚିନ୍ତା କରିନାହାନ୍ତି । ସତ୍ୟ ଓ ଋତ, ଦୀକ୍ଷା, ତପଃ, [ମହାନ୍ ଆଦର୍ଶ ପାଇଁ ଆତ୍ମୋତ୍ସର୍ଗ], ପ୍ରାର୍ଥନା ଓ ଜ୍ଞାନ, ଯଜ୍ଞ ଓ ତ୍ୟାଗର ଶକ୍ତି ପଥରେ ଅଗ୍ରଗତିକୁ ସେମାନେ ଗତିଶୀଳତା ବୋଲି ଚିନ୍ତା କରିଥିଲେ । ମଣିଷକୁ ତା'ର ସତ୍ତାର ପୂର୍ଣ୍ଣତମ ସୋପାନକୁ ଆରୋହଣ କରିବା ଦିଗରେ ଗତିଶୀଳ ହେବାକୁ ହେବ, ଯେପରିକି ସେ ଆତ୍ମାର ଆନନ୍ଦ ମଧ୍ୟରେ ଏକ ସ୍ୱଚ୍ଛନ୍ଦ ତଥା ମୁକ୍ତ ପୃଥିବୀରେ ବାସ କରେ ।

( ଦୁଇ )

ବୈଦିକ ଏକେଶ୍ୱରବାଦ ସମ୍ପର୍କରେ ପୂର୍ବରୁ ଆଲୋଚନା କରାଯାଇଛି । ଆର୍ଯ୍ୟମାନେ ବହୁ ଦେବତାଙ୍କର ଉପାସନା କଲେ ମଧ୍ୟ ସେମାନଙ୍କର ଏଇ ଦୃଢ଼ ପ୍ରତ୍ୟୟ ତଥା ଉପଲବ୍ଧି ହୋଇଥିଲା ଯେ ଏଇ ଦେବତାମାନେ ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ଶକ୍ତି । ବିଭିନ୍ନ ଦେବତାଙ୍କର ଉପାସନା ଶେଷରେ ସେଇ ପରମାତ୍ମାଙ୍କ ନିକଟକୁ

ପ୍ରଧାନତ ହୁଏ । ବେଦର ବିଖ୍ୟାତ ପୁରୁଷସୂକ୍ତରେ ଏକେଶ୍ୱରବାଦର ଚମତ୍କାର ସଙ୍କେତ ରହିଛି, ଯଥା—

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ବିଶ୍ୱତୋ ବୃତ୍ୱାତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ॥ ୧ ।
ପୁରୁଷ ଏବେଦଂ ସର୍ବଂ ଯଦ୍ଭୂତଂ ଯଚ୍ଚଭବ୍ୟମ୍ ।
ଉତାମୃତତ୍ୱସ୍ୟେଶାନୋ ଯଦନ୍ନେନାତିରୋହତି ॥ ୨ ।
ଏତାବାନସ୍ୟ ମହିମା ଅତୋ ଜ୍ୟାୟାଂଶ୍ଚ ପୂରୁଷଃ ।
ପାଦୋଽସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟାମୃତଂ ଦିବି ॥ ୩ ।

[ ଋଗ୍‌ବେଦ, ୧୦ ୯୦ ]

ଅର୍ଥାତ୍ ସେ ହୋଇଛନ୍ତି ବିରାଟ୍ ପୁରୁଷ (ସମସ୍ତ ପ୍ରାଣୀସମଷ୍ଟି ରୂପ ବ୍ରହ୍ମାଣ୍ଡ ଦେହ) । ତାଙ୍କ ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ, ଅନନ୍ତ ଚରଣ । ସେହି ପୁରୁଷ ବ୍ରହ୍ମାଣ୍ଡକୁ ସର୍ବତୋଭାବେ ପରିବେଷ୍ଟନ କରି ମଧ୍ୟ ତଦତିରିକ୍ତ ଦଶାଙ୍ଗୁଳ ସ୍ଥାନରେ ପରିବ୍ୟାପ୍ତ (ଅର୍ଥାତ୍ ଜଗତର ଅତୀତରୂପେ ଅବସ୍ଥିତ) ଅଛନ୍ତି । ୧ । ବର୍ତ୍ତମାନ ଏଇ ସମସ୍ତ ଜଗତ୍ ହିଁ (ସ୍ୱରୂପତଃ) ସେଇ ବିରାଟ ପୁରୁଷ ଯାହା ଅତୀତ ଜଗତ୍, ଯାହା ଭବିଷ୍ୟତ ଜଗତ୍, ତାହା ମଧ୍ୟ ସେଇ ପୁରୁଷ ଏବଂ ସେ ଏକମାତ୍ର ବିଶ୍ୱର ନିୟନ୍ତା । ସେ ଯେହେତୁ ପ୍ରାଣୀମାନଙ୍କର ଭୋଗ ନିମିତ୍ତ ସ୍ୱକୀୟ କାରଣାବସ୍ଥା ଅତିକ୍ରମ କରି ଦୃଶ୍ୟମାନ ଜଗତ୍ ଅବସ୍ଥା ପ୍ରାପ୍ତ ହୋଇଛନ୍ତି, ସୁତରାଂ [ଏହା ତାଙ୍କର ପାରମାର୍ଥିକ ରୂପ ନୁହେଁ] । ୨ । ଏ ସମସ୍ତ ତାଙ୍କର ମହିମା ମାତ୍ର । ବସ୍ତୁତଃ ସେହି ପୁରୁଷ ଏହି ମହିମାଠାରୁ ଅତିଶୟ ଶ୍ରେଷ୍ଠ; କାଳତ୍ରୟବର୍ତ୍ତୀ ସମସ୍ତ ଜୀବ ତାଙ୍କର ଏକପାଦ ମାତ୍ର; ତାଙ୍କର ଅବଶିଷ୍ଟ ତ୍ରିପାଦ ଅବିନାଶୀ ଓ ସ୍ୱପ୍ରକାଶରୂପେ ଅବସ୍ଥିତ ଅଛି । ୩ ।

ଋଗ୍‌ବେଦର ପରବର୍ତ୍ତୀ ଯଜୁର୍ବେଦରେ ମଧ୍ୟ ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ଶକ୍ତିର ଉପାସନା ଚାଲିଥିଲି [୩୬] । ପରବର୍ତ୍ତୀ

[୩୬] ଶୁକ୍ଳ ଯଜୁର୍ବେଦ, ୩୧–୧୮

ଉପନିଷଦ୍ କାଳରେ ଯେଉଁ ଅଦ୍ୱୈତବ୍ରହ୍ମଜ୍ଞାନର ଚର୍ଚ୍ଚା ଚାଲିଥିଲା, ପୂର୍ବୋକ୍ତ ତତ୍ତ୍ୱହିଁ ତା'ର ଭିତ୍ତି ।

ବେଦ କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଏହି ଦୁଇଭାଗରେ ବିଭକ୍ତ । ବେଦର ସଂହିତା ଓ ବ୍ରାହ୍ମଣ ଭାଗ କର୍ମକାଣ୍ଡ ମୂଳକ, ଉପନିଷଦ୍ ଓ ଆରଣ୍ୟକ ଭାଗ ଜ୍ଞାନକାଣ୍ଡ ମୂଳକ । ଦେବତାମାନଙ୍କର ସନ୍ତୋଷବିଧାନ ପାଇଁ ଋଗ୍‌ବେଦ କାଳରୁ ଯଜ୍ଞ କର୍ମ ଆରମ୍ଭ ହୋଇଥିଲେହେଁ ଏହା କ୍ରମଶଃ ସକାମ, ତଥା ଇହକାଳ ସର୍ବସ୍ୱ ହୋଇପଡ଼ିବାରୁ ଏବଂ ଯଜ୍ଞରେ ନରବଳି ଭଳି ପଶୁବଳିର ବ୍ୟବସ୍ଥା ପ୍ରବର୍ତ୍ତିତ ହେବାରୁ ଈଶ୍ୱର ବିଶ୍ୱାସ ଶିଥିଳ ହୋଇପଡ଼ିଲା ।

ବେଦର ବ୍ରାହ୍ମଣ ଓ ସଂହିତା ଅଂଶମାନ ବିଭିନ୍ନ ସମୟରେ ରଚିତ ହୋଇଥିବାରୁ ଯଜ୍ଞୀୟ ବିଧିର ସାମଞ୍ଜସ୍ୟ ଆନୟନ ପାଇଁ ଜୈମିନିଙ୍କ ଦ୍ୱାରା ପୂର୍ବମୀମାଂସା ନାମକ ଦର୍ଶନ ଶାସ୍ତ୍ର ପ୍ରଣୀତ ହେଲା । ମୀମାଂସା ଦର୍ଶନ ବେଦର କର୍ମକାଣ୍ଡକୁ ସାର୍ଥକ ମନେକରି ଜ୍ଞାନକାଣ୍ଡ ନିରର୍ଥକ ମନେକରେ ।

ଏ ଦେଶରେ ବୈଦିକ କର୍ମକାଣ୍ଡର ପ୍ରଭାବ ଦୀର୍ଘକାଳ ଧରି ରହିଥିବାରୁ ବେଦକଥିତ ବିଧିବିଧାନ ଗ୍ରନ୍ଥାକାରେ ଯେଉଁ ସୂତ୍ରଗ୍ରନ୍ଥମାନ ରଚିତ ହୋଇଥିଲା, ତାହା କଳ୍ପସୂତ୍ର ନାମରେ ପରିଚିତ । ଏହା ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ଧର୍ମସୂତ୍ର ଏହି ତିନିଭାଗରେ ବିଭକ୍ତ । ଶ୍ରୌତସୂତ୍ରରେ ବୈଦିକ ଯଜ୍ଞ ସମ୍ପର୍କୀୟ ଜ୍ଞାତବ୍ୟ ବସ୍ତୁ, ଗୃହ୍ୟସୂତ୍ରରେ ଗାର୍ହସ୍ଥ୍ୟ କର୍ମବିଧାନ ଏବଂ ଧର୍ମସୂତ୍ରରେ ସାମାଜିକ ଓ ଧର୍ମ ଜୀବନର ନିୟମ ଲିପିବଦ୍ଧ ରହିଛି । ବୈଦିକ ଯାଗଯଜ୍ଞ ପ୍ରଭୃତି କ୍ରମଶଃ ଶିଥିଳ ହୋଇ ପଡ଼ିବାରୁ କଳ୍ପସୂତ୍ରର ପ୍ରଭାବ ସ୍ତିମିତ ହୋଇ ଆସିଲା; କିନ୍ତୁ ସେଗୁଡ଼ିକର ପ୍ରଭାବରେ ଯେଉଁ ସ୍ମୃତି ଓ ଧର୍ମସଂହିତାଗୁଡ଼ିକ ରଚିତ ହେଲା, ସାମାଜିକ କର୍ମକର୍ମାଦିରେ ସେଗୁଡ଼ିକର ପ୍ରଭାବ ଅଦ୍ୟାବଧି ରହିଛି । ସ୍ମୃତିଗ୍ରନ୍ଥ ମଧ୍ୟରେ ମନୁ, ପରାଶର ଓ ଯାଜ୍ଞବଲ୍‌କ୍ୟ ରଚିତ ସ୍ମୃତିଗ୍ରନ୍ଥମାନ ଭାରତର ବିଭିନ୍ନ ଅଞ୍ଚଳର ଲୋକଙ୍କ ମଧ୍ୟରେ ପ୍ରଚଳିତ ।

ସ୍ମୃତିଗ୍ରନ୍ଥମାନଙ୍କ ମଧ୍ୟରେ ପ୍ରାମାଣିକ 'ମନୁ ସଂହିତା' ଭାରତୀୟ ଧର୍ମ, କର୍ମ ଓ ସାମାଜିକ ଆଚାର ଆଦିକୁ ନିୟନ୍ତ୍ରଣ କରୁଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଯୁଗୋପଯୋଗୀ ସ୍ମୃତିଗ୍ରନ୍ଥମାନ ରଚିତ ହୋଇଛି । ହିନ୍ଦୁ ଆଇନ୍ (Hindu Law) ବିବାହ ଓ ଉତ୍ତରାଧିକାରିତ୍ୱ ନିର୍ଣ୍ଣୟରେ ସାଧାରଣତଃ ବିଭିନ୍ନ ସ୍ମୃତିଗ୍ରନ୍ଥମାନଙ୍କର ନଜିର ଗ୍ରହଣ କରିଛି । ଏତଦ୍‌ବ୍ୟତୀତ ଧର୍ମ ସଂହିତାଗୁଡ଼ିକର ବିଧାନ ଅନୁଯାୟୀ ଏବେ ମଧ୍ୟ ନୈଷ୍ଠିକ ଧର୍ମପ୍ରାଣ ହିନ୍ଦୁ ଗୃହସ୍ଥ ପଞ୍ଚମହାଯଜ୍ଞ ଅନୁଷ୍ଠାନ କରୁଛନ୍ତି ।

ଇହକାଳ ସର୍ବସ୍ୱ ସକାମ ଯାଗଯଜ୍ଞର ପ୍ରତିକ୍ରିୟାସ୍ୱରୂପ ପରବର୍ତ୍ତୀ କାଳରେ କ୍ରମଶଃ ପରମ ସତ୍ୟାନୁସନ୍ଧାନ ପ୍ରବଣତା ଦେଖାଗଲା । ଏ ଦେଶର ଗଭୀର ଚିନ୍ତାଶୀଳ ମନୀଷୀମାନେ ସମାଧିସ୍ଥ ହୋଇ ପରମ ସତ୍ୟର ଯେଉଁ ଦିବ୍ୟାନୁଭୂତି ଲାଭକଲେ ସେଗୁଡ଼ିକ ବିଭିନ୍ନ ଉପନିଷଦରେ ଲିପିବଦ୍ଧ । ସେଇ ଉପନିଷଦ୍ ମନ୍ଦ୍ରଗମ୍ଭୀର ସ୍ୱରରେ ମନୁଷ୍ୟଙ୍କୁ ଅମୃତ ପୁତ୍ର ବୋଲି ସମ୍ବୋଧନ କରି (୩୭) ତା'ର ପାରମାର୍ଥିକ ମହତ୍ତ୍ୱ ପ୍ରତିପାଦନରେ ସମଗ୍ର ବିଶ୍ୱରେ ଯୁଗପତ୍ ଆନନ୍ଦ ଓ ବିସ୍ମୟ ସୃଷ୍ଟି କରିଛି ।

ପରମ ସତ୍ୟାନୁଭୂତି ଲାଭକରି ଆତ୍ମାର ଶାନ୍ତି ସମ୍ପାଦନ କରିବାକୁ ହେଲେ ଆଧ୍ୟାତ୍ମଜ୍ଞାନର ଆଶ୍ରୟ ନେବାକୁ ହୁଏ, ସେଥିପାଇଁ ନିରବଚ୍ଛିନ୍ନ ସାଧନା, ଚିତ୍ତ ସଂଯମ, ଧ୍ୟାନ, ନିଦିଧ୍ୟାସନ ଓ ସମାଧି ଏକାନ୍ତ ପ୍ରୟୋଜନ ।

ଉପନିଷଦ୍‌ମାନଙ୍କ ମଧ୍ୟରେ ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଛାନ୍ଦୋଗ୍ୟ ଓ ବୃହଦାରଣ୍ୟକ ଏଇ ଉପନିଷଦ୍-ଗୁଡ଼ିକ ପ୍ରାମାଣିକ । ବିଭିନ୍ନ ସମୟରେ ବିଭିନ୍ନ ଋଷିଙ୍କର ରଚନା ହେତୁ ସେଗୁଡ଼ିକରେ ଦେଖାଦେଇଥିବା ବହିରବିଭିନ୍ନତାର ସମନ୍ୱୟ ଆନୟନ ପାଇଁ ବାଦରାୟଣ ବ୍ୟାସ ବେଦାନ୍ତ ଦର୍ଶନ ପ୍ରଣୟନ କରିଛନ୍ତି, ଯା'ର ଅନ୍ୟନାମ ବ୍ରହ୍ମସୂତ୍ର ବା ଉତ୍ତରମୀମାଂସା ।

(୩୭) ଶୃଣ୍ୱନ୍ତୁସର୍ବେ ଅମୃତସ୍ୟ ପୁତ୍ରାଃ

ଜ୍ଞାନଭିତ୍ତିକ ଉପନିଷଦ୍ ରଚନା ପରେ ପରେ ଯେଉଁ ଦର୍ଶନ ଶାସ୍ତ୍ରମାନ ରଚିତ ହେଲା, ସେଗୁଡ଼ିକ ମଧ୍ୟରେ ଉତ୍ତରମୀମାଂସା ବା ବେଦାନ୍ତର ଶ୍ରେଷ୍ଠତା ସର୍ବତ୍ର ସ୍ୱୀକୃତ। ସାଂସାରିକ ଦୁଃଖରୁ ମୁକ୍ତିଲାଭ କରିବାର ଉପାୟ ବିଭିନ୍ନ ଦର୍ଶନର ପ୍ରତିପାଦ୍ୟବସ୍ତୁ। ମୀମାଂସା ଓ ସାଙ୍ଖ୍ୟ ଦର୍ଶନରେ ଈଶ୍ୱରଙ୍କ ପ୍ରସଙ୍ଗ ନାହିଁ। ପତଞ୍ଜଳିଙ୍କର ଯୋଗ-ଦର୍ଶନରେ ଈଶ୍ୱରଙ୍କ ସ୍ଥାନ ଗୌଣ। ବେଦାନ୍ତ ଦର୍ଶନ ମୁକ୍ତିର ଉପାୟ ସ୍ୱରୂପ ସଚ୍ଚିଦାନନ୍ଦ ସ୍ୱରୂପ ବ୍ରହ୍ମଙ୍କୁ ପ୍ରତିପାଦନ କରିଛି।

ବେଦାନ୍ତ ଦର୍ଶନ ସୂତ୍ରାକାରରେ ଜୀବ, ଜଗତ୍ ଓ ବ୍ରହ୍ମ; ଏହି ମୁଖ୍ୟ ବିଷୟ ପ୍ରତିପାଦନରେ ଅଗ୍ରସର ହୋଇଛି। ସୂତ୍ରାକାରରେ ଲିଖିତ ହୋଇଥିବାରୁ ସେଗୁଡ଼ିକ ବିଭିନ୍ନ ଅର୍ଥ ଓ ଟୀକା ସାପେକ୍ଷ, ଯା ବିନା ସୂତ୍ରଗୁଡ଼ିକର ଭାବ ବୁଝିବା କଷ୍ଟକର। ବେଦାନ୍ତ ଦର୍ଶନର ବହୁ ଭାଷ୍ୟ ଓ ଟୀକା ଏବଂ ସେମାନଙ୍କ ମଧ୍ୟରେ ବହୁ ମତଭେଦ ଦେଖାଯାଏ। ଭାଷ୍ୟକାରମାନଙ୍କ ମଧ୍ୟରେ ଅଦ୍ୱୈତବାଦୀ ଶଙ୍କର ଓ ବିଶିଷ୍ଟାଦ୍ୱୈତବାଦୀ ରାମାନୁଜଙ୍କର ଭାଷ୍ୟ ପ୍ରସିଦ୍ଧ। ଏତଦ୍‌ବ୍ୟତୀତ ବଳଦେବ ବିଦ୍ୟାଭୂଷଣ [ବୈଷ୍ଣବ ଦାର୍ଶନିକ] ଙ୍କ ଗୋବିନ୍ଦଭାଷ୍ୟ ଏବଂ ନିମ୍ବାର୍କାଚାର୍ଯ୍ୟଙ୍କର ଅଚିନ୍ତ୍ୟ—ଭେଦାଭେଦ ଭାଷ୍ୟ ମଧ୍ୟ ବୈଦାନ୍ତିକ ପଣ୍ଡିତମାନଙ୍କ ନିକଟରେ ସୁପରିଚିତ। ବେଦାନ୍ତର ବିଭିନ୍ନ ଭାଷ୍ୟର ମତ ବିଭିନ୍ନତା ସତ୍ତ୍ୱେ ଶ୍ରୀ ଗୀତାରେ ଏକ ସମନ୍ୱୟାତ୍ମକ ବ୍ୟାଖ୍ୟା ସାଧକ ଓ ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରେ।

ଶଙ୍କରଙ୍କ ଅଦ୍ୱୈତ ମତାନୁଯାୟୀ ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା, ଜୀବ ବ୍ରହ୍ମ ଏକ। ଶାଶ୍ୱତ ଶୁଦ୍ଧ ମୁକ୍ତ ସ୍ୱଭାବ ବ୍ରହ୍ମ ଜୀବଭାବରେ ଆତ୍ମ-ପ୍ରକାଶ କରିଥାଏ। ସାଧକ ପକ୍ଷରେ ଜୀବ ଓ ବ୍ରହ୍ମର ଏକତ୍ୱ ଜ୍ଞାନ ହେଲେ ଜୀବର ମୁକ୍ତି ସମ୍ଭବ ହୋଇଥାଏ। ଜୀବ ଓ ବ୍ରହ୍ମ ଅଭିନ୍ନ ହେଲେ ମଧ୍ୟ ଉପାଧି ହେତୁ ଭେଦଭାବ ଆସିଥାଏ। ବ୍ରହ୍ମ ସ୍ୱରୂପତଃ ସଚ୍ଚିଦାନନ୍ଦ ଓ ଉପାଧିଶୂନ୍ୟ; ଜୀବ ବ୍ରହ୍ମ ସ୍ୱରୂପ ହୋଇଥିବାରୁ ସେ ମଧ୍ୟ ସଚ୍ଚିଦାନନ୍ଦ। ଅବିଦ୍ୟା ଓ ଉପାଧି ହେତୁ ଜୀବଠାରେ ଯେଉଁ

ବେଦାନ୍ତ ଧର୍ମର ସଙ୍କ୍ରମଣ ହୋଇଥାଏ, ତା'ର ନିବୃତ୍ତିରେ ଜୀବ ଓ ବ୍ରହ୍ମର ଏକତ୍ୱ ଜନିତ ତତ୍ତ୍ୱଜ୍ଞାନ ଦୃଢ଼ ହୋଇଥାଏ; ଫଳରେ ତା'ର ମୁକ୍ତି ସମ୍ଭବ ହୁଏ ।

ଉପନିଷଦ୍ ବା ବେଦାନ୍ତରେ ବ୍ରହ୍ମଙ୍କର ଦୁଇଟି ସ୍ୱଭାବର ବର୍ଣ୍ଣନା ରହିଛି. ଯଥା – ନିର୍ବିଶେଷ ବା ନିର୍ଗୁଣ ସ୍ୱଭାବ, ଅନ୍ୟଟି ସବିଶେଷ ବା ସଗୁଣ ସ୍ୱଭାବ । ସଗୁଣ ସବିଶେଷ ବ୍ରହ୍ମଙ୍କୁ ଜଗତ୍‌ର ସୃଷ୍ଟି, ସ୍ଥିତି, ଲୟର କାରଣ,—ପ୍ରଭୁ, ସର୍ବଜ୍ଞ, ସର୍ବେଶ୍ୱର, ଅନ୍ତର୍ଯ୍ୟାମୀ ଓ ପରମ ପୁରୁଷ ବୋଲି କୁହାଯାଏ । ତାଙ୍କୁ ପାଦ ପାଣି, ଚକ୍ଷୁ କର୍ଣ୍ଣ ବିହୀନ, ଅପାପବିଦ୍ଧ, ଜରାମୃତ୍ୟୁର ଅତୀତ, କ୍ଷୁଧାତୃଷ୍ଣାଶୂନ୍ୟ ଓ ସତ୍ୟସ୍ୱରୂପ ଈଶ୍ୱର ବା ମହେଶ୍ୱର ବୋଲି କୁହାଯାଏ ।

ବେଦରେ ନିର୍ଗୁଣ ଓ ସଗୁଣ ବ୍ରହ୍ମଙ୍କର ବର୍ଣ୍ଣନା ରହିଛି । ଶଙ୍କରଙ୍କ ମତରେ ସଗୁଣ ବ୍ରହ୍ମ ମାୟାର ବିଜୃମ୍ଭଣ ହୋଇଥିବାରୁ ତାଙ୍କର ପାରମାର୍ଥିକ ସତ୍ତା ସ୍ୱୀକୃତ ନୁହେଁ । ମାୟା ଦ୍ୱାରା ଉପାଧିଗ୍ରସ୍ତ ହୋଇ ବ୍ରହ୍ମ ଈଶ୍ୱର ରୂପେ ପ୍ରତୀତ ହେବାପରି ଅବିଦ୍ୟାଜନିତ ଉପାଧି ହେତୁ ଜୀବରୂପେ ପ୍ରତୀତ ହୁଅନ୍ତି । ଉପାଧି ଲିପ୍ତ ଈଶ୍ୱର ଓ ଜୀବ ଉପାଧି ଶୂନ୍ୟ ହେଲେ ସଚ୍ଚିଦାନନ୍ଦ ବ୍ରହ୍ମସ୍ୱରୂପ ହୋଇଯା'ନ୍ତି । ଶକ୍ତି ଓ ଶକ୍ତିମାନ୍ [ଅଗ୍ନି ଓ ତା'ର ଦାହିକା ଶକ୍ତିପରି] ଅଭିନ୍ନ ହୋଇ ଥିବାରୁ ମାୟା ଓ ବ୍ରହ୍ମ ଅଭିନ୍ନ । ବ୍ରହ୍ମସୂତ୍ର, ବୃହଦାରଣ୍ୟକ, ତୈତ୍ତିରୀୟ ଆଦି ଉପନିଷଦ୍‌ରେ ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ ଓ ତଟସ୍ଥ ଲକ୍ଷଣ ବର୍ଣ୍ଣିତ ହୋଇଛି । ମାୟା ଶକ୍ତିର ପ୍ରକାଶ ହେତୁ ବ୍ରହ୍ମଠାରେ ଜଗତ୍ ଭ୍ରମହୁଏ । (ରଜ୍ଜୁରେ ସର୍ପ ଭ୍ରମ ହେବା ପରି) କିନ୍ତୁ ବ୍ରହ୍ମଙ୍କର ନିଜସ୍ୱରୂପ ଅକ୍ଷୁଣ୍ଣ ଥାଏ । ଜୀବରେ ବ୍ରହ୍ମଜ୍ଞାନ ହେଲେ ବ୍ରହ୍ମଠାରେ ଜଗତ୍ ଭ୍ରମ ଅପସାରିତ ହୁଏ । ଅଦ୍ୱୈତବାଦୀମାନେ ସୋଽହଂ, ଅହଂ ବ୍ରହ୍ମାସ୍ମି, ତତ୍ତ୍ୱମସି : ଏହି ଭାବରେ ଉପାସନା କରିଥା'ନ୍ତି ।

ବେଦାନ୍ତର ଶ୍ରୀଭାଷ୍ୟକାର ରାମାନୁଜାଚାର୍ଯ୍ୟ . ବିଶିଷ୍ଟାଦ୍ୱୈତମତର ପ୍ରବର୍ତ୍ତକ । ସେ ତାଙ୍କର ଭାଷ୍ୟରେ ଶଙ୍କରଙ୍କର ନିର୍ଗୁଣ ବ୍ରହ୍ମଙ୍କୁ ସ୍ୱୀକାର

କରନ୍ତି ନାହିଁ । ତାଙ୍କ ମତରେ ସଗୁଣ ବ୍ରହ୍ମହିଁ ପ୍ରତିପାଦ୍ୟ ଓ ପ୍ରାମାଣିକ, ଯେ କି ସର୍ବ ପ୍ରକାର ଦୋଷ ରହିତ ଓ କଲ୍ୟାଣମୟ । ତାଙ୍କର ବ୍ରହ୍ମ ମାୟା ବିଶିଷ୍ଟ; କିନ୍ତୁ ଏ ମାୟା ଅବିଦ୍ୟା ବା ଅଜ୍ଞାନ ନୁହେଁ (ଶଙ୍କରଙ୍କ ମାୟାପରି); ଏହା ଅନାଦି ଓ ଅନନ୍ତମୟ, ତ୍ରିଗୁଣାତ୍ମିକା ସୃଷ୍ଟିକର୍ତ୍ତ୍ରୀ ପ୍ରକୃତି । ରାମାନୁଜ ବ୍ରହ୍ମଙ୍କର ତିନୋଟି ଭାବ ସ୍ୱୀକାର କରନ୍ତି, ଯଥା— ପରମେଶ୍ୱର, ପୁରୁଷ ଓ ପ୍ରକୃତି ଅଥବା ଈଶ୍ୱର, ଜୀବ ବା ଚିତ୍, ଜଡ଼ ବା ଅଚିତ୍ (ପ୍ରକୃତି) । ସ୍ୱତନ୍ତ୍ର ପଦାର୍ଥ ପ୍ରକୃତି ଓ ପୁରୁଷ ଈଶ୍ୱରଙ୍କର ଅଧୀନ । ପ୍ରକୃତି ଓ ପୁରୁଷ ତାଙ୍କର ଶରୀର ଏବଂ ଈଶ୍ୱର ଉଭୟଙ୍କ-ଠାରେ ଅନ୍ତର୍ଯ୍ୟାମୀ ରୂପରେ ଅବସ୍ଥିତ । ରାମାନୁଜ ପରଂବ୍ରହ୍ମଙ୍କର ଦୁଇଟି ଅବସ୍ଥା ସ୍ୱୀକାର କରନ୍ତି, କାରଣାବସ୍ଥା ଓ କାର୍ଯ୍ୟାବସ୍ଥା । କାରଣାବସ୍ଥାରେ ପ୍ରକୃତି ଓ ପୁରୁଷ ସୂକ୍ଷ୍ମଭାବରେ ତାଙ୍କର ଶରୀର ହୋଇଥା'ନ୍ତି । କାର୍ଯ୍ୟାବସ୍ଥାରେ ସ୍ଥୂଳଭାବ ଲାଭ କରିଥିବା ସେଇ ପ୍ରକୃତି ଓ ପୁରୁଷ ମଧ୍ୟ ତାଙ୍କର ଶରୀର ହୋଇଥା'ନ୍ତି । ତେଣୁ ଈଶ୍ୱର ସମସ୍ତଙ୍କର ଆତ୍ମା ରୂପରେ ଅବସ୍ଥିତ । ପ୍ରକୃତି ଓ ପୁରୁଷ ବ୍ରହ୍ମଙ୍କର ଶରୀର ସ୍ଥାନୀୟ ହୋଇଥିବାରୁ ତାହା ଅସତ୍ ବା ମିଥ୍ୟା ନୁହେଁ, ସତ୍ ।

ପୁଣି ରାମାନୁଜଙ୍କ ମତରେ ଜୀବ ଓ ବ୍ରହ୍ମ ସ୍ୱତନ୍ତ୍ର ବସ୍ତୁ; ଜୀବ ବ୍ରହ୍ମଙ୍କର ବିଭୂତି ବା ଅଂଶ । ଜୀବ ବ୍ରହ୍ମଙ୍କର ଶରୀର ହୋଇଥିବାରୁ ସେ ବ୍ରହ୍ମାତ୍ମକ, ନିତ୍ୟ ଓ ଜନ୍ମମୃତ୍ୟୁର ଅତୀତ । ଜୀବର ବହୁଳତା ଓ ପ୍ରତ୍ୟେକ ଶରୀରରେ ଏହାର ବିଭିନ୍ନତା ସ୍ୱୀକାର କରାଯାଏ । ଈଶ୍ୱରଙ୍କୁ ଲାଭ କରିବା ଜୀବର ପରମ ପୁରୁଷାର୍ଥ । ରାମାନୁଜଙ୍କ ଦୃଷ୍ଟିରେ ଈଶ୍ୱର ପରମ କରୁଣାମୟ ଓ ଭକ୍ତଗ୍ରାହୀ ହୋଇଥିବାରୁ ତାଙ୍କୁ ଲାଭ କରିବାର ଏକମାତ୍ର ଉପାୟ ହେଉଛି ଅନନ୍ୟ ଭକ୍ତି । ମୁକ୍ତ ଅବସ୍ଥାରେ ସେ ବ୍ରହ୍ମଙ୍କର ସ୍ୱଭାବ ଓ ଗୁଣର ଅଧିକାରୀ ହୁଏ ।

ଦ୍ୱୈତବାଦୀ ମଧ୍ୱଙ୍କ ମତରେ ଜୀବ ଓ ଜଗତ୍ ଭଗବାନଙ୍କ ଦ୍ୱାରା ସୃଷ୍ଟ ହେଲେ ମଧ୍ୟ ତାଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ ଅଥଚ ତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଓ ଅଧୀନ । କେବଳ ତୁଳନା ବା ଉପମା ଦୃଷ୍ଟିରୁ ଜୀବ ଓ ଜଗତ୍‌କୁ ଭଗବାନଙ୍କର ଅଂଶ ବୋଲି କୁହାଯାଏ ।

ଶଙ୍କର ଜୀବ ଓ ବ୍ରହ୍ମଙ୍କ ମଧ୍ୟରେ ଅଭେଦତ୍ୱ ଏବଂ ରାମାନୁଜ ଓ ମଧ୍ୱ ଭେଦତ୍ୱ ସ୍ୱୀକାର କରନ୍ତି; କିନ୍ତୁ ଦ୍ୱୈତାଦ୍ୱୈତ ମୀମାଂସା ବା ଅଚିନ୍ତ୍ୟ ଭେଦାଭେଦବାଦୀ ନିମ୍ବାର୍କ ଜୀବ ଓ ବ୍ରହ୍ମଙ୍କର ଭେଦତ୍ୱ ଓ ଅଭେଦତ୍ୱ ଉଭୟ ସ୍ୱୀକାର କରନ୍ତି । ସେ ଜୀବ ଓ ଜଗତକୁ ଭଗବାନଙ୍କର ଶକ୍ତି ଏବଂ ଶକ୍ତି ଓ ଶକ୍ତିମାନ୍ ଏକ ହୋଇନଥିବାରୁ ସେଠାରେ ଦ୍ୱୈତଭାବ ସ୍ୱୀକାର କରିଛନ୍ତି; ପୁଣି ଶକ୍ତିମାନ୍ ଛଡ଼ା ଶକ୍ତିର କୌଣସି ସତ୍ତା ବା ଅସ୍ତିତ୍ୱ ନଥିବାରୁ ସେଠାରେ ଅଦ୍ୱୈତଭାବ ସ୍ୱୀକାର କରିଯାଇଛି । ଶକ୍ତିମାନଙ୍କର ଏ ସମ୍ପର୍କ ସାଧକ ପକ୍ଷରେ ଚିନ୍ତାର ଅତୀତ ହୋଇଥିବାରୁ ନିମ୍ବାର୍କଙ୍କର ଏ ମତକୁ ଅଚିନ୍ତ୍ୟ ଭେଦାଭେଦବାଦ କୁହାଯାଏ । ନିମ୍ବାର୍କଙ୍କ ମତରେ ରାଧା ଓ କୃଷ୍ଣଙ୍କ ପ୍ରତି ଅହୈତୁକ ଭକ୍ତି ତଥା ପ୍ରୀତି ହେଉଛି ଭଗବତ୍ ପ୍ରାପ୍ତିର ଏକମାତ୍ର ଉପାୟ ।

ପୁଷ୍ଟିମାର୍ଗର ପ୍ରବର୍ତ୍ତକ ବଲ୍ଲଭାଚାର୍ଯ୍ୟ ବ୍ରହ୍ମସୂତ୍ର ଭାଷ୍ୟରେ ନିଜର ସ୍ୱତନ୍ତ୍ର ମତ ପ୍ରଦାନ କଲେ ମଧ୍ୟ ଭକ୍ତିର ଗୁରୁତ୍ୱ ସ୍ୱୀକାର କରିଛନ୍ତି ।

ସାଙ୍ଖ୍ୟଦର୍ଶନ ପ୍ରବର୍ତ୍ତକ କପିଳ ନିରୀଶ୍ୱରବାଦୀ ହେଲେ ମଧ୍ୟ ଏ ଦର୍ଶନରେ ପୁରୁଷ ପ୍ରକୃତି ତତ୍ତ୍ୱ ସର୍ବକାଳ ଧରି ଆର୍ଯ୍ୟ ଜୀବନକୁ ପ୍ରଭାବିତ କରିଆସିଛି । ହିନ୍ଦୁ ସମାଜ, ହିନ୍ଦୁ ଦର୍ଶନ ଓ ବର୍ଣ୍ଣାଶ୍ରମ ଧର୍ମ ପ୍ରଭୃତି ଏହି ମତ ଉପରେ ପ୍ରତିଷ୍ଠିତ । ପୁରାଣ, ଇତିହାସ ଓ ଧର୍ମସଂହିତାମାନଙ୍କରେ ସାଙ୍ଖ୍ୟତତ୍ତ୍ୱ ଆଲୋଚିତ ହୋଇ ଆମର ଧର୍ମକର୍ମକୁ ଶୃଙ୍ଖଳିତ କରି ଆସିଛି । ଶ୍ରୀଗୀତାର ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ଏହି ସାଙ୍ଖ୍ୟତତ୍ତ୍ୱର ଚମତ୍କାର ବର୍ଣ୍ଣନା ହୋଇଛି ।

ସାଙ୍ଖ୍ୟମତାନୁଯାୟୀ ପ୍ରକୃତି ଜଗତର ମୂଳ ଉପାଦାନ । ଜଗତର ଯାବତୀୟ ପ୍ରାକୃତିକ ତଥା ମାନସିକ ଘଟଣା ପ୍ରକୃତିର କାର୍ଯ୍ୟ । ଏହି ମତାନୁଯାୟୀ ଜଗତର ସୃଷ୍ଟିକ୍ରିୟା ସମ୍ପର୍କରେ ପୁରୁଷ ସଚେତନ ଓ ଜ୍ଞାତା-ନିର୍ଗୁଣ ହୋଇଥିବାରୁ ସର୍ଜନର ସାମର୍ଥ୍ୟ ତାଙ୍କଠାରେ ନାହିଁ ।

ପକ୍ଷାନ୍ତରେ ପ୍ରକୃତି ସର୍ଜନ ବା କର୍ମକର୍ତ୍ରୀ ହେଲେହେଁ ଜଡ଼ତା ହେତୁ କର୍ମର କୌଶଳ ସମ୍ପର୍କରେ ଅଜ୍ଞାତ । ପ୍ରକୃତି, ଜଡ଼ ଓ ଅଚେତନ, ପୁରୁଷ ଅକର୍ତ୍ତା ହେଲେହେଁ ଚେତନ । ସୃଷ୍ଟିର ପ୍ରତ୍ୟେକ କାର୍ଯ୍ୟ ଚେତନ ପୁରୁଷ ଓ ଜଡ଼ ପ୍ରକୃତିର ମିଳନରେ ସମ୍ପାଦିତ ହୁଏ । ସୃଷ୍ଟି-କାଳରେ ପ୍ରକୃତି ଓ ପୁରୁଷ ପରସ୍ପର ସଂଯୁକ୍ତ ଥିବାରୁ ଜଡ଼ ପ୍ରକୃତିରେ ଚୈତନ୍ୟର ଆଭାସ ହୁଏ ଏବଂ ଅକର୍ତ୍ତା ହୋଇ ମଧ୍ୟ ପୁରୁଷଠାରେ କର୍ତ୍ତୃତ୍ୱର ଭ୍ରାନ୍ତି ହୁଏ ।

ସାଙ୍ଖ୍ୟମତରେ ପ୍ରକୃତି ଏକ, ପୁରୁଷ ଅନେକ । ପ୍ରତ୍ୟେକ ପୁରୁଷ ବିଶ୍ୱବ୍ୟାପୀ । ପୁରୁଷର ଭୋଗ ଓ ମୁକ୍ତିସାଧନ ହେଲା ସୃଷ୍ଟିର ଉଦ୍ଦେଶ୍ୟ । ଯେତେବେଳେ ତ୍ରିଗୁଣାତ୍ମିକା ପ୍ରକୃତିଠାରୁ ପୁରୁଷର ପାର୍ଥକ୍ୟ ଜ୍ଞାନ ହୁଏ, ସେତେବେଳେ ତା'ର ମୁକ୍ତି ହୋଇଥାଏ । ତ୍ରିବିଧ ତାପ ବା ଦୁଃଖରୁ (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ) ନିବୃତ୍ତି ଲାଭ କରିବା ହେଉଛି ପୁରୁଷାର୍ଥ ଏବଂ ଜ୍ଞାନଦ୍ୱାରା ଏହା ସମ୍ଭବ ହୋଇଥାଏ । ଏହା ଦ୍ୱୈତ ଜ୍ଞାନ ବିଷୟକ । ଏ ଜ୍ଞାନ ଉପନିଷଦ୍‌ର ଏକ ବ୍ରହ୍ମ ବିଷୟକ ଜ୍ଞାନଠାରୁ (ଅଦ୍ୱୈତ ଜ୍ଞାନ) ପୃଥକ୍ । ଏହି ଜ୍ଞାନ ହେଲା ପଞ୍ଚବିଂଶତି ତତ୍ତ୍ୱ, ପ୍ରକୃତି ଓ ପୁରୁଷର ପାର୍ଥକ୍ୟ, ସୃଷ୍ଟି ସହିତ ଆତ୍ମାର ସମ୍ବନ୍ଧ ଜ୍ଞାନ । ପଞ୍ଚବିଂଶତି ତତ୍ତ୍ୱ ହେଲା : ମହତ୍ ତତ୍ତ୍ୱ (ବୁଦ୍ଧି ତତ୍ତ୍ୱ), ଅହଂକାର ତତ୍ତ୍ୱ, ମନ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚ ତନ୍ମାତ୍ର ଓ ପଞ୍ଚ ସ୍ଥୂଳ ଭୂତ, ମୂଳ ପ୍ରକୃତି ଓ ପୁରୁଷ [୩୮] ।

ସ୍ୱରୂପତଃ ପ୍ରକୃତି ହେଉଛି ନିତ୍ୟ, ଅବ୍ୟକ୍ତ, ଅନାଦି ଓ ଅବୟବ ଶୂନ୍ୟ । ସୃଷ୍ଟି ପୂର୍ବରୁ ମୂଳ ଅବ୍ୟକ୍ତ ପ୍ରକୃତିଠାରେ ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣର ସାମ୍ୟାବସ୍ଥା ଥାଏ । ଗୁଣ ତିନୋଟି ପରସ୍ପର

---

[୩୮] ସୃଷ୍ଟି ଯେତେବେଳେ ଆରମ୍ଭ ହୁଏ, ପ୍ରକୃତିର ସାମ୍ୟାବସ୍ଥା ଦୂରହୁଏ । ସେତେବେଳେ ସେ ମହତ୍ ତତ୍ତ୍ୱରେ (ବୁଦ୍ଧି ତତ୍ତ୍ୱ) ରୂପାନ୍ତରିତ ହୁଏ । ମହତ୍ ତତ୍ତ୍ୱ ଅହଂକାର ତତ୍ତ୍ୱରେ ପରିଣତ ହୁଏ । ଅହଂକାର ତତ୍ତ୍ୱର ପରିଣତି ପଞ୍ଚ ଜ୍ଞାନେନ୍ଦ୍ରିୟ (ଚକ୍ଷୁ,

ବିରୋଧୀ ହୋଇଥିବାରୁ ସୃଷ୍ଟି କ୍ରିୟା ଆରମ୍ଭରେ ଏମାନଙ୍କର ସାମ୍ୟାବସ୍ଥା ରହେ ନାହିଁ । ଏହି ତିନିଗୁଣର ନ୍ୟୂନତା ବା ଆଧିକ୍ୟ ଫଳରେ ଜୀବ, ଜଡ଼ ଓ ମନୋଜଗତ୍‌ର ସୃଷ୍ଟି, ସ୍ଥିତି, ଲୟ କାର୍ଯ୍ୟ ଚାଲେ । ସତ୍ତ୍ୱଗୁଣର ଧର୍ମ ହେଲା ପ୍ରକାଶ ବା ଜ୍ଞାନ, ରଜୋଗୁଣର ବିକ୍ଷେପ ଓ ତମ ର ଧର୍ମ ଆବରଣାତ୍ମିକା [ଅପ୍ରକାଶ ବା ମୋହ] । ପ୍ରତ୍ୟେକ ବ୍ୟକ୍ତିଠାରେ ତିନିଗୁଣ ରହିଥିଲେ ମଧ୍ୟ ନିଜ ନିଜର ସ୍ୱଭାବ ଅନୁଯାୟୀ କୌଣସି କୌଣସି ଗୁଣର ଆଧିକ୍ୟ ବା ନ୍ୟୂନତା ତା ଠାରେ ଥାଏ । ରଜ ଓ ତମଗୁଣ ଅବଦମିତ ହୋଇ ମନୁଷ୍ୟଠାରେ ସତ୍ତ୍ୱଗୁଣର ଆଧିକ୍ୟ ପ୍ରକାଶ ପାଇଲେ ସେ ସ୍ୱଭାବତଃ ଜ୍ଞାନୀ ଓ ଧାର୍ମିକ ହୋଇଥାଏ । ମନୁଷ୍ୟ ତ୍ରିଗୁଣାତୀତ ହେଲେ [ନିସ୍ତ୍ରୈଗୁଣ୍ୟ] ମୁକ୍ତ ବା ମୋକ୍ଷର ଅଧିକାରୀ ହୋଇଥାଏ ।

ମୁକ୍ତିଲାଭ କରିବାକୁ ହେଲେ ଆତ୍ମଜ୍ଞାନ, ଆତ୍ମଚିନ୍ତା ପ୍ରୟୋଜନ । ଆତ୍ମଚିନ୍ତା ମନର ବ୍ୟାପାର ହୋଇଥିବାରୁ ଚଞ୍ଚଳ ମନରେ ଏହା ସମ୍ଭବପର ନୁହେଁ । ଚଞ୍ଚଳ ବା ବିକ୍ଷିପ୍ତ ମନକୁ ସ୍ଥିର କରି କୌଣସି ଧ୍ୟେୟ ବସ୍ତୁରେ ଅବିଚଳିତ ଭାବରେ ସଂଲଗ୍ନ ରଖିବାକୁ ହେବ; ସେ ବିଷୟ ପାତଞ୍ଜଳ-ଯୋଗ-ଦର୍ଶନରେ ଆଲୋଚିତ ହୋଇଛି । ଏହି ଯୋଗ ଦର୍ଶନର ଅନ୍ୟ ନାମ ହେଉଛି ସମାଧି ଯୋଗ, ରାଜ ଯୋଗ, ଅଷ୍ଟାଙ୍ଗଯୋଗ ।

ପତଞ୍ଜଳିଙ୍କ ମତରେ ପ୍ରକୃତି ଓ ପୁରୁଷର ମିଳନ ହେତୁ ସଂସାରରେ ଦୁଃଖର ତରଙ୍ଗ ଖେଳିଯାଏ । ପ୍ରକୃତି ଓ ପୁରୁଷଙ୍କ

---

କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍), ପଞ୍ଚ କର୍ମେନ୍ଦ୍ରିୟ (ହସ୍ତ, ପଦ, ବାକ୍, ପାୟୁ, ଉପସ୍ଥ) ଓ ମନ । ପରବର୍ତ୍ତୀ ଅବସ୍ଥାରେ ଏହି ଅହଂକାର ତତ୍ତ୍ୱରୁ ପଞ୍ଚତନ୍ମାତ୍ର [ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ], ପଞ୍ଚତନ୍ମାତ୍ରରୁ ପଞ୍ଚ ସ୍ଥୂଳ ଭୂତର (କ୍ଷିତି, ଅପ, ତେଜ, ମରୁତ୍, ବ୍ୟୋମ) ସୃଷ୍ଟି ହୁଏ । ସ୍ଥୂଳଭୂତର ପରିଣାମ ହେଉଛି ଚରାଚର ଜଗତ୍ ।

ସମ୍ପର୍କରେ ଭେଦଜ୍ଞାନ ଦୃଢ଼ ହେଲେ ଜୀବ ମୁକ୍ତିର ଅଧିକାରୀ ହୁଏ । ଯୋଗ ହେତୁ ଏହି ଭେଦଜ୍ଞାନର ଦୃଢ଼ତା ଆସେ । ଏହି ଯୋଗ ହେଉଛି ଚିତ୍ତବୃତ୍ତି ନିରୋଧ [ଯୋଗଶ୍ଚିତ୍ତବୃତ୍ତି ନିରୋଧଃ] । ଏହାଦ୍ୱାରା ସାଧକ ଚିତ୍ତରେ ଏକାଗ୍ରତା ଆସେ । ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଅସଂଯତ ଚିତ୍ତ ସଂଯତ ହୋଇ ଶେଷରେ ସମାଧି ଅବସ୍ଥା ଆସେ । ସାଧକର ସ୍ୱାଧ୍ୟାୟ, କର୍ତ୍ତୃତ୍ୱାଭିମାନ ତ୍ୟାଗ ଓ ଈଶ୍ୱରଙ୍କଠାରେ କର୍ମଫଳ ସମର୍ପଣ ହେତୁ ଈଶ୍ୱର କୃପା ହେତୁ ସମାଧିରେ ସିଦ୍ଧିଲାଭ ଓ ଜୀବର ମୁକ୍ତି ସମ୍ଭବ ହୁଏ ।

ଯୋଗଶାସ୍ତ୍ରରେ ଚିତ୍ତବୃତ୍ତି ନିରୋଧ ପାଇଁ ଅନ୍ୟ ଯେଉଁ ଉପାୟ ନିର୍ଦ୍ଦିଷ୍ଟ ହୋଇଛି, ତାହାକୁ ଅଷ୍ଟାଙ୍ଗଯୋଗ କୁହାଯାଏ, ସେଗୁଡ଼ିକ ହେଉଛି—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର (ବିଷୟରୁ ଇନ୍ଦ୍ରିୟ ପ୍ରତ୍ୟାକର୍ଷଣ), ଧାରଣା, ଧ୍ୟାନ ଓ ସମାଧି । ଅହିଂସା, ସତ୍ୟ, ଅସ୍ତେୟ (ଅଚୌର୍ଯ୍ୟ), ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ : ଏହି ପାଞ୍ଚଟି 'ଯମ'ର ଅନ୍ତର୍ଭୁକ୍ତ । ଶୌଚ, ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ [ଯୋଗଶାସ୍ତ୍ର ଅଧ୍ୟୟନ] ଓ ଈଶ୍ୱର ପ୍ରଣିଧାନ ନିୟମର ଅନ୍ତର୍ଭୁକ୍ତ । ସମାଧି ହେଉଛି ଧ୍ୟାନର ପରିପକ୍ୱ (ଚୂଡ଼ାନ୍ତ) ଅବସ୍ଥା ।

ସାଙ୍ଖ୍ୟଦର୍ଶନ ସହ ଏହି ଯୋଗ ଦର୍ଶନର ବହୁ ସାମଞ୍ଜସ୍ୟ ରହିଛି । ଏଥିରେ ସାଙ୍ଖ୍ୟର ପଞ୍ଚବିଂଶତି ତତ୍ତ୍ୱର ସ୍ୱୀକୃତି ସହ ଈଶ୍ୱର-ତତ୍ତ୍ୱ ଯୋଗ କରାଯାଇ ଏହାକୁ ଷଡ଼୍‌ବିଂଶତି ତତ୍ତ୍ୱ ବିଶିଷ୍ଟ କରାଯାଇଛି । ପତଞ୍ଜଳିଙ୍କ ମତରେ ଈଶ୍ୱର ସର୍ବଜ୍ଞ ପୁରୁଷ ବିଶେଷ । ସାଧାରଣ ପୁରୁଷ ପରି ତାଙ୍କୁ ସାଂସାରିକ କର୍ମ, କ୍ଳେଶ ଓ ବିପାକ ଭୋଗିବାକୁ ପଡ଼େନାହିଁ ।

ବୈଦିକ ଧର୍ମର ପ୍ରଥମ ଯୁଗ ହେଉଛି କର୍ମକାଣ୍ଡ ଯୁଗ, ତାପରେ ଆରମ୍ଭ ହୁଏ ଜ୍ଞାନକାଣ୍ଡ ଯୁଗ । ଉପନିଷଦ୍ ଓ ସାଙ୍ଖ୍ୟ ଦର୍ଶନ ଜ୍ଞାନ-ମୂଳକ ହେଲେ ମଧ୍ୟ ଉଭୟର ଜ୍ଞାନ-ବିଚାରରେ ପାର୍ଥକ୍ୟ ରହିଛି ।

ଉପନିଷଦ୍ ଅଦ୍ୱୈତ ବ୍ରହ୍ମଜ୍ଞାନମୂଳକ, ଏବଂ ସାଙ୍ଖ୍ୟଦର୍ଶନ ଦ୍ୱୈତ-ଜ୍ଞାନମୂଳକ । ଉଭୟେ ଯଜ୍ଞାଦି କର୍ମମାର୍ଗର ବିରୋଧୀ ଥିବାରୁ ଜ୍ଞାନୀ ପକ୍ଷରେ କର୍ମର ଆବଶ୍ୟକତା ସେମାନେ ଉପଲବ୍ଧି କରି ନାହାନ୍ତି, ତେଣୁ କର୍ମଜ୍ଞାନର ବିରୋଧୀ ବୋଲି ସେମାନେ ପ୍ରଚାର କରିଛନ୍ତି । କିନ୍ତୁ ଈଶାବାସ୍ୟ ପ୍ରଭୃତି ଅନ୍ୟ ଉପନିଷଦ୍ ଜ୍ଞାନ-ସିଦ୍ଧି ପରେ ମଧ୍ୟ ନିଷ୍କାମ ବୁଦ୍ଧିରେ କର୍ମସମ୍ପାଦନ କରିବା ଉପରେ ଗୁରୁତ୍ୱ ଦେଇଛନ୍ତି ।

ପରେ ପରେ ବ୍ରହ୍ମଜ୍ଞାନ ଲାଭ ନିମିତ୍ତ ସଗୁଣ ପ୍ରତୀକର ଆବଶ୍ୟକତା ଛାନ୍ଦୋଗ୍ୟାଦି ଉପନିଷଦ୍ ଉପଲବ୍ଧି କରିଛନ୍ତି, କାରଣ ବ୍ରହ୍ମୋପଲବ୍ଧି ବିଷୟରେ ପ୍ରଥମତଃ ଚିତ୍ତରେ ବ୍ରହ୍ମଚିନ୍ତନ, ମନନ ଆବଶ୍ୟକ ଏବଂ ଏହା କେବଳ ସମ୍ଭବ ହୋଇଥାଏ ଚିତ୍ତର ଏକାଗ୍ରତା ଫଳରେ । ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମଙ୍କର କୌଣସି ସଗୁଣ ପ୍ରତୀକ ଦୃଷ୍ଟି ସମକ୍ଷରେ ରଖି ଚିତ୍ତକୁ ସ୍ଥିର ରଖିବାର ଉପାୟ ଚିନ୍ତାକରାଯାଇଛି (ଯେପରି ସୂର୍ଯ୍ୟଙ୍କୁ ବ୍ରହ୍ମଙ୍କର ପ୍ରତୀକ ମନେକରାଯାଇଛି) । ଫଳରେ ଉପନିଷଦ୍‌ରୁ ପ୍ରତୀକ ଉପାସନାର ସଙ୍କେତ ମିଳିବା ସଙ୍ଗେ ସଙ୍ଗେ ଚିତ୍ତର ଏକାଗ୍ରତା ଆନୟନ ସମ୍ପର୍କରେ ଚିତ୍ତବୃତ୍ତିନିରୋଧରୂପକ ଯୋଗ ବୋଲି ଗୋଟିଏ ସ୍ୱତନ୍ତ୍ର ମାର୍ଗର ଉତ୍‌ଥାନ ହୋଇଛି ।

କିନ୍ତୁ ପ୍ରତୀକ ଉପାସନାଦ୍ୱାରା ଯୋଗମାର୍ଗରେ ଚିତ୍ତର ଏକାଗ୍ରତା ଆନୟନ ଓ ନିର୍ଗୁଣ ବ୍ରହ୍ମଙ୍କର ଧାରଣା ସାଧାରଣ ଲୋକଙ୍କ ପକ୍ଷରେ ସମ୍ଭବ ନୁହେଁ । ଏପରି ବହୁଲୋକ ଅଛନ୍ତି ଯେଉଁମାନେ ଜ୍ଞାନ ଓ ଯୋଗ ପଥରେ ପରମ ସତ୍ୟର ଚିନ୍ତନ ନ କଲେ ମଧ୍ୟ ବିଶ୍ୱ ସୃଷ୍ଟିମୂଳରେ ସର୍ବଶକ୍ତିମାନ୍ ସର୍ବବ୍ୟାପୀ ଏକ ପରମ ସତ୍ୟ ସମ୍ପର୍କରେ ଦୃଢ଼ ବିଶ୍ୱାସ ସ୍ଥାପନ କରି ହୃଦୟର ଶ୍ରଦ୍ଧା ଓ ଅନୁରାଗରେ ତାଙ୍କର ଉପାସନା କରନ୍ତି । ଏ ପ୍ରକାର ଉପାସକ ମାନଙ୍କର ଆପ୍ତବଚନରେ ଥାଏ ଗଭୀର ବିଶ୍ୱାସ । ଏମାନେ ସେଇ ପରମତତ୍ତ୍ୱର ସଗୁଣ ସାକାର ରୂପକୁ ଧ୍ୟାନ-କରି ତାଙ୍କପ୍ରତି ହୃଦୟର ଐକାନ୍ତିକ ତଥା ଅହୈତୁକୀ ଅନୁରାଗ ପ୍ରକାଶ କରିଥାନ୍ତି । ସେମାନଂକ ଦୃଷ୍ଟିରେ ଯେଉଁ ପରମ ତତ୍ତ୍ୱ (ସତ୍ୟ)

ହେଉଛନ୍ତି ଈଶ୍ୱର । ଈଶ୍ୱରଙ୍କ ପ୍ରତି ସେମାନଙ୍କର ପରାନୁରକ୍ତି (୩୯) ହେଉଛି ଭକ୍ତି, ଯା'ର ଅନ୍ୟନାମ ହେଉଛି ପ୍ରେମ । ଏହି ଉପାସନା ହେଉଛି ଭକ୍ତିମାର୍ଗର ଉପାସନା । ଚିତ୍ତକୁ ସ୍ଥିର ରଖିବା ନିମିତ୍ତ ଏ ମାର୍ଗରେ ସେଥିପାଇଁ ରାମ, କୃଷ୍ଣ, ଶିବ, ଦୁର୍ଗା ପ୍ରଭୃତି ଉପାସ୍ୟ ଉପାସ୍ୟାଙ୍କର ସାକାର ମୂର୍ତ୍ତିର କଳ୍ପନା କରାଯାଇ ପୂଜା ଉପାସନାର ପ୍ରବର୍ତ୍ତନ କରାଯାଇଛି ।

ଜ୍ଞାନମାର୍ଗରୁ ଯୋଗ ଓ ଭକ୍ତି ଏହି ଉଭୟ ମାର୍ଗ ଉଦ୍ଭୂତ ହୋଇ ଏକ ଏକ ସ୍ୱତନ୍ତ୍ର ମାର୍ଗରୂପେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଉଭୟ ମାର୍ଗରେ ଜ୍ଞାନର [ବ୍ରହ୍ମଜ୍ଞାନ] ଗୁରୁତ୍ୱ ହ୍ରାସ ହୋଇନାହିଁ ।

ଶ୍ରୀମଦ୍‌ ଭଗବଦ୍‌ଗୀତାରେ ବ୍ରହ୍ମଜ୍ଞାନ ସମ୍ବଳିତ ଉପନିଷଦ୍‌ର କେତେକ ଶ୍ଳୋକ ଗୃହୀତ ହୋଇଥିଲେ ମଧ୍ୟ ଗୀତା-ତତ୍ତ୍ୱ କେବଳ ନିର୍ଗୁଣ ବ୍ରହ୍ମ ବିଷୟକ ନୁହେଁ । ଗୀତାରେ କଥିତ ଯୋଗଧର୍ମ ଏବଂ ମହାଭାରତର ନାରାୟଣୀୟ ଉପାଖ୍ୟାନ (ଶାନ୍ତିପର୍ବ) ସୂଚିତ ଭାଗବତ ଧର୍ମ ଏକା । ଏହି ଉପାଖ୍ୟାନ କଥିତ 'ହରିଗୀତା' ଶ୍ରୀମଦ୍‌ଭଗବଦ୍‌-ଗୀତା ଅର୍ଥରେ ପ୍ରଯୁକ୍ତ ହୋଇଥିବାର ଜଣାଯାଏ ।

ଭାଗବତ ଧର୍ମ ବା ଭକ୍ତି ଧର୍ମ ସମ୍ପର୍କୀୟ ପ୍ରାଚୀନ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଶାଣ୍ଡିଲ୍ୟ ସୂତ୍ର, ଶ୍ରୀମଦ୍‌ଭାଗବତ, ନାରଦ ଭକ୍ତିସୂତ୍ର ପ୍ରଭୃତି ଉଲ୍ଲେଖଯୋଗ୍ୟ । ଜ୍ଞାନମୂଳକ ଉପନିଷଦ୍‌ ଗ୍ରନ୍ଥର ପ୍ରଣୟନ ଓ ପ୍ରଚାର ପରେ ଭକ୍ତିମୂଳକ ଭାଗବତ ଧର୍ମ ଉଦ୍ଭୂତ ହୋଇଥିଲା କହିଲେ ଅଯୁକ୍ତି ହେବନାହିଁ ।

ମହାଭାରତର ନାରାୟଣୀୟ ଉପାଖ୍ୟାନରେ ଭାଗବତଧର୍ମ ସଙ୍ଗେ ଉପନିଷଦ୍‌ କଥିତ ବ୍ରହ୍ମଜ୍ଞାନ ଓ କପିଳଙ୍କ ସାଂଖ୍ୟଜ୍ଞାନର ସମନ୍ୱୟ ହୋଇଥିବା ପରି ଶ୍ରୀଗୀତାରେ ମଧ୍ୟ ତା'ର କାଳୋପଯୋଗୀ ବିସ୍ତାର କରାଯାଇ ସମନ୍ୱୟର ପ୍ରଚେଷ୍ଟା ହୋଇଛି ।

---

(୩୯) ସା ପରାନୁରକ୍ତିରୀଶ୍ୱରେ—ଶାଣ୍ଡିଲ୍ୟସୂତ୍ର

ଭାଗବତ ଧର୍ମର ପ୍ରଚାର ପୂର୍ବରୁ ମଧ୍ୟ ଭକ୍ତିତତ୍ତ୍ୱ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ବିଷ୍ଣୁ ଓ ରୁଦ୍ରଙ୍କର ଉପାସନା ପ୍ରବର୍ତ୍ତିତ ହୋଇଥିଲା । ପରେ ସେମାନଙ୍କ ସ୍ଥାନରେ ବାସୁଦେବ ଉପାସ୍ୟ ରୂପେ ପ୍ରତିଷ୍ଠା ଲାଭ କଲେ ମଧ୍ୟ ଯେ କୌଣସି ଦେବତାଙ୍କ ପ୍ରତି ଭକ୍ତି ଯେ ପରଂବ୍ରହ୍ମ ଭଗବାନଙ୍କ ପ୍ରତି ଉଦ୍ଦିଷ୍ଟ, ଏହା ନାରାୟଣୀୟ ଉପାଖ୍ୟାନ ଓ ଶ୍ରୀଗୀତାରୁ (୪୦) ସ୍ପଷ୍ଟ ହୁଏ ।

ଶ୍ରୀ ଗୀତାରେ ସାଙ୍ଖ୍ୟ, କର୍ମ, ଜ୍ଞାନ ଓ ରାଜଯୋଗ [ସମାଧିଯୋଗ] ଆଲୋଚିତ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ କାଳୋପଯୋଗୀ ସମନ୍ୱୟ ବିଧାନ କରାଯାଇ ଯେପରି ଜ୍ଞାନ ଓ ଭକ୍ତିଯୁକ୍ତ ପ୍ରବୃତ୍ତିମୂଳକ ନିଷ୍କାମ କର୍ମଯୋଗ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି, ତାହାହିଁ ଭଗବତ୍ ଶ୍ରୀକୃଷ୍ଣ କଥିତ ଶ୍ରୀଗୀତାର ମୁଖ୍ୟ ତତ୍ତ୍ୱ [୪୧] । ଭାଗବତ-ଧର୍ମମୂଳକ ଗ୍ରନ୍ଥମାନଙ୍କ ମଧ୍ୟରେ ଶ୍ରୀଗୀତା ହେଉଛି ଏକ ପ୍ରଧାନ ଗ୍ରନ୍ଥ ।

ଈଶ୍ୱର ବିଶ୍ୱାସରେ ଉଜ୍ଜ୍ୱଳ ଶ୍ରୀଗୀତା ପରି ଉଦାର ଧର୍ମଗ୍ରନ୍ଥରେ ବେଦର ନିନ୍ଦା କରାଯାଇଛି ବୋଲି କେହି କେହି ମତ ପ୍ରକାଶ କରନ୍ତି; କିନ୍ତୁ ଏହା ଠିକ୍ ନୁହେଁ । ବେଦର ଯେଉଁମାନେ ବିକୃତ ବ୍ୟାଖ୍ୟା କରନ୍ତି, ସେମାନଙ୍କୁ 'ବେଦବାଦରତାଃ' ବୋଲି ଆକ୍ଷେପ କରାଯାଇଛି । ଶ୍ରୀଗୀତାରେ କେବଳ ସକାମ ଯଜ୍ଞକର୍ମ ଓ ତା'ର ଅନୁଷ୍ଠାତାମାନଙ୍କ ପ୍ରତି କଟାକ୍ଷପାତ କରାଯାଇଛି । ଗୀତାରେ ଯେଉଁ ଯଜ୍ଞ; ଦାନ ଓ ତପଃ ସମ୍ପର୍କରେ କୁହାଯାଇଛି, ତାହା ସମ୍ପୂର୍ଣ୍ଣ ନିଷ୍କାମ ।

ଶ୍ରୀମଦ୍ ଭଗବଦ୍ ଗୀତାରେ ଉପନିଷଦ୍‌ମାନଙ୍କର ନିର୍ଯ୍ୟାସ ଲକ୍ଷିତ ହୁଏ । କେତେକ ଶ୍ଳୋକରେ ଉପନିଷଦ୍‌ର ଶ୍ଳୋକ ବା

(୪୦, ଶ୍ରୀମଦ୍‌ଭଗବଦ୍‌ଗୀତା, ୯-୨୩

[୪୧] ମହାଭାରତରେ ଉଲ୍ଲେଖଅଛି ଯେ ଋଷି ନରନାରାୟଣ ଏହି ପ୍ରବୃତ୍ତିମୂଳକ ନିଷ୍କାମକର୍ମ ଅନୁଷ୍ଠାନ କରୁଥିଲେ ।

ଶ୍ଳୋକାଂଶ ପ୍ରାୟ ଅପରିବର୍ତ୍ତିତ ଭାବରେ ବ୍ୟବହୃତ ହୋଇଛି (୪୨)। କିନ୍ତୁ ଶ୍ରୀଗୀତା ଉପନିଷଦ୍‌ମାନଙ୍କର ସଂକ୍ଷିପ୍ତ ସାର ନୁହେଁ। ଏଥିରେ ଉପନିଷଦ୍ ଓ ଦର୍ଶନଶାସ୍ତ୍ରମାନଙ୍କର ତତ୍ତ୍ୱ ଗୃହୀତ ହୋଇଥିଲେହେଁ ସେଗୁଡ଼ିକ କାଳୋପଯୋଗୀ କରାଯାଇ ବାସ୍ତବ ଜୀବନଯାପନ ଦୃଷ୍ଟିରୁ ସେଥିରେ ସ୍ୱକୀୟ ଯୋଗପ୍ରଣାଳୀ ସନ୍ନିବେଶିତ ହୋଇଛି।

ଉପନିଷଦ୍‌ରେ ନିର୍ଦ୍ଦିଷ୍ଟ ନିର୍ଗୁଣ ନିରାକାର ଅବ୍ୟକ୍ତ ତଥା ଅକ୍ଷର ବ୍ରହ୍ମଙ୍କର ସ୍ୱରୂପ ଧ୍ୟାନର ବଳଯ୍ୟକୁ ଆଣି ଉପଲବ୍ଧି କରିବା ଅତୀବ କଠିନ। ମାନବ ପକ୍ଷରେ ଏ ମୁକ୍ତିର ପଥ ଗୀତା ଅସ୍ୱୀକାର କରି ନଥିଲେହେଁ ସଂସାରରେ ନିଷ୍କାମ କର୍ମମୟ ଜୀବନ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି। ଶ୍ରୀଗୀତାର ନିଜସ୍ୱ ପୁରୁଷୋତ୍ତମ ତତ୍ତ୍ୱ ଜଗତର ଲୋକମାନଙ୍କ ପାଇଁ ଏକ କାଳୋପଯୋଗୀ ଆକର୍ଷଣୀୟ ଅବଦାନ। ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ସଗୁଣ ଓ ନିର୍ଗୁଣ : ଏ ଦୁଇ ସ୍ୱରୂପର ଉଲ୍ଲେଖ ଥିଲେ ମଧ୍ୟ ସଗୁଣ ସ୍ୱରୂପ ଗୌଣ। କିନ୍ତୁ ଶ୍ରୀଗୀତାରେ ପୁରୁଷୋତ୍ତମଙ୍କୁ ପରଂବ୍ରହ୍ମ ଭାବରେ ପ୍ରତିପାଦନ କରାଯିବା ସଙ୍ଗେ ସଙ୍ଗେ ତାଙ୍କର ଲୀଳାମୟ ସ୍ୱରୂପର ବର୍ଣ୍ଣନା କରାଯାଇଛି। ଉପନିଷଦ୍ ଓ ବେଦାନ୍ତରେ ପରଂବ୍ରହ୍ମଙ୍କ ନିର୍ଗୁଣତ୍ୱ ଉପରେ ଗୁରୁତ୍ୱ ଅର୍ପିତ ହୋଇଥିବା ସ୍ଥଳେ ପୁରୁଷୋତ୍ତମ ତତ୍ତ୍ୱରେ ପୁରୁଷୋତ୍ତମଙ୍କର ନିର୍ଗୁଣ ଓ ସଗୁଣ ବିଭବ ଉପରେ ତୁଲ୍ୟ ଗୁରୁତ୍ୱ ପ୍ରଦାନ କରାଯାଇଛି। ସେହି ଲୀଳାମୟ ପୁରୁଷୋତ୍ତମ ହିଁ ଭକ୍ତ ସାଧକର ଉପାସ୍ୟ। ଭକ୍ତିବାଦରେ ଉଜ୍ଜ୍ୱଳ

---

(୪୨) କଠୋପନିଷଦ୍‌ର 'ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍ନାୟଂ' ଶ୍ଳୋକ ଶ୍ରୀ ଗୀତାର ଶ୍ଳୋକ (୨।୨୦) 'ନ ଜାୟତେ ମ୍ରିୟତେ ବା କଦାଚିତ୍ ପ୍ରାୟଂ' ଏକା। ଗୀତାର 'ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍' (୮।୯) ଶ୍ଳୋକାଂଶ ଶ୍ୱେତାଶ୍ୱତର ଉପନିଷଦ୍‌ର ଶ୍ଳୋକ ଓ ଶୁକ୍ଳ ଯଜୁର୍ବେଦର (୩୧।୧୮) ମନ୍ତ୍ରାଂଶ ସମାନ। ଗୀତାର 'ଅନାଦି ପରଂବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ (୧୩।୧୨) ଶ୍ଳୋକର ଋଗ୍‌ବେଦର ନାସଦୀୟସୂକ୍ତ ସହ ସାମଞ୍ଜସ୍ୟ ରହିଛି। ଗୀତାର 'ସର୍ବତଃ ପାଣିପାଦଂ' (୧୩।୧୩, ଶ୍ୱେତାଶ୍ୱତର

ଶ୍ରୀମଦ୍ ଭାଗବତ ଓ ଅନ୍ୟାନ୍ୟ ପୁରାଣ (ବିଶେଷତଃ ବୈଷ୍ଣବ ପୁରାଣ) ଶ୍ରୀଗୀତାର ଏଇ ପୁରୁଷୋତ୍ତମ ତତ୍ତ୍ୱଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ ଭାରତର ଆଧ୍ୟାତ୍ମିକ ଜୀବନକୁ ପୁଷ୍ଟ କରିଛନ୍ତି ।

ବେଦାନ୍ତ ଦର୍ଶନ ଓ ଶ୍ରୀଗୀତା ମଧ୍ୟରେ ମତ ପାର୍ଥକ୍ୟ କ୍ୱଚିତ୍ ପରିଦୃଷ୍ଟ ହୁଏ । ଶ୍ରୀଗୀତାର ମତରେ ଭଗବାନ୍ ଜଗତର ମୂଳ ସ୍ୱରୂପ (୭।୧୦) । ତାଙ୍କର ଅଧିଷ୍ଠାନ ହେତୁ ପ୍ରକୃତି ଦ୍ୱାରା ସ୍ଥାବର ଜଙ୍ଗମ ବିଶ୍ୱର ସୃଷ୍ଟି ସମ୍ଭବ ହୁଏ । ପରା ଓ ଅପରା ଭେଦରେ ତାଙ୍କର ପ୍ରକୃତି ଦୁଇ ପ୍ରକାର । ଜୀବରୂପ ପରାପ୍ରକୃତି ଏଇ ଜଗତ୍‌କୁ ଧାରଣ କରିଛି ।

ଅଦ୍ୱୈତବାଦୀମାନେ ଜୀବକୁ ବ୍ରହ୍ମ ସ୍ୱରୂପ ବୋଲି କହିଛନ୍ତି । ଜୀବ ବ୍ରହ୍ମଙ୍କ ପରି ଶାଶ୍ୱତ, ଶୁଦ୍ଧ, ମୁକ୍ତ ଓ ସର୍ବବ୍ୟାପୀ; କିନ୍ତୁ ମାୟା (ଅବିଦ୍ୟା) ଓ ଉପାଧି ହେତୁ ଜୀବର ମୁକ୍ତଭାବ ନଷ୍ଟ ହୁଏ । ଗୀତାର ଦ୍ୱିତୀୟ ଅଧ୍ୟାୟରେ ଜୀବକୁ ନିତ୍ୟ, ସର୍ବଗତ, ଅଚିନ୍ତ୍ୟ ବୋଲି କୁହାଯାଇ ବ୍ରହ୍ମ ଓ ଜୀବ ମଧ୍ୟରେ ଅଭେଦତ୍ୱ ପ୍ରଦର୍ଶିତ ହୋଇଛି ଏବଂ ଆତ୍ମାରୂପ ଜୀବ ଦେହରେ ଭଗବାନଙ୍କ ଅଧିଷ୍ଠାନ ସମ୍ପର୍କରେ ଗୀତାର ବିଭିନ୍ନ ସ୍ଥାନରେ ଉଲ୍ଲେଖ ରହିଛି (ଗୀତା, ୧୦।୨୦, ୧୫।୭) ।

ଶ୍ରୀ ଗୀତା ମତରେ ଜୀବ ଭଗବାନଙ୍କର ପରାପ୍ରକୃତି [ବ୍ରହ୍ମଙ୍କର ଅଂଶ] ହେଲେ ମଧ୍ୟ ତ୍ରିଗୁଣାତ୍ମିକା ଅପରାପ୍ରକୃତିର ବଶବର୍ତ୍ତୀ ହୋଇ

---

ଉପନିଷଦ୍‌ରୁ ସମ୍ପୂର୍ଣ୍ଣ ଗୃହୀତ । ପୁରୁଷ ସୂକ୍ତର 'ସହସ୍ରଶୀର୍ଷା ପୁରୁଷଃ' ବର୍ଣ୍ଣନାର ଭାବ ଏତାଦୃଶ । ଗୀତାର 'ଊର୍ଦ୍ଧ୍ୱମୂଳମଧଃ-ଶାଖମଶ୍ୱତ୍ଥଂ' ଶ୍ଳୋକର (୧୫।୧) କଠୋପନିଷଦ୍‌ର 'ଊର୍ଦ୍ଧ୍ୱମୂଳୋଽ ବାକ୍‌ଶାଖଏଷୋଽଶ୍ୱତ୍ଥ ସନାତନଃ' (୬।୧) ସହ ସାମଞ୍ଜସ୍ୟ ଅଛି । କଠୋପନିଷଦ୍‌ର 'ନତତ୍ର ସୂର୍ଯ୍ୟୋଭାତି' ଶ୍ଳୋକ ସହ ଗୀତାର 'ନତଦ୍‌ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ' (୧୫।୬) ସହ ସାମଞ୍ଜସ୍ୟ ସ୍ପଷ୍ଟ ଲକ୍ଷିତ ହୁଏ ।

ଥିବାରୁ କାମନା, ବାସନା, ଅହଂକାର ହେତୁ ନିଜ ସ୍ୱରୂପକୁ ଭୁଲିଯାଏ । ସାଧନାବଳରେ ଯେତେବେଳେ ସେ କାମନା ବାସନାର ଊର୍ଦ୍ଧ୍ୱକୁ (ଗୁଣାତୀତ ଅବସ୍ଥାକୁ) ଚାଲିଯାଏ, ସେତେବେଳେ ସେ ଅପରାପ୍ରକୃତିର ପ୍ରଭାବରୁ ମୁକ୍ତିଲାଭ କରି ବ୍ରହ୍ମ ବା ଭଗବତ୍ ସାକ୍ଷାତ୍କାର ଲାଭକରେ ।

ବ୍ରହ୍ମଙ୍କଠାରେ ସତ୍, ଚିତ୍ ଓ ଆନନ୍ଦ ଭାବ ସୁପ୍ରକାଶିତ, କିନ୍ତୁ ଜୀବଠାରେ ତାହା ଅପ୍ରକାଶିତ । ଅପରାପ୍ରକୃତିର ପ୍ରଭାବରୁ ଜୀବ ନିଜେ ବ୍ରହ୍ମଙ୍କର ଅଂଶ ବୋଲି ଉପଲବ୍ଧି କରିପାରେ ନାହିଁ । ନିରବଚ୍ଛିନ୍ନ ସାଧନା ଓ ଭକ୍ତି ବଳରେ ସେ ଅପରାପ୍ରକୃତିର ପ୍ରଭାବ ଅତିକ୍ରମ କରିପାରିଲେ ତା'ଠାରେ ବ୍ରହ୍ମଭାବର ଉଦୟ ହୁଏ ।

ବେଦ ଓ ଉପନିଷଦ୍ ଅନୁସରଣରେ ଗୀତାରେ ବ୍ରହ୍ମଙ୍କର ସଗୁଣ ଓ ନିର୍ଗୁଣ ଭାବର ବର୍ଣ୍ଣନା ଥିଲେ ମଧ୍ୟ ସଗୁଣବ୍ରହ୍ମ ଗୀତାର ପ୍ରଧାନ ପ୍ରତିପାଦ୍ୟ ବିଷୟ, ଯେହେତୁ ତାଙ୍କଠାରେ ଭକ୍ତି ସମ୍ଭବପର । ଗୀତାରେ ଭଗବାନଙ୍କର ବିଭୂତି ଓ ବିଶ୍ୱରୂପ ବର୍ଣ୍ଣନା ପାଠକଲେ ସାଧକର ଅନ୍ତର ଭକ୍ତିରେ ପରିପୂର୍ଣ୍ଣ ହୋଇଉଠେ । ସେତେବେଳେ ସେ ସମଗ୍ର ବିଶ୍ୱକୁ ଭଗବାନଙ୍କର ମୂର୍ତ୍ତି ବୋଲି ମନେକରି ଅନିର୍ବଚନୀୟ ଆନନ୍ଦ ଉପଲବ୍ଧି କରେ ।

ନିର୍ଗୁଣବ୍ରହ୍ମ ସାଧାରଣ ଲୋକଙ୍କ ପକ୍ଷରେ ଅଚିନ୍ତ୍ୟନୀୟ; ତେଣୁ ସଗୁଣ ବ୍ରହ୍ମହିଁ ତା'ର ଉପାସ୍ୟ । ସାଧକ (ଭକ୍ତ) ପକ୍ଷରେ ବ୍ରହ୍ମୋପଲବ୍ଧି ବା ଭଗବତ୍ ସାକ୍ଷାତ୍କାରର ସାଧନ ବା ଉପାୟ ହେଲା : ନିଷ୍କାମ କର୍ମ ଜନିତ ଚିତ୍ତଶୁଦ୍ଧି, ତା'ପରେ ଜ୍ଞାନ, ଭକ୍ତି ଓ ଧ୍ୟାନଯୋଗାଭ୍ୟାସରେ ଆତ୍ମାର ସତ୍, ଚିତ୍ ଓ ଆନନ୍ଦ ଭାବର ବିକାଶ ।

ଗୀତା କର୍ମଯୋଗ ଶାସ୍ତ୍ର ବୋଲି ପୂର୍ବରୁ କଥିତ ହୋଇଛି । କର୍ମ ବନ୍ଧନର କାରଣ ହେଲେ ମଧ୍ୟ ନିଷ୍କାମ କର୍ମଯୋଗ ମୁକ୍ତିର ପଥ ଖୋଲିଦିଏ । ଫଳାକାଙ୍କ୍ଷା ଓ କର୍ତ୍ତୃତ୍ୱାଭିମାନ ତ୍ୟାଗ କରି ଭଗ-

ବାନଙ୍କଠାରେ କର୍ମ ସମର୍ପଣ କଲେ ତାହା ହୁଏ ନିଷ୍କାମ କର୍ମଯୋଗ । ନିଷ୍କାମ କର୍ମଯୋଗରେ ସିଦ୍ଧି ଲାଭ କରିବାକୁ ହେଲେ କର୍ମ ସାଧକକୁ ଜ୍ଞାନୀ, ଭକ୍ତ ଓ ଯୋଗୀ ହେବାକୁ ପଡ଼ିବ । ଯେ ପ୍ରକୃତରେ ଜ୍ଞାନୀ ସେ ସମଗ୍ର ବିଶ୍ୱରେ ନିଜକୁ ଓ ନିଜଠାରେ ସମଗ୍ର ବିଶ୍ୱକୁ ଉପଲବ୍ଧି କରେ । ସେ ପୁଣି ହୁଏ ସମଦର୍ଶୀ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଜ୍ଞାନୀ ହେଉଛି ଜଣେ ଶ୍ରେଷ୍ଠ ଭଗବଦ୍ ଭକ୍ତ । ପତଞ୍ଜଳି ତାଙ୍କର ଯୋଗ-ଦର୍ଶନରେ ଚିତ୍ତବୃତ୍ତି ନିରୋଧକୁ ଯୋଗ କହିଥିବା ବେଳେ ଶ୍ରୀଗୀତା ଅନୁଯାୟୀ ପରଂବ୍ରହ୍ମ ବା ପରମାତ୍ମାଙ୍କଠାରେ ଆତ୍ମାର ଯୋଗ ହେଉଛି ପ୍ରକୃତ ଧ୍ୟାନ ଯୋଗ । ଯୋଗୀ ହେଉଛି ପରମ ଭକ୍ତ, ଯେହେତୁ ଧ୍ୟାନ ଭକ୍ତି ସାପେକ୍ଷ ।

ପୂର୍ବୋକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ ଗୀତା କର୍ମ, ଜ୍ଞାନ ଓ ଧ୍ୟାନ ଯୋଗକୁ ଭକ୍ତି ସୂତ୍ରରେ ଗ୍ରଥିତ କରି ପରସ୍ପର ବିରୁଦ୍ଧ ମତବାଦର ଚମତ୍କାର ସମନ୍ୱୟ ବିଧାନ କରିଛି । ଐକାନ୍ତିକୀ ଭକ୍ତିକୁ ଜ୍ଞାନର ଚରମ ନିଷ୍ଠା ବୁଝାଯାଇ ତାକୁ ସାଧନ ନ କହି ସାଧ୍ୟ କହିବାଦ୍ୱାରା ଭକ୍ତିର ମହତ୍ତ୍ୱ ବର୍ଦ୍ଧିତ କରାଯାଇଛି । ଏହାହିଁ ଶ୍ରୀଗୀତାର ନିଜସ୍ୱ ଭକ୍ତିତତ୍ତ୍ୱ ।

ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏକ ବିଶେଷ ମୁହୂର୍ତ୍ତରେ ଉପଦେଶ ପ୍ରଦାନ ବ୍ୟାଜରେ ଜ୍ଞାନ, ଧ୍ୟାନ, ଭକ୍ତି [ପ୍ରେମ] ଓ କର୍ମର ଯଥାର୍ଥ ମିଳନର ବାଣୀ ପ୍ରଚାର କରିଛନ୍ତି । ଧର୍ମ ଓ ସଂପ୍ରଦାୟ ନିର୍ବିଶେଷରେ ଯେ କୌଣସି ସାଧକ, ଯେ କୌଣସି ବ୍ୟକ୍ତି ଗୀତାର ବାଣୀ, ତା'ର ତତ୍ତ୍ୱରେ ଉଦ୍‌ବୁଦ୍ଧ ହୋଇ ନିଜର ଜୀବନକୁ ନିୟନ୍ତ୍ରଣ କରିପାରିବ । ପଣ୍ଡିତ କୁଳମଣି ଦାଶଙ୍କ ଭାଷାରେ କହିବାକୁ ଗଲେ "ଉପନିଷଦ୍‌ରେ ବର୍ଣ୍ଣିତ ହୋଇଥିବା ଏକେଶ୍ୱରବାଦମୂଳକ ଅଦ୍ୱୈତମତକୁ ଭକ୍ତିରସରେ ଆପ୍ଳୁତ କରି ତଦ୍ୱାରା ସଂସାରରେ ପ୍ରବୃତ୍ତିପର ଗୃହସ୍ଥାଶ୍ରମୀମାନଙ୍କୁ ମୁକ୍ତିର ପଥ ଦେଖାଇବା ଗୀତାର ଉଦ୍ଦେଶ୍ୟ [୪୨] ।

[୪୨] କୁଳମଣି ଦାଶ, ସଂକଳକ ଶ୍ରୀମଦ୍‌ଭଗବଦ୍‌ଗୀତା, କଟକ ପବ୍ଲିଶିଂ ହାଉସ୍, ୧୯୭୧, ପ୍ରବେଶିକା, ପୃ-୬୦ ।

ପ୍ରବୃତ୍ତିମୂଳକ ନିଷ୍କାମ କର୍ମତତ୍ତ୍ୱ ଉପସ୍ଥାପନ ଗୀତାର ମୁଖ୍ୟ ଉଦ୍ଦେଶ୍ୟ । କର୍ତ୍ତୃତ୍ୱାଭିମାନ ଶୂନ୍ୟ ଆତ୍ମସମର୍ପଣେଚ୍ଛୁ, ଦୃଢ଼ ଈଶ୍ୱର ବିଶ୍ୱାସୀ ପକ୍ଷରେ ଏ ନିଷ୍କାମ କର୍ମଯୋଗାନୁଷ୍ଠାନ ସମ୍ଭବପର । ଅନ୍ତରର ପ୍ରେରଣାରେ ଫଳର ପ୍ରତ୍ୟାଶା ନରଖି ଭାରତ ତଥା ବିଶ୍ୱର ବହୁଲୋକ କର୍ମ କରିଯାଇ ଜଗତ୍‌ର କଲ୍ୟାଣ ସାଧନ କରିଛନ୍ତି । ସମଗ୍ର ବିଶ୍ୱରେ ସେମାନେ ବ୍ରହ୍ମସତ୍ତ୍ୱର ଅନୁଭୂତି ଲାଭ କରିଛନ୍ତି । ସେଇ ପରମସତ୍ତ୍ୱ କେବଳ ବିଶ୍ୱବ୍ୟାପୀ ନୁହନ୍ତି, ଜଗତ୍‌ର ସ୍ରଷ୍ଟା, ଗନ୍ତା, ପ୍ରଭୁ, ଶରଣ ଓ ସୁହୃଦ୍ । ଏହି ଜ୍ଞାନରେ ଭକ୍ତ ଭଗବାନଙ୍କର ବ୍ୟକ୍ତରୂପର ଉପାସନା କରିଥାଏ । ତାଙ୍କଠାରେ ବିଶ୍ୱାସ ଦୃଢ଼ କରି ନିଜକୁ ସର୍ବତୋଭାବରେ ସମର୍ପଣ କରେ । ଉପାସନାର ପ୍ରଣାଳୀ, ଭକ୍ତର ଶ୍ରଦ୍ଧା, ବିଶ୍ୱାସ, ସର୍ବଭୂତରେ ସେବା, ଐକାନ୍ତିକ ନିଷ୍ଠା ଓ ତ୍ୟାଗ ସମ୍ପର୍କରେ ଉପଦେଶ ଦିଆଯାଇ ନିଷ୍କାମ କର୍ମ ସମ୍ପାଦନକୁ ଭଗବତ୍ କର୍ମ ଓ ଲୀଳାମୟ ଜଗଦୀଶ୍ୱରଙ୍କର ଉପାସନା ବୋଲି କୁହାଯାଇଛି ।

ସନାତନ ଧର୍ମର ଅନ୍ୟାନ୍ୟ ଗ୍ରନ୍ଥ ପରି ଶ୍ରୀ ଗୀତା ଏକ ସାର୍ବକାଳିକ ସାର୍ବଜନୀନ ଉଦାର ଗ୍ରନ୍ଥ । ସେଥିପାଇଁ ଏହା ସମଗ୍ର ବିଶ୍ୱକୁ ଜ୍ଞାନଭକ୍ତି-ଯୁକ୍ତ ନିଷ୍କାମ କର୍ମଯୋଗର ଆଦର୍ଶରେ ଅନୁପ୍ରାଣିତ କରିଛି । ବିଭିନ୍ନ ଯୁଗରେ ଗୀତାର ବିଭିନ୍ନଭାଷ୍ୟ ଓ ଟୀକା ରଚିତ ହୋଇଯାଇଛି । ଆଧୁନିକ ଯୁଗରେ ଭାରତରେ ତିଳକ, ଗାନ୍ଧୀ, ଅରବିନ୍ଦ ଓ ବିନୋବାଙ୍କ ଗୀତା ପ୍ରବଚନ ସହ ସ୍ୱାମୀ ଶିବାନନ୍ଦ, ଏ. ସି ଭକ୍ତିବେଦାନ୍ତସ୍ୱାମୀ ପ୍ରଭୁପାଦ ଓ ଅନ୍ୟ ସାଧୁସନ୍ଥଙ୍କ ଅଜସ୍ର ଟୀକା ଓ ଭାଷ୍ୟ ଲକ୍ଷିତ ହୁଏ । ପୃଥିବୀର ବିଭିନ୍ନ ଭାଷାରେ ଏହାର ବହୁ ଅନୁବାଦ ହୋଇ ବିଶ୍ୱବାସୀଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରିଛି ।

## ( ଦୁଇ )

'ନିତ୍ୟ-ପୂଜା-ବିଧାନ ଓ ପ୍ରବଚନ' ରେ ଆମର ସାର୍ବଜନୀନ ସନାତନ ଧର୍ମ ପ୍ରତିପାଦକ ଗ୍ରନ୍ଥ ବେଦ, ବ୍ରାହ୍ମଣ, ଉପନିଷଦ୍, ଶ୍ରୀଗୀତା, ଶ୍ରୀମଦ୍‌ଭାଗବତ,

ଅନ୍ୟାନ୍ୟ ପୁରାଣ, ତନ୍ତ୍ର ଓ କାବ୍ୟରୁ ପରଂବ୍ରହ୍ମ ଏବଂ ତାଙ୍କର ବିଭିନ୍ନ ସଗୁଣ ରୂପ ଓ ଶକ୍ତି ସମ୍ପର୍କରେ କେତେକ ସୁନିରୂପିତ ମନ୍ତ୍ର ଓ ଶ୍ଳୋକ ସହ ନିତ୍ୟ-ପୂଜା-ବିଧାନ ସୁବୋଧ ଭାବରେ ସନ୍ନିବେଶିତ କରିଛନ୍ତି, ଏ ବିଷୟରେ ଅଭିଜ୍ଞ ପୂର୍ଣ୍ଣାଭିଷିକ୍ତ ପଣ୍ଡିତ ସାଧକ ମହାମେଧାନନ୍ଦନାଥ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ । ଉପନିଷଦ୍‌ର ଭାଷାରେ ଅମୃତର ପୁତ୍ର ମନୁଷ୍ୟ ଅବିଦ୍ୟା ପ୍ରକୃତିର ପ୍ରଭାବରେ ନିଜର ଜାଗତିକ କାମନା ବାସନା ଜାଲରେ ବନ୍ଧୁତ ହୋଇ ଯେପରି ପଥଭ୍ରଷ୍ଟ ହୋଇପଡନ୍ତି ଏବଂ ନିଜ ଜୀବନର ଲକ୍ଷ୍ୟ ସମ୍ପର୍କରେ ସଚେତନ ରହି ପାର୍ଥିବ ସମ୍ପଦ, କ୍ଷମତା ପ୍ରତିପତ୍ତି, ଅହମିକା, ଅସତ୍ ଓ ମିଥ୍ୟାଚାରର ଚକ୍ରାନ୍ତ ମଧ୍ୟରେ କ୍ଳିଷ୍ଟପିଷ୍ଟ ହୋଇପଡନ୍ତି, ସେଥିରୁ ମୁକ୍ତିଲାଭ କରିବାପାଇଁ, ତା'ର କ୍ଳାନ୍ତ ଅବସନ୍ନ ଆତ୍ମାରେ ଶାନ୍ତିର ଶୀତଳ ପ୍ରଲେପ ଦେବାପାଇଁ ପରଂବ୍ରହ୍ମ ଭଗବାନ୍ ଓ ତାଙ୍କର ବିଭିନ୍ନ ବ୍ୟକ୍ତ ରୂପର ଉପାସନା, ସ୍ତୁତି ଓ ପ୍ରାର୍ଥନା ମନୁଷ୍ୟ ପକ୍ଷରେ ଯେ ଏକାନ୍ତ ଅପରିହାର୍ଯ୍ୟ, ଏହା ବୁଝାଇ କହିବାକୁ ପଡିବନାହିଁ ।

କେବଳ ବ୍ୟକ୍ତିସ୍ତରରେ ନୁହେଁ, ସମାଜ ଓ ରାଷ୍ଟ୍ର ସ୍ତରରେ ନୈତିକ ଓ ଆଧ୍ୟାତ୍ମିକ ଚେତନାର ବିକାଶ ପାଇଁ ସାର୍ବଜନୀନ ସ୍ତୋତ୍ର ଗୁଡ଼ିକର ଆବୃତ୍ତି, ମନନ ବା ଚିନ୍ତନ ଏବଂ ତା'ର ସଶ୍ରଦ୍ଧ ପ୍ରୟୋଗ ଯେ ଜରୁରି, ପୂର୍ବୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହେବ । ପ୍ରଫେସର ଆରନଲଡ଼୍ ଟଏନବି ସାମ୍ପ୍ରତିକ ବିଶ୍ୱରେ ଧର୍ମର ଗୁରୁତ୍ୱ ଉପଲବ୍ଧି କରି କହିଛନ୍ତି—ଜୀବନ ଧାରଣର ରହସ୍ୟକୁ ଉଦ୍ଭେଦ କରିବା ପାଇଁ ଧର୍ମ ହେଉଛି ଗୁରୁକାଠି । ସେ ଭାରତୀୟ ଆଧ୍ୟାତ୍ମିକ ପରମ୍ପରାର ମହତ୍ତ୍ୱ ସ୍ୱୀକାର କରି ପୁଣି କହିଛନ୍ତି—ଆଜି ଆମେ ଯଦି ପରସ୍ପରକୁ ଧ୍ୱଂସ କରିବାକୁ ନଚାହୁଁ ଏବଂ ଏ ଯୁଗରେ ଗୋଟିଏ ପରିବାର ଭାବରେ ବଞ୍ଚି ରହିବାକୁ ଚାହୁଁ, ତାହେଲେ ଭାରତୀୟ ଉଦାର ଧର୍ମପରମ୍ପରା ସବୁ ଧର୍ମପାଇଁ ମୁକ୍ତିର ପଥ ।

ତିନିପ୍ରକାର ଉପାସନା ମଧ୍ୟରେ କ୍ରିୟାମୂଳକ ବା ବାହ୍ୟ (ଯଜ୍ଞୋତ୍ସବ ଇତ୍ୟାଦି), ବାଚନିକ (ସ୍ତୁତି, ପ୍ରାର୍ଥନା, ଜପ), ମାନସିକ

(ଧ୍ୟାନ), ପ୍ରଥମ ପ୍ରକାରଟି ସାଂପ୍ରତିକ କାଳରେ ବ୍ୟକ୍ତିର ଜୀବନରେ ଏକପ୍ରକାର ଅଚଳ ହୋଇଗଲାଣି [ଜୀବନର ଜଟିଳତା ଓ ବିଶ୍ରାମର ଅଭାବହେତୁ] । ଯୁଗର ପ୍ରବୃତ୍ତି ଲକ୍ଷ୍ୟକରି ପୁରାଣକାରମାନେ ସ୍ତବ, ସ୍ତୁତି, ପ୍ରାର୍ଥନା ଓ ମାନସିକ ଉପାସନା [ଧ୍ୟାନ] ଉପରେ ବିଶେଷତଃ ବାଚନିକ ଉପାସନା ଯଥା ଭଜନ, କୀର୍ତ୍ତନ, ସ୍ତବ, ସ୍ତୁତି ଉପରେ ବିଶେଷ ଜୋର ଦେଇଛନ୍ତି ; କାରଣ ଅନ୍ୟ ଉପାସନା ପ୍ରଣାଳୀ ଅପେକ୍ଷା ଏହା ଅପେକ୍ଷାକୃତ ସହଜ । ମନୁ କହିଛନ୍ତି ସତ୍ୟର ଅନ୍ୱେଷଣକାରୀ 'ଜପ'ଦ୍ୱାରା ସର୍ବୋଚ୍ଚ ଲକ୍ଷ୍ୟରେ ପହଞ୍ଚିପାରେ । ସବୁ ଆଧ୍ୟାତ୍ମିକ ସାଧନା ମଧ୍ୟରେ 'ଜପ' ସର୍ବଶ୍ରେଷ୍ଠ ବୋଲି ମହାଭାରତ କହେ । ବିଷ୍ଣୁପୁରାଣ ସାଂପ୍ରତିକ କାଳରେ ଈଶ୍ୱରଙ୍କ ନାମଜପ ଉପରେ ଗୁରୁତ୍ୱ ଦେଇଛି । ବୃହନ୍ନାରଦୀୟ ପୁରାଣ କଳିଯୁଗ (Iron Age)ରେ ହରିନାମ ଜପକୁ ମୁକ୍ତିର ଏକମାତ୍ର ଉପାୟ ବୋଲି ଘୋଷଣା କରିଛି [ ୪୩ ] ଶ୍ରୀଚୈତନ୍ୟ ନାମସଂକୀର୍ତ୍ତନକୁ କିପରି ଜନପ୍ରିୟ କରିଛନ୍ତି, ଉତ୍ତର ଭାରତ ତଥା ମଧ୍ୟଭାରତରେ ତା'ର ବ୍ୟାପକ ପ୍ରସାର ଲକ୍ଷ୍ୟକଲେ ସ୍ପଷ୍ଟହେବ ।

ଶବ୍ଦ [ଧ୍ୱନି] ଓ ଭାବନା [ଚିନ୍ତା] ଅପୃଥଗ୍ ଭାବରେ ପରସ୍ପର ସମ୍ପୃକ୍ତ । ମନମଧ୍ୟରେ ପବିତ୍ର ଭାବନା ଜାଗରିତ କରିବାପାଇଁ ସାଧକ ଶବ୍ଦ [ଧ୍ୱନି]ର ସାହାଯ୍ୟ ନିଏ, ମାନସିକ ସ୍ତରକୁ ଉନ୍ନୀତ ହେଲେ ସେ ଏ ଶବ୍ଦ ବା ଧ୍ୱନି ପ୍ରତୀକକୁ ଛାଡ଼ିଦେଇପାରେ । ଯେତେବେଳେ ଆତ୍ମଜ୍ଞ ଉପଲବ୍‌ଧିର ଉଚ୍ଚସ୍ତରକୁ ଉନ୍ନୀତ ହୋଇ ଦିବ୍ୟସତ୍ତାରେ ତନ୍ମୟ ହୋଇଯାଏ, ସେ ମାନସିକ ଉପାସନାକୁ ମଧ୍ୟ ବାଦଦେଇପାରେ; କିନ୍ତୁ ତା'ର ଅନ୍ତରରେ ଦିବ୍ୟ ଦର୍ଶନର ସୌଭାଗ୍ୟ ନଘଟିବା ପର୍ଯ୍ୟନ୍ତ ତାକୁ ଏକକ ବା ସମବେତ ଭାବରେ ପୂର୍ବୋକ୍ତ ବିବିଧ ପ୍ରତୀକର ସାହାଯ୍ୟ ନେବାକୁ ହୋଇଥାଏ । ଅବିଶିଷ୍ଟ ପରମସତ୍ତାର ଉପଲବ୍‌ଧି ପର୍ଯ୍ୟନ୍ତ ସାଧକକୁ ଧୀରେ ଧୀରେ ଆଧ୍ୟାତ୍ମିକ ସାଧନାର ଉଚ୍ଚତର ମାଧ୍ୟମ

---

[୪୩] ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍ ।
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ॥
ବୃହନ୍ନାରଦୀୟ ପୁରାଣ, ୩୮ ଅଧ୍ୟାୟ ।

ଗୁଡ଼ିକର ସାହାଯ୍ୟ ନେବାକୁ ହେଉଥିବ । ଏଥିପାଇଁ ସ୍ତୋତ୍ର (ସ୍ତବ) ଓ ପ୍ରାର୍ଥନା ଗୁଡ଼ିକର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ (୪୪) ।

ବୈଦିକ, ସଂସ୍କୃତ ଓ ଦେଶୀୟ ଭାଷାରେ ଭାରତରେ ବହୁ ସ୍ତୋତ୍ର ସଂଗ୍ରହ ଦେଖାଯାଏ । ସେପରିକି ବ୍ରାହ୍ମସମ୍ପ୍ରଦାୟ ପକ୍ଷରୁ ଭାରତର ବେଦ; ଉପନିଷଦ, ପୁରାଣ ସହ ବୌଦ୍ଧ, ଜୈନ, ଶିଖ, ୟୁହୁଦୀୟ, ଖ୍ରୀଷ୍ଟୀୟ ମୁସଲମାନ, ପାରସିକ ଓ ଚୀନ ଦେଶୀୟ ଧର୍ମଶାସ୍ତ୍ରରୁ ବ୍ରାହ୍ମଧର୍ମ ପ୍ରତିପାଦକ ବହୁ ଉପାଦେୟ ଶ୍ଳୋକ ସଂଗ୍ରହ କରାଯାଇଛି [୪୫] । ଆତ୍ମଦର୍ଶନ ତଥା ଅଧ୍ୟାତ୍ମଭାବର ଜାଗରଣ ସକାଶେ ସାଧକଙ୍କ ନିକଟରେ ଓଡ଼ିଆ ଭାଷାରେ ସେପରି ରୁଚିକର ସଙ୍କଳନ ଗ୍ରନ୍ଥ ନାହିଁ । ଯାହାସବୁ ମିଳୁଛି ତାହା କର୍ମକାଣ୍ଡର ଅଂଶଭାବରେ କିମ୍ବା ଜଡ଼ ପୁସ୍ତକ ହୋଇ ରହିଛି । ଜଣେ ସନାତନ ଧର୍ମର ଆଚରଣରେ ପଞ୍ଚଦେବତାର ଉପାସନା କାହିଁକି ଓ କିପରି ପ୍ରାଣପୂର୍ଣ୍ଣ ଭାବରେ କରିବାକୁ ହେବ, ଯାହାର ଉଲ୍ଲେଖ ଏହି 'ନିତ୍ୟପୂଜା ବିଧାନ ଓ ସ୍ତବରତ୍ନ' ଗ୍ରନ୍ଥରେ ସଙ୍କଳକ ସମ୍ପାଦକ ପ୍ରବୀଣ ପଣ୍ଡିତ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ (ଦୀକ୍ଷାନାମ ମହାମେଧା ନନ୍ଦନାଥ) କରିଛନ୍ତି । ଏଥିରେ ଜଣେ ଆତ୍ମସାକ୍ଷାତ୍କାର ପାଇଁ କିପରି ତଦ୍‌ଭାବ ଭାବିତ ହେବ ସରଳରେ ପଞ୍ଚୋପଚାର ଦ୍ୱାରା କିପରି ପଞ୍ଚଦେବୋ-ପାସନା ମାଧ୍ୟମରେ ଏକ ଅଦ୍ୱିତୀୟ ସତ୍ତାର ଉପଲବ୍ଧି ହେବ-ତାହାକୁ ନିଜର ଅନୁଭୂତିରୁ ସହଜବୋଧ୍ୟ କରିପାରିଛନ୍ତି-ମହାମେଧାନନ୍ଦନାଥ । ପ୍ରସିଦ୍ଧ ସ୍ତୋତ୍ର ଗୁଡ଼ିକରେ ଆବଶ୍ୟକସ୍ଥଳେ ଅନୁବାଦ ଦେବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଆବଶ୍ୟକତା ଓ ଉପଯୋଗିତାକୁ ନେଇ ତାଙ୍କର ଏ ସଙ୍କଳନ ବୈଶିଷ୍ଟ୍ୟପୂର୍ଣ୍ଣ ହୋଇଛି । ମୁଖବନ୍ଧରେ ବୈଦିକ ଧର୍ମ, ଉପନିଷଦ, ଭାରତୀୟ ଦର୍ଶନ, ଭାଗବତଧର୍ମ ଓ ଶ୍ରୀଗୀତା ସମ୍ପର୍କରେ

---

[୪୪] Swami Yatiswara nanda -'Universal Prayers' Sri Ramakrishna Math, Mylapore, Madras, Introductian.

(୪୫) Chatterji, Satikumar, Ed. Sloka Samgraha, 8th edn. Calcutta, 1956.

ଯେଉଁ ଆଲୋଚନା କରାଯାଇଛି ସେଥିପାଇଁ ମୁଁ ଶ୍ରୀ ଅବିନାଶଚନ୍ଦ୍ର ବୋଷ ସ୍ୱାମୀ ସତ୍ୟାଶ୍ରୟାନନ୍ଦ ଓ ପଣ୍ଡିତ କୁଳମଣି ଦାଶଙ୍କଠାରେ ବିଶେଷ ଋଣୀ । ବିଷୟର ଗୁରୁତ୍ୱ ଦୃଷ୍ଟିରୁ ମୁଁ ଏକପ୍ରକାର ସେମାନଙ୍କ ଆଲୋଚନାର [ବୈଦିକଧର୍ମ, ଶ୍ରୀଗୀତା ଓ ଉପାସନା ସମ୍ପର୍କରେ] ନିର୍ଯ୍ୟାସ ଗ୍ରହଣ କରିଛି । ଅନ୍ୟାନ୍ୟ ବିଷୟର ପ୍ରାସଙ୍ଗିକତା ଶ୍ରୀ ମହାଦେବାନନ୍ଦନାଥଙ୍କ ପାଣ୍ଡିତ୍ୟପୂର୍ଣ୍ଣ ପ୍ରାକ୍-କଥନରୁ ପାଠକେ ଅବଧାରଣା କରିବେ ଓ ସାଧନାରେ ମଗ୍ନ ହେବେ ବୋଲି ଆଶା ।

ଯେ କୌଣସି ବ୍ୟକ୍ତି ନିଜର ରୁଚି ଅନୁଯାୟୀ ସେଇ ଅଦ୍ୱିତୀୟ ପରମ ସତ୍ତା ଭଗବାନଙ୍କର ନିର୍ଗୁଣ ବା ସଗୁଣ ରୂପର ଉପାସନା ନିଷ୍କାମ ବୁଦ୍ଧିରେ ମନ୍ତ୍ର ଓ ଶ୍ଳୋକ ଗୁଡ଼ିକର ଭାବାର୍ଥ ହୃଦୟଙ୍ଗମପୂର୍ବକ କଲେ ତା'ର କ୍ଲାନ୍ତ, ଅବସନ୍ନ ଆତ୍ମାର ଯେ ଉତ୍ତରଣ ଘଟିବ; ସମଗ୍ର ବିଶ୍ୱରେ ବ୍ୟକ୍ତି ରୂପରେ ଭଗବତ୍ ସତ୍ତା ଅନୁଭବ କରି ଜଗତ୍‌ର କଲ୍ୟାଣପାଇଁ ନିଜକୁ ଉତ୍ସର୍ଗ କରିବାର ଦିବ୍ୟ ପ୍ରେରଣା ଲାଭକରି ପାରିବ ଏ ବିଶ୍ୱାସ ମୋର ରହିଛି । ଏ ବିକ୍ଷୁବ୍ଧ, କ୍ଲାନ୍ତ ପୃଥିବୀରେ ମନୁଷ୍ୟ ଦିବ୍ୟସତ୍ତାର ପ୍ରେରଣା ଲାଭକରି ନିଜର ସ୍ୱଳ୍ପକାଳର ସ୍ଥିତିକୁ ଭଗବତ୍ ବିଶ୍ୱାସରେ ଉଜ୍ଜ୍ୱଳ ଓ ନିଜର ନିଷ୍କାମ କର୍ମପ୍ରେରଣା ଦ୍ୱାରା ଅର୍ଥପୂର୍ଣ୍ଣ କରିପାରିଲେ ଶ୍ରମ ସାର୍ଥକ ମନେ କରିବି ।

ଶଂ ନୋ ଭବତୁ - ଆମ ସମସ୍ତଙ୍କରମଙ୍ଗଳ ହେଉ ।

ଡକ୍ଟର **ଗଙ୍ଗାଧର ବଳ**
ଅବସରପ୍ରାପ୍ତ ପ୍ରଫେସର
ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ରେଭେନ୍ସା କଲେଜ, କଟକ

ଭୁବନେଶ୍ୱର
୨୬-୫-୮୨

# ପ୍ରାକ୍ କଥନ

ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନେ
ବୌଦ୍ଧା ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ।
ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ
ସୋଽୟଂ ନୋ ବିଦଧାତୁ ବାଞ୍ଛିତଫଳଂ ତ୍ରୈଲୋକ୍ୟନାଥୋ ହରିଃ ॥

ଶୈବଗଣ 'ଶିବ' ବୋଲି, ବେଦାନ୍ତୀମାନେ 'ବ୍ରହ୍ମ' ବୋଲି, ବୌଦ୍ଧମାନେ 'ବୁଦ୍ଧ' ବୋଲି ପ୍ରମାଣ (ବା ତର୍କ) ପଟୁ ନୈୟାୟିକଗଣ 'କର୍ତ୍ତା' ବୋଲି, ଜୈନମାନେ 'ଅର୍ହତ୍' ବୋଲି ଏବଂ ମୀମାଂସକଗଣ 'କର୍ମ' ବୋଲି ଯାହାର ଉପାସନା କରନ୍ତି, ସେହି ତ୍ରିଲୋକର ଈଶ୍ୱର ଶ୍ରୀହରି ଆମକୁ ବାଞ୍ଛିତ ଫଳ ପ୍ରଦାନ କରନ୍ତୁ ।

"ଈଶ୍ୱରଃ ସର୍ବ ଭୂତାନାଂ ହୃଦ୍ଦେଶେଽର୍ଜ୍ଜୁନ ତିଷ୍ଠତି" [ଗୀତା-୧୮।୬୧]

—ଈଶ୍ୱର ସକଳ ପ୍ରାଣୀଙ୍କର ହୃଦୟପ୍ରଦେଶରେ ଅବସ୍ଥାନ କରନ୍ତି । ତେଣୁ ଈଶ୍ୱରୋପାସନାରେ ମସ୍ତିଷ୍କ ବା ବୁଦ୍ଧିର 'ପ୍ରମା' ବା ସଦାରଣ ବିଶ୍ଳେଷଣ ଅପେକ୍ଷା ହୃଦୟର 'ପ୍ରେମ'-ଆବେଗପୂର୍ଣ୍ଣ ଭକ୍ତି ଓ ବିଶ୍ୱାସପୂର୍ଣ୍ଣ ଶରଣାଗତି ଅଧିକ ଆବଶ୍ୟକ ଓ ଉପାଦେୟ ।

ଈଶ୍ୱର କେବଳ ପ୍ରାଣୀଜଗତ କାହିଁକି ଜଡ଼ ଜଗତରେ ମଧ୍ୟ ଅନ୍ତର୍ବ୍ୟାପ୍ତ ହୋଇ ରହିଛନ୍ତି । ତେଣୁ ଏ ସୃଷ୍ଟିର ଅଣୁ ପରମାଣୁରେ ତାଙ୍କର ସତ୍ତା ବିଦ୍ୟମାନ । ଏ ରୂପ ଜଗତର ସବୁରୂପ ତାଙ୍କର । ଏତେ ରୂପ ଯାହାର, ତାଙ୍କର ଗୋଟିଏ ନିର୍ଦ୍ଦିଷ୍ଟ ରୂପ ରହିବା ବା କିପରି ? ତେଣୁ ସେ ଅରୂପ ମଧ୍ୟ । ଅତଏବ କୁହାଯାଇଛି—

'ଅରୂପାୟୋରୁରୂପାୟ ନମ ଆଶ୍ଚର୍ଯ୍ୟକର୍ମଣେ'

ଅରୂପ ଓ ବହୁରୂପ – ସେଇ ଅନ୍ତର୍ଯ୍ୟାମୀଙ୍କୁ ନମସ୍କାର ।

ହୃଦୟର ଦେବତାଙ୍କୁ ଯିଏ ଯେପରି ଦେଖିବାକୁ ବ୍ୟାକୁଳ ହେବ, ସେ ସେହି ଭାବରେ ସେପରି ଦେଖିବ । ତେଣୁ ଶୈବଙ୍କ ଶିବ, ବେଦାନ୍ତୀଙ୍କ ବ୍ରହ୍ମ, ବୈଷ୍ଣବଙ୍କ ବିଷ୍ଣୁ, ଶାକ୍ତଙ୍କର ଶକ୍ତି—ଏ ସବୁରେ କିଛି ଭେଦ ନାହିଁ । ଏକ ଶକ୍ତିର ଅନେକ ରୂପରେ ପରି ପ୍ରକାଶ ଠିକ୍ ଏକ ବିଦ୍ୟୁତ୍ ଶକ୍ତିର ଲାଇଟ୍ ଦେଇ ଆଲୋକ ଆକାରରେ; ଫ୍ୟାନ୍ ଦେଇ ବାୟୁ ଆକାରରେ, ହିଟର୍ ଦେଇ ଅଗ୍ନି ଆକାରରେ ପ୍ରକାଶ ହେଲାପରି । ଜଗଦମ୍ବାଙ୍କ ପରମ କୃପାଲବ୍ଧ ସିଦ୍ଧ ସାଧକ ରାମକୃଷ୍ଣ ପରମହଂସ ମାତୃକୃପାରୁ ସେଇ ଏକ ଐଶୀ ଶକ୍ତିକୁ ଖ୍ରୀଷ୍ଟ ଓ ମହମ୍ମଦ ରୂପରେ ମଧ୍ୟ ଉପଲବ୍ଧ କରିଥିଲେ ।

ହିନ୍ଦୁଧର୍ମରେ ଏହି ଅନେକ ମଧ୍ୟରେ ଏକ (Unity in Diversity) ହିଁ ହେଉଛି ଭାରତବର୍ଷ । ଗଙ୍ଗା ଯମୁନା ପ୍ରଭୃତି ସପ୍ତସିନ୍ଧୁ ବା 'ଦେଶେ ନଦୀବିଶେଷେଽବ୍ଧୌ ସିନ୍ଧୁର୍ନା ସରିତି ସ୍ତ୍ରିୟାମ୍' ଅମର-କୋଷ ଅନୁସାରେ) ସପ୍ତନଦୀର ଏହି ଦେଶ ଭାରତ । ତେଣୁ ପ୍ରତ୍ୟେକ ହିନ୍ଦୁ ଏ ମାଟିର ଜଳରେ ସ୍ୟନ୍ଦିତ ସିନ୍ଧୁ ['ସ୍ୟନ୍ଦୂ ପ୍ରସ୍ରବଣେ' ଧାତୁରୁ 'ସ୍ୟନ୍ଦେଃ ସଂପ୍ରସାରଣଂ ଧଶ୍ଚ' [ଉଣାଦି ୧।୧୧] ସୂତ୍ରରେ ଉ ପ୍ରତ୍ୟୟ ହୋଇ ଉତ୍ପନ୍ନ 'ସିନ୍ଧୁ' ଶବ୍ଦର ଅର୍ଥ ପ୍ରସୃତ ଜଳ ପ୍ରବାହ ବା ନଦୀ] ବା ପବିତ୍ର ନଦୀ ସପ୍ତକର ସତ୍ତା ଅନୁଭବ କରିଯାଏ । ଭାଷାତତ୍ତ୍ୱ ଅନୁସାରେ ସକାରର ହ-କାର ପରିଣତି ଫଳରେ 'ସିନ୍ଧୁ' ଶବ୍ଦ 'ହିନ୍ଦୁ'ରେ ପରିଣତ ହୋଇଛି । ତେଣୁ ହିନ୍ଦୁ କୌଣସି ଧର୍ମବିଶେଷ ନୁହେଁ । ସପ୍ତସିନ୍ଧୁ (ନଦୀ) ପ୍ରବାହିତ ଏହି ସ୍ଥାନ ଭାରତର ନାମ ହିଁ ହିନ୍ଦୁସ୍ଥାନ ଏବଂ ଏଠାରେ ବାସ କରୁଥିବା ଖ୍ରୀଷ୍ଟିଆନ୍, ମୁସଲମାନ୍ ପ୍ରଭୃତି ସମସ୍ତ ଧର୍ମାବଲମ୍ବୀ ଚର୍ଚ୍ଚକୁ ଯାଆନ୍ତୁ କି ମସ୍‌ଜିଦ୍‌କୁ ଯାଆନ୍ତୁ ହିନ୍ଦୁସ୍ଥାନର ଅଧିବାସୀ ଭାବରେ ନିଜକୁ 'ହିନ୍ଦୁ' ବୋଲି ଘୋଷଣା କରି ନିଜର ମାତୃଭୂମି ପ୍ରତି ମମତା ପ୍ରକଟ କରି ହିଁ ଏହାର ଯଥାର୍ଥ ନାଗରିକ ହେବା ଉଚିତ । ଏ ମାଟିରୁ ସମସ୍ତ ସୁବିଧା ହାସଲ କରି ଇତର ମାଟି ପ୍ରତି ମମତା ଘୋର ବିଶ୍ୱାସ-ଘାତକତା ଓ କୃତଘ୍ନତା ବ୍ୟତୀତ ଆଉ କିଛି ନୁହେ ।

ଭାରତବର୍ଷର ଏକତାର ସୂତ୍ର ସବୁ ଭାଷା, ଧର୍ମ, ଜାତି ପ୍ରଭୃତି-ଗତ ବୈଷମ୍ୟକୁ ନେଇ କ୍ଷୀଣ ହୋଇଗଲାଣି । ଏକ ଭବ୍ୟ ବିଶାଳ ଭାରତବର୍ଷର ଅବସ୍ଥିତି ଆଜି କେବଳ ମାନସ ପରିଧିରେ ଆମ୍ରେଡିତ ହେଉଛି ମାତ୍ର । ଏ ଦେଶର ଆର୍ଯ୍ୟସନ୍ତାନ ଆଜି ବି ପ୍ରାତଃ ସ୍ନାନବେଳେ ଏ ଦେଶ ମାତୃକାରେ ମାତୃସ୍ତନ୍ୟର ସଦାଧାରା ପ୍ରବାହ ସଦୃଶ ବର୍ତ୍ତମାନ ସପ୍ତ ନଦୀର ସ୍ମରଣ କରି କହୁଛି—

ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି ।
ନର୍ମଦେ ସିନ୍ଧୁ କାବେରି ଜଲେଽସ୍ମିନ୍ ସନ୍ନିଧିଂକୁରୁ ॥

ଏଥିରେ ଉଲ୍ଲିଖିତ 'ସିନ୍ଧୁ' ଆଦି କ୍ରମଶଃ ଏ ଦେଶର ସୀମା ସରହଦରୁ ଅପସରି ଯିବାକୁ ବସିଛି । ଦିନଥିଲା ପଞ୍ଚସିନ୍ଧୁ ଅର୍ଥାତ୍ କୁଭା (କାବୁଲ୍) ଏବଂ ସୁବାସ୍ତୁ [ସ୍ୱାତ୍], ଗୌରୀ [ପଞ୍ଜକୋରା]; ଗୋମତୀ (ଗୋମଲ୍) ଓ କ୍ରମୁ [କୁରମ୍) ପ୍ରଭୃତି ନଦୀ ଭାରତୀୟ ଭୂଗୋଳର ଅନ୍ତର୍ଭୁକ୍ତ ଥିଲା । ଆହୁରି ଅତୀତକୁ ଗଲେ ଋଗ୍‌ବେଦ (୧୦।୭୫।୫)ର ଉକ୍ତି ମନେପଡ଼େ—

ଇମଂ ଚ ଗଙ୍ଗେ ଯମୁନେ ସରସ୍ୱତି ଶୁତୁଦ୍ରି ସ୍ତୋମଂ ସଚତା ପରୁଷ୍ଣ୍ୟା ।
ଅସିକ୍ନ୍ୟା ମରୁଦ୍‌ବୃଧେ ବିତସ୍ତୟାର୍ଜୀକେ ଶୃଣୁହ୍ୟା ସୁଷୋମୟା ॥

ହେ ଗଙ୍ଗା, ଯମୁନା, ସରସ୍ୱତୀ, ଶୁତୁଦ୍ରି [ଶତଲଜ୍], ପରୁଷ୍ଣୀ [ରାବୀ], ମରୁଦ୍‌ବୃଧା [କାଶ୍ମୀରର କଷ୍ଟବାରରେ ପ୍ରବାହିତ ମରୁଦ ବାନ୍ ମରୁଛଣୀ ନଦୀ ଚନାବ୍ ସହ ମିଳିତ], ବିତସ୍ତା [ଝେଲମ୍], ଅସିକ୍ନୀ [ଚନାବ୍], ଆର୍ଜୀକୀୟା (ବ୍ୟାସ) ଓ ସୁଷୋମା (ଅଟକ୍ ଜିଲ୍ଲାରେ ପ୍ରବାହିତ ସିନ୍ଧୁର ସହାୟକ ନଦୀ) ତୁମେ ସବୁ ମୋର ସ୍ତୋତ୍ର ଶୁଣ ।

'ସପ୍ତ କ୍ଷରନ୍ତି ସିନ୍ଧବଃ'—ଆଉ ନାହାନ୍ତି ଆମର ଏହି ପୁଣ୍ୟ ଭାରତ ଭୂମିରେ । ଦେବତାତ୍ମା ହିମାଳୟ ଆଜି ଆଉ ଭାରତର ସୀମା ନିର୍ଦ୍ଦେଶ କରୁନାହାଁନ୍ତି । ମାଟିପ୍ରତି ମମତାର ଅଭାବରୁ ଯେଉଁ ଅଦୂରଦର୍ଶିତା ବଳରେ ତିବ୍ବତ ଉପରେ ଚୀନର ଅଧିକାରକୁ ନେହେରୁ ମାନିଗଲେ

ଏବଂ ତା'ର ଶିକାର ହେଲେ, ସେହି ଅପରିଣାମଦର୍ଶିତାର ବିଷମୟ ଫଳ ଭାରତବାସୀ ଭୋଗକରି ମଧ୍ୟ ଆଗକୁ ତଥାପି ଦେଖି ପାରୁ ନାହାନ୍ତି । ନିଜ ନିବାସଭୂମିରେ ସେମାନେ ଆଜି ପ୍ରବାସୀ ହେବାକୁ ବସିଛନ୍ତି । ଆର୍ଯ୍ୟ ଏ ଭୂମିରେ ସଂଖ୍ୟାଲଘୁ ହେଲେ ତାଙ୍କୁ କେହି କେବେ କିଛି ସୁବିଧା ଦେବେନାହିଁ । ତଥାପି ଏ ଜାତିକୁ ଏକତାବଦ୍ଧ କରିବାକୁ ଏହାର ଧର୍ମ-ଗୁରୁମାନେ ସଚେତନ ନୁହନ୍ତି । ରାଜନୀତିଜ୍ଞମାନେ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ସାଧନଲାଗି ଏ ଦେଶ ମାଟିକୁ ଅନ୍ୟାୟରୂପେ ପ୍ରପୀଡ଼ିତ କରି ଚାଲିଛନ୍ତି ଓ ଏ ଦେଶର ପାଣି ପବନକୁ ଦୂଷିତ କରି ପରିବେଶକୁ ଅଶାନ୍ତ କରିବାରେ ଲାଗିଛନ୍ତି । ଏପରି ଏକ ଉଦ୍‌ବେଗଜନକ (alarming) ସ୍ଥିତିରେ ଆମ ଧର୍ମ ଓ ସଂସ୍କୃତିର ମହତ୍ତ୍ୱ ଉପଲବ୍‌ଧି ପୂର୍ବକ ଜୀବନରେ ତା'ର ସଦୁପଯୋଗ ଦ୍ୱାରା ନିଜକୁ, ନିଜ ପରିବାରକୁ, ନିଜ ପରିବେଶକୁ ତଥା ସମାଜକୁ ସୁଶୃଙ୍ଖଳ, ମାନ୍ତପୂତ ଓ ଆଦୃତ ନିଷ୍କଳଙ୍କ ଗଢ଼ିବା ଉଚିତ । ଏହାଦ୍ୱାରା ସନାତନ ଆର୍ଯ୍ୟ ଧର୍ମର ରକ୍ଷା ହିନ୍ଦୁସ୍ଥାନର ରକ୍ଷା ହିନ୍ଦୁସ୍ଥାନର ପ୍ରତ୍ୟେକ ହିନ୍ଦୁ କରିପାରିବେ ।

## 'ହିନ୍ଦୁସ୍ଥାନ' ଭାରତ

ଉତ୍ତରଂ ଯତ୍ସମୁଦ୍ରସ୍ୟ ହିମାଦ୍ରେଶ୍ଚୈବ ଦକ୍ଷିଣମ୍ ।
ବର୍ଷଂ ତଦ୍ ଭାରତଂ ନାମ ଭାରତୀଯତ୍ର ସଂତତିଃ ।।

ବିଷ୍ଣୁ ପୁରାଣର ଏହି ଶ୍ଳୋକରେ କୁହାଯାଇଛି ଯେ ହିମାଳୟର ଦକ୍ଷିଣରେ ଏବଂ ସମୁଦ୍ର (ଭାରତ ମହାସାଗର)ର ଉତ୍ତରରେ ଥିବା ଦେଶର ନାମ 'ଭାରତ' ଏବଂ ଏହାର ନିବାସୀ ସନ୍ତାନଗଣ ହେଉଛନ୍ତି 'ଭାରତୀୟ' ।

'ଭରତ' ଶବ୍ଦର ବ୍ୟୁତ୍ପତ୍ତି କରି ମତ୍ସ୍ୟପୁରାଣରେ ଲେଖାଯାଇଛି ଯେ ପ୍ରଜାମାନଙ୍କର ଭରଣ (ବା ପୋଷଣ) କରୁଥିବାରୁ 'ମନୁ' ହେଉଛନ୍ତି 'ଭରତ' ଏବଂ ଏଇ (ମନୁ) ଭରତଙ୍କ ଦେଶର ନାମ 'ଭାରତ' (ତସ୍ୟେଦଂ (୪।୩।୧୨୦) ସୂତ୍ରରେ ଭରତସ୍ୟ ରାଜ୍ଞ ଇଦମିତ୍ୟଣ ଅଣ୍)—

ପ୍ରଜାନାଂ ଭରଣାଚ୍ଚୈବ ମନୁର୍ଭରତ ଉଚ୍ୟତେ ।
ନିରୁକ୍ତବଚନୈଶ୍ଚୈବ ବର୍ଷଂ ତଦ୍ ଭାରତଂ ସ୍ମୃତମ ।। (ମତ୍ସ୍ୟ (୧୧୪।୫)

ଶ୍ରୀମଦ୍ ଭାଗବତ (୫।୭।୧-୫, ୧୧।୨।୧୭)ରେ ଜଡ଼ ଭରତଙ୍କ ନାମ ଅନୁସାରେ ଏ ଦେଶର ନାମ ଭାରତ ହୋଇଥିବା ଉଲ୍ଲେଖ ଅଛି ।

ବେଦରେ ଅଗ୍ନିଙ୍କୁ ମଧ୍ୟ 'ଭରତ' (ଭରତୋ' ବୈ ଅଗ୍ନିଃ— ଶତପଥ ବ୍ରାହ୍ମଣ) ବୋଲି କୁହାଯାଇଛି । ତେଣୁ ଅଗ୍ନି ମୂଳକ ଯଜ୍ଞପ୍ରଧାନ ଦେଶର ନାମ 'ଭାରତ'—ଭା (ଦୀପ୍ତୌ) ବା ଦୀପ୍ତିରେ ରତ । ସେହି ଶତପଥବ୍ରାହ୍ମଣ (୧୩।୫।୪।୧୩)ରେ ଶକୁନ୍ତଳା ପୁତ୍ର ସମଗ୍ର ଭୂମଣ୍ଡଳକୁ ଜିଣି ସହସ୍ରାଧିକ ଅଶ୍ୱ ଇନ୍ଦ୍ରଙ୍କୁ ପ୍ରଦାନ କରିଥିବା କଥା ଉଲ୍ଲେଖ ଅଛି, ଅତଏବ ଯଜ୍ଞାଗ୍ନି, ମନୁ, ଯୋଗୀ ଜଡ଼ ଭରତ ଓ ଦୁଷ୍ମନ୍ତ ପୁତ୍ର ଭରତଙ୍କ ଯୋଗୁଁ ଗୌରବାନ୍ୱିତ ଏ ଦେଶର ନାମ ଯଥାର୍ଥତଃ 'ଭାରତ' ହୋଇଛି ।

ବୃହସ୍ପତି ଆଗମରେ 'ହିନ୍ଦୁସ୍ଥାନ'ର ସୀମା ନିର୍ଦ୍ଦେଶ କରି କୁହାଯାଇଛି—

ହିମାଳୟଂ ସମାରଭ୍ୟ ଯାବଦ୍ଧିନ୍ଦୁଂମନୋହରମ୍ ।
ତଂ ଦେବନିର୍ମିତଂ ଦେଶଂ ହିନ୍ଦୁସ୍ଥାନଂ ପ୍ରଚକ୍ଷତେ ।।

ଉତ୍ତରରେ ହିମାଳୟଠାରୁ ଆରମ୍ଭକରି ଦକ୍ଷିଣରେ ମନୋହର ସିନ୍ଧୁ ବା ଭାରତ ମହାସାଗର ପର୍ଯ୍ୟନ୍ତ ବିସ୍ତୃତ ଦେବନିର୍ମିତ ଦେଶ ବା ଭୂଖଣ୍ଡ 'ହିନ୍ଦୁସ୍ଥାନ' ନାମରେ ଖ୍ୟାତ ।

ଏହି ଭାରତବର୍ଷର ମହିମା ଗାନକରି ବିଷ୍ଣୁପୁରାଣରେ କୁହାଯାଉଛି—'ଯେଉଁମାନେ ଭାରତ ଭୂମିରେ ଜନ୍ମ ଗ୍ରହଣ କରୁଛନ୍ତି ସେମାନେ ଧନ୍ୟ ଅଟନ୍ତି, କାରଣ ଦେବ ଭାରତରେ ଜନ୍ମହେଲେ ସ୍ୱର୍ଗ ଓ ମୋକ୍ଷ ମିଳେ । ଏଣୁ ଦେବତାମାନେ ମଧ୍ୟ ଭାରତବର୍ଷରେ ମନୁଷ୍ୟ ଜନ୍ମ ଗ୍ରହଣ କରିବାକୁ ଚାହାନ୍ତି ।'—

ଗାୟନ୍ତି ଦେବାଃ କିଲ ଗୀତକାନି ଧନ୍ୟାସ୍ତୁ ଯେ ଭାରତ ଭୂମିଭାଗେ ।
ସ୍ୱର୍ଗାପବର୍ଗାସ୍ପଦହେତୁଭୂତେ ଭବନ୍ତି ଭୂୟଃ ପୁରୁଷାଃ ସୁରତ୍ୱାତ୍ ।।
(ବିଷ୍ଣୁପୁରାଣ ୨।୩।୨୪)

ଭାରତବର୍ଷର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ଯେ, ଭାରତ ହେଉଛି କର୍ମଭୂମି, ଆଉ ସବୁ ଭୋଗଭୂମି । ତେଣୁ କୁହାଯାଇଛି—

ତଥାପି ଭାରତଂ ଶ୍ରେଷ୍ଠଂ ଜମ୍ବୁଦ୍ୱୀପେ ମହାମୁନେ ।
ଯତୋ ହି କର୍ମଭୂରେଷା ତତୋଽନ୍ୟା ଭୋଗଭୂମୟଃ ॥

ବାସ୍ତବରେ ପ୍ରାଚ୍ୟଭୂଖଣ୍ଡ ଭାରତ ଉଦୟ-ସୂର୍ଯ୍ୟ, ଜ୍ଞାନ ଓ କର୍ମର ପ୍ରତୀକ । ପାଶ୍ଚାତ୍ୟ ଦେଶର ଅସ୍ତସୂର୍ଯ୍ୟ ନିଶା ଓ ଭୋଗର ପ୍ରତୀକ । ମନ୍ତ୍ର ଶକ୍ତିରେ ବିଶ୍ୱାସୀ ଆମେ ଫଳାକାଂକ୍ଷା ନ ରଖି କର୍ମତତ୍ପର ଅଥଚ ପ୍ରଶାନ୍ତଚିତ୍ତ । ଯନ୍ତ୍ର ଶକ୍ତିରେ ବିଶ୍ୱାସୀ ସେମାନେ ଫଳାକାଂକ୍ଷୀ, ଭୋଗ ପରାୟଣ, ଜଞ୍ଜାଳଗ୍ରସ୍ତ ଓ ବ୍ୟସ୍ତ । ତେଣୁ 'ଭାରତ'ର ଅଧ୍ୟାତ୍ମ ସାଧନା ପ୍ରତି ସମସ୍ତେ ଆକୃଷ୍ଟ । ଆମର ଶାନ୍ତି ଅଛି କିଛିନାହିଁ, ସେମାନଙ୍କର ସବୁ ଅଛି ଶାନ୍ତିନାହିଁ । ଆମେ ଯଦି ଶାନ୍ତି ହରାଉଛୁ ସେମାନଙ୍କ ପାଇଁ ବା ସେମାନଙ୍କୁ ଅନୁକରଣ କରି ଏବଂ ସେମାନେ ଯଦି ଶାନ୍ତି ପାଉଛନ୍ତି ତେବେ ଆମର ଅନୁସରଣ କରି । ଆସନ୍ତୁ ଆମେ-ଆମେ ହେବା, ଶାନ୍ତି ପାଇବା ।

## 'ହିନ୍ଦୁ'—କିଏ ?

ଆଗରୁ କୁହାଯାଇଛି, ହିନ୍ଦୁସ୍ଥାନର ନିବାସୀମାନେ ହିଁ 'ହିନ୍ଦୁ' । ବିଷ୍ଣୁ ମନ୍ଦିର, ଶିବ ମନ୍ଦିର, ଦେବୀ ମନ୍ଦିରକୁ ଯାଉଥିବା ବା ବଣରେ ବୃକ୍ଷ ପୂଜା କରୁଥିବା ଶବରମାନେ କିମ୍ବା କେଉଁ ଦେବତାଙ୍କୁ ନ ପୂଜି ରାମକୃଷ୍ଣ ଶ୍ରୀଅରବିନ୍ଦ–ଶ୍ରୀମା, ନିଗମାନନ୍ଦ, ଅନୁକୂଳଚନ୍ଦ୍ର, ଗୁରୁ-ଦ୍ୱାରରେ ଗୁରୁ ପୂଜା କରୁଥିବା ଲୋକେ ଯେପରି ହିନ୍ଦୁ, ସେପରି ଏ ଭୂମିରେ ଗୀର୍ଜା, ମସ୍‌ଜିଦ୍‌ରେ ନିଜ ନିଜ ମନମୁତାବକ ପୂଜା କରୁଥିବା ଲୋକେ ମଧ୍ୟ 'ହିନ୍ଦୁ' ବୋଲାଇବାରେ କୌଣସି ଆପତ୍ତି ନାହିଁ, ଯଦି ସେମାନେ ନିଜକୁ ହିନ୍ଦୁ ବୋଲି କହିବେ । 'ହିନ୍ଦୁ' ଶବ୍ଦଟି ଯେହେତୁ କୌଣସି ଧର୍ମ-ବାଚକ ଶବ୍ଦ ନୁହେଁ, ହିନ୍ଦୁସ୍ଥାନର ଅଧିବାସୀ ନାଗରିକ ବୋଲି ସାବ୍ୟସ୍ତ କରିବା ପାଇଁ ଏକମାତ୍ର ଯୋଗ୍ୟତା—'ନିଜକୁ

ହିନ୍ଦୁ ବୋଲି ଘୋଷଣା କରି ଏ ମାଟି ପ୍ରତି ମମତା ପ୍ରକାଶ କରିବା' ବିଧିବଦ୍ଧ ହେବା ଉଚିତ ।

କାଳିକା ପୁରାଣରେ କୁହାଯାଇଛି ଯେ, ଯେତେବେଳେ ବଳବାନ୍ କଳିଯୁଗ ସମସ୍ତଙ୍କୁ ଆଚ୍ଛନ୍ନ କରି ରଖିଲା ଏବଂ ଧରଣୀ ଯବନମାନଙ୍କ ଦ୍ୱାରା ଆକ୍ରାନ୍ତ ହେଲା; ସେତେବେଳେ ହିନ୍ଦୁମାନେ ବିନ୍ଧ୍ୟାଚଳ ବା ଦକ୍ଷିଣ-ଆଡେ ଚାଲିଗଲେ—

ବଳିନା କଳିନାଚ୍ଛନ୍ନେ ଧର୍ମେ କବଳିତେ କଳୌ ।
ଯବନୈରବନୀ କ୍ରାନ୍ତା ହିଂଦବୋ ବିନ୍ଧ୍ୟମାବିଶନ୍ ॥

ଏଠାରେ ମଧ୍ୟ 'ହିନ୍ଦୁ' ଶବ୍ଦଟି ହିନ୍ଦୁସ୍ଥାନର ଅଧିବାସୀ ଭାବରେ ବ୍ୟବହୃତ । 'ଯବନ'ମାନେ ବା ବୈଦେଶିକଗଣ ଏ ଦେଶକୁ ବହୁବାର ଆକ୍ରମଣ କରି ଏହାକୁ ଶାସନ ମଧ୍ୟ କରିଛନ୍ତି । ଯେଉଁମାନେ ଆସି ନିଜ ଦେଶକୁ ଫେରିଗଲେ, ସେହି ବୈଦେଶିକ ଯବନଗଣ ହିନ୍ଦୁ ନୁହନ୍ତି । ଯେଉଁମାନେ ଏ ଦେଶର ପାଣିପବନରେ ବଢ଼ିଲେଣି ଓ ଏ ଦେଶରେ ରହିବେ, ସେମାନେ ଆଉ ଯବନ ହୋଇ ରହିବା ଉଚିତ ନୁହେ । ସେମାନେ ନିଜର ଅନୁକୂଳ ଧର୍ମ ଆଚରଣ କରନ୍ତୁ — ମାତ୍ର ହିନ୍ଦୁସ୍ଥାନର ଅଧିବାସୀ ଭାବରେ ନିଜକୁ 'ହିନ୍ଦୁ' ବା 'ହମ୍ ହିନ୍ଦୀ ହେଁ' ବୋଲି ଘୋଷଣା କରନ୍ତୁ ।

'ହିନ୍ଦୁ' ଶବ୍ଦଟି ପରବର୍ତ୍ତୀ କାଳରେ ଶାସ୍ତ୍ର ସମ୍ମତ ନହେଲେ ହେଁ ଏକ ଧର୍ମବାଚକ ଶବ୍ଦ ଭାବରେ କେତେକାଂଶରେ ବ୍ୟବହୃତ ହେଉଛି ସତ, ମାତ୍ର ଏଥିରେ ଏତେ ବ୍ୟାପକ ଉଦାର ଓ ସଂପ୍ରସାରିତ ଦୃଷ୍ଟିକୋଣ ନିହିତ ରହିଛି ଯେ ନିଜକୁ 'ହିନ୍ଦୁ' ବୋଲି ଘୋଷଣା କରି ମାନବୋଚିତ ଧର୍ମ ପାଳନ କଲେ ଯଥେଷ୍ଟ ହେବ । ଏଠାରେ 'ମାନବ' କହିଲେ ମହର୍ଷି ମନୁଙ୍କ 'ମନୁସଂହିତା'ରେ କଥିତ ଧର୍ମାଗ୍ନିର ବୋଲି ବୁଝିଲେ ତାହା ରକ୍ଷଣଶୀଳ ହିନ୍ଦୁଧର୍ମ ଅର୍ଥାତ୍ ସନାତନ ଧର୍ମକୁ ବୁଝାଇବ ।

'ସନାତନ'—ଶବ୍ଦଟି ମଧ୍ୟ ବଡ଼ ବ୍ୟାପକ ଦୃଷ୍ଟିକୋଣରୁ ପ୍ରଚଳିତ । ଶ୍ରୀମଦ୍ଭଗବଦ୍ଗୀତାରେ କୁହାଯାଇଛି—'ନିତ୍ୟଃ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନଃ'—ଯାହା ନିତ୍ୟ ଅର୍ଥାତ୍ ଅନାଦିରୁ ଅନନ୍ତକାଳ ପର୍ଯ୍ୟନ୍ତ (for all times) ପ୍ରଚଳିତ, ସର୍ବଦେଶ ଓ ସର୍ବ ପାତ୍ର ପାଇଁ (universal) ଉପଯୋଗୀ, ସ୍ଥିର (constant) ଓ ଅଚଳ ବା ଅପରିବର୍ତ୍ତନଶୀଳ (without change) ତାହାର ନାମ ସନାତନ । ଯିଶୁଖ୍ରୀଷ୍ଟଙ୍କ ପ୍ରତିଷ୍ଠିତ ଧର୍ମ ଖ୍ରୀଷ୍ଟଧର୍ମ, ବୁଦ୍ଧଙ୍କ ପ୍ରବର୍ତ୍ତିତ ଧର୍ମ ବୌଦ୍ଧ-ଧର୍ମ ପରି ସ୍ଥାପ୍ୟସ୍ଥାପକ ଭାବ ସମ୍ବନ୍ଧରେ ଷଷ୍ଠୀତତ୍ପୁରୁଷ ସମାସ କଲେ ସନାତନ (ବ୍ରହ୍ମ ବା ଈଶ୍ୱର)ଙ୍କ ଧର୍ମ (ସନାତନସ୍ୟ ଧର୍ମଃ) ହେଉଛି ସନାତନ ଧର୍ମ । ଏହା କୌଣସି ପୁରୁଷବିଶେଷଙ୍କ ଦ୍ୱାରା ପ୍ରବର୍ତ୍ତିତ ନୁହେ । କର୍ମଧାରୟ ସମାସ କଲେ—ସନାତନଶ୍ଚାସୌ ଧର୍ମଶ୍ଚେତି—ଯେଉଁ ଧର୍ମ ଶାଶ୍ୱତ ଅର୍ଥାତ୍ ଅନାଦି କାଳରୁ ଅନନ୍ତ କାଳ ପର୍ଯ୍ୟନ୍ତ ପ୍ରଚଳିତ ତାହା ହେଉଛି ସନାତନ ଧର୍ମ । ତେଣୁ ଶାଶ୍ୱତ ମାନବୀୟ ମୂଲ୍ୟବୋଧ ବା ଆତ୍ମିକ ନିଷ୍ଠା ଉପରେ ଏ ଧର୍ମ ପ୍ରତିଷ୍ଠିତ ।

ଏହାକୁ ବେଦମୂଳକ ଆର୍ଯ୍ୟ ଧର୍ମ ବୋଲି ମଧ୍ୟ କୁହାଯାଏ । ଦୟାନନ୍ଦଙ୍କ ଆର୍ଯ୍ୟସମାଜ ଏହି ମତର ସମର୍ଥକ । ଏମାନେ ମୂର୍ତ୍ତିପୂଜାର ବିରୋଧୀ ତଥା ବେଦ କୌଣସି ଜନ୍ମଗତ ଜାତିବିଶେଷର ହିଁ ଅଧ୍ୟେୟ ବସ୍ତୁ ବୋଲି ନମାନି ଏହାର ଯଥାର୍ଥ ଅଧ୍ୟେତାକୁ ହିଁ ଦ୍ୱିଜ ବୋଲି ଗୁଣକର୍ମାନୁସାରେ ସ୍ୱୀକାର କରନ୍ତି । ଏପରି ବ୍ୟାପକ ଦୃଷ୍ଟିକୋଣ ଥିଲେ ମଧ୍ୟ ମୂର୍ତ୍ତି ପୂଜାର ବିରୋଧ ଯୋଗୁଁ ଏହାର ସାର୍ବଜନୀନ ଆକର୍ଷଣ ରହିଲା ନାହିଁ । ଫଳରେ ଏହା ଶୈବ, ବୈଷ୍ଣବ ଶାଖାଭଳି ବିଶାଳ ହିନ୍ଦୁଧର୍ମକୁ ନ ବୁଝାଇ ଏହାର ଅନ୍ୟ ଏକ ଶାଖା ପରି ପ୍ରଚଳିତ ।

ଏହି ଦୃଷ୍ଟିରୁ କେତେକ ଓଁକାର ବା ପ୍ରଣବ ମନ୍ତ୍ର ଯୁକ୍ତ ବେଦ ଶାସ୍ତ୍ରକୁ ମାନୁଥିବା, ମଲପରେ ପ୍ରେତଦାହ କର୍ମ କରୁଥିବା, ପୁନର୍ଜନ୍ମରେ ବିଶ୍ୱାସ ଥିବା ଗୋ-ଭକ୍ତ ଜନତାଙ୍କୁ 'ହିନ୍ଦୁ' ବୋଲି କହନ୍ତି ।

ଓଁକାର ମୂଳମନ୍ତ୍ରାଢ୍ୟଃ ପ୍ରେତଦାହକ୍ରିୟାକରଃ ।
ପୁନର୍ଜନ୍ମନି ବିଶ୍ୱାସୀ ଗୋଭକ୍ତୋ ହିନ୍ଦୁରୁଚ୍ୟତେ ॥

କିନ୍ତୁ ଆଉ କେତେକ ଜନ୍ମରୁ ଜାତି ବୋଲି ବିଶ୍ୱାସସମ୍ପନ୍ନ ଜନତା ବେଦରେ କେବଳ ବ୍ରାହ୍ମଣମାନଙ୍କର ଅଧିକାର, ସମାଜର ରକ୍ଷା ବା ଶାସନ କ୍ଷତ୍ରିୟମାନଙ୍କ ଦାୟିତ୍ୱ, ବାଣିଜ୍ୟ ବା ବ୍ୟବସାୟ କରିବା ବୈଶ୍ୟ ଜାତିର କର୍ମ ଏବଂ ଉପର୍ଯ୍ୟୁକ୍ତ ତିନି ଜାତିର ସେବା କରିବା ହେଉଛି ଶୂଦ୍ର ଜାତିର କର୍ତ୍ତବ୍ୟ । ସମାଜକୁ ପରିଚାଳିତ କରିବା ପାଇଁ ମନ୍ୱାଦି ଧର୍ମଶାସ୍ତ୍ରକୁ ପ୍ରମାଣ ବୋଲି ଏଥିରେ ଗ୍ରହଣ କରାଯାଏ । କିନ୍ତୁ ଏହାର ସୀମିତ ଦୃଷ୍ଟିକୋଣ ଯୋଗୁଁ ଏହା 'ବ୍ରାହ୍ମଣ ଧର୍ମ' ଭାବରେ ବିଶାଳ ହିନ୍ଦୁଧର୍ମର ଏକ ଶାଖାଧର୍ମ ଭାବରେ ହିଁ ଗୃହୀତ ।

'ହିନ୍ଦୁଧର୍ମ' ବୋଲି ଆଜିର ବିଶ୍ୱର ବ୍ୟବହାରରୁ କହିଲାବେଳେ, ଏତିକି ବାରମ୍ବାର ମନେପକାଇ ଦିଆଯାଇପାରେ ଯେ, 'ହିନ୍ଦୁଧର୍ମ' ଖ୍ରୀଷ୍ଟ, ଇସ୍‌ଲାମ ପରି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଧର୍ମ ନୁହେ । ହିନ୍ଦୁଧର୍ମରେ ବୌଦ୍ଧଧର୍ମର ପ୍ରବର୍ତ୍ତକ ବୁଦ୍ଧ ଯେପରି ଜଗନ୍ନାଥ ବା ଭଗବାନଙ୍କ ଏକ ଅବତାର ବୋଲି ଗୃହୀତ, ସେହିପରି ଭାବରେ ଆମର 'କ୍ରିଷ୍ଟ' ହିଁ ପାଶ୍ଚାତ୍ୟବାସୀଙ୍କ ମୁଖରେ 'ଖ୍ରୀଷ୍ଟ' ଏବଂ ଆମର 'ମୋହ-ମଦ'ର ପ୍ରତ୍ୟେକ ଦେବତା ହିଁ ଇସଲାମ୍ ଧର୍ମ ପ୍ରଚାରକ 'ମହମ୍ମଦ' । ହିନ୍ଦୁସ୍ଥାନର ଧର୍ମ ହିନ୍ଦୁଧର୍ମ । ଏହା ଏକ ବିଶାଳ ବିସ୍ତୃତ ବଟ ବୃକ୍ଷ । ଏହା ତଳେ ଯେଉଁମାନେ ଆଶ୍ରୟ ନେଉଛନ୍ତି ସମସ୍ତଙ୍କୁ ତା'ର ଶୀତଳ ଛାୟା ପ୍ରଦାନ କରି ସମସ୍ତଙ୍କୁ ନିଜତଳେ ରଖିବା ହେଉଛି ହିନ୍ଦୁଧର୍ମର ବୈଶିଷ୍ଟ୍ୟ । ଆମର ରାମକୃଷ୍ଣ ସାଧନା କରି ଯିଶୁ ଓ ମହମ୍ମଦଙ୍କ ସାକ୍ଷାତ୍‌କାର ପାଇଥିଲେ । କବୀର, ସାଲବେଗ ଓ ଯବନ ହରିଦାସ ହିନ୍ଦୁଧର୍ମର ଶ୍ରେଷ୍ଠ ଉପାସକ ଓ ଭକ୍ତ ଥିଲେ । ତନ୍ତ୍ର-ଉପାସନାରେ ଆମ ମହାଶକ୍ତିଙ୍କର ଅଂଶ ଦେବତା ଭାବରେ ଖ୍ରୀଷ୍ଟ ଓ ମହମ୍ମଦଙ୍କୁ ମଧ୍ୟ ଆମେ ତର୍ପଣ କରିଥାଉଁ । ତେଣୁ ଏ ଧର୍ମରେ ସବୁ ଧର୍ମର ମାନବୀୟ ଉଦାର ଗୁଣଗୁଡ଼ିକର ଏକତ୍ର ସମାହାର ହୋଇଥିବା ଦେଖାଯାଏ ।

'ପାରିଜାତହରଣ ଚମ୍ପୂ'ରେ 'ହିନ୍ଦୁ' ଶବ୍ଦଟିର ବିଶ୍ଳେଷଣ କରି କୁହାଯାଇଛି—

ହିନସ୍ତି ତପସା ପାପାନ୍ ଦୈହିକାନ୍ ଦୁଷ୍ଟମାନସାନ୍ ।
ହେତିଭିଃ ଶତ୍ରୁବର୍ଗଂ ଚ ସ ହିନ୍ଦୁରଭିଧୀୟତେ ॥
ହିନସ୍ତି ତପସା ପାପାନ୍ ଦୈହିକଂ ମାନସଂ ତଥା ।
ହେତିଭିଃ ଶତ୍ରୁଂସ୍ଚ ସ ହିଂଦୁରିତି କଥ୍ୟତେ ॥

ତପସ୍ୟା ଦ୍ୱାରା ଯେ ଦୈହିକ ଓ ଦୂଷିତ ମାନସିକ ପାପାବଳୀକୁ ବିନାଶ କରେ ଏବଂ ଶତ୍ରୁମାନଙ୍କୁ ଅଗ୍ନିଜ୍ୱାଳାରେ ସଂତପ୍ତ କରାଏ, ସେ 'ହିନ୍ଦୁ' ନାମରେ ଅଭିହିତ । ଦୈହିକ ଓ ମାନସିକ ପାପ ନାଶ କରିବା ସଙ୍ଗେ ସଙ୍ଗେ ଯେ ଶସ୍ତ୍ର ଦ୍ୱାରା ଶତ୍ରୁଙ୍କୁ ପୀଡ଼ା ଦିଏ, ସେ ହିଂଦୁ ନାମରେ କଥିତ ।

ଏପରି ବିଶ୍ଳେଷଣ ପଛରେ 'ହିନସ୍ତି ଦୁଷ୍ଟାନ୍ ଇତି ହିନ୍ଦୁଃ'— ଦୁଷ୍ଟମାନଙ୍କୁ ନାଶ କରୁଥିବାରୁ 'ହିନ୍ଦୁ' ବୋଲି ବ୍ୟୁତ୍ପତ୍ତି ନିହିତ ଥିବା ସହଜେ ଅନୁମେୟ । ବୋଧହୁଏ, ବାରମ୍ବାର ଯବନଙ୍କଦ୍ୱାରା ଆକ୍ରମଣର ଶିକାର ହେବା ପରେ ଆତ୍ମରକ୍ଷା ସକାଶେ ଜାଗ୍ରତ ରହି ନିଜକୁ ସମର୍ଥ କରିବା ସକାଶେ ଏପରି ଏକ ପ୍ରେରଣାମୂଳକ ବ୍ୟୁତ୍ପତ୍ତିର ସୃଷ୍ଟି ହୋଇଛି । ଅନ୍ୟଥା ହିନ୍ଦୁ ହେଉଛି ଉଦାର ଶାନ୍ତିପ୍ରିୟ ଧର୍ମବିଶ୍ୱାସୀ ଭାରତୀୟ ଜନତା । ତେଣୁ 'ବୃଦ୍ଧସ୍ମୃତି'ରେ ଲେଖାଅଛି—

ହିଂସୟା ଦୂୟତେ ଯଶ୍ଚ ସଦାଚରଣତତ୍ପରଃ ।
ବେଦ-ଗୌ-ପ୍ରତିମା-ସେବୀ ସ 'ହିନ୍ଦୁ'-ମୁଖଶବ୍ଦଭାକ୍ ॥

ଅର୍ଥାତ୍ ଯେ ହିଂସା ହେଲେ ଦୁଃଖପାଏ, ଯେ ସଦାଚାରରେ ତତ୍ପର ତଥା ଯେ ବେଦକୁ ସମ୍ମାନ ଦିଏ, ଗାଈକୁ ଭକ୍ତି କରେ ଓ ମୂର୍ତ୍ତି ପୂଜା କରେ ସେ ହେଉଛି 'ହିନ୍ଦୁ' ।

ଅବଶ୍ୟ ଏପରି ଲକ୍ଷଣ ଅବ୍ୟାପ୍ତି ଦୋଷଯୁକ୍ତ କାରଣ ଏଥିରେ ନିର୍ଗୁଣ ଉପାସକ ବ୍ରାହ୍ମ ଓ ଆର୍ଯ୍ୟ ସମାଜର ଲୋକ ଏଥିରେ ହିନ୍ଦୁ ମଧ୍ୟରେ ଅନ୍ତର୍ଭୁକ୍ତ ହେଉନାହାନ୍ତି ।

ଅବଶ୍ୟ ଭାରତୀୟ ମନୀଷାର ଶ୍ରେଷ୍ଠ ସମ୍ପଦ ବେଦକୁ ଛାଡ଼ିଦେଲେ, ଏହାର ସନାତନ ସଂସ୍କୃତିର ମହତ୍ତ୍ୱ ଉପଲବ୍ଧି କରିହେବ ନାହିଁ। ତେଣୁ ହିନ୍ଦୁମାନେ ବେଦକୁ ହିଁ ଧର୍ମର ମୂଳ ବୋଲି ମାନିବାକୁ ହେବ। ମନୁ ପ୍ରଭୃତିଙ୍କ ପ୍ରଣୀତ ମନୁସଂହିତା ପ୍ରଭୃତି ଅଷ୍ଟାଦଶ ସ୍ମୃତି ଗ୍ରନ୍ଥ ଏବଂ ଗୃହ୍ୟସୂତ୍ର ଓ ଶ୍ରୌତ ସୂତ୍ର ପରି ଶୀଳ ବା ନିଷ୍ଠାଶୀଳ ଭଲରୂପେ ଜାଣିଥିବା ସାଧୁମାନଙ୍କର ଆଚରଣ ସହ ନିଜ ଆତ୍ମାର ସନ୍ତୋଷକର କ୍ରିୟାକଳାପ ହିଁ ଆମ ଧର୍ମର ମୂଳ। ତେଣୁ କୁହାଯାଇଛି—

ବେଦୋଽଖିଳୋ ଧର୍ମମୂଳଂ ସ୍ମୃତିଶୀଳେ ଚ ତଦ୍‌ବିଦାମ୍।
ଆଚାରଶ୍ଚୈବ ସାଧୂନାମ୍ ଆତ୍ମନସ୍ତୁଷ୍ଟିରେବ ଚ॥

ତେଣୁ ସ୍ୱାଧ୍ୟାୟ ବା ସତ୍‌ଶାସ୍ତ୍ରାଧ୍ୟୟନ ସହ ଆତ୍ମସନ୍ତୋଷମୂଳକ ସଦାଚାର ହିଁ ଏହି ଧର୍ମର ମୂଳଭିତ୍ତି।

୨

ବିଶ୍ୱହିନ୍ଦୁ ପରିଷଦ୍‌ର ସମ୍ବିଧାନରେ ଆଧୁନିକ ଦୃଷ୍ଟିକୋଣରୁ 'ହିନ୍ଦୁ-ଲକ୍ଷଣ' ନିର୍ଦ୍ଦେଶ କରି ଉଲ୍ଲେଖ ଅଛି—

ଭାରତୀୟର୍ଷିସଂପ୍ରୋକ୍ତାନ୍ ଇହାମୁତ୍ରାର୍ଥସାଧକାନ୍।
ଯୋଽଙ୍ଗୀକରୋତି ସଶ୍ରଦ୍ଧଂ ସତ୍ସିଦ୍ଧାନ୍ତାନ୍ ସନାତନାନ୍ ॥୧॥
ମହାତ୍ମଭିର୍ବିବିଧୈଃ କାଳେ କାଳେ ପ୍ରବର୍ତ୍ତିତାନ୍।
ସଂପ୍ରଦାୟାନାଦ୍ରିୟତେ ଯଃ ସର୍ବାନ୍ ପାରମାର୍ଥିକାନ୍ ॥୨॥
ଯସ୍ୟ କସ୍ୟାପି ଜାତୋଽସୌ ଯଃ କୋଽପି ବାସ୍ତୁ ଜନ୍ମନା।
ସଚ୍ଛୀଳୋଦାରଚରିତଃ ସୋଽତ୍ର ହିନ୍ଦୁରିତି ସ୍ମୃତଃ ॥୩॥

ଇହଜନ୍ମ ଓ ପରଜନ୍ମର ସାଧକ ଭାରତୀୟ ଋଷିପ୍ରୋକ୍ତ ସନାତନ (ନିତ୍ୟ ଶାଶ୍ୱତ) ସିଦ୍ଧାନ୍ତାବଳୀକୁ ଯେ ଶ୍ରଦ୍ଧାର ସହିତ ଅଙ୍ଗୀକାର କରେ, ବିବିଧ ସ୍ୱଭାବ ସମ୍ପନ୍ନ ମହାତ୍ମାମାନଙ୍କ ଭିନ୍ନ ଭିନ୍ନ ସମୟରେ ପ୍ରବର୍ତ୍ତିତ ପାରମାର୍ଥିକ ସଂପ୍ରଦାୟକୁ ଯେ ଆଦର କରେ, ସେ ଯେଉଁଠି ଜନ୍ମହେଉ ବା ତା'ର ଜନ୍ମଗତ ଜାତି ଯାହା ହେଉ ପଛେ ସେହି ସତ୍‌-ସ୍ୱଭାବସମ୍ପନ୍ନ ଉଦାର ଚରିତ ବ୍ୟକ୍ତି 'ହିନ୍ଦୁ' ନାମରେ ବିଦିତ।

ଏଠାରେ ମଧ୍ୟ ଆଧୁନିକ ଦୃଷ୍ଟିକୋଣରୁ କୁହାଯାଉଥିବା ହିନ୍ଦୁ-ଧର୍ମାବଲମ୍ବୀ ବା ହିନ୍ଦୁମାନଙ୍କର ଲକ୍ଷଣ ନିର୍ଦ୍ଦେଶରେ ଏହି ଧର୍ମରେ ଆସ୍ଥାଶୀଳ ସମସ୍ତଙ୍କୁ ବିଶ୍ୱହିନ୍ଦୁ ପରିଷଦ୍ ଉଦାର ଚିତ୍ତରେ ଗ୍ରହଣ କରି ନେଇଛନ୍ତି ।

ପ୍ରକୃତରେ କହିବାକୁ ଗଲେ ପୁନର୍ଜନ୍ମରେ ବିଶ୍ୱାସୀ ଭାରତଭୂମି ପ୍ରତି ମମତାଶୀଳ ଆମ ଆର୍ଷଶାସ୍ତ୍ର ଅର୍ଥାତ୍ ବେଦ ବେଦାନ୍ତ ସ୍ମୃତି ପୁରାଣଶାସ୍ତ୍ର ଅନୁମୋଦିତ ସରଣିରେ ଜୀବନଯାପନ କରୁଥିବା ଓ ପ୍ରତ୍ୟେକ ମୁହୂର୍ତ୍ତ ଅଧାତ୍ମ ବା ଦିବ୍ୟଚିନ୍ତାରେ କଟାଉଥିବା ସଦାଚାରଶୀଳ ଲୋକ ହିଁ 'ହିନ୍ଦୁ' ଅଟେ ।

## ଧର୍ମ କ'ଣ ?

'ଧର୍ମ' ଶବ୍ଦଟି 'ଧୃଞ୍-ଧାରଣେ' ଧାତୁରୁ 'ଧରତି ଲୋକଂ, ଧ୍ରିୟତେ ଲୋକୋଽନେନ ବେତି' ଉଣାଦି 'ମନ୍'-ପ୍ରତ୍ୟୟ ହୋଇ ନିଷ୍ପନ୍ନ । ଏହାର ଅର୍ଥ, ଯାହା ଲୋକକୁ ଧରିରଖେ ବା ଯାହାଦ୍ୱାରା ଲୋକ ବା ସଂସାର ଧୃତହୋଇଛି ବା ଧରିବନ୍ଧା ନିୟମରେ ଚଳୁଛି ତାହା ଧର୍ମ । ତେଣୁ ଧର୍ମ ନ ଥିଲେ ଧରିବନ୍ଧା ନିୟମ ବା ଶୃଙ୍ଖଳାର ଅଭାବରୁ ମନୁଷ୍ୟ ଉଚ୍ଛୃଙ୍ଖଳ ହେବ ଓ ତା'ର ଅଧଃପତନ ହେବ । ମହାଭାରତ (କର୍ଣ୍ଣପର୍ବ, ୬୯।୫୯)ରେ କୁହାଯାଇଛି—

ଧାରଣାଦ୍ ଧର୍ମମିତ୍ୟାହୁଃ ଧର୍ମୋ ଧାରୟତେ ପ୍ରଜାଃ ।
ଯତ୍ ସ୍ୟାତ୍ ଧାରଣସଂଯୁକ୍ତଂ ସ ଧର୍ମ ଇତି ନିଶ୍ଚୟଃ ।।

ଅତଏବ, ଯାହାଦ୍ୱାରା ସମସ୍ତପ୍ରକାର ଧାରଣ ହୁଏ ବା ଯାହା ଧରିରଖେ ତାହା ଧର୍ମ । ଯାହାକଲେ ମନୁଷ୍ୟର ଅଧଃପତନ ହୁଏ ସେ ତଳେ ପଡ଼ିଯାଏ, ତାହା ଅଧର୍ମ । ଅତଏବ ଯେଉଁ କ୍ରିୟାଦ୍ୱାରା ମଣିଷର କୁଶଳ ବା ଶ୍ରେୟ ହୁଏ ତାହା ଧର୍ମ ଏବଂ ଯେଉଁ କ୍ରିୟା ଦ୍ୱାରା ମଣିଷର ଅମଙ୍ଗଳ ହୁଏ, ତାହା ଅଧର୍ମ । ତେଣୁ ବାୟୁ ପୁରାଣ (ଆନନ୍ଦାଶ୍ରମ ସଂସ୍କରଣ, ୫୯।୨୭)ରେ କୁହାଯାଇଛି—

ଧର୍ମାଧର୍ମାବିହ ପ୍ରୋକ୍ତୌ ଶବ୍ଦାବେତୌ କ୍ରିୟାମୟୌ ।
କୁଶଳାକୁଶଳଂ କର୍ମ ଧର୍ମାଧର୍ମାବିତି ସ୍ମୃତୌ ।।

ସମସ୍ତେ ସୁଖରେ ରହିବାକୁ ଇଚ୍ଛା କରନ୍ତି । ଏହି ସୁଖ କେବଳ ଧର୍ମ-ଆଚରଣ ଦ୍ୱାରା ସମ୍ଭବ । ତେଣୁ ସମସ୍ତ ନର ଧର୍ମ-ଆଚରଣ କରିବା ଉଚିତ (୧) । ଲୋକମାନଙ୍କର ଦୁଃଖଯୋଗ ଅଧର୍ମରୁ ହୋଇଥାଏ ଏବଂ ଅକ୍ଷୟ ସୁଖଯୋଗ ଧର୍ମଯୋଗୁଁ ହୋଇଥାଏ (୨) । ତେଣୁ ଧର୍ମ କଲେ ଲୋକ ଜୀବନର ଇହକାଳ ଓ ପରକାଳରେ ମଧ୍ୟ ସୁଖ ପାଇଥାଏ (୩) । ସଂସାରରେ ଧର୍ମ ହିଁ ନିତ୍ୟ । ସୁଖଦୁଃଖ ଅନିତ୍ୟ । ଏଣୁ ସୁଖ, ଭୟ, ଲୋଭ ଅଥବା ପ୍ରାଣ ସଂକଟରେ ଧର୍ମକୁ କେବେ ଛାଡିବ ନାହିଁ । ଜୀବ (ଆତ୍ମା ବା ଈଶ୍ୱରଙ୍କ ଅଂଶ ଭାବରେ) ନିତ୍ୟ; ମାତ୍ର ତା'ର ସୁଖଦୁଃଖାଦିର ହେତୁ ବା କାରଣ ହେଉଛି ଅନିତ୍ୟ । ତେଣୁ ମହାଭାରତ (ସ୍ୱର୍ଗାରୋହଣ, ୫।୬୦)ରେ କୁହାଯାଇଛି—

**ନ ଜାତୁ କାମାନ୍ନ ଭୟାନ୍ନ ଲୋଭାଦ୍ଧର୍ମଂ ତ୍ୟଜେଜ୍ଜୀବିତସ୍ୟାପି ହେତୋଃ ।**
**ଧର୍ମୋ ନିତ୍ୟଃ ସୁଖଦୁଃଖେ ତ୍ୱନିତ୍ୟେ ଜୀବୋ ନିତ୍ୟଃ ହେତୁରସ୍ୟ ତ୍ୱନିତ୍ୟଃ ॥**

ତେଣୁ ଧର୍ମତ୍ୟାଗ କେବେହେଁ କରଣୀୟ ନୁହେଁ । ଏହି 'ଧର୍ମ' ଅନେକ ସ୍ଥାନରେ କର୍ତ୍ତବ୍ୟ ଅର୍ଥରେ ପ୍ରଚଳିତ । କର୍ତ୍ତବ୍ୟ କର୍ମ ମଧ୍ୟ ମନୁଷ୍ୟକୁ ଇହକାଳରେ ଧରିରଖେ ଓ ପରକାଳପାଇଁ 'ପ୍ରାରବ୍ଧ' ଫଳ ଆକାରରେ ଭୋଗହୁଏ ।

ଏହି ଧର୍ମ କ'ଣ ?—ଏହା ସାମାଜିକ ପରିପ୍ରେକ୍ଷାରେ ବହୁ ଭାବରେ ଆଲୋଚିତ ହୋଇଛି ମହାଭାରତାଦି ଗ୍ରନ୍ଥରେ ଓ ସ୍ମୃତିଶାସ୍ତ୍ର ମାନଙ୍କରେ । ବ୍ୟାସ କହୁଛନ୍ତି—

**ଊର୍ଦ୍ଧ୍ୱବାହୁ ବିରୌମ୍ୟେଷ ନ ଚ କଶ୍ଚିଚ୍ଛୃଣୋତି ମାମ୍ ।**
**ଧର୍ମାଦର୍ଥଶ୍ଚ କାମଶ୍ଚ ସ ଧର୍ମଃ କିଂ ନ ସେବ୍ୟତେ ?**

—ମୁଁ ହାତଟେକି ଚିତ୍କାର କରୁଛି କିନ୍ତୁ ମୋ କଥା କେହି ଶୁଣୁ ନାହାନ୍ତି । ଧର୍ମରୁ ଅର୍ଥ ଓ କାମ ଉଭୟ ମିଳେ । ତଥାପି ସେପରି ଧର୍ମ ତୁମେ କାହିଁକି ଆଚରଣ କରୁ ନାହଁ ?

---

(୧) ସୁଖଂ ବାଞ୍ଛନ୍ତି ସର୍ବେ ହି ତଚ୍ଚ ଧର୍ମସମୁଦ୍ଭବମ୍ ।
ତସ୍ମାଦ୍ ଧର୍ମଃ ସଦା କାର୍ଯ୍ୟଃ ସର୍ବବର୍ଣ୍ଣୈଃ ପ୍ରୟତ୍ନତଃ । ।।
(ଦକ୍ଷସ୍ମୃତି, ୩।୨୩)

(୨) ଅଧର୍ମ ପ୍ରଭବଂ ଚୈବ ଦୁଃଖଯୋଗଂ ଶରୀରିଣାମ୍ ।
ଧର୍ମାର୍ଥପ୍ରଭବଂ ଚୈବ ସୁଖସଂଯୋଗମକ୍ଷୟମ୍ ।। (ମନୁସ୍ମୃତି ୬।୬୪)

(୩) ତତୋ ଧର୍ମସମାଯୁକ୍ତଃ ସଜୀବଃ ସୁଖମେଧତେ ।
ଇହଲୋକେ ପରେଚୈବ.........(ଅନୁଶାସନ, ୧୧୧।୭୬)

ବ୍ୟାସଙ୍କର ଏହି ଆକୁଳ କ୍ରନ୍ଦନ ଆଜି ମଧ୍ୟ ଅରଣ୍ୟରୋଦନ ହୋଇ ରହିଛି । ସମସ୍ତେ ଅର୍ଥ ଉପାର୍ଜ୍ଜନ ଓ କାମ-ଉପଭୋଗ ପ୍ରଚୁର ମାତ୍ରାରେ କରିବା ପାଇଁ ବ୍ୟଗ୍ର । ଧର୍ମ କରିବାରେ କାହାର ଆଗ୍ରହ ନାହିଁ । ଆମର ଅର୍ଥୋପାର୍ଜ୍ଜନ ଓ କାମୋପଭୋଗ ଧର୍ମମୂଳକ ହେବା ଉଚିତ । ଧର୍ମବିରୁଦ୍ଧ ଲାଞ୍ଚାଦି ଅନ୍ୟାଯ୍ୟ (ଅନ୍ୟ-ଆୟ) ଅର୍ଥୋପାର୍ଜନ ବା ଧର୍ମବିରୁଦ୍ଧ ଅ-ନ୍ୟାଯ୍ୟ ପରଦାରାଭିଗମନାଦି କାମୋପଭୋଗ ଦୁଃଖର କାରଣ । ତେଣୁ ମହାଭାରତ (ବନପର୍ବ)ରେ କୁହାଯାଇଛି—

'ଅବିରୋଧାତ୍ତୁ ଯୋ ଧର୍ମଃ ସ ଧର୍ମଃ ସତ୍ୟବିକ୍ରମ'

ଏହି ଅବିରୋଧ ଶାସ୍ତ୍ରଗତ, ସମାଜସଂଗତ ଓ ବିବେକପ୍ରାପ୍ତ ହେବା ଉଚିତ ।

ତେଣୁ ଧର୍ମ କ'ଣ, ଅଧର୍ମ କ'ଣ— ଏହାର ଜ୍ଞାନ ବେଦାଦି ଶ୍ରୁତି, ମନ୍ୱାଦି ସ୍ମୃତି ଓ ତା'ର ଉପବୃଂହଣ ମତ୍ସ୍ୟକୂର୍ମାଦି ପୁରାଣାଦି ଶାସ୍ତ୍ରରୁ ହେବ । ଯେଉଁଠାରେ ଶ୍ରୁତି ଓ ସ୍ମୃତି ମଧ୍ୟରେ ଆପାତ ବିରୋଧ ଥିଲା-ପରି ମନେ ହେବ ସେଠାରେ 'ଶ୍ରୁତି'କୁ ହିଁ ପ୍ରମାଣ ଭାବରେ ସ୍ୱୀକାର କରିବାକୁ ହେବ (କାରଣ 'ଶ୍ରୁତିସ୍ମୃତ୍ୟୋର୍ବିରୋଧେ ତୁ ଶ୍ରୁତିରେବ ଗରୀୟସୀ') ବୋଲି ଶାସ୍ତ୍ରବାଣୀ ଓ ପରମ୍ପରା ରହିଛି । ଶ୍ରୁତି ସ୍ମୃତି ପ୍ରମାଣକୁ ନେଇ ସମାଜ ନିୟନ୍ତ୍ରିତ । କିନ୍ତୁ ଦେଶକାଳପାତ୍ର ବିଚାରରେ ଯୁଗୋପଯୋଗୀ ଆହୁରି ଅନେକ କଥା ଶାସ୍ତ୍ରରେ ଉଲ୍ଲେଖ ନ ଥିଲେ ହେଁ ସମାଜର ଚଳଣିରୁ ସଂଗ୍ରହ କରି ପାଳନ କରିବାକୁ ହେବ । ଲୋକବିରୁଦ୍ଧ କୌଣସି କଥା କେବେହେଲେ କରିବ ନାହିଁ—କାରଣ 'ଯଦ୍ୟପି ସିଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାଚରଣୀୟମ୍' । ସର୍ବୋପରି ନିଜର ବିବେକ ହେଉଛି କର୍ତ୍ତବ୍ୟାକର୍ତ୍ତବ୍ୟର ବା କ'ଣ କରିବାକୁ ହେବ ତଥା କ'ଣ କରିବା ଅନୁଚିତ—ଏହାର ଯଥାର୍ଥ ମାର୍ଗ ପ୍ରଦର୍ଶକ । ମଣିଷ ଅଧର୍ମ କରିବାକୁ ଗଲାବେଳେ ମଣିଷର ବିବେକ ସବୁବେଳେ ବାଧା ଦେଇଥାଏ । ତେଣୁ କୁହାଯାଇଛି—

**'ସତାଂ ହି ସନ୍ଦେହପଦେଷୁ ବସ୍ତୁଷୁ ପ୍ରମାଣମନ୍ତଃକରଣ ପ୍ରବୃତ୍ତୟଃ'**

ତେଣୁ ସନ୍ଦେହାସ୍ପଦ ବିଷୟରେ ଅର୍ଥାତ୍ ଧର୍ମସଂକଟ ବା କର୍ମ-ସଂକଟବେଳେ ସତ୍‌ସ୍ୱଭାବସମ୍ପନ୍ନ ଲୋକମାନଙ୍କର ଅନ୍ତଃକରଣର ପ୍ରବୃତ୍ତି ହିଁ କର୍ତ୍ତବ୍ୟାକର୍ତ୍ତବ୍ୟର ଉତ୍କୃଷ୍ଟ ମାର୍ଗ ପ୍ରଦର୍ଶକ । ଡକାୟତ ଡକାୟତି କଲାବେଳେ ମଧ୍ୟ ତା'ର ବିବେକ ବାଧା ଦେଇଥାଏ । କିନ୍ତୁ ଡକାୟତର ଉଗ୍ରପ୍ରବୃତ୍ତି ତା'ର ପ୍ରକୃତିର ଅନ୍ତଃସ୍ୱରକୁ ଏଡ଼ି ଦେଇଥାଏ ବା ଶୁଣି ପାରି ନ ଥାଏ । ତା' ଭିତରେ କେହି ଯଦି ବାଧା ଦେଉ ନ ଥା'ନ୍ତା ତେବେ ସେ କୁ-କର୍ମ କଲାବେଳେ ଶଙ୍କିତ ହୃଦୟରେ, ଲୁଚକରି, ପୋଲିସ ଦୃଷ୍ଟିରୁ ବା ନ୍ୟାୟାଳୟର ବିଚାରରୁ ବଞ୍ଚିବା ପାଇଁ ଚେଷ୍ଟା କରୁ ନଥାଆନ୍ତା । ତେଣୁ ମହର୍ଷି ମନୁ କହିଛନ୍ତି—

**ବେଦଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।**
**ଏତଚ୍ଚତୁର୍ବିଧଂ ପ୍ରାହୁଃ ସାକ୍ଷାଦ୍ ଧର୍ମସ୍ୟ ଲକ୍ଷଣମ୍ ।।** (ମନୁ ୨।୧୨)

ଅର୍ଥାତ୍ ବେଦ, ସ୍ମୃତି, ଶିଷ୍ଟାଚାର ଓ ନିଜର ଆତ୍ମା ଯାହା ଭଲ ମନେକରେ—ଏହି ଚାରୋଟି ହେଉଛି ଧର୍ମର ମୂଳ ଲକ୍ଷଣ । ତେଣୁ ବେଦ, ସ୍ମୃତି ପ୍ରମାଣ ସହ ଶିଷ୍ଟାଚାର ଉଦାହରଣ ସ୍ୱରୂପ ଆମ ଆଗରେ ଥିଲେ ମଧ୍ୟ ତା'ର ଅନ୍ଧାନୁକରଣ ନକରି ନିଜର ବିବେକକୁ ପଚାରି ଧର୍ମାଚରଣ କରିବ । ଆତ୍ମା ଯାହା ଭଲ ମନେ କରିବ, ଏହାର ଅର୍ଥ—ମନରେ ଯାହା ଶୁଦ୍ଧବୋଲି ଉପଲବ୍ଧି ହେବ ତଦନୁସାରେ କର୍ତ୍ତବ୍ୟ କରିବା ଉଚିତ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଶ୍ରୁତି, ସ୍ମୃତି ଓ ସଦାଚାର ଦ୍ୱାରା କୌଣସି କାର୍ଯ୍ୟରେ ଧର୍ମାଧର୍ମଜ୍ଞ ନିର୍ଣ୍ଣୀତ ହୋଇ ନପାରିଲେ ଚତୁର୍ଥ ଉପାୟ "ମନଃପୂତତା ('ମନଃ ପୂତଂ ସମାଚରେତ୍')" ଦ୍ୱାରା ସ୍ଥିର କରିବାକୁ ହେବ । ଅନ୍ୟତ୍ର ଗୌତମ ମଧ୍ୟ କହିଛନ୍ତି –

**"ବେଦୋଽଖିଲୋ ଧର୍ମମୂଳଂ ସ୍ମୃତିଶୀଳେ ଚ ତଦ୍‌ବିଦାମ୍ ।**
**ଆଚାରଶ୍ଚୈବ ସାଧୂନାମାତ୍ମନସ୍ତୁଷ୍ଟିରେବ ଚ ।।"**

କିନ୍ତୁ ଏଇ 'ଆତ୍ମତୁଷ୍ଟି' ବା 'ଆତ୍ମସଂତୋଷ'ର ଅର୍ଥ ନୁହେଁ ଇନ୍ଦ୍ରିୟ ପରାୟଣତା ବା ଯଥେଚ୍ଛାଚାରିତା । ଶ୍ରୁତିର ବହୁବାକ୍ୟତା,

ସ୍ମୃତିର ବିବିଧତା, ଆଗ୍ରହର ଭିନ୍ନତା ଭିତରୁ ଶ୍ରେୟ ପକାଶେ ବାଛିବାକୁ ହେବ ନିଜର ପ୍ରିୟ ସାଧନ । ତେଣୁ କୁହାଯାଇଛି—

ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନାଃ ନୈକୋମୁନିର୍ଯସ୍ୟ ମତଂ ପ୍ରମାଣମ୍ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃ ସ ପନ୍ଥାଃ ॥

ତର୍କର ସୀମା ନାହିଁ । ତେଣୁ ତର୍କ ଦ୍ୱାରା କୌଣସି ସତ୍ ସିଦ୍ଧାନ୍ତରେ ଉପନୀତ ହେବା ସହଜ ନୁହେ । ଶ୍ରୁତି ମଧ୍ୟ ଅନେକ । ସେଥିରେ ପୁଣି ଏପରି କୌଣସି ଜଣେ ସର୍ବଜନଗୃହୀତ ମନନଶୀଳ ମୁନି ନାହାନ୍ତି ଯାହାଙ୍କୁ ଆମେ ପ୍ରମାଣସିଦ୍ଧ ପୁରୁଷ ଭାବରେ ଗ୍ରହଣ କରିପାରିବା । ଧର୍ମର ତତ୍ତ୍ୱ ପୁଣି ଅତି ଗହନ । ଏପରିସ୍ଥଳେ ମହାପୁରୁଷମାନେ ଯେଉଁ ମାର୍ଗରେ ଯାଇ ଯେପରି ଆଚରଣ କରି ଧର୍ମରକ୍ଷା କରିଛନ୍ତି, ତାହା ହିଁ କେବଳ ଆମର ଆଦର୍ଶ ଓ ଅନୁକରଣୀୟ ତଥା ତାହା ହିଁ ଆମ ପାଇଁ ସନ୍ତୋଷଜନକ ବିଦ୍ୟମାର୍ଗ ।

ମଣିଷ ଖାଉଛି ପିଉଛି, ଶୋଉଛି—ଏ ସବୁ ବଞ୍ଚିବାଲାଗି ଆବଶ୍ୟକ । କିନ୍ତୁ ଏ ସବୁକୁ ସର୍ବସ୍ୱ ମନେକରି ଏଥିଲାଗି ବଞ୍ଚିରହିବା ପଶୁତ୍ୱ । ପଶୁ ଖାଏ, ବଞ୍ଚେ କିନ୍ତୁ ବଞ୍ଚି ରହିବାଟାକୁ ଅନ୍ୟର ଉପକାରରେ ଉପଯୋଗ କରିପାରେ ନାହିଁ । ପଶୁ ଶୁଏ କିନ୍ତୁ ତା'ର ବିଶ୍ରାମ ପ୍ରବୃତ୍ତିଗତ । ବିଶ୍ରାମ ନେଇ ପୁଣି କର୍ମପ୍ରେରଣା ଲାଭ କରିବା ସକାଶେ ସେ ଶୁଏ ନାହିଁ । ସେ ଇତର ପ୍ରାଣୀକୁ ଦେଖି ଭୟ ପାଇ ଆକ୍ରମଣ କରିଦିଏ କିନ୍ତୁ ବିଚାର କରେ ନାହିଁ ଯେ ସେ ପ୍ରାଣୀଟି ତା'ର କ୍ଷତି କରିବାକୁ ସମର୍ଥ କି ନାହିଁ । ମୈଥୁନ ବା ରତିକ୍ରିୟା ମଧ୍ୟ ତା'ର ପ୍ରବୃତ୍ତିଗତ କିନ୍ତୁ ଉଦ୍ଦେଶ୍ୟମୂଳକ ନୁହେ । ବିବେକଶୀଳ ମଣିଷ ଯଦି ସାଧାରଣ ପ୍ରାଣୀ ଭଳି ଆହାର, ନିଦ୍ରା, ଭୟ, ମୈଥୁନରେ ଲିପ୍ତ ରହେ, ତେବେ ଇତର ପ୍ରାଣୀଠାରୁ ତା'ର ବୈଶିଷ୍ଟ୍ୟ କ'ଣ ? ତା'ର ବିବେକର ଯଦି ସେ ସଦୁପଯୋଗ ନ କଲା, ତେବେ ସେ ନିଜକୁ ପଶୁ ବୋଲି ନ କହି ଅନ୍ୟ ପ୍ରାଣୀଠାରୁ ଅଲଗା 'ମଣିଷ' ବୋଲି କାହିଁକି କେଉଁଥି ପାଇଁ କହିବ ? ମଣିଷର ବିବେକ ପ୍ରଣୋଦିତ 'ଧର୍ମ' ଆଚରଣ ହିଁ ତା'ର ମନୁଷ୍ୟତ୍ୱ । ତେଣୁ କୁହାଯାଇଛି—

**ଆହାର ନିଦ୍ରାଭୟମୈଥୁନଂ ଚ ସାମାନ୍ୟମେତତ୍ ପଶୁଭିର୍ନରାଣାମ୍ ।**
**ଧର୍ମୋ ହି ତେଷାମଧିକୋ ବିଶେଷୋ ଧର୍ମେଣ ହୀନାଃ ପଶୁଭିଃ ସମାନାଃ ॥**

ଯଦି ମଣିଷ ଧର୍ମ-ଆଚରଣ ନକରେ, ତେବେ ସେ ପଶୁ ସଦୃଶ ସମାନ । ଖାଇବା, ପିଇବା, ମୈଥୁନ କରିବା—ଏ ସବୁ ପ୍ରାଣୀମାନଙ୍କର ପ୍ରବୃତ୍ତି । କିନ୍ତୁ କ'ଣ ଖାଇବ, କ'ଣ ନ ଖାଇବ; କ'ଣ ପିଇବ, କ'ଣ ନ ପିଇବ; କେଉଁଠାରେ କେତେବେଳେ କେଉଁ ଅବସ୍ଥାରେ ମୈଥୁନ କରିବ ଅବା ନ କରିବ—ଏ ସବୁର ବିଚାର କରିବା ଶକ୍ତି ମଣିଷର ହିଁ ଅଛି । ସେ ଯଦି ସେହି ବିଚାର ଶକ୍ତିର ପ୍ରୟୋଗ ନ କରେ ତେବେ ସେ ମଣିଷ ନୁହେ ପଶୁ । ମାଂସ ଖାଇବା, ମଦ ପିଇବା, ମୈଥୁନ କରିବା ପ୍ରବୃତ୍ତିରୁ ନିବୃତ୍ତ ହୋଇପାରିଲେ ମଣିଷର ଉତ୍ତରଣ ହେବ, ସେ ଲୋକରୁ ଲୋକୋତ୍ତର ଗୁଣର ଅଧିକାରୀ ହୋଇପାରିବ । ତେଣୁ ମହାମାନବ ମନୁ (୫।୫୬) କହିଛନ୍ତି—

**ନ ମାଂସ ଭକ୍ଷଣେ ଦୋଷୋ ନ ମଦ୍ୟେ ନ ଚ ମୈଥୁନେ ।**
**ପ୍ରବୃତ୍ତିରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ॥**

ଅତିରିକ୍ତ ବିଷୟବାସନାରୁ ନିବୃତ୍ତି ଓ ଅନବରତ କର୍ତ୍ତବ୍ୟରେ ପ୍ରବୃତ୍ତି ଦ୍ୱାରା ହିଁ ଆମର ଶ୍ରେୟଃସାଧନ ସମ୍ଭବ । ଏହି ଶ୍ରେୟଃସାଧନ ହିଁ ଧର୍ମ । ତେଣୁ ଭବିଷ୍ୟ ପୁରାଣରେ କୁହାଯାଇଛି—

**'ଧର୍ମଃ ଶ୍ରେୟଃ ସମୁଦ୍ଦିଷ୍ଟଂ ଶ୍ରେୟୋଽଭ୍ୟୁଦୟଲକ୍ଷଣମ୍ ।**
**ସ ତୁ ପଞ୍ଚବିଧଃ ପ୍ରୋକ୍ତୋ ବେଦମୂଳଃ ସନାତନଃ ॥**

ଅର୍ଥାତ୍ ଧର୍ମର ଉଦ୍ଦେଶ୍ୟ ହେଉଛି ମଙ୍ଗଳ ସାଧନ । ମଙ୍ଗଳ ହେଉଛି ତାହା ଯାହାଦ୍ୱାରା ନିଜର ଅଭ୍ୟୁଦୟ, ବିକାଶ ବା ଉନ୍ନତି ସାଧିତ ହୁଏ । ଏତାଦୃଶ ବେଦମୂଳକ ସନାତନ ଧର୍ମ ପାଞ୍ଚପ୍ରକାର—(୧) ବର୍ଣ୍ଣଧର୍ମ, (୨) ଆଶ୍ରମଧର୍ମ, (୩) ବର୍ଣ୍ଣାଶ୍ରମଧର୍ମ, (୪) ଗୌଣଧର୍ମ, (୫) ନୈମିତ୍ତିକ ଧର୍ମ । ତେଣୁ ସେଥିରେ କୁହାଯାଇଛି—

ବର୍ଣ୍ଣଧର୍ମଃ ସ୍ମୃତସ୍ତ୍ୱେକ ଆଶ୍ରମାଣାମତଃପରମ୍ ।
ବର୍ଣ୍ଣାଶ୍ରମସ୍ତୃତୀୟସ୍ତୁ ଗୌଣୋ ନୈମିତ୍ତିକ ସ୍ତଥା ॥

ଏଥିରୁ ଯେଉଁ ଧର୍ମ କେବଳ ବର୍ଣ୍ଣକୁ ଆଶ୍ରୟ କରି ସମ୍ପନ୍ନ ହୁଏ ତାହା '**ବର୍ଣ୍ଣଧର୍ମ**', ଯଥା—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ଦ୍ୱିଜାତି-ଙ୍କର ଉପନୟନ ସଂସ୍କାର ଅବଶ୍ୟ କର୍ତ୍ତବ୍ୟ ।

ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥୀ ଓ ସନ୍ନ୍ୟାସୀ—ଏହି ଚାରି ଆଶ୍ରମରେ ଥାଇ ନିଜ ନିଜ ଧର୍ମ ପାଳନକୁ '**ଆଶ୍ରମଧର୍ମ**' କୁହାଯାଏ । ବ୍ରହ୍ମଚାରୀର ଦଣ୍ଡଗ୍ରହଣ ଓ ସ୍ୱାଧ୍ୟାୟ, ଗୃହସ୍ଥର ଅତିଥି ସେବା, ବାନପ୍ରସ୍ଥୀର ଶିଳୋଞ୍ଛ ବୃତ୍ତି● ଏବଂ ସନ୍ନ୍ୟାସୀର ଭିକ୍ଷା ବୃତ୍ତି ହେଉଛି ସ୍ୱ ସ୍ୱ ଆଶ୍ରମ ଧର୍ମ ।

ଯେଉଁ ଧର୍ମ, ବର୍ଣ୍ଣ ଓ ଆଶ୍ରମ ଉଭୟକୁ ଆଶ୍ରୟ କରି ପାଳନ କରାଯାଏ, ତାହା ହେଉଛି '**ବର୍ଣ୍ଣାଶ୍ରମଧର୍ମ**' । ଉଦାହରଣ—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ—ଏହି ତିନି ଦ୍ୱିଜ ଜାତି ବ୍ରହ୍ମଚାରୀ ଆଶ୍ରମରେ ରହିଲେ ସେମାନଙ୍କ ପାଇଁ 'ମେଖଳାବନ୍ଧନ'-ବିଧାନ ଅଛି । କିନ୍ତୁ ଏହି ମେଖଳା ବ୍ରାହ୍ମଣ ପାଇଁ 'ମୁଞ୍ଜ'ରେ ହେଉଥିବାରୁ 'ମୌଞ୍ଜୀ', କ୍ଷତ୍ରିୟ ପାଇଁ 'ମୂର୍ବା'ରେ ହେଉଥିବାରୁ 'ମୌର୍ବୀ' ଏବଂ ବୈଶ୍ୟ ପାଇଁ 'ଷଣ'ରେ ହେଉଥିବାରୁ 'ଷାଣ' ବୋଲି କଥିତ ହେଉଥିଲା । ଏଠାରେ ଆଶ୍ରମଧର୍ମ (ନିୟମ) ପ୍ରକାରେ ସବୁ ବ୍ରହ୍ମଚାରୀଙ୍କ ପାଇଁ ମେଖଳା ଆବଶ୍ୟକ ହେଉ-ଥିଲେ ହେଁ ସେମାନଙ୍କର ବର୍ଣ୍ଣଧର୍ମ (ନିୟମ) ପ୍ରକାରେ ତାହା ଭିନ୍ନଭିନ୍ନ ପଦାର୍ଥରେ ପ୍ରସ୍ତୁତ ହେଉଥିଲା ।

ଗୁଣକର୍ମ ବିଭାଗାନୁସାରେ ସୃଷ୍ଟ ଜାତିର ସତ୍ତ୍ୱାଦି ଗୁଣକୁ ନେଇ ଧର୍ମ ବା ବିଧିରକ୍ଷା ଅର୍ଥାତ୍ କ୍ଷତ୍ରିୟର ପ୍ରଜାପାଳନାଦି ପରି ଧର୍ମ ହେଉଛି '**ଗୌଣଧର୍ମ**' ।

---

● ଜାହାରିଠାରୁ ପ୍ରତିଗ୍ରହ ନ କରି, ଶସ୍ୟକ୍ଷେତ୍ରରେ ପଡ଼ିଥିବା ଶସ୍ୟଜେଣ୍ଡା ସଂଗ୍ରହକୁ 'ଶିଳବୃତ୍ତି' ଏବଂ ଶସ୍ୟକ୍ଷେତ୍ରରେ ପଡ଼ିଥିବା ଗୋଟି ଗୋଟି ଧାନ ଗୋଟାଇବାକୁ 'ଉଞ୍ଛବୃତ୍ତି' କୁହାଯାଏ ।

ବିଶେଷ 'ନିମିତ୍ତ'କୁ ଅବଲମ୍ବନ କରି ଯେଉଁ ଧର୍ମ ବା ବିଧିରକ୍ଷା କରାଯାଏ, ତାହାର ନାମ 'ନୈମିତ୍ତିକ' ଧର୍ମ । ଉଦାହରଣ—ବିଭିନ୍ନ ପାପର ନିବାରଣ ପାଇଁ ଭିନ୍ନ ଭିନ୍ନ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ବା ପୁତ୍ରେଷ୍ଟି ପ୍ରଭୃତି ଯଜ୍ଞ କରିବା ।

ଉପର୍ଯ୍ୟୁକ୍ତ ଧର୍ମର ପଞ୍ଚଭେଦରେ ଧର୍ମ ଶବ୍ଦଟିର ଧାରଣ ଅର୍ଥ 'ବିଧିରକ୍ଷା' ମାତ୍ର ହୋଇଥିବାରୁ ଅତ୍ୟନ୍ତ ସୀମିତ ଓ ସଂକୁଚିତ ପରିସର ମଧ୍ୟରେ ଏହାର ବ୍ୟବହାର ପରି ମନେହୁଏ ।

ଉପର୍ଯ୍ୟୁକ୍ତ ଚତୁର୍ବର୍ଣ୍ଣାଶ୍ରମଙ୍କ ପାଳନୀୟ ଧର୍ମକୁ 'ପୃଥକ୍-ଧର୍ମ', ବିଶେଷ ଧର୍ମ, ସମାନ ଧର୍ମ କୃଚ୍ଛ୍ରଧର୍ମ ଭେଦରେ ଗୁରୁଦେବଟରେ ବିଭକ୍ତ କରିଛନ୍ତି । ଗୁରୁ ଆଶ୍ରମର ପୃଥକ୍ ପୃଥକ୍ ଧର୍ମ ଆଚରଣ ବା ପୂର୍ବ-କଥିତ ଆଶ୍ରମ ଧର୍ମ ହେଉଛି ପୃଥକ୍ ଧର୍ମ । ଗୁରୁ ବର୍ଣ୍ଣର ଭିନ୍ନ ଭିନ୍ନ ଗୁଣ କର୍ମାନୁସାରେ ଆଚରଣ ହେଉଛି ବିଶେଷ ଧର୍ମ । ଏହାକୁ ପୂର୍ବ କଥିତ ବର୍ଣ୍ଣ ଧର୍ମ କୁହାଯାଇପାରେ । ଆତ୍ମଜ୍ଞାନ ଅର୍ଜନର ପ୍ରତିବନ୍ଧକ ପ୍ରତ୍ୟବାୟକୁ ଦୂର କରିବା ସକାଶେ କରାଯାଉଥିବା ଆଚରଣ ହେଉଛି କୃଚ୍ଛ୍ରଧର୍ମ । କିନ୍ତୁ ଏ ସମସ୍ତଙ୍କ ପାଇଁ କେତେକ 'ସାଧାରଣ ଧର୍ମ' ରହିଛି । ସେଗୁଡିକ ହେଲା—

ଆନୃଶଂସ୍ୟ ମହିଂସା ଚାପ୍ରମାଦଃ ସଂବିଭାଗତା ।
ଶ୍ରାଦ୍ଧକର୍ମାତିଥେୟଂ ଚ ସତ୍ୟମକ୍ରୋଧ ଏବ ଚ ॥
ସ୍ୱେଷୁ ଦାରେଷୁ ସନ୍ତୋଷଃ ଶୌଚଂ ନିତ୍ୟାନସୂୟତା ।
ଆତ୍ମଜ୍ଞାନଂ ତିତିକ୍ଷା ଚ ଧର୍ମଃ ସାଧାରଣୋ ନୃପ ॥

ଅର୍ଥାତ୍ ନିଷ୍ଠୁରଭାବ ପରିତ୍ୟାଗ, ଅହିଂସା, ଅପ୍ରମାଦ, ସମସ୍ତ ଭୂତଙ୍କୁ ତାଙ୍କର ଭାଗ (ବା ବଳି) ଦେବା, ଶ୍ରାଦ୍ଧକର୍ମ, ଗୃହକୁ ଆସିଥିବା ଅତିଥି-ମାନଙ୍କ ଚର୍ଚ୍ଚା, ସତ୍ୟ, ଅକ୍ରୋଧ, ନିଜ ପତ୍ନୀଠାରେ ସନ୍ତୋଷ, ଶୌଚ, ଅସୂୟାହୀନତା, ଆତ୍ମଜ୍ଞାନ ଓ ତିତିକ୍ଷା—ଏଗୁଡ଼ିକ ହେଲ ସାଧାରଣ ଧର୍ମ ।

ବିଷ୍ଣୁସ୍ମୃତିରେ ଏହି ସାଧାରଣ ଧର୍ମ ବା ସାମାନ୍ୟ ଧର୍ମର କଏ ଅନ୍ତର୍ଭୁକ୍ତ କରାଯାଇଛି :-

କ୍ଷମା ସତ୍ୟଂ ଦମଃ ଶୌଚଂ ଦାନମିନ୍ଦ୍ରିୟ ସଂଯମଃ ।
ଅହିଂସା ଗୁରୁଶୁଶ୍ରୂଷା ତୀର୍ଥାନୁସରଣଂ ଦୟା ॥
ଆର୍ଜବଂ ଲୋଭଶୂନ୍ୟତ୍ୱଂ ଦେବବ୍ରାହ୍ମଣ ପୂଜନମ୍ ।
ଅନଭ୍ୟସୂୟା ଚ ତଥା ଧର୍ମଃ ସାମାନ୍ୟ ଉଚ୍ୟତେ ॥

ଅର୍ଥାତ୍ କ୍ଷମା, ସତ୍ୟ, ଦମ ଶୌଚ, ଦାନ, ଇନ୍ଦ୍ରିୟ ସଂଯମ, ଅହିଂସା, ଗୁରୁ ଶୁଶ୍ରୂଷା, ତୀର୍ଥାନୁସରଣ ଦୟା, ଆର୍ଜବ, ଲୋଭଶୂନ୍ୟତା, ବ୍ରାହ୍ମଣପୂଜା, ଅସୂୟାହୀନତା ପ୍ରଭୃତି ହେଉଛି 'ସାମାନ୍ୟ ଧର୍ମ' ।

ବୃହସ୍ପତି ସ୍ମୃତିରେ ସାମାନ୍ୟ ଧର୍ମ ନିମ୍ନପ୍ରକାରେ ଉଲ୍ଲେଖ ରହିଛି—

ଦୟା କ୍ଷମାନସୂୟା ଚ ଶୌଚନାୟାସମଙ୍ଗଳମ୍
ଅକାର୍ପଣ୍ୟମସ୍ପୃହତ୍ୱଂ ସର୍ବସାଧାରଣାନି ଚ ॥

ଅର୍ଥାତ୍ ଦୟା, କ୍ଷମା, ଅନସୂୟା, ଶୌଚ, ଅନାୟାସ, ମଙ୍ଗଳ, ଅକାର୍ପଣ୍ୟ, ଅସ୍ପୃହା ହେଉଛି ସର୍ବସାଧାରଣ ଧର୍ମ । ଏଥିରୁ —ପର, ନିଜ, ମିତ୍ର, ଶତ୍ରୁଙ୍କୁ ବିପଦବେଳେ ରକ୍ଷା କରିବାକୁ କୁହାଯାଏ 'ଦୟା' (୧) । ବାହ୍ୟ ବା ଆତ୍ମିକ ଦୁଃଖ ଉତ୍ପନ୍ନ ହେଲେ ମଧ୍ୟ ନ ରାଗିବା ବା ଆଘାତ ନ କରିବାକୁ କୁହାଯାଏ 'କ୍ଷମା' (୨) । ଗୁଣବାନ୍ ଲୋକର ଗୁଣକୁ ହତ୍ୟା ନ କରିବା, ଅଳ୍ପ ଗୁଣ ଥିବା ଲୋକର ଗୁଣକୁ ପ୍ରଶଂସା କରିବା ତଥା ଅନ୍ୟଦୋଷରେ ଲିପ୍ତ ନହେବା ହେଉଛି 'ଅନସୂୟା' (୩) ।

---

(୧) ପରେ ବା ବନ୍ଧୁବର୍ଗେ ବା ମିତ୍ରେ ଦ୍ୱେଷ୍ଟରି ବା ବା ସଦା ।
ଆପନ୍ନେ ରକ୍ଷିତବ୍ୟଂ ତୁ ଦୟୈଷା ପରିକୀର୍ତ୍ତିତା ॥
(୨) ବାହ୍ୟେ ବାଧ୍ୟାତ୍ମିକେ ଚୈବ ଦୁଃଖେ ଚୋତ୍ପାଦିତେ କ୍ୱଚିତ୍ ।
ନ କୁପ୍ୟତି ନ ବା ହନ୍ତି ସା କ୍ଷମା ପରିକୀର୍ତ୍ତିତା ॥
(୩) ନ ଗୁଣାନ୍ ଗୁଣିନୋ ହନ୍ତି ସ୍ତୌତି ମନ୍ଦଗୁଣାନପି ।
ନାନ୍ୟଦୋଷେଷୁ ରମତେ 'ସାନସୂୟା ପ୍ରକୀର୍ତ୍ତିତା ॥

ମଦ୍ୟମାଂସାଦି ଅଭକ୍ଷ୍ୟ ପରିହାର କରିବା, ବିଦ୍ୟାବିନୟସଂପନ୍ନ ଗୁଣବାନ ପୁରୁଷଙ୍କ ସହ ସଙ୍ଗ କରିବା, ସ୍ୱଧର୍ମରେ ରହିବାକୁ କୁହାଯାଏ'ଶୌଚ'(୪)। ଉତ୍ତମ ଶୁଦ୍ଧ କର୍ମ କରିବା ଦ୍ୱାରା ହେଉଥିବା ଶରୀର ପୀଡ଼ାକୁ ଅତି ଅଧିକ ପରିମାଣରେ ନ କରିବା ହେଉଛି 'ଅନାୟାସ' (୫)। ଶାସ୍ତ୍ରସଂମତ ଭଲ ଆଚରଣ କଲେ ଓ ନିଷିଦ୍ଧ ଆଚରଣକୁ ସର୍ବଥା ତ୍ୟାଗ କଲେ 'ମଙ୍ଗଳ' (୬) ହୁଏ। ଘୃଣିତା କ କରି ଅନ୍ତରର ସହିତ ନିଜର ଅଳ୍ପ ପରିମିତ ଶୁଦ୍ଧ ଦ୍ରବ୍ୟରୁ ପ୍ରତିଦିନ ଅତିଥି ବା ଗରିବଙ୍କୁ ଦାନ କରିବା ହେଉଛି 'ଅକୃପଣତା' (୭)। ଅନ୍ୟର ଧନ ପ୍ରତି ସ୍ପୃହା ନ କରି ଯାହା ଅଛି ବା ହୋଇଛି ସେଥିରେ ସନ୍ତୋଷ ପ୍ରକାଶ କରିବା ହେଉଛି 'ଅସ୍ପୃହା' (୮)।

କର୍ତ୍ତବ୍ୟାକର୍ତ୍ତବ୍ୟର ବିଶ୍ୱକୋଷ ଆମ ଭାରତର ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ମହାଭାରତରେ ଅଛି –

ସତ୍ୟଂ ଦମସ୍ତପଃ ଶୌଚଂ ସଂତୋଷୋ ହ୍ରୀଃ କ୍ଷମାର୍ଜ୍ଜବମ୍।
ଜ୍ଞାନଂ ଶମୋ ଦୟା ଧ୍ୟାନମେଷ ଧର୍ମଃ ସନାତନଃ ॥

ଅର୍ଥାତ୍ ସତ୍ୟ, ଦମ, ତପ, ଶୌଚ, ସନ୍ତୋଷ, ଲଜ୍ଜାବୋଧ, କ୍ଷମା, ଋଜୁତା, ଜ୍ଞାନ, ଶମ, ଦୟା, ଧ୍ୟାନ –ଏ ସବୁ ହେଉଛି 'ସନାତନ ଧର୍ମ'।

ପ୍ରାଣୀମାନଙ୍କର ହିତ ହେଉଛି 'ସତ୍ୟ', ମନର ଦମନ ବା ସଂଯମକୁ କୁହାଯାଏ 'ଦମ', ନିଜ ଧର୍ମରେ ସ୍ଥିର ରହିବା ହେଉଛି 'ତପ' ଏବଂ ମିଶାମିଶି ବା ଗୋଳିଆ ନ କରିବା ହେଉଛି 'ଶୌଚ' (୯)।

---

(୪) ଅଭକ୍ଷ୍ୟ ପରିହାରଶ୍ଚ ସଂସର୍ଗଶ୍ଚାପ୍ୟନିନ୍ଦିତୈଃ।
ସ୍ୱଧର୍ମେ ଚ ବ୍ୟବସ୍ଥାନଂ ଶୌଚମେତତ୍ ପ୍ରକୀର୍ତ୍ତିତମ୍ ॥

(୫) ଶରୀରଂ ପୀଡ୍ୟତେ ଯେନ ସୁଶୁଭେନାପି କର୍ମଣା।
ଅତ୍ୟନ୍ତଂ ତନ୍ନ କର୍ତ୍ତବ୍ୟମନାୟାସଃ ସ ଉଚ୍ୟତେ ॥

(୬) ପ୍ରଶସ୍ତାଚରଣଂ ନିତ୍ୟମପ୍ରଶସ୍ତବିବର୍ଜନମ୍।
ଏତଦ୍ଧି ମଙ୍ଗଳଂ ପ୍ରୋକ୍ତଂ ମୁନିଭିସ୍ତତ୍ତ୍ୱଦର୍ଶିଭିଃ ॥

(୭) ସ୍ତୋକାଦପି ପ୍ରଦାତବ୍ୟମଦୀନେନାନ୍ତରାତ୍ମନା।
ଅହନ୍ୟହନି ଯତ୍କିଞ୍ଚିଦକାର୍ପଣ୍ୟଂ ହି ତତ୍ ସ୍ମୃତମ୍ ॥

(୮) ଯଥୋତ୍ପନ୍ନେନ ସଂତୋଷଃ କର୍ତ୍ତବ୍ୟୋହ୍ୟର୍ଥବସ୍ତୁନଃ।
ପରସ୍ୱାଚନ୍ତୟିତ୍ୱାର୍ଥଂ ସାଽସ୍ପୃହା ପରିକୀର୍ତ୍ତିତା ॥

(୯) ସତ୍ୟଂ ଭୂତହିତଂ ପ୍ରୋକ୍ତଂ ମନସୋ ଦମନଂ ଦମଃ।
ତପଃ ସ୍ୱଧର୍ମବର୍ତ୍ତିତ୍ୱଂ ଶୌଚଂ ସଙ୍କରବର୍ଜନମ୍ ॥

ବିଷୟ ବାସନା ତ୍ୟାଗକୁ କୁହାଯାଏ 'ସନ୍ତୋଷ', ଅକାର୍ଯ୍ୟ ନ କରିବା ହେଉଛି 'ହ୍ରୀ', ଦ୍ୱନ୍ଦ୍ୱ ସହନଶୀଳତା ହେଉଛି 'କ୍ଷମା', ସମସ୍ତଙ୍କଠାରେ ସମାନ ମନୋଭାବ ହେଉଛି ଋଜୁତା ବା ଆର୍ଜବ' (୧୦)। ତତ୍ତ୍ୱାର୍ଥର ବୋଧକୁ କୁହାଯାଏ 'ଜ୍ଞାନ', ଚିତ୍ତର ପ୍ରଶାନ୍ତ ଅବସ୍ଥାର ନାମ 'ଶମ' ପ୍ରାଣୀମାନଙ୍କ ହିତ କାମନା କରିବା ହେଉଛି 'ଦୟା' ଏବଂ ମନକୁ ବିଷୟ ବାସନାରୁ ମୁକ୍ତ ରଖିବା ହେଉଛି 'ଧ୍ୟାନ' (୧୧)।

ଏହିପରି ସାଧାରଣ ଧର୍ମର ଆଉ ଏକ ତାଲିକା ଦେଇ ଦେବଳ ଋଷି କହିଛନ୍ତି—

ଶୌଚଂ ଦାନଂ ତପଃ ଶ୍ରଦ୍ଧା ଗୁରୁସେବା କ୍ଷମା ଦୟା ।
ବିଜ୍ଞାନଂ ବିନୟଃ ସତ୍ୟମିତି ଧର୍ମସମୁଚ୍ଚୟଃ ॥

ଏଥିରୁ ଶୌଚ ଓ ଦାନ ବିଷୟରେ ଉପରେ କୁହାଯାଇଛି । ଦେବଳଙ୍କ ମତରେ 'ତପଃ' ହେଉଛି ନିୟମାନୁସାରେ ବ୍ରତ, ଉପବାସ କରି ଶରୀରକୁ ଉତ୍ତପ୍ତ କରିବା ଏବଂ 'ଶ୍ରଦ୍ଧା' ହେଉଛି ଧର୍ମକାର୍ଯ୍ୟରେ ବିଶ୍ୱାସ (୧୨) । ଯାହାର କର୍ମରେ ଶ୍ରଦ୍ଧା ନାହିଁ ତା'ର ସକଳ କୃତ୍ୟ ନିଷ୍ଫଳ ଅଟେ । 'ବିଜ୍ଞାନ' ହେଉଛି ବୈଦିକ ଓ ଲୌକିକ ବିଦ୍ୟାର ଆକଳନ ବା ଧାରଣ । 'ବିନୟ' ହେଉଛି ଦୁଇପ୍ରକାର— ନିତ୍ୟ 'ଦମ' ଓ ନିତ୍ୟ 'ଶମ' ।

---

(୧୦) ସଂତୋଷୋ ବିଷୟତ୍ୟାଗୋ ହ୍ରୀରକାର୍ଯ୍ୟନିବର୍ତ୍ତନମ୍ ।
କ୍ଷମା ଦ୍ୱନ୍ଦ୍ୱ ସହିଷ୍ଣୁତ୍ୱ ମାର୍ଜବଂ ସମଚିତ୍ତତା ॥
(୧୧) ଜ୍ଞାନଂ ତତ୍ତ୍ୱାର୍ଥ ସଂବୋଧଃ ଶମଶ୍ଚିତ୍ତପ୍ରଶାନ୍ତତା ।
ଦୟା ଭୂତହିତୈଷିତ୍ୱଂ ଧ୍ୟାନଂ ନିର୍ବିଷୟଂ ମନଃ ॥
(୧୨) ବ୍ରତୋପବାସ ନିୟମୈଃ ଶରୀରୋତ୍ତାପନଂ ତପଃ ।
ପ୍ରତ୍ୟୟୋ ଧର୍ମକାର୍ଯ୍ୟେଷୁ ଶ୍ରଦ୍ଧେତ୍ୟୁଦାହୃତା
ନାସ୍ତି ହ୍ୟଶ୍ରଦ୍ଧଧାନସ୍ୟ କର୍ମକୃତ୍ୟଂ ପ୍ରୟୋଜନମ୍ ॥
(୫) ଯତ୍ତୁ ପୁନର୍ବୈଦିକାନାଂ ଚ ଲୌକିକାନାଂ ଚ ସର୍ବଶଃ ।
ଧାରଣଂ ସର୍ବବିଦ୍ୟାନାଂ ବିଜ୍ଞାନମିତି କୀର୍ତ୍ତ୍ୟତେ ॥
(୬) ବିନୟଂ ଦ୍ୱିବିଧଂ ପ୍ରାହୁଃ ଶଶ୍ୱଦ୍ଦମଶମାବିତି ।

ମହାମାନବ 'ମନୁ' ଚାତୁର୍ବର୍ଣ୍ଣ୍ୟଙ୍କର ସାଧାରଣ ଧର୍ମକୁ ସଂକ୍ଷେପରେ ପ୍ରକାଶ କରି କହିଛନ୍ତି—

ଅହିଂସା ସତ୍ୟମସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।
ଏତଂ ସାମାସିକଂ ଧର୍ମଂ ଚାତୁର୍ବର୍ଣ୍ୟେଽବ୍ରବୀନ୍ମନୁଃ ॥ (ମନୁସଂହିତା ୧୦।୬୩)

ଅହିଂସା, ସତ୍ୟ, ଅସ୍ତେୟ ବା ଚୋରି ନ କରିବା, ଶୌଚ ବା ପବିତ୍ର ରହିବା ଓ ଇନ୍ଦ୍ରିୟ ସଂଯମ କରିବା—ଏହି ପାଞ୍ଚଟିକୁ ବ୍ରାହ୍ମଣାଦି ସବୁ ବର୍ଣ୍ଣଙ୍କ ଆଚରଣୀୟ ସାଧାରଣ ଧର୍ମ ବୋଲି ମହର୍ଷି ମନୁ କହିଛନ୍ତି, ପୁଣିସେ ମନୁସ୍ମୃତି (୬।୯୨)ରେ ଧୃତି, କ୍ଷମା, ଦମ, ଅସ୍ତେୟ, ଶୌଚ, (କାୟମନୋବାକ୍ୟରେ ପବିତ୍ର ରହିବା), ଇନ୍ଦ୍ରିୟନିଗ୍ରହ, ଧୀ, ବିଦ୍ୟା ଓ ଅକ୍ରୋଧ—ଏହି ଦଶଟିକୁ ଧର୍ମର ଲକ୍ଷଣ ରୂପେ ନିରୂପଣ କରି କହିଛନ୍ତି—

ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଂ ଧର୍ମଲକ୍ଷଣମ୍ ॥

ଅନ୍ୟତ୍ର ଧର୍ମର ନବ-ଅଙ୍ଗ ନିର୍ଦ୍ଦେଶ କରି କୁହାଯାଇଛି—

ରତିରାତ୍ମସୁଖେ ନିତ୍ୟ ତଥା ବାହ୍ୟ ସୁଖେଽସ୍ପୃହା
ସର୍ବଭୂତେଷୂପକାରବୃତ୍ତିରନ୍ୟୋନ୍ୟାତ୍ମବନ ।
ହିଂସାଲତ୍ୱଂ ଧର୍ମଦୃଷ୍ଟିଃ ସୁଖଜ୍ଞାନଂ ସଦୁଦ୍ୟମଃ
ସିଦ୍ଧ୍ୟସିଦ୍ଧ୍ୟୋଃ ସମତ୍ୱଂ ଚ ଧର୍ମସ୍ୟାଙ୍ଗାନି ବୈ ନବ ॥

ଅର୍ଥାତ୍ ନିତ୍ୟ ଆତ୍ମ ସୁଖରେ ପ୍ରବୃତ୍ତି, ବାହ୍ୟ ଭୋଗ ବିଳାସରେ ଅନିଚ୍ଛା, ସବୁ ପ୍ରାଣୀଙ୍କର ଉପକାର କରିବା ପାଇଁ ଚେଷ୍ଟା, ପରସ୍ପର ପ୍ରତି ପ୍ରୀତିଭାବ, ଅହିଂସା (ଏଠାରେ ଅଳ୍ପାର୍ଥେ ନଞ୍-ପ୍ରୟୋଗ), ଧର୍ମଦୃଷ୍ଟି (ଧର୍ମଂ ଚରତ ମାଽଧର୍ମଂ; ସତ୍ୟଂ ବଦତ ନାନୃତମ୍, ଦୀର୍ଘଂ ପଶ୍ୟତ ମା ହ୍ରସ୍ୱଂ, ପରଂ ପଶ୍ୟତ ମାଽପରମ୍ ।), ସୁଖଜ୍ଞାନ, ସତ୍-ଉଦ୍ୟମ, କାର୍ଯ୍ୟସିଦ୍ଧି ଓ ଅସିଦ୍ଧିରେ ସମତା—ଏହିପରି ନ'ଟି ହେଉଛି ଧର୍ମର ଅଙ୍ଗ ।

ଉପରେ ସାଧାରଣ ଧର୍ମ ବା ଧର୍ମଲକ୍ଷଣ ବୋଲି ଯାହା କୁହାଗଲା, ସେ ସବୁ 'ସଦାଚାର' ବ୍ୟତୀତ ଆଉ କିଛି ନୁହେ । ତେଣୁ ମଣିଷ ସଦାଚାର-ଶୀଳ ହେବା ଉଚିତ ।

ସଦାଚାର—

'ସଦ୍ ଆଚାର'-ଏହି ଦୁଇ ଶବ୍ଦର ସଂମିଶ୍ରଣରୁ ସୃଷ୍ଟ 'ସଦାଚାର'ର ଅର୍ଥ 'ସଦ୍ ଅଟେ ଆଚାର' (ସତ୍ ଚାସୌ ଆଚାରଃ) ବା 'ସାଧୁମାନଙ୍କର ଆଚାର' (ସତାମ୍ ଆଚାରଃ ବୋଲି କହାଯାଇପାରେ, 'ସତ୍' କ'ଣ ଏ ବିଷୟରେ ଗୀତା (୧୭।୨୭) କହେ—

୧। ସଦ୍ଭାବେ
୨। ସାଧୁଭାବେ ଚ ସଦ୍-ଇତ୍ୟେତତ୍ ପ୍ରଯୁଜ୍ୟତେ ।।
୩। ପ୍ରଶସ୍ତେ କର୍ମଣି ତଥା ସତ୍-ଶବ୍ଦଃ (ପାର୍ଥ) ଯୁଜ୍ୟତେ ।।
୪। ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦ୍-ଇତି ଚୋଚ୍ୟତେ ।।
୫। କର୍ମ ଚୈବ ତଦର୍ଥୀୟଂ ସଦ୍-ଇତ୍ୟେବାଭିଧୀୟତେ ।।

(୧) 'ଅସ୍ତି' ବା 'ସତ୍ତା', (୨) ସାଧୁ ବା ପବିତ୍ର, (୩) ମଙ୍ଗଳ କାର୍ଯ୍ୟ; (୪) ଯଜ୍ଞ, ତପସ୍ୟା ଓ ଦାନରେ ନିଷ୍ଠା; ତଥା (୫) ଈଶ୍ୱରଙ୍କ ଉଦ୍ଦେଶ୍ୟରେ କ୍ରିୟମାଣ କର୍ମ ହେଉଛନ୍ତି 'ସତ୍'। ଏହାକୁ ଗୋଟି ଗୋଟି କରି ଅଲଗା ଅଲଗା ବୁଝିଲେ କ୍ଷତି ନାହିଁ। କିନ୍ତୁ ସମଷ୍ଟିଗତ ଭାବରେ ସବୁ ମିଶାଇ—ସେହି ଏକ ଈଶ୍ୱର ହିଁ ସତ୍ (ସଦେବ ସୌମ୍ୟ ଇଦମଗ୍ର ଆସୀତ୍) ଏବଂ ସେ ଅଛନ୍ତି ବୋଲି ସାଧୁ ବା ପବିତ୍ର ଭାବରେ ଆତ୍ମୋନ୍ନତି ଅର୍ଥାତ୍ ନିଜର ଓ ଅନ୍ୟମାନଙ୍କର ଆତ୍ମାର ଉନ୍ନତି ପାଇଁ ମଙ୍ଗଳକର କାର୍ଯ୍ୟ ସ୍ୱରୂପ ଯଜ୍ଞ, ତପସ୍ୟା, ଦାନ ପ୍ରଭୃତିରେ ନିଷ୍ଠା ପ୍ରକାଶ କରେ 'ଓଁ ତତ୍ ସତ୍' ଭାବରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା ଓ ତଦ୍ଭାବଭାବିତ ହେବା ହେଉଛି 'ସତ୍'।

ଏ ଦେଶର ଆର୍ଯ୍ୟ ଆଚରଣଶୀଳ ଆଚାର୍ଯ୍ୟ (ସ୍ୱୟମାଚରତେ ଯସ୍ମାତ୍ ଆଚାରେ ସ୍ଥାପୟତ୍ୟପି, ଆଚିନୋତି ଚ ଶାସ୍ତ୍ରାର୍ଥାନାଚାର୍ଯ୍ୟସ୍ତେନ ଚୋଚ୍ୟତେ—ଇତି ଲିଙ୍ଗପୁରାଣ ୨।୨୦।୨୦) ବା ସାଧୁମାନେ ଉପର୍ଯ୍ୟୁକ୍ତ ପ୍ରକାରେ ଅନବରତ ତଦ୍ଭାବଭାବିତ ହୋଇ ବ୍ରତ କରୁଥିବାରୁ ସେମାନଙ୍କର ଆଚାର ବା ଆଚରଣ ହିଁ ସଦାଚାର ଓ ଆମର ଅନୁକରଣୀୟ ବୋଲି ମନୁସ୍ମୃତି (୨।୨୦)ରେ କୁହାଯାଇଛି—

ଏତଦ୍ଦେଶପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ ।
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ॥

ତେଣୁ 'ଆଗୃର' କ'ଣ—ଏହା ଆମ ଭାରତଭୂମିଠାରୁ ପୃଥିବୀର ଅନ୍ୟମାନେ ଶିଖିଥିଲେ । ଏବେ ଆମେ ଅନୁକରଣ ନାମରେ ପାଶ୍ଚାତ୍ୟ ବ୍ୟାମୋହରେ ଅନୁକରଣ କରିବାକୁ ବସିଛେ । ଆମେ ପୂର୍ବ (ଅର୍ଥାତ ପରମାତ୍ମ ସମ୍ପନ୍ନ) ଭୂଖଣ୍ଡର ଲୋକ । ଆମର ଦୃଷ୍ଟି ପୂର୍ବର ଉଦୟମାନ ସୂର୍ଯ୍ୟ ପ୍ରତି—ଆତ୍ମୋନ୍ନତି ବା ଆଧ୍ୟାତ୍ମିକ ଉନ୍ନତି ସକାଶେ । ତେଣୁ ଆମେ ପୂଜା କଲେ ପୂର୍ବକୁ ଅନାଇଁ ପୂଜା କରୁ ଏବଂ ଶୋଇଲେ ପୂର୍ବକୁ ମୁଣ୍ଡ କରି ଶୋଉ । ପାଶ୍ଚାତ୍ୟବାସୀ ପଶ୍ଚିମ ବା ବସ୍ତୁ ପଥର ବା ଏବର ଅର୍ବାଚୀନ ଭୌତିକ ବିକାଶଶୀଳ ଲୋକ । ପଶ୍ଚିମରେ ସୂର୍ଯ୍ୟ ଅସ୍ତ ହୁଅନ୍ତି, ନିଶା ଆସେ । ସେମାନେ ତେଣୁ 'ନିଶା'ର ଲୋକ । ସେ ନିଶା ଏବେ ଆଜିର ତଥାକଥିତ ଭାରତବାସୀଙ୍କୁ ଗ୍ରାସିଛି । ଗୀତା (୨.୬୯)ରେ ତେଣୁ କୁହାଯାଇଛି—

ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ॥

—ସବୁ ପ୍ରାଣୀମାନଙ୍କ ପାଇଁ ଯାହା ହେଉଛି ନିଶା ବା ମୋହ-କର ଆକର୍ଷଣୀ ଶକ୍ତି, ସଂଯମୀ ଲୋକ ସେତେବେଳେ ସଜାଗ ରହେ, ତାହାଠାରୁ ନିଜକୁ ଦୂରରେ ରଖେ । ସବୁ ପ୍ରାଣୀମାନେ ଯେଉଁ ଭୌତିକ ଉନ୍ନତି ପାଇଁ ଲାଗି ପଡ଼ନ୍ତି, ମନନଶୀଳ ଅଧ୍ୟାତ୍ମ ପଥର ସାଧକଗଣ ତାକୁ ଦେଖି ତାହାଠାରୁ ଦୂରରେ ରହନ୍ତି, ସେଥିରେ ବଶବର୍ତ୍ତୀ ହୁଅନ୍ତି ନାହିଁ । ସେମାନେ ଅତନ୍ଦ୍ରିତ ଭାବରେ ଧର୍ମରମୂଳ ସଦାଗୃରକୁ ଆଶ୍ରୟ କରିଥାନ୍ତି, କାରଣ ମନୁ [୪।୧୫] କହିଛନ୍ତି—'ଧର୍ମମୂଳଂ ନିଷେବେତ ସଦାଗୃର-ମତନ୍ଦ୍ରିତଃ' । ଆଚରଣ ବିନା ଧର୍ମ ଏକ ନିଷ୍ପ୍ରାଣ ତତ୍ତ୍ୱାନୁସନ୍ଧାନ (metaphysics) ମୂଳକ ନିଷ୍ଫଳ ଗବେଷଣା ଦ୍ୱାରା ସମୟର ଦୁରୁପ-ଯୋଗ । ତେଣୁ ମହର୍ଷି ମନୁ ଅନ୍ୟତ୍ର (ମନୁସଂହିତା ୧୦୮।୯) କହିଛନ୍ତି—

ଆଗୃରଲକ୍ଷଣୋ ଧର୍ମଃ ସନ୍ତଶ୍ଚାଚାରଲକ୍ଷଣାଃ ।
ସାଧୂନାଂ ଚ ଯଥାବୃତ୍ତ ମେତଦାଗୃରଲକ୍ଷଣମ୍ ॥

ଅର୍ଥାତ୍, ଧର୍ମର ଲକ୍ଷଣ ହେଉଛି ଆଚାର ଏବଂ ସାଧୁମାନଙ୍କର ପରିଚୟ ହେଉଛି ସେମାନଙ୍କ ଚରିତ୍ର । ଚରିତ୍ର (ଚରିତ ଆଚରିତ ଇତି) ଶବ୍ଦଟି ମଧ୍ୟ 'ଆଚରଣ' ସହ ନିବିଡ଼ ଭାବରେ ସଂପୃକ୍ତ । ତେଣୁ ସାଧୁମାନଙ୍କର ଚଳଣିରୁ ହିଁ 'ମହାଜନୋ ଯେନ ଗତଃ ସ ପନ୍ଥାଃ' ନ୍ୟାୟରେ ଅନୁକରଣୀୟ ଆଦର୍ଶସ୍ଥାନୀୟ ଯଥାର୍ଥ ଆଚାର ବିଷୟରେ ଠିକ୍ ଜାଣି ହେବ । ଉତ୍ତମ ଆଚରଣଶୀଳ ବ୍ୟକ୍ତିର ଆୟୁ, ଉତ୍ତମ ସନ୍ତାନ ଓ ସମ୍ପତ୍ତିଲାଭ ହୋଇଥାଏ ବୋଲି ମନୁ (୪।୧୫୬) କହିଛନ୍ତି—

ଆଚାରାଲ୍ଲଭତେ ହ୍ୟାୟୁରାଚାରାଦୀପ୍‌ସିତାଃ ପ୍ରଜାଃ ।
ଆଚାରାଦ୍ ଧନମକ୍ଷୟ୍ୟମାଚାରୋ ହନ୍ତ୍ୟଲକ୍ଷଣମ୍ ॥

କିନ୍ତୁ ଏହି ଆଚାର ନାମରେ ଲୋକ ଶୁଚିବାୟୁଗ୍ରସ୍ତ ହୋଇ ଛପରଛୁଆଁ ପ୍ରଭାବର ହେବା ଉଚିତ ନୁହେଁ । ଧର୍ମ ରାଜ୍ୟରେ ଆଚାର ନାମରେ ଅତ୍ୟାଚାର ଶୋଭନୀୟ ନୁହେଁ । ମୋଟେ କିଛି ଆଚରଣ ନ କରିବା ଯେପରି ଏକ ମଳିନ ଚିତ୍ତବୃତ୍ତିର ଲକ୍ଷଣ, ଆଚାର ନାମରେ ଘୋର ଉପବାସରେ ରହି ଯାତନା ଭୋଗ କରି କାହାକୁ ଛୁଆଁ ଛୁଇଁ ନ କରି ନିଜକୁ ଓ ପରିବେଶକୁ ଉଷୁରଙ୍ଗି ନିଜେ ଶାନ୍ତି ପାଇବା ନାଁରେ ଅନ୍ୟକୁ ଅଶାନ୍ତି ଦେବା ହେଉଛି 'ଅତ୍ୟାଚାର', ଏହା ମୂର୍ଖତା ବଶତଃ ହୋଇଥାଏ । ତେଣୁ ବୋଧସାର କହେ—

ଅନାଚାରସ୍ତୁ ମାଳିନ୍ୟମତ୍ୟାଚାରସ୍ତୁ ମୂର୍ଖତା ।
ବିଚାରାଚାରସଂଯୋଗଃ ସଦାଚାରସ୍ୟ ଲକ୍ଷଣମ୍ ॥

ଅତଏବ 'ସଦାଚାର' କ'ଣ ତାହା ଶାସ୍ତ୍ର-ସରଣି ଓ ଲୋକଚଳଣିରୁ ନିଜର ବିଚାର ବୁଦ୍ଧିର ପ୍ରୟୋଗ ଦ୍ୱାରା ସାଧୁମାନଙ୍କର ଆଚରଣରୁ ସ୍ଥିର କରିବାକୁ ହେବ ଏବଂ ତଦନୁସାରେ କର୍ମାନୁଷ୍ଠାନ ପୂର୍ବକ ଆତ୍ମୋନ୍ନତି କରିବାକୁ ହେବ । ସେ କୌଣସି ଉନ୍ନତିମୂଳରେ ଥିବା ଉଚିତ୍ ସାଧୁ-ସଂକଳ୍ପ ଓ ପବିତ୍ରତା । ଏହି ପବିତ୍ରତା ପାଇଁ ହିଁ ଆବଶ୍ୟକ 'ପୂଜା' । ଏହି ପୂଜା ହିଁ ତପସ୍ୟା ଓ ଏହାର ଯଥାର୍ଥ ଅନୁଷ୍ଠାନ ଦ୍ୱାରା ଅସାଧ୍ୟ ସାଧନ କରାଯାଇପାରେ । ତେଣୁ ଅନେକ ଶାସ୍ତ୍ରରେ କୁହାଯାଇଛି—

ଯଦ୍ ଦୁସ୍ତରଂ ଯଦ୍ ଦୁରାପଂ ଯଦ୍ ଦୁର୍ଗଂ ଯଚ୍ଚ ଦୁଷ୍କରମ୍ ।
ସର୍ବଂ ତୁ ତପସା ସାଧ୍ୟଂ ତପୋ ହି ଦୁରତିକ୍ରମମ୍ ॥

(ମନୁ ୧୧।୨୩୮, ବିଷ୍ଣୁ ସ୍ମୃତି ୯୫।୧୭,
ବିଷ୍ଣୁଧର୍ମ, ୩।୨୭୭।୩୦, ମହାଭାରତ ୧୩।୧୨୦।୭)

## ପୂଜାତତ୍ତ୍ୱ :

"ପୂଜ୍ୟ-ଦେବତୀକରଣଂ 'ଜା'-ଜାୟତେ ଅନେନ"—ଅନେକ ଜୀବ ଦେବ ଭାବରେ ଉଦ୍‌ବୁଦ୍ଧ ହୋଇ କାୟମନୋବାକ୍ୟରେ ଦେବତ୍ୱ ହୁଏ ବୋଲି 'ପୂଜା'ର ମହତ୍ତ୍ୱ, ଆବଶ୍ୟକତା ଓ ଉପଯୋଗିତା । ଶ୍ରୀମଦ୍‌ଭଗବଦ୍‌ଗୀତା (୯।୩୪)ରେ ଭଗବାନ୍ ଶ୍ରୀକୃଷ୍ଣ କହୁଛନ୍ତି—

ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବମ୍ ଆତ୍ମାନଂ ମତ୍ପରାୟଣଃ ॥

ମୋଠାରେ ମନ ରଖ । ମୋର ଭକ୍ତ ହୁଅ । ମତେ ପୂଜା କର । ମତେ ନମସ୍କାର କର । ଏହିପରି ମୋଠାରେ ମନଲଗାଇ ମୋ କଥା ଚିନ୍ତାକଲେ ମତେ ନିଶ୍ଚୟ ପାଇବ ।

ଏଠାରେ ଶ୍ଳୋକଟିର ପ୍ରଥମାର୍ଦ୍ଧରେ ଭକ୍ତ ହୋଇ ପ୍ରଣାମ କରି ପୂଜା କରିବାକୁ କୁହାଯାଇଛି । ତେଣୁ ମନ ନ ଥାଇ ପୂଜା କରିବା ନିଷ୍ଫଳ ଓ ନିଷ୍ପ୍ରୟୋଜନ । ରାଜଭକ୍ତ ଭୃତ୍ୟର ମନ ତା' ପତ୍ନୀଠାରେ ଥିଲେ ମଧ୍ୟ ସେ ଯେପରି ତା' ପତ୍ନୀର ଭକ୍ତ ନୁହେ – ସେପରି କଲେ ଏଠାରେ ଚଳିବ ନାହିଁ । ମନ ଲଗାଇ ଭକ୍ତ ହୋଇ ଭଜନ କରିବାକୁ ହେବ । ପ୍ରଣାମ ମଧ୍ୟ ଚଣ୍ଡିମନ୍ଦିରକୁ ସାଇକେଲରେ ଗଲାବେଳେ ଗୋଟିଏ ହାତ ଟେକି ଦେଇ କଲେ ଚଳିବ ନାହିଁ । ଦଣ୍ଡବତ୍ ପ୍ରଣାମ କରି ତାଙ୍କର ଚରଣରେ ନିଜକୁ ଲୋଟାଇ ଦେଇ ସମର୍ପଣ କରିଦେବାକୁ ହେବ । ଏହା ହିଁ ପୂଜା । ଏହିପରି ମନ ଲଗାଇ ଅବିରତ ମନନାଦି କଲେ ଅବଶ୍ୟ ତାଙ୍କର ସାକ୍ଷାତ୍‌କାର ମିଳିବ ବୋଲି ଫଳଶ୍ରୁତି ଦିଆଯାଇଛି ଶ୍ଳୋକଟିର ଦ୍ୱିତୀୟାର୍ଦ୍ଧରେ ।

ପ୍ରଶ୍ନ ହୋଇପାରେ—ପୂଜା କ'ଣ କରିବା ନିତାନ୍ତ ଆବଶ୍ୟକ ? ଉତ୍ତର ହେଉଛି—ହଁ । କାରଣ, ପୂଜା କଲେ ମଣିଷ କୃତଜ୍ଞ ହେବା ଶିଖିବ ଓ 'ମନୁଷ୍ୟରୂପେଣ ମୃଗାଶ୍ଚରନ୍ତି'—ମଣିଷରୂପରେ ପଶୁଭଳିଆ ଭୋଗବାଦରେ ମାତି ଆତ୍ମକେନ୍ଦ୍ରିକ ହୋଇ ରହିବ ନାହିଁ । ସେ ପରାର୍ଥେ ନିଜକୁ ଉତ୍ସର୍ଗ କରିବା ଶିଖିବ । ଏଠାରେ 'ପର' କହିଲେ ଅନ୍ୟ ଏବଂ ପରମ ପୁରୁଷ ଉଭୟ ଅର୍ଥରେ ଗ୍ରାହ୍ୟ । ଏ ସଂସାର ଯେଉଁ ଅଦୃଶ୍ୟ ଶକ୍ତିର ଇଚ୍ଛା, ଜ୍ଞାନ ଓ କ୍ରିୟା ବଳରେ ଚାଲିଛି—ତାଙ୍କୁ ଅନୁଭବ କରି-ହେବ, ଜାଣି ହେବ । ଯେ ସୃଷ୍ଟି ଦେଇଛି, ତାକୁ ଜାଣି ତା' ପ୍ରତି କୃତଜ୍ଞ ରହିବା ହେଉଛି ମାନବିକତା । ତା'ର ପାଣି, ତା'ର ପବନ, ତା'ର ଖାଦ୍ୟରେ ନିଜକୁ ପୁଷ୍ଟ କରି ନିଜେ 'ଉଦରଂ ଭରି' ଖାଇ ତାକୁ ନ ଜାଣିବା ବା ତା' ପ୍ରତି କୃତଜ୍ଞତା ପ୍ରକାଶ ନ କରିବା ହେଉଛି ଚରମ କୃତଘ୍ନତା ଓ ପାଶବିକତା । କୃତଜ୍ଞ ରହିବା ଆମେ ନ ଜାଣିଲେ, ଆମ ପିଲେ ଆମଠୁ ଶିଖିବେ ନାହିଁ ଏବଂ ଆମର ଖାଇ ଶେଷରେ ଆମକୁ ପଚାରିବା ଦୂରେ ଥାଉ ଆମରି ବିରୁଦ୍ଧରେ ଠିଆ ହେବେ । ସସୀମ ମଣିଷଟି ଏକ ପରମ ଶକ୍ତି ନିକଟରେ ନମ୍ରତାର ସହ ଆତ୍ମ ସମର୍ପଣ କରି ସକଳ ଶୁଦ୍ଧତାର ସହ ତା'ର ସତ୍ତା ଅନୁଭବ କରି ତା'ଠାରେ କୃତକୃତ୍ୟ ଭାବ ପ୍ରକାଶ କରିବା ହିଁ 'ପୂଜା' ।

ପରମ ଶକ୍ତି ବା ପରମ ବ୍ରହ୍ମ ସୂର୍ଯ୍ୟରୂପରେ ସର୍ବତ୍ର ପରିବ୍ୟାପ୍ତ । ତେଣୁ ଏକ ଅନନ୍ତ ଅସୀମ ଶକ୍ତିକୁ ସାନ୍ତ ସସୀମ ଦୃଷ୍ଟିରେ ଦେଖି ପୂଜା କରିବା ନିର୍ବୋଧତା ବୋଲି ବ୍ରାହ୍ମମନାମାନେ କହିପାରନ୍ତି । ମାତ୍ର ଅନନ୍ତ ଅସୀମ ନିର୍ଗୁଣ ନିରାକାରଙ୍କୁ ଅନୁଭବରେ ଆଣିବା ଇତର ଜନ ସାଧ୍ୟ ନହେ—ସମସ୍ତେ ପାଇବେ ନାହିଁ । ତେଣୁ 'ଅରୁନ୍ଧତୀ ନ୍ୟାୟ'ରେ ସ୍ଥୂଳବିଗ୍ରହ ପୂଜା ଆବଶ୍ୟକ । 'ଅରୁନ୍ଧତୀ' – ଏକ ଅତି କ୍ଷୁଦ୍ରତାରା ହେତୁ ସହଜେ ଦୃଷ୍ଟିଗମ୍ୟ ନୁହେଁ । ଅନନ୍ତ ଆକାଶରେ ଅରୁନ୍ଧତୀଙ୍କୁ ଦେଖିବାକୁ ହେଲେ ସପ୍ତର୍ଷିମଣ୍ଡଳର ଷଷ୍ଠ ତାରା 'ବଶିଷ୍ଠ'ଙ୍କୁ ଠାବ କରି ଭଲରୂପେ ନିରୀକ୍ଷଣ କଲେ ତାଙ୍କ ପାଖରେ ଦେଖାଯିବେ 'ଅରୁନ୍ଧତୀ' । ବଶିଷ୍ଠଙ୍କ ସ୍ଥୂଳରୂପକୁ ଆଶ୍ରୟ କରି ସୂକ୍ଷ୍ମ-ଅରୁନ୍ଧତୀଙ୍କୁ ଜାଣିଲା ପରି ସ୍ଥୂଳ ବିଗ୍ରହର ପୂଜା ମାଧ୍ୟମରେ ସୂକ୍ଷ୍ମର ଅବଧାରଣ କରାଯାଏ । ଜଳ ତା'ର

ସ୍ଥୂଳତା ତ୍ୟାଗ କରି ସୂକ୍ଷ୍ମ ବାଷ୍ପ ଅବସ୍ଥାରେ ଶୀତସଂସ୍ପର୍ଶ ଦ୍ୱାରା ଅନୁଭବବେଦ୍ୟ ହୋଇପାରେ ମାତ୍ର ସ୍ନାନୀୟ ରୂପରେ (ସଂସାର ମଳା-ପହାରକ ତରଳ ଜଳ ରୂପରେ ଜୀବନରକ୍ଷକ ନୁହେ । ସୂକ୍ଷ୍ମ ଓ ସ୍ଥୂଳ ଉଭୟ ସତ୍, କିନ୍ତୁ ସ୍ଥୂଳସତ୍ ସହ ସମ୍ପର୍କ ସ୍ଥାପନ ସହଜ ପ୍ରତ୍ୟକ୍ଷସିଦ୍ଧ ଓ ଜାଗତିକ ହେଲାବେଳେ ସୂକ୍ଷ୍ମ ସତ୍ ସହ ସମ୍ପର୍କ 'ଅନୁମାନବେଦ୍ୟ ଓ ମାନସିକ ବ୍ୟାପାର ମାତ୍ର ଅଟେ । ଆଚାର୍ଯ୍ୟ ରାମାନୁଜଙ୍କୁ ଜଣେ ଅଦ୍ୱୈତ-ବାଦୀ ଠିକ୍ ଏହିପରି ପ୍ରଶ୍ନ ଉତ୍ଥାପନ କରି ପଚାରିଥିଲେ—'ବିଶ୍ୱବ୍ୟାପୀ ବ୍ରହ୍ମଙ୍କୁ ପୂଜା କରିବା ପାଇଁ ଆପଣ କାହିଁକି କେତେକ ଶ୍ରେଷ୍ଠ ଶ୍ରେଷ୍ଠ ପିତ୍ତଳ ମୂର୍ତ୍ତି ରଖିଛନ୍ତି'? ରାମାନୁଜ ସେହି ଅଦ୍ୱୈତବାଦୀ ଭଦ୍ରବ୍ୟକ୍ତିଙ୍କୁ ଟିକିଏ ନିଆଁ ଆଣିବାକୁ ଅନୁରୋଧ କଲେ । ଅଦ୍ୱୈତବିଦ୍ୱାନ୍ ଗୋଟିଏ ଜଳନ୍ତା କାଠ ଧରି ଆସିଲେ । ରାମାନୁଜ କହିଲେ, 'ତୁମେ କାଠଟା କାହିଁକି ଧରି ଆସିଛ, କେବଳ 'ନିଆଁ' ଆଣ । ନିଆଁ ସବୁଠାରେ ଅଛି । ଜଠରାଗ୍ନି ଆମର ଖାଦ୍ୟ ପାକ କରି ଦେହରେ ଉତ୍ତାପ ସୃଷ୍ଟି କରୁଛି । ତେଣୁ ଦେହରେ ମଧ୍ୟ ଅଗ୍ନି ଅଛି । ମାତ୍ର ତାହା ରଖିବା ପାଇଁ ଏକ ଉପଯୋଗୀ ମାଧ୍ୟମ ଆବଶ୍ୟକ । ସେହି, ମାଧ୍ୟମଟି ହେଉଛି—ପିତୁଳା ବା ମୂର୍ତ୍ତି । ପ୍ରଥମେ ସାଧନାର ପ୍ରାରମ୍ଭରେ ମୂର୍ତ୍ତିଟି ପ୍ରତୀକ ହୋଇପାରେ, ମାତ୍ର ସାଧନାର ପରିଣତିରେ ତାହା ଚିନ୍ମୟ ସତ୍ତାରେ ପରିଣତ ହୁଏ । ମୂର୍ତ୍ତି ସହ ସାଧକର ଆତ୍ମାର ସମ୍ପର୍କ ବା ଆତ୍ମୀୟତା ଆସିଗଲେ ତାହା ମୂର୍ତ୍ତି ରୂପରେ ପ୍ରତିଭାତ ହୁଏ । ମହାସାଧକ ରାମକୃଷ୍ଣ ପରମହଂସ ବିବେକଧୀପ୍ତ ବିବେକାନନ୍ଦଙ୍କୁ ଆଳତିବେଳେ ଦେଖାଇ ଦେଇଥିଲେ ଯେ, ତାଙ୍କ ଦ୍ୱାରା ପୂଜିତ ମାଟି ମୂର୍ତ୍ତି କାଳୀ ନିର୍ଜୀବ ନୁହନ୍ତି ସେ ଜୀବନ୍ତ କରୁଣାମୟୀ ମା' । ଖଲ୍ଲିକୋଟର ଅଷ୍ଟଭୁଜା ନାରାୟଣୀ ଦଶଭୁଜା ହେବା, ସାକ୍ଷୀଗୋପାଳର ଶ୍ରୀକୃଷ୍ଣ ସାକ୍ଷୀ ଦେବାକୁ ଆସିଥିବା, ଜଗନ୍ନାଥ ଓ ବଳଭଦ୍ର କଳା ଧଳା ଘୋଡ଼ାରେ କାଞ୍ଚୀକୁ ଯୁଦ୍ଧଯାତ୍ରା କରିବା ମନ-ଗଢ଼ା କପୋଳକଳ୍ପନା ନୁହେ । ଏ ସବୁ ସାଧକ ଭକ୍ତର ନିଷ୍ଠା ମୂର୍ତ୍ତିର ଅନ୍ତରରେ ପ୍ରାଣପୂର୍ଣ୍ଣ ଭାବରେ ସ୍ଥାନ ପାଇ ସେ ନିଷ୍ଠା ବା ସାଧନା ହିଁ ମୂର୍ତ୍ତିମନ୍ତ ହୋଇ ପ୍ରକାଶ ପାଇଛି ।

ତେଣୁ ପୂଜାରେ 'ପ୍ରାଣପ୍ରତିଷ୍ଠା' ଏକ ବିଶେଷ ପ୍ରଣିଧେୟ

ଅନୁଷ୍ଠାନ । ବୈଦିକ ମତରେ ପ୍ରାଣପ୍ରତିଷ୍ଠା କଲାବେଳେ ବିଶ୍ୱ ପୁରୋହିତ ମୂର୍ତ୍ତି ଦେହରେ ସମଗ୍ର ବିଶ୍ୱର ପ୍ରାଣଶକ୍ତିକୁ ଆକଳନ କରି ପ୍ରତିଷ୍ଠା କରିଥାଏ । ଅନନ୍ତ ବିଶ୍ୱର ପ୍ରାଣଶକ୍ତିକୁ ଶାନ୍ତ ସସୀମ ମଣିଷଟି ଧାରଣ କରି ମୂର୍ତ୍ତି ଦେହରେ ପୁଣି ସଂଗୃହ କରାଇବା କମ୍ କଷ୍ଟସାଧ୍ୟ ବ୍ୟାପାର ନୁହେ । ତାନ୍ତ୍ରିକ କିନ୍ତୁ ଦେବ ବିଗ୍ରହରେ ଆତ୍ମ-ପ୍ରାଣପ୍ରତିଷ୍ଠା କରିଥାଏ । ପାଠକମାନଙ୍କର ମନେଥିବ, ସିଦ୍ଧସାଧକ ନିଗମାନନ୍ଦ ପ୍ରତ୍ୟକ୍ଷ କରିଥିଲେ ଏବଂ ବାମାକ୍ଷେପାଙ୍କୁ ଦେଖାଇଥିଲେ ଯେ ତାଙ୍କ ଦେହରୁ କାହାର ମା' ତାର ରୂପ ପରିଗ୍ରହ କରୁଛନ୍ତି ।

ମନୁଷ୍ୟ ମନର ଧ୍ୟେୟ ବା ଆଦର୍ଶ ଭଗବାନ ସର୍ବଦା ସର୍ବତ୍ର ବିଦ୍ୟମାନ । **ଦେବତା** ନିଜର ଆତ୍ମା ବ୍ୟତୀତ ଅନ୍ୟ କେହି ବା ଆଉ କିଛି ନୁହେଁ । ତେଣୁ ଶାରଦାତିଳକରେ କୁହାଯାଇଛି—'ସ୍ୱାତ୍ମୈବ ଦେବତା ପ୍ରୋକ୍ତା ମନ୍ତ୍ରୋଜ୍ଞା ବିଶ୍ୱବିଗ୍ରହା' । ନିଜକୁ ଓ ନିଜର ପରିବେଶକୁ ନିର୍ମଳ କରି ସେହି ଦିବ୍ୟ ଆଦର୍ଶ ଭାବକୁ ମୂର୍ତ୍ତି କରି ନିଜ ଆଗରେ ରଖିବା— '**ପ୍ରାଣପ୍ରତିଷ୍ଠା**' । ତାକୁ ବହୁଭାବରେ ପରିସରତାର ସହିତ ତା'ର ମହତ୍ତ୍ୱ ଅନୁଭବ କରି ନିଜକୁ ମହତ୍ତର କରିବା '**ପୂଜା**' ଏବଂ ନିଜ ହୃଦୟରେ ସେହି ଭାବର ପୁନଃ ସଂସ୍ଥାପନ ବା ଦୃଢ଼ୀକରଣ ହିଁ '**ବିସର୍ଜନ**' । ପୂଜା ସମୟରେ ପ୍ରତି ଅଙ୍ଗରେ ଦେବତାଙ୍କ ଅଙ୍ଗ ବିଶେଷ ହୃଦୟ ସହିତ ଅନୁଭବ କରିବା ସକାଶେ 'ନ୍ୟାସ' କରାଯାଏ । କରନ୍ୟାସ ବା କର୍ମରେ, ଅଙ୍ଗନ୍ୟାସ ବା କାର୍ଯ୍ୟରେ, ହୃଦୟାଦି ନ୍ୟାସ ହୃଦୟ ବା ମନରେ, ଋଷିନ୍ୟାସ ବା ବାକ୍ୟରେ ଅଧିଦେବତାର ନ୍ୟାସ ବା ପରିହାର ଏବଂ ଦିବ୍ୟତାର ନ୍ୟାସ ବା ସ୍ଥାପନ ହିଁ **ନ୍ୟାସତତ୍ତ୍ୱ** । ସର୍ବଥା ଦିବ୍ୟ-ସତ୍ତ୍ୱର ଅନୁଭବ କରି 'ଦେବୋ ଭୂତ୍ୱା ଦେବଂ ଯଜେତ୍'— ଦିବ୍ୟଭାବରେ ଦେବତାର ପୂଜା କରିବାକୁ ହେବ । ଏଥିପାଇଁ ମନ୍ଦିର ସେତେଟା ପ୍ରୟୋଜନ ନାହିଁ । ଅନ୍ତଃକରଣ ଶୁଦ୍ଧ ନ ଥିଲେ – ମନ୍ଦିରରେ ବି ଦେବତା ନ ଦେଖି ସେଠାରେ ଥିବା ନିଜା ବ ଶିଳ୍ପକଳା ବା ଉପସ୍ଥିତ ସଜୀବ ଭକ୍ତଙ୍କ ଆଙ୍ଗିକ ସାଜସଜ୍ଜାରେ ମଣିଷ ଆକୃଷ୍ଟ ହେବ । ଏହି କାମନା ବାସନାର ବିନାଶ ଦ୍ୱାରା ଭଗବତ୍ ଶକ୍ତିର ଉପଲବ୍ଧି ସକାଶେ

ହିଁ **ଶୁଦ୍ଧିତତ୍ତ୍ୱ** । ସର୍ବଶୁଦ୍ଧ ଅବସ୍ଥାରେ ଆମର ଧ୍ୟେୟ ଆଦର୍ଶଙ୍କୁ ସମ୍ମାନର ସହ ଅଙ୍ଗେ ନ ଭରି ତଦ୍ଭାବଭାବିତ ହୋଇ ନିଜ ଜୀବନକୁ ତଦାକାରକାରିତ କରି ଶୁଦ୍ଧପୂତ ଶାନ୍ତ ଜୀବନଯାପନ ହିଁ ମାନବ ଜୀବନର ଲକ୍ଷ୍ୟ ଏବଂ ସେଥିରେ ହିଁ ତା'ର ସାର୍ଥକତା ଓ ତାହାହିଁ ତା'ର ପରାର୍ଥ-ପରମାର୍ଥ ବା **ମୋକ୍ଷ** ।

ସାଧାରଣତଃ ସାଧକଗଣ ତିନିଶ୍ରେଣୀରେ ବିଭକ୍ତ—ଜ୍ଞାନୀ, ଯୋଗୀ ଓ ଭକ୍ତ । ଜ୍ଞାନୀର ପ୍ରଧାନ ଲକ୍ଷ୍ୟ ହେଉଛି—ଆତ୍ମ-ଅନାତ୍ମତତ୍ତ୍ୱର ବିବେଚନା ଦ୍ୱାରା ବ୍ରହ୍ମ ତାଦାତ୍ମ୍ୟଲାଭ । ଯୋଗୀର ଲକ୍ଷ୍ୟ ହେଉଛି—ଜୀବାତ୍ମା ଓ ପରମାତ୍ମାଙ୍କ ମିଳନ ସାଧନ ଏବଂ ଏଥିପାଇଁ ନିଜକୁ ପରମାତ୍ମାଙ୍କ ସହିତ ଯୁକ୍ତ କରି ଅନାସକ୍ତ ଓ ଫଳାକାଂକ୍ଷା ରହିତ ହୋଇ ଯଜ୍ଞାର୍ଥ କର୍ମ କରିବା । ଭକ୍ତର ଲକ୍ଷ୍ୟ ହେଉଛି—ଭଗବାନ୍‌ଙ୍କ ପ୍ରେମ ଓ କୃପା ପ୍ରାପ୍ତି ଏବଂ ଏଥିପାଇଁ ସେ କାୟମନୋବାକ୍ୟରେ ଆତ୍ମନିବେଦନ କରିଥାଏ ଓ ସର୍ବଦା ଭଗବତ୍‌ଲୀଳା ସଂଦର୍ଶନରେ ଭକ୍ତିର ସହ ଆତ୍ମବିସ୍ମୃତ ହୋଇଥାଏ ।

ଶ୍ରେଷ୍ଠ ବ୍ୟକ୍ତି ଅଥବା ଶ୍ରେଷ୍ଠ ତତ୍ତ୍ୱର ସାନ୍ନିଧ୍ୟବଶତଃ ଶ୍ରେଷ୍ଠତା ଲାଭ ସକାଶେ ପୂଜା ହେଉଛି ଏକ ପ୍ରକାର ଆରୋପ-ସାଧନ (ବା auto suggestion) । ନିଜର ଅନୁଭୂତିକୁ ଆଦର୍ଶ ଆକାରରେ ନିଜ ଆଗରେ ଉପସ୍ଥାପନ କରି ତାଙ୍କୁ ପୂଜା କରି ସମ୍ମାନ ଦେଖାଇ ନିଜ ଭିତରେ ତାଙ୍କୁ ଲୀନ କରାଇ ଭଗବଦ୍‌ଭାବରେ ଭରପୂର ହେବା ହେଉଛି ପୂଜାର ଅସଲ ଉଦ୍ଦେଶ୍ୟ । ପୂଜାର ଅନ୍ୟ ନାମ ହେଉଛି ଉପାସନା । ଉପାସନାର ମୁଖ୍ୟ ଉଦ୍ଦେଶ୍ୟ ଈଶ୍ୱରଙ୍କ ସାମୀପ୍ୟ ବା ସାନ୍ନିଧ୍ୟ ଲାଭ । ଉପାସନା ଶବ୍ଦଟି ଉପ-ସମୀପେ ଆସନ ବସିବା ଅର୍ଥାତ୍ ଇଷ୍ଟଦେବତାଙ୍କ ସମୀପରେ ନିଜକୁ ନେଇ ରଖିବା । ରାଜା ବା ଆଜିର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀଙ୍କ ନିଜର ପାଖଲୋକ ହୋଇ ରହିବାକୁ ହେଲେ ସେମାନଙ୍କୁ ଖୁସି କରାଇବା ଭଳି ଆଗ୍ରହ ଓ ଗୁଣର ଜଣକର ପ୍ରାଥମିକ ଯୋଗ୍ୟତା । ତେଣୁ ଦେବତାଙ୍କ ପାଖରେ ନିଜକୁ ରଖିବାକୁ ହେଲେ ଆତ୍ମସମର୍ପଣ ସହ ସଦାଗ୍ରହ ଆବଶ୍ୟକ ।

ଭଗବତ୍ ପ୍ରାପ୍ତିରେ ହିଁ ଜୀବନର ଚରମ ସାର୍ଥକତା । 'ଭଗ' କହିଲେ 'ଐଶ୍ୱର୍ଯ୍ୟ' । ତେଣୁ ଏ ଐଶ୍ୱର୍ଯ୍ୟ ପାର୍ଥିବ ଐଶ୍ୱର୍ଯ୍ୟ ନ ହୋଇ ଦିବ୍ୟ ଐଶ୍ୱର୍ଯ୍ୟ ହେଲେ ତା'ର ଫଳ ଚିରନ୍ତନ ହେବ । ଭଗବତ୍ ଆରାଧନାରେ ତାଙ୍କର ସାନ୍ନିଧ୍ୟ ଓ କୃପାବଶତଃ ପରମ ଶାନ୍ତି ମିଳିଥାଏ ।

ଏହି ଶାନ୍ତି ହିଁ ଜୀବନରେ ଏକାନ୍ତ କାମ୍ୟ । ଏଥିପାଇଁ ଦରକାର ସାଧନା । ନିଜର ଦେହ, ମନ ଓ ଆତ୍ମାର ସକଳ କାର୍ଯ୍ୟକୁ ଭଗବତ୍ ପ୍ରାପ୍ତିର ତଥା ପୂର୍ଣ୍ଣତା ଲାଭର ଅନୁକୂଳ କରାଇବା ପାଇଁ ଚେଷ୍ଟା ହିଁ ସାଧନା । ଏହି ଆଧ୍ୟାତ୍ମସାଧନା ପ୍ରାଣପୂର୍ଣ୍ଣ ହେଲେ କୁହାଯାଏ 'ପୂଜା' ।

ପୂଜାର ଆରମ୍ଭ ହୁଏ 'ଓଁ ତତ୍ ସତ୍' କହି ଏବଂ ବିଶ୍ୱବ୍ୟାପକ ବିଷ୍ଣୁଙ୍କୁ ସ୍ମରଣ କରି 'ଓଁ ତଦ୍ ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ, ଦିବୀବ ଚକ୍ଷୁରାତତମ୍' ବୋଲି ଉଚ୍ଚାରଣ କରି । ତେଣୁ ପ୍ରଥମେ ସେହି ସଦ୍ ତତ୍ତ୍ୱ ହିଁ ସତ୍ୟ ବୋଲି ଗ୍ରହଣ କରି ନେବାକୁ ହେବ । ଦେବତାର ସତ୍ତା ଉପରେ ପୂର୍ଣ୍ଣ ଆସ୍ଥା ବା ବିଶ୍ୱାସ ନ ଆସିଲା ଯାଏଁ ପୂଜା ଅସମ୍ଭବ । ଏଠାରେ ଗୀତା (୯।୨୨)ରେ ଭଗବାନଙ୍କ ପ୍ରତିଶ୍ରୁତି ମନେରଖିବା ଉଚିତ୍—

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥**

'ଯେଉଁମାନେ ଅନ୍ୟଠାରେ ଆସକ୍ତ ନ ହୋଇ ମତେ ଏକାଗ୍ରଚିତ୍ତରେ ଉପାସନା କରନ୍ତି ତାଙ୍କର ଯୋଗ (ଅପ୍ରାପ୍ତପ୍ରାପ୍ତି ବା ଅଭିଳଷିତ ପ୍ରଦାନ କରିବା) ଓ କ୍ଷେମ (ପ୍ରାପ୍ତ ସଂରକ୍ଷଣ ବା ରକ୍ଷଣାବେକ୍ଷଣ) ଦାୟିତ୍ୱ ମୁଁ ଗ୍ରହଣ କରିଥାଏ ।'

ତେଣୁ ତାଙ୍କର ଉପାସନା କରିବା ପାଇଁ ଆମେ ସଂକଳ୍ପବଦ୍ଧ ହେବା ଆବଶ୍ୟକ । ଶୁଦ୍ଧ ସଂକଳ୍ପ ବିନା କୌଣସି କାର୍ଯ୍ୟରେ ସଫଳତା ସମ୍ଭବ ନୁହେ । ତେଣୁ ପ୍ରତ୍ୟେକ ଭଲକାର୍ଯ୍ୟ କରିବା ପାଇଁ ଦୃଢ଼ସଂକଳ୍ପ

ପ୍ରଥମେ ପ୍ରୟୋଜନ । ତାପରେ ଆବାହନ, ପ୍ରାଣ ପ୍ରତିଷ୍ଠାଦି ପରେ ପଞ୍ଚ, ଷୋଡ଼ଶ ଚତୁଃଷଷ୍ଠି ଉପଚାରରେ ପୂଜା କରାଯାଏ । ଏହି 'ଉପଚାର' ଦେବତାଙ୍କ ଉପଭୋଗାର୍ଥେ ନୁହେଁ; କେବଳ ପ୍ରତୀକ ଗ୍ରହଣ ବା ସମ୍ପର୍କ ରଖାଯାଉଥାଏ । ଦେବତାଙ୍କ ଆଗରେ ବଢ଼ାଯାଉଥିବା ଅନ୍ନାଦି ନୈବେଦ୍ୟ ଦେବତା ଯଦି ପ୍ରକୃତରେ ଖାଇଦେଉଥା'ନ୍ତେ, ତେବେ ହୁଏତ ଅନେକେ ଆଉ ପୂଜା କରନ୍ତେ ନାହିଁ । ଏଥିରୁ ହିଁ ଏଗୁଡ଼ିକର ଗୌଣତା ପ୍ରତିପନ୍ନ ହୁଏ । ତେଣୁ 'ଉପଚାର' ଶବ୍ଦର ଅନ୍ୟ ଏକ ଅର୍ଥ ହେଉଛି 'ଗୌଣ' । ଉପଚାରର ଅର୍ପଣ ମନ୍ତ୍ର ହେଉଛି—'ବସ୍ତ୍ରଂ ଜନ୍ମାମି ବସ୍ତ୍ରାଦି ଶିବାବସାନଂ ସ୍ୱାହା' । ସ୍ଥୂଳ ଅଧିକାରୀ ପାଇଁ ଦେହାଦିର ପ୍ରୟୋଜନ ସକଳ ପଦାର୍ଥ, ସୂକ୍ଷ୍ମ ଅଧିକାରୀ ପାଇଁ ଅନ୍ତର ସକଳ ବୃତ୍ତି ଏବଂ ଉତ୍ତମ ଅଧିକାରୀ ପାଇଁ କେବଳ ଆତ୍ମା ହିଁ ଉପଚାର । 'ଅନ୍ତର୍ମୁଖ-ସମାରାଧ୍ୟା ବହିର୍ମୁଖ-ସୁଦୁର୍ଲଭା'— ଉପଚାରର ଯେତେ ମହାସମ୍ଭାର ବା ଆଡ଼ମ୍ବର ହେବ, ତାହା ସେତେ ସୂକ୍ଷ୍ମ ତତ୍ତ୍ୱାବଧାରଣରେ ବାଧକ ହେବ । ତେଣୁ ଅନ୍ତର୍ଯାଗ ହିଁ ଶ୍ରେଷ୍ଠ ପୂଜା । ଜଗତର ଦୃଶ୍ୟାଦୃଶ୍ୟ ସକଳ ବସ୍ତୁ ତ ତା' ପାଇଁ ! କିଏ ଦେବ ? କାହାକୁ ଦେବ ? ସେ କେଉଁଠି ନାହିଁ ଯେ ! ତାଙ୍କୁ ପୁଣି ପ୍ରଦକ୍ଷିଣ କରିବ କ'ଣ ? କଥା ଯିଏ ଦେଇଛି, ସେଥିରେ କ'ଣ ତା'ର କୃପଣତା ନାହିଁ ଯେ ଖାଲି ବାକ୍ୟରେ ପ୍ରକାଶ କଲେ ହିଁ ସ୍ତୁତି ହେବ ? ବାକ୍ୟ ପ୍ରକାଶ ହିଁ ତା'ର ସ୍ତୁତି । ଯାହା କଲେ ବି ତା'ର ସ୍ତୁତି ଜଡ଼ିତ ହେତୁ ତା'ର ପୂଜା 'ଯଦ୍ ଯତ୍ କର୍ମ କରୋମି ତତ୍ ତଦ୍ ଶମ୍ଭୋଃ ତବାରାଧନମ୍' । ତା'କୁ ମାଗିବ କ'ଣ ? ସେ ପରା ଖୋଲି ଦେଇଛି ଏ ବିଶ୍ୱଭଣ୍ଡାର ତୁମ ଆଗରେ । ତୁମେ ନିଜେ ନିଅ । ଭାତ ବଢ଼ା ହୋଇଛି - ତୁମେ ହାତ ଦ୍ୱାରା ମୁହଁ ପାଖକୁ ନେବାକୁ ବି ଚେଷ୍ଟା କରିବ ନାହିଁ ? ଗଛରେ ଫଳ ଫଳିଛି, ତୁମେ ତୋଳିବା ପାଇଁ ସାମାନ୍ୟ ଯତ୍ନ ବି କରିବ ନାହିଁ, ପଡ଼ିଲେ ଖାଇବ ବୋଲି ଅନାଇଁ ରହିଥିବ ? ନାଁ, ଅନାଇବା ପାଇଁ ଯେଉଁ ଶ୍ରମ ତାହା ବି ତୁମେ କରିବ ନାହିଁ ? ଭୋଗ ପୁଣି କିଏ କରିବ ? ତୁମେ ଯଦି ଭୋଗ କରିବ, ତେବେ ତୁମକୁ କର୍ମ କରିବାକୁ ହେବ । ତା'ର ସୃଷ୍ଟିକୁ ସୁନ୍ଦର କରିବା ପାଇଁ ତୁମେ ଯେଉଁ ସବୁ ମହତ୍ କର୍ମ କରିବ—ସେ ସବୁ ତା'ର ପରିଚର୍ଯ୍ୟା,

ସେବା ବା ପୂଜା । ସିଏ ମାଗେ ସିଏ ପର ହୋଇଯାଏ । ମାଗ ନାହିଁ । କର୍ମ କର, ଦେବ କର ।

ତା'ର ଚରଣରେ ଆତ୍ମନିବେଦନ (total unconditional surrender) ପୂର୍ବକ ପ୍ରଣାମ କର । ପୂର୍ଣ୍ଣ ବା ପ୍ରକୃଷ୍ଟ ରୂପରେ ନମନ, ନତ ବା ଶିରସ୍ଥର ସହ ନମସ୍କାର ହିଁ ପ୍ରଣାମ । ପ୍ରଣାମରେ ଉପାସନାର ପରିସମାପ୍ତି । ତା'ପରେ ବିସର୍ଜନ । ସେ କେଉଁଠି ନାହିଁ ଯେ ତାକୁ କେଉଁଠି ଛାଡ଼ିଦେବ ? ତେଣୁ ହୃଦୟ ହିଁ ତା'ର ପ୍ରକୃତ ସ୍ଥାନ । ସେଠାରୁ ଆଣି ମୂର୍ତ୍ତି ବା ଯନ୍ତ୍ରରେ ପ୍ରତିଷ୍ଠା କରି ତା'ର ସତ୍ତା ଅନୁଭବ କର । ବର୍ତ୍ତମାନ ପୁଣି ହୃଦୟକୁ ନେଇଯାଅ, ସେଠାରେ ବିଶେଷ କରି ତା'ର ସ୍ତବର ମର୍ଯ୍ୟାଦା କର । ତାହାହିଁ ବିସର୍ଜନ-ତତ୍ତ୍ୱ ।

**ଯଜ୍ଞ-ତତ୍ତ୍ୱ :**

'ଯଜ୍ଞ' ଶବ୍ଦଟି 'ଦେବପୂଜା-ସଙ୍ଗତିକରଣ ଯଜନଦାନେଷୁ' ଅର୍ଥରେ ବ୍ୟବହୃତ ଯଜ୍ ଧାତୁରୁ 'ଯଜ-ଯାଚ-ଯତ-ବିଚ୍ଛ-ପ୍ରଚ୍ଛରକ୍ଷୋ ନଙ୍' ସୂତ୍ରରେ ନଙ୍ ପ୍ରତ୍ୟୟ ହୋଇ ବ୍ୟୁତ୍ପନ୍ନ । ତେଣୁ 'ଇଜ୍ୟନ୍ତେ ଦେବତା ଅତ୍ର ଇତି' ଯଜ୍ଞ । ଏଥିରେ ଦେବତାମାନଙ୍କ ପୂଜା, ସଂଗତିକରଣ ବା ସମ୍ମେଳନ ଓ ତାଙ୍କ ଉଦ୍ଦେଶ୍ୟରେ ଘୃତାହୁତି ପୂର୍ବକ ଯାଗ ତଥା ଦାନ କରାଯାଇଥାଏ ।

ତେଣୁ 'ବିଷ୍ଣୁ ସହସ୍ର (୯୭୧-୯୮୧) ନାମ'ରେ 'ଯଜ୍ଞୋ ଯଜ୍ଞପତିଃ ଯଜ୍ୱା ଯଜ୍ଞାଙ୍ଗୋ ଯଜ୍ଞବାହନଃ, ଯଜ୍ଞଭୃତ୍ ଯଜ୍ଞକୃତ୍ ଯଜ୍ଞୀ ଯଜ୍ଞଭୁକ୍ ଯଜ୍ଞସାଧନଃ, ଯଜ୍ଞାନ୍ତକୃତ୍ ଯଜ୍ଞଗୁହ୍ୟମ୍' (ଶ୍ଳୋକ ୧୧୭-୧୧୮) କହି ଯଜ୍ଞ ହିଁ ଭଗବାନ୍ ବିଷ୍ଣୁଙ୍କ ସ୍ୱରୂପ ଓ ସର୍ବସ୍ୱ ବୋଲି ମହତ୍ତ୍ୱ ପ୍ରଦାନ କରାଯାଇଛି । ତୈତ୍ତିରୀୟ ସଂହିତା (୧।୭।୪)ରେ ମଧ୍ୟ ନିର୍ଦ୍ଦେଶ ଅଛି 'ଯଜ୍ଞୋ ବୈ ବିଷ୍ଣୁଃ'—ସକଳ ପ୍ରକାର ଯଜ୍ଞ ହେଉଛି ଭଗବାନ୍ ବିଷ୍ଣୁଙ୍କର ସ୍ୱରୂପ । ତେଣୁ 'ବିଷ୍ଣୁ ସହସ୍ର (୪୪୫-୪୫୦) ନାମ'ରେ କୁହାଯାଉଛି, ସେ ହେଉଛନ୍ତି 'ଯଜ୍ଞ ଇଜ୍ୟୋ ମହେଜ୍ୟଶ୍ଚ କ୍ରତୁଃ ସତ୍ରଂ ସତାଂ ଗତିଃ' [ଶ୍ଳୋକ-୬୧] ।

ବିଷ୍ଣୁ ଶବ୍ଦ (ବିଷ୍ଲ୍ ବ୍ୟାପ୍ତୌ)ର ଅର୍ଥ ବ୍ୟାପନଶୀଳ ବା ଜୀବ ଜଗତରେ ସର୍ବତ୍ର ପରିବ୍ୟାପ୍ତ ଭଗବାନ୍। ଏହି ଜୀବଜଗତ ହିଁ ଭଗବାନ ବିଷ୍ଣୁଙ୍କ ଦୃଶ୍ୟମାନ ମୂର୍ତ୍ତି। ତେଣୁ ସର୍ବତୋଭାବେ ଜୀବସେବା ଦ୍ୱାରା ହିଁ ଦେବସେବା ବା ନରସେବା ଦ୍ୱାରା ହିଁ ନାରାୟଣଙ୍କ ପରିଚର୍ଯ୍ୟା ସମ୍ଭବ। ଜୀବଜଗତର କଲ୍ୟାଣ ସକାଶେ ଉଦ୍ଦିଷ୍ଟ ଯଜ୍ଞ; ତେଣୁ ସ୍ୱୟଂ ଭଗବାନଙ୍କ ବିଗ୍ରହ ମୂର୍ତ୍ତି। ବେଦୋଦ୍ଧର୍ତ୍ତା ଯଜ୍ଞ ବରାହଙ୍କ ବିଭିନ୍ନ ଅଂଶରୁ ଭିନ୍ନ ଭିନ୍ନ ଯଜ୍ଞର ପ୍ରାଦୁର୍ଭାବ ହୋଇଥିବା କାଳିକା ପୁରାଣ (୩୦ ଅଧ୍ୟାୟ)ରେ ଦେଖିବାକୁ ମିଳେ। ସେଥିରେ ଅଛି—

ଯଜ୍ଞେଷୁ ଦେବାସ୍ତିଷ୍ଠନ୍ତି ଯଜ୍ଞେ ସର୍ବଂ ପ୍ରତିଷ୍ଠିତମ୍।
ଯଜ୍ଞେନ ଧ୍ରିୟତେ ପୃଥ୍ୱୀ ଯଜ୍ଞସ୍ତାରୟତି ପ୍ରଜାଃ॥
ଅନ୍ନେନ ଭୂତା ଜୀବନ୍ତି ପର୍ଜ୍ଜନ୍ୟାଦନ୍ନ ସମ୍ଭବଃ।
ପର୍ଜ୍ଜନ୍ୟୋ ଜାୟତେ ଯଜ୍ଞାତ୍ ସର୍ବଂ ଯଜ୍ଞମୟଂ ତତଃ॥

ଅର୍ଥାତ୍ ଯଜ୍ଞରେ ଦେବତାମାନେ ଥା'ନ୍ତି। ଯଜ୍ଞରେ ସବୁ ଅଛି। ଯଜ୍ଞ ପୃଥ୍ୱୀକୁ ଧରି ରଖିଛି। ପ୍ରଜାମାନଙ୍କୁ ଯଜ୍ଞ ତ୍ରାଣ କରୁଛି। ପ୍ରାଣୀମାନେ ଅନ୍ନଦ୍ୱାରା ଜୀବନ ଧାରଣ କରନ୍ତି। ଏହି ଅନ୍ନ ପର୍ଜ୍ଜନ୍ୟ ବା ମେଘରୁ ହୁଏ। ପର୍ଜ୍ଜନ୍ୟ ବା ମେଘ ଯଜ୍ଞରୁ ହୁଏ। ତେଣୁ ଯଜ୍ଞ ହିଁ ସବୁ।

ଏହି କଥା ଆହୁରି ବିଶେଷ ଭାବରେ ଶ୍ରୀମଦ୍‌ଭଗବଦ୍‌ଗୀତା (୩ୟ ଅଧ୍ୟାୟ)ରେ ମଧ୍ୟ ଅଛି

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ।
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର॥ ୯॥
ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ।
ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟ କାମଧୁକ୍॥ ୧୦॥
ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ।
ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ॥ ୧୧॥

ଯଜ୍ଞାର୍ଥ କର୍ମ ବ୍ୟତୀତ ଅନ୍ୟ ଜାଗତିକ କର୍ମ ଜୀବର ବନ୍ଧନ ମାତ୍ର। ତେଣୁ ସେ ସବୁ ଆସକ୍ତି ତ୍ୟାଗ କରି ଭଗବାନ୍ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ସର୍ବଥା ସବୁଭାବରେ ଯଜ୍ଞ କରିବା ଉଚିତ୍।

ପୂର୍ବେ ପ୍ରଜାପତି ଯଜ୍ଞସହ ପ୍ରଜାମାନଙ୍କୁ ସୃଷ୍ଟିକରି କହିଥିଲେ "ଏହି ଯଜ୍ଞଦ୍ୱାରା ତୁମେମାନେ ସମୃଦ୍ଧିମାନ ହୁଅ ଏବଂ ଏହି ଯଜ୍ଞ ତୁମର ସମସ୍ତ ଅଭୀଷ୍ଟ ପୂରଣ କରୁ ।" ଏହି ଯଜ୍ଞ କରି ତୁମେ ଦେବତାମାନଙ୍କୁ ଭାବ ଏବଂ ଦେବତାମାନେ ତୁମ କଥା ଭାବନ୍ତୁ । ପରସ୍ପରର ଭାବନାରେ ପରମଶ୍ରେୟ ଲାଭ ହୋଇଥାଏ ।

ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ ।
ତୈର୍ଦତ୍ତାନ ପ୍ରଦାୟୈଭ୍ୟୋ ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ ॥ ୧୨ ॥
ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ ।
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ॥ ୧୩ ॥

ଯଜ୍ଞଦ୍ୱାରା ଦେବତାମାନଙ୍କୁ ସଂଭାବନା ବା ସଂବର୍ଦ୍ଧନା କଲେ ସେମାନେ ଅଭୀଷ୍ଟ ଭୋଗ୍ୟବସ୍ତୁ ପ୍ରଦାନ କରିଥାଆନ୍ତି । ସେମାନଙ୍କୁ ଦେବା ଜିନିଷରୁ ସେମାନଙ୍କ ଉଦ୍ଦେଶ୍ୟରେ ସମର୍ପଣ ନ କରି ବା ଦେବାଂଶ ନ ଦେଇ ଯେ ସବୁ ନିଜେ ଭୋଗକରେ ସେ ଅକୃତଜ୍ଞ 'ଚୋର' ଅଟେ । ଦେବଯଜ୍ଞ କରି, ଯଜ୍ଞଶେଷ ପ୍ରସାଦ ଯେଉଁମାନେ ପାଆନ୍ତି, ସେମାନେ ସକଳ ପାପରୁ ମୁକ୍ତି ଲାଭ କରନ୍ତି । ଯେଉଁମାନେ ଅନ୍ୟପ୍ରତି କୃତଜ୍ଞତା ନ କରି ବା ଅନ୍ୟ କାହା କଥା ଚିନ୍ତା ନ କରି ବୈଶ୍ୱଦେବାଦି ବିନା ନିଜର ଉଦର ପୂରଣ ପାଇଁ ରୋଷେଇ କରି ଆହାର କରନ୍ତି ସେହି ପାପୀମାନେ ପାପ ଭୋଗ କରନ୍ତି ।

ଅନ୍ନାଦ୍ ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ ।
ଯଜ୍ଞାଦ୍ ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ ॥ ୧୪ ॥
କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ୍ ।
ତସ୍ମାତ୍ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ॥ ୧୫ ॥

ପ୍ରାଣୀମାନେ ଜୀବନ ଧାରଣ କରନ୍ତି ଅନ୍ନଖାଇ । ଅନ୍ନ ପାଇଁ ଶସ୍ୟ ମିଳେ ବର୍ଷା ହେଲେ । ବର୍ଷା ହୁଏ ଯଜ୍ଞ କଲେ, ଯଜ୍ଞର ଘୃତାହୁତି ସୂକ୍ଷ୍ମ ବାଷ୍ପାକାରରେ ମେଘରେ ପରିଣତ ହେଲେ । ଏହି ଯଜ୍ଞ ଯଜମାନର ଇଷ୍ଟି ଆଦି ନିତ୍ୟନୈମିତ୍ତିକ କର୍ମ ଦ୍ୱାରା ସମ୍ପନ୍ନ ହୁଏ । ଏହି କର୍ମ ପୁଣି

ବେଦ (ବ୍ରହ୍ମ) ମୂଳକ ହେବା ଉଚିତ । କାରଣ ଅପୌରୁଷେୟ ବେଦ ହେଉଛନ୍ତି ପରଂବ୍ରହ୍ମଙ୍କ ଅକ୍ଷର ବା ଶାଶ୍ୱତ ରୂପ । ସର୍ବବ୍ୟାପୀ ବ୍ରହ୍ମ ଏହି ଯଜ୍ଞରେ ପ୍ରତିଷ୍ଠିତ ବୋଲି ଈଶ୍ୱରୋପାସନା ସକାଶେ ବେଦବହିତ କର୍ମ ହେଉଛି ଯଜ୍ଞ । ତେଣୁ ଯଜ୍ଞ ସର୍ବଥା କରଣୀୟ ।

ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।
ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା ॥ (ଗୀତା ୧୭।୨୩)

ପ୍ରଜାପତି ବ୍ରହ୍ମା ଓଁ, ତତ୍, ସତ୍—ଏହି ତିନୋଟି ବ୍ରହ୍ମବାଚକ ଶବ୍ଦ ଉଚ୍ଚାରଣ କରି କର୍ତ୍ତା ବ୍ରାହ୍ମଣ, କରଣ ବେଦ ଓ କର୍ମ ଯଜ୍ଞ ନିର୍ବିଘ୍ନରେ ବିଧାନ କରିଥିଲେ ।

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନଂ ତପଃ କ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ ॥
(ଗୀତା ୧୭।୨୪)

ତେଣୁ ବ୍ରହ୍ମବାଦୀମାନଙ୍କ ଯଜ୍ଞ, ଦାନ, ତପସ୍ୟାଦି ସକଳ ଶାସ୍ତ୍ରୋକ୍ତ କର୍ମ ଓଁକାର ବା ପ୍ରଣବ ଉଚ୍ଚାରଣ ପୂର୍ବକ ଅନୁଷ୍ଠିତ ହୋଇଥାଏ ।

ତତ୍ ବା ସେହି ପରମ ପୁରୁଷ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ବା ତଦର୍ଥେ ଯଜ୍ଞ ଓ ତପସ୍ୟାଦି କର୍ମ ତଥା ବିବିଧ ଦାନକ୍ରିୟା ମୋକ୍ଷାକାଂକ୍ଷୀମାନେ କୌଣସି ଅଭିସନ୍ଧି ନ ରଖି ନିସ୍ୱାର୍ଥପର ଭାବରେ କରିଥାନ୍ତି (ଗୀତା ୧୭।୨୫) । ସଦ୍‌ଭାବ ଓ ସାଧୁଭାବରେ କୃତ ଏସବୁ ପ୍ରଶସ୍ତ କର୍ମ ପାଇଁ ଉଦ୍ଦିଷ୍ଟ (ଗୀତା ୧୭।୨୬ , ଯଜ୍ଞ, ତପସ୍ୟା ଓ ଦାନରେ ଯେଉଁ ନିଷ୍ଠା, ତାହାହିଁ 'ସତ୍', ତଦତିରିକ୍ତ ଆଉ ସବୁ କର୍ମ 'ଅସତ୍' (ଗୀତା ୧୭।୨୭) ।

ଏହି 'ସତ୍' କର୍ମର ଆରମ୍ଭ ଓଁ ତତ୍ ସତ୍ ବିଷ୍ଣୁଃ ବିଷ୍ଣୁଃ ବିଷ୍ଣୁଃ ବୋଲି ସ୍ମରଣ ପୂର୍ବକ ଆରମ୍ଭ କରାଯାଇଥାଏ । କାରଣ 'ପ୍ରମାଦାତ୍ କୁର୍ବତାଂ କର୍ମ ପ୍ରଚ୍ୟବେତାଧ୍ୱରେଷୁ ଯତ୍ । ସ୍ମରଣାଦେବ ତଦ୍ ବିଷ୍ଣୋଃ ସମ୍ପୂର୍ଣ୍ଣଂ ସ୍ୟାଦିତି ଶ୍ରୁତିଃ – ଯଜ୍ଞାଦି କର୍ମ କଲାବେଳେ ଅସାବଧାନତା ବା ଅଶକ୍ତାଦି ହେତୁ ମନ୍ତ୍ରୋଚ୍ଚାରଣରେ ଦୋଷ ଦେଖାଦେଲେ ମନ୍ତ୍ରର ଯେଉଁ

ଅଙ୍ଗ ସ୍ନାନ ହୁଏ, ତାହା ବିଷ୍ଣୁଙ୍କ ନାମ ସ୍ମରଣ ଫଳରେ ଶୁଦ୍ଧ ଓ ପୂର୍ଣ୍ଣତା ପ୍ରାପ୍ତି ହୁଏ । ଆତ୍ମ ଶୁଦ୍ଧି, ଭୂମି ଶୁଦ୍ଧି ଓ ଯଜମାନର ଶୁଦ୍ଧି ସକାଶେ ବିଷ୍ଣୁ ନାମ ତିନଥର ଉଚ୍ଚାରଣ କରାଯାଏ ବୋଲି ଗୃହ୍ୟସୂତ୍ର କାରିକାରେ ବଶିଷ୍ଠ ବଚନ ଉଦ୍ଧାର କରି କୁହାଯାଇଛି —

ପ୍ରଥମେଃ ଆତ୍ମନ ଶୁଦ୍ଧି-ଦ୍ୱିତୀୟେ ଭୂମି ଶୋଧନମ୍ ।
ତୃତୀୟେ ଯଜମାନସ୍ୟ ବିଷ୍ଣୁନସ୍ମୃଦାହୃତମ୍ ॥

ବ୍ୟାପନଶୀଳ ବିଷ୍ଣୁଙ୍କ ସ୍ମରଣ ମୂଳରେଥିବା ପ୍ରଶସ୍ତ ଉଦାରତା ଓ ମହାନତା ଏଠାରେ ଲକ୍ଷଣୀୟ ବିଷୟ । ତେଣୁ ଯେ କୌଣସି ଦେବ ଦେବୀଙ୍କ ଉଦ୍ଦେଶ୍ୟରେ କ୍ରିୟମାଣକର୍ମର ପ୍ରାରମ୍ଭରେ ବିଷ୍ଣୁଙ୍କୁ ସ୍ମରଣ କରାଯାଇଥାଏ ।

ଜୀବନକୁ ପରିପୂର୍ଣ୍ଣ କରିବାପାଇଁ ଭଗବଦନୁକୂଳତା ସକାଶେ ଆବଶ୍ୟକ ଯଜ୍ଞ । ଯଜ୍ଞଧୂମ ପରିବେଶକୁ ପରିଶୁଦ୍ଧ କରେ ମନ୍ତ୍ରୋଚ୍ଚାରଣ ଚିତ୍ତଶୁଦ୍ଧି କରେ । ସକଳ କଳୁଷ ଓ ମଳିନତାକୁ ବିବେକ ଅଗ୍ନିରେ ଆହୁତି ଦେଇ ସର୍ବାତ୍ମସମର୍ପଣ ବୁଦ୍ଧିରେ ନିଷ୍କାର ସହ ନିଷ୍କାମ କର୍ମ କରିବା ହେଉଛି 'ଯଜ୍ଞ' । ତେଣୁ ରାମାନୁଜ ତାଙ୍କର ଗୀତାଭାଷ୍ୟ (୧୬।୧)ରେ କହିଛନ୍ତି—

'ଯଜ୍ଞଃ ଫଳାଭିସନ୍ଧିରହିତଂ ଭଗବଦାରାଧନମ୍' ।

ଫଳାକାଂକ୍ଷା ନ ରଖି କର୍ମ କରିବା ହେଉଛି ଯଜ୍ଞ । ସେଥିରେ ହିଁ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ତେଣୁ ମହାଭାରତର ପ୍ରସିଦ୍ଧ ଟୀକାକାର ନୀଳକଣ୍ଠ କହିଛନ୍ତି—ଯଜ୍ଞଃ ପରମେଶ୍ୱରାରାଧନମ୍ (ଯଜ—ଦେବ ପୂଜାୟାମ୍) —ଯଜ୍ଞହେଉଛି ପରମେଶ୍ୱରଙ୍କ ଆରାଧନା ।

ଏହି ଯଜ୍ଞର ଦ୍ୱାଦଶଭେଦ (୧-ବ୍ରହ୍ମ, ୨-ଦୈବ, ୩-ସଂଯମ, ୪-ଇନ୍ଦ୍ରିୟ, ୫-ଆତ୍ମସଂଯମ, ୬-ଦ୍ରବ୍ୟ; ୭-ତପୋ, ୮-ଯୋଗ, ୯-ସ୍ୱାଧ୍ୟାୟ ୧୦-ବେଦାର୍ଥ, ୧୧-ଦୃଢ଼ବ୍ରତ, ୧୨-ପ୍ରାଣାୟାମ) ଗୀତା(୪।୨୫।୩୦)ରେ ବର୍ଣ୍ଣିତ । କିନ୍ତୁ ଏ ସବୁ ଯଜ୍ଞ ଅପେକ୍ଷା ଜ୍ଞାନ ଯଜ୍ଞକୁ ଗୀତା (୪।୩୩)ରେ

ଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ' (ଗୀତା ୪।୩୮)—ଏହି ସଂସାରରେ ଜ୍ଞାନପରି ପବିତ୍ର ଆଉ କିଛି ନାହିଁ । ଜ୍ଞାନବିଷୟରେ ତତ୍ପର, ଶ୍ରଦ୍ଧାଶୀଳ ଓ ଜିତେନ୍ଦ୍ରିୟ ବ୍ୟକ୍ତି ହିଁ ଜ୍ଞାନଲାଭ କରି ଶୀଘ୍ର ଶାନ୍ତିଲାଭ କରେ (ଗୀତା ୪।୩୯)

ଜୀବାତ୍ମା ପରମାତ୍ମାଙ୍କ ଅଂଶବିଶେଷ । ଏ ସଂସାରକୁ ସେ ଆସିଛି କିଛି ଦେବ-କାର୍ଯ୍ୟ ସାଧନ କରିବା ପାଇଁ । ତେଣୁ ପ୍ରତି ମୁହୂର୍ତ୍ତରେ ସେ ଈଶ୍ୱରଭାବାପନ୍ନ ହୋଇ କର୍ମ କରିବା ଉଚିତ । ଖାଦ୍ୟରୂପେ ବୃକ୍ଷର ଫଳ ହେଉ କି ମାଟିତଳେ କୌଣସି ମୂଳ ହେଉ କି ଗାଈର ଦୁଗ୍ଧ ବା ମାଆର ସ୍ତନରୁ କ୍ଷୀର ହେଉ କି ନଦୀ ପୁଷ୍କରିଣୀର ଜଳ ହେଉ— ଏ ସବୁର ସୃଷ୍ଟି ମୂଳରେ ଯେଉଁ ଐଶୀଶକ୍ତି ଅନ୍ତର୍ନିହିତ, ତା ପ୍ରତି କୃତଜ୍ଞତା ପ୍ରକାଶ ଜୀବନରେ ପରମ ସତ୍ୟ ବୋଧ । ଜୀବନର ରକ୍ଷା ପାଇଁ ମଣିଷ କେତେ ଜୀବ ମାରୁଛି, କେତେ ପାପ କରୁଛି ! "କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୀ ଚ ମାର୍ଜନୀ; ପଞ୍ଚସୂନା ଗୃହସ୍ଥସ୍ୟ ତାଭିଃ ସ୍ୱର୍ଗଂ ନ ବିନ୍ଦତି । ପଞ୍ଚସୂନା କୃତଂ ପାପଂ ପଞ୍ଚଯଜ୍ଞୈର୍ବ୍ୟପୋହନ୍ତି ।।" କାଣ୍ଡିବା, ପେଷିବା, ଚୁଲ୍ଲୀରେ ପାକ କରିବା, ପାଣିକୁମ୍ଭର ବ୍ୟବହାର ଓ ଝାଡୁ ମାରିବାବେଳେ କେତେ ଜୀବ ଆମ ଅଜାଣତରେ ମରନ୍ତି । ସେମାନଙ୍କର ମୃତ୍ୟୁପାଇଁ ପ୍ରତ୍ୟେକ ଗୃହସ୍ଥ ଦାୟୀ, ସେ ପାପକୁ କୁହାଯାଏ ପଞ୍ଚସୂନା, ସେ ପାପର ପ୍ରକ୍ଷାଳନ ପାଇଁ ପଞ୍ଚଯଜ୍ଞ ନିତ୍ୟକର୍ତ୍ତବ୍ୟ ।

ପଞ୍ଚଯଜ୍ଞ ହେଉଛି—

ଋଷିଯଜ୍ଞଂ ଦେବଯଜ୍ଞଂ ଭୂତଯଜ୍ଞଂ ଚ ସର୍ବଦା ।
ନୃ-ଯଜ୍ଞଂ ପିତୃଯଜ୍ଞଂ ଚ ଯଥାଶକ୍ତି ନ ହାପୟେତ୍ ।।

ଯେଉଁ ଆର୍ଯ୍ୟମନୀଷୀଗଣ ନିଜର ସାଧନାର ଦିବ୍ୟ ଜ୍ୟୋତିରେ ଆମକୁ ଉଦ୍ଭାସିତ କରିଯାଇଛନ୍ତି, ଯୁଗଯୁଗର ଅନୁଭୂତିକୁ ଆତ୍ମଦର୍ଶୀ ଭାବରେ ଛନ୍ଦୋବଦ୍ଧ କରି ଶାଶ୍ୱତ ମନ୍ତ୍ରାକ୍ଷରରେ ପ୍ରକାଶ କରିଯାଇଛନ୍ତି, ସେମାନଙ୍କୁ ଆମେ ପ୍ରତି ମନ୍ତ୍ର ଉଚ୍ଚାରଣ ବେଳେ ଯଥା ସମ୍ମାନ ସ୍ମରଣ କରିଥାଉଁ ସେମାନଙ୍କ ସେହି ଆର୍ଷ ଜ୍ୟୋତିକୁ ଦୀପ୍ତ ଓ ପ୍ରଜ୍ଜ୍ୱଳିତ ରଖିବା ସକାଶେ ଆମର କର୍ତ୍ତବ୍ୟ-ତାଙ୍କର ଆଦର୍ଶାନୁସରଣରେ ନିତ୍ୟ ସନ୍ଧ୍ୟା

ଉପାସନା କରିବା ଓ ବେଦାଧ୍ୟୟନ କରି ଋଷି, ଛନ୍ଦୋ ଓ ଦେବତାଙ୍କୁ ସ୍ମୃତିରେ ଆଣିବା । ଏହାହିଁ ହେଉଛି ଋଷିଯଜ୍ଞ ।

ସଂସାରରେ ଦୈବୀ ଓ ଅସୁରୀ ଦୁଇଟି ବୃତ୍ତି ରହିଛି । ଦୈବୀବୃତ୍ତି ସୃଷ୍ଟିକାରୀ, ଅସୁରୀବୃତ୍ତି ଧ୍ୱଂସସାଧନକାରୀ । ଆମର ବାହାରେ ଭିତରେ ଯାହା ଭଲ ସେ ସବୁ ଦିବ୍ୟସତ୍ତା । ଦିବ୍ୟଭାବରେ ଉଦ୍‌ବୁଦ୍ଧ ହୋଇ ଦିବ୍ୟସତ୍ତାକୁ ଅନୁଭବ କରିପାରିଲେ ମଣିଷ ମଧ୍ୟ ଜୀବସ୍ତରରୁ ଦେବସ୍ତରକୁ ଉନ୍ନୀତ ହୋଇପାରିବ । ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ, ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ । ଏ ବିଶ୍ୱ ଆମପାଇଁ କେତେ ସମୃଦ୍ଧ, କେତେ ସମ୍ପଦରେ ପରିପୂର୍ଣ୍ଣ । ଯେତେ ଭୋଗ କରୁଛ ନ ସରି ଭୋଗ କରିବା ପାଇଁ ଆହୁରି ସେତେ ସଞ୍ଚିତ ହୋଇଛି, ଭରପୂର ହୋଇ ରହିଛି । ଏହି ପରିପୂର୍ଣ୍ଣତା ହିଁ ଦେବତା, ତାଙ୍କର ଜିନିଷ ତାଙ୍କୁ ଦେଖାଇ ତାଙ୍କୁ ସ୍ମରଣ କରି ତାଙ୍କଠାରେ କୃତଜ୍ଞତା ପ୍ରକାଶ କରି ଆମେ ଗ୍ରହଣ କରିବା ଉଚିତ୍ । ତାଙ୍କର ଖାଉଥିବାରୁ ତାଙ୍କର କର୍ମରେ ଆମେ ଆତ୍ମୋତ୍ସର୍ଗ କରିବା ଉଚିତ୍ । ଯେ ଯେଉଁ କର୍ମରେ ଅଛି, ତାହାକୁ ଦିବ୍ୟଭାବରେ ଉଦ୍‌ବୁଦ୍ଧ ହୋଇ ତ୍ୟାଗର ସହ ସୁନ୍ଦରରୂପେ ସମ୍ପନ୍ନ କଲେ—ଦେବସେବା । ତେଣୁ ହିଁ ଉପନିଷଦ୍‌ରେ କୁହାଯାଇଛି—'ତେନ ତ୍ୟକ୍ତେନ ଭୁଞ୍ଜୀଥାଃ ମା ଗୃଧଃ କସ୍ୟସ୍ୱିଦ୍ ଧନମ୍' ତ୍ୟାଗର ସହ ଭୋଗ କର, କାହାରି ଧନରେ ଲୋଭ କରନାହିଁ । ତାଙ୍କ ଉଦ୍ଦେଶ୍ୟରେ ତ୍ୟାଗ ହିଁ ଯଜ୍ଞ । ଅଗ୍ନିମୁଖା ବୈ ଦେବାଃ,—ଦେବତାମାନଙ୍କ ମୁଖ ହେଉଛି ଅଗ୍ନି । ତେଣୁ ଅଗ୍ନିରେ ଘୃତାହୁତି ଦେଲେ, ତାହା ଦେବତାମାନଙ୍କ ମୁଖରେ ଦେବାଭଳି । ଅଗ୍ନିହୋତ୍ରାଦି ଯଜ୍ଞର ଅବତାରଣା ସେଇଥିପାଇଁ

ଅଗ୍ନିହୋତ୍ର ଶବ୍ଦଟିର ବ୍ୟାଖ୍ୟା କରି ସାୟଣ କହନ୍ତି 'ଅଗ୍ନୟେ ହୋତ୍ରଂ ହୋମୋଽସ୍ମିନ୍ କର୍ମଣି ଇତି ବହୁବ୍ରୀହି ବ୍ୟୁତ୍ପତ୍ତ୍ୟାଽଗ୍ନିହୋତ୍ରମିତି କର୍ମ ନାମ'—ଯେଉଁ ଯଜ୍ଞକର୍ମରେ ଅଗ୍ନିରେ ହୋତ୍ର ବା ହୋମ କରାଯାଏ, ସେହି ଯଜ୍ଞ ହେଉଛି ଅଗ୍ନିହୋତ୍ର । ପୁଣି ଅଗ୍ନୟେ ହୋତ୍ରମିତି ତତ୍ପୁରୁଷ ବ୍ୟୁତ୍ପତ୍ତ୍ୟା ହବିର୍ନାମ'—ଅଗ୍ନିରେ ଦିଆଯାଉଥିବା ଆହୁତି ବା ହବିକୁ ମଧ୍ୟ

ଅଗ୍ନିହୋତ୍ର କୁହାଯାଏ । ଏହି ଅଗ୍ନିହୋତ୍ର ପାଇଁ କେବଳ 'ଅଧ୍ୱର୍ଯ୍ୟୁ' ଆବଶ୍ୟକ, କିନ୍ତୁ ଅଗ୍ନ୍ୟାଧାନ, ଦର୍ଶପୂର୍ଣ୍ଣମାସ ପ୍ରଭୃତି ଅନ୍ୟାନ୍ୟ ଇଷ୍ଟି ପାଇଁ ଚାରିଜଣ ଋତ୍ୱିକ ଦରକାର । ଆଶ୍ୱଳାୟନ ଓ ଆପସ୍ତମ୍ବ ଶ୍ରୌତ ସୂତ୍ରରେ **ହୋତାଙ୍କର** ତିନି ସହାୟକ ମୈତ୍ରାବରୁଣ, ଅଚ୍ଛାବାକ, ଗ୍ରାବସ୍ତୁତ; **ଅଧ୍ୱର୍ଯ୍ୟୁଙ୍କର** ତିନି ସହାୟକ ପ୍ରତିପ୍ରସ୍ଥାତା, ନେଷ୍ଟା, ଉନ୍ନେତା; ବ୍ରହ୍ମାଙ୍କର ତିନି ସହାୟକ ବ୍ରାହ୍ମଣାଚ୍ଛଂସୀ, ଅଗ୍ନୀଧ୍ର, ପୋତା; **ଉଦ୍‌ଗାତାଙ୍କର** ତିନି ସହାୟକ ପ୍ରସ୍ତୋତା, ପ୍ରତିହର୍ତ୍ତା ଓ ସୁବ୍ରହ୍ମଣ୍ୟ – ଏହିପରି ଷୋଡ଼ଶ ଋତ୍ୱିକଙ୍କ କର୍ମ ଓ ଆବଶ୍ୟକତାର ଉଲ୍ଲେଖ ରହିଛି । ଆଜିକାଲି ଯଜ୍ଞର ଅ ଆ ଜାଣି ନ ଥିବା ଅନନୁକୂଳ ବ୍ୟକ୍ତି ଅନୁକୂଳଙ୍କ ଶିଷ୍ୟଭାବରେ ବାଡ଼ ଖଣ୍ଡେ ଧରି ଇଷ୍ଟଭୃତି ନାମରେ ଜୀବନ୍ ବୀମା ପ୍ରତିନିଧି ପରି ଶିଷ୍ୟ ବନ୍ଧଉଦ୍ଧାରକ ଋତ୍ୱିକ ବୋଲାଉଛନ୍ତି । ଏହା କଳିର ପ୍ରଭାବ । ଦୈନିକ ଅଗ୍ନିହୋତ୍ର ସକାଶେ ଦୁଇଟି ଗାଈ ରଖିଲେ ତାର ଦୁଧ, ତାର ଗୋବରରୁ ଘଷି ମିଳିବ ଏବଂ ସମିଧ ଆହରଣ କଲେ ଯଜ୍ଞ ସମ୍ପନ୍ନ ହେବ । ଅଗ୍ନ୍ୟାଧାନ, ଅଗ୍ନିହୋତ୍ର, ଦର୍ଶପୂର୍ଣ୍ଣମାସ ପ୍ରଭୃତି ସପ୍ତ ହବିର୍ଯଜ୍ଞ ଏବଂ ଅଗ୍ନିଷ୍ଟୋମ, ବାଜପେୟ ପ୍ରଭୃତି ସପ୍ତ ସୋମଯଜ୍ଞ ଆହୁରି ଦୁରୂହ ଓ ବିରଳ ବିଷୟ । ଏବେ ଆଉ ଯଜ୍ଞ ହେଉନାହିଁ କି ଯଜ୍ଞ ଯଥାବିଧି ସମ୍ପାଦନ କରିବା ଶ୍ରୋତ୍ରିୟ ପଣ୍ଡିତ ସେପରି ନାହାନ୍ତି । ତଥାପି ପରମ୍ପରା ଅନୁକ୍ରମେ ଯଥାଶକ୍ତି ଦେବଋଣରୁ ମୁକ୍ତ ପାଇବା ପାଇଁ ଘୃତାହୁତି ଦେଇ ଦେବଯଜ୍ଞ କରିବା ଉଚିତ ।

ମଣିଷ ପରି ପିପୀଲିକାଠାରୁ କାକାଦିପକ୍ଷୀ ପର୍ଯ୍ୟନ୍ତ ଆହୁରି ଅନେକ ପ୍ରାଣୀ ଏ ସଂସାରରେ ଅଛନ୍ତି । ମଣିଷ ବୁଦ୍ଧି ବୃତ୍ତିରେ ସମସ୍ତଙ୍କ-ଠାରୁ ଶ୍ରେଷ୍ଠ । ପ୍ରାଣୀ ସଂସାରର ରକ୍ଷା ଦାୟିତ୍ୱ ତାର । ତେଣୁ ସମସ୍ତ ଭୂତଙ୍କ ପାଇଁ ତାର କିଛି କର୍ତ୍ତବ୍ୟ ରହିଛି । ସେଥିଲାଗି ସେ ନିଜ ଆହାରରୁ ବଳାଇ ବା ବଳକା କରି 'ବଳି' ଦେବାକୁ ହେବ । ଦେବତା, ସର୍ବଭୂତ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ପକ୍ୱାନ୍ନକୁ 'ବୈଶ୍ୱଦେବ' କୁହାଯାଏ । 'ଯତ୍ର ବିଶ୍ୱେ ଦେବା ଇଜ୍ୟନ୍ତେ ତଦ୍-ବୈଶ୍ୱଦେବଂ କର୍ମ'—ବୈଶ୍ୱଦେବରେ ସମସ୍ତଙ୍କ ଭାଗକୁ ସ୍ୱୀକୃତି ଦିଆଯାଏ ।

ଗୃହସ୍ଥର ଘରକୁ ଅତିଥି ଆସିଲେ, ସେମାନଙ୍କ ସତ୍କାରକୁ 'ନୃଯଜ୍ଞ' କୁହାଯାଏ । ବିଶେଷତଃ ବୈଶ୍ୱଦେବ ସମୟରେ ଅନାହୂତ ଭାବରେ ଉପସ୍ଥିତ ବ୍ୟକ୍ତି ଚୋର, ଚଣ୍ଡାଳ, ଶତ୍ରୁ, ପିତୃଘାତକ ଯାହା-ହେଲେ ମଧ୍ୟ ତାଙ୍କୁ ସର୍ବଦେବମୟ ଭଗବାନ୍ ବିଷ୍ଣୁ ଜ୍ଞାନରେ ଅର୍ଚ୍ଚା ଓ ଚର୍ଚ୍ଚା କରିବା ପାଇଁ ପରାଶର ସ୍ମୃତିରେ ଉଲ୍ଲେଖ ଅଛି—

**ଦୂରାଧ୍ୱୋପଗତଂ ଶ୍ରାନ୍ତଂ ବୈଶ୍ୱଦେବ ଉପସ୍ଥିତମ୍ ।**
**ଅତିଥିଂ ତଂ ବିଜାନୀୟାନ୍ନାତିଥିଃ ପୂର୍ବମାଗତଃ ॥**
**ଚୈରେ ବା ଯଦି ଚଣ୍ଡାଳଃ ଶତ୍ରୁର୍ବା ପିତୃଘାତକଃ ।**
**ବୈଶ୍ୱଦେବେ ତୁ ସଂପ୍ରାପ୍ତେ ସୋଽତିଥିଃ ସର୍ବସଂଗମଃ ॥**
**ନ ପୃଚ୍ଛେଦ୍ ଗୋତ୍ରଚରଣେ ସ୍ୱାଧ୍ୟାୟଂ ଚ ବ୍ରତାନି ଚ ।**
**ହୃଦୟଂ କଳ୍ପୟେତ୍ତସ୍ମିନ୍ ସର୍ବଦେବମୟୋ ହି ସଃ ॥**

ଅତିଥିଙ୍କୁ ଦେବତା ଜ୍ଞାନରେ ଚର୍ଚ୍ଚା କରିବା ଭାରତୀୟ ଉଦାର ଚେତନାର ପ୍ରତୀକ । ଯେଉଁମାନେ ବୈଶ୍ୱଦେବ କରନ୍ତି ନାହିଁ ଏବଂ ଯେଉଁମାନଙ୍କ ଘରୁ ଅତିଥି ନିରାଶ ହୋଇ ଫେରିଯାଏ, ସେ ହଜାରେ ଭାର ସମିଧ ଆଣି ଶହେ କୁମ୍ଭ ଘିଅରେ ହୋମ କଲେ ମଧ୍ୟ ତା'ର କିଛି ଫଳ ନାହିଁ । ତେଣୁ ପରାଶର ସ୍ମୃତିରେ ଅଛି—

**ବୈଶ୍ୱଦେବେନ ଯେ ହୀନା ଯେ ଆତିଥ୍ୟେନ ବିବର୍ଜିତାଃ ।**
**ସର୍ବେ ତେ ନରକଂ ଯାନ୍ତି କାକଯୋନିଂ ବ୍ରଜନ୍ତି ଚ ॥**
**କାଷ୍ଠଭାର-ସହସ୍ରେଣ ଘୃତକୁମ୍ଭ-ଶତେନ ଚ ।**
**ଅତିଥିର୍ଯସ୍ୟ ଭଗ୍ନାଶସ୍ତସ୍ୟ ହୋମୋ ନିରର୍ଥକଃ ॥**

ତେଣୁ ପ୍ରତ୍ୟେକ ଗୃହସ୍ଥଙ୍କର ସର୍ବଭାବେ ଦୟା ମନୋଭାବ ସହ ଅତିଥି-ସେବା କରଣୀୟ ।

ଯେଉଁମାନଙ୍କ ଶୁକ୍ରଶୋଣିତ ନେଇ ଆମ ଶରୀର ଗଠିତ, ଯେଉଁମାନଙ୍କ ଅପାର ସ୍ନେହ ଶ୍ରଦ୍ଧାରେ ଆମେ ଉଲ୍ଲସିତ, ଯେଉଁମାନଙ୍କ ଅସୀମ ତ୍ୟାଗ ଓ କ୍ଲେଶରେ ଆଜି ଆମେ ମଣିଷ ହୋଇ ଧରାପୃଷ୍ଠରେ

ଦଣ୍ଡାୟମାନ ସେହି ପିତାମାତା ଓ ପିତାଙ୍କର ପୂର୍ବପୁରୁଷ ପିତୃପୁରୁଷଙ୍କ ସ୍ମୃତିରେ ଶ୍ରଦ୍ଧା ନିବେଦନ ସକାଶେ କରାଯାଉଥିବା ଶ୍ରାଦ୍ଧ ହେଉଛି 'ପିତୃଯଜ୍ଞ' ।

ଉପର୍ଯ୍ୟୁକ୍ତ ପଞ୍ଚମହାଯଜ୍ଞ ସଂକ୍ଷେପରେ ବର୍ଣ୍ଣିତ କରି କୁହାଯାଇଛି–

ଅଧ୍ୟାପନଂ ବ୍ରହ୍ମଯଜ୍ଞଃ ପିତୃଯଜ୍ଞସ୍ତୁ ତର୍ପଣମ୍ ।
ହୋମୋ ଦୈବୋ ବଳିର୍ଭୌତୋ ନୃଯଜ୍ଞୋଽତିଥିପୂଜନମ୍ ॥

ପଢ଼ି, ବୁଝି, ପଢ଼ାଇବା ହେଉଛି **ବ୍ରହ୍ମଯଜ୍ଞ**; ତିଳାଞ୍ଜଳି ଦେଇ ତର୍ପଣ କରିବା ହେଉଛି **ପିତୃଯଜ୍ଞ**; ଘୃତାହୁତି ଦେଇ ହୋମ କରିବା ହେଉଛି **ଦେବଯଜ୍ଞ**; ପିମ୍ପୁଡ଼ି ଓ କାକମାନଙ୍କ ଉଦ୍ଦେଶ୍ୟରେ ଆହାର ବଳିଦେବା ହେଉଛି **ଭୂତଯଜ୍ଞ** ଏବଂ ଅତିଥିମାନଙ୍କର ଚର୍ଚ୍ଚା କରିବା ହେଉଛି **ନୃଯଜ୍ଞ** ।

ପଞ୍ଚଯଜ୍ଞ ପ୍ରତି ଗୃହସ୍ଥ କରିବା ଉଚିତ୍ । ପିତୃଯଜ୍ଞ ପାଇଁ ବାପା ମଲାପରେ ବର୍ଷକୁ ଥରେ ପିଣ୍ଡ ଟେକିଦେଲେ ଶ୍ରାଦ୍ଧ ହେବ ନାହିଁ । ପିତାମାତାଙ୍କର ଜୀବଦ୍ଦଶାରେ ସେମାନଙ୍କ ମନୋମୁତାବକ ପ୍ରିୟକର୍ମ କରି ସେମାନଙ୍କୁ ସନ୍ତୁଷ୍ଟ କରିପାରିଲେ ହିଁ ପ୍ରକୃତ ପିତୃଯଜ୍ଞ । ତେଣୁ କୁହାଯାଇଛି—'ଜୀବତେ କାର୍ଯ୍ୟ କରଣଂ ମୃତାହେ ଭୂରିଭୋଜନଂ । ଗୟାୟାଂ ପିଣ୍ଡଦାନେନ ତ୍ରିଭିଃ ପୁତ୍ରସ୍ୟ ପୁତ୍ରତା',—ପିତାମାତା ବଞ୍ଚିଥିବାବେଳେ ସେମାନଙ୍କ କଥାମାନି କାର୍ଯ୍ୟ କରିବା ଓ ସେମାନଙ୍କ ହୃଦୟାନନ୍ଦ କରିବା, ସେମାନଙ୍କ ମୃତ୍ୟୁପରେ ଭୂରିଭୋଜନ ଦେଇ ସମସ୍ତଙ୍କୁ ସନ୍ତୋଷ କରିବା ଓ ଶେଷରେ ଗୟାରେ ପିଣ୍ଡଦେଇ ସେମାନଙ୍କ ଊର୍ଦ୍ଧ୍ୱଦେହର ଶାନ୍ତି ବିଧାନ କରିବା ହେଉଛି ପୁତ୍ରର କର୍ତ୍ତବ୍ୟ । ଦେବତା ଆରାଧନା ମଧ୍ୟ ଅକାଳେ ସକାଳେ ଯଜ୍ଞ କରିଦେଲେ ବା ଘଣ୍ଟି ବଜାଇ ପୂଜାକାମ ବଢ଼ାଇ ଦେଲେ ହେବ ନାହିଁ । ନିଜର ନିଃଶ୍ୱାସ ପ୍ରଶ୍ୱାସ ସହ ଇଷ୍ଟମନ୍ତ୍ରର ଜପ ଓ ଦେବତାଧ୍ୟାନ ହିଁ ଯଥାର୍ଥ ଦେବପୂଜା ।

**ଦ୍ରବ୍ୟଯଜ୍ଞ**—ରାଜସିକ । ଚିତ୍ତକୁ ଦ୍ରବୀଭୂତ କରିଭଳି ଲୋଭନୀୟ ଦ୍ରବ୍ୟରେ ରାଜାମାନେ ମହାସମାରୋହରେ ଯଜ୍ଞ କରୁଥିଲେ । ଆଜି ଦ୍ରବ୍ୟ

ପୂର୍ତ୍ତ, ରଜା ବ ନାହାନ୍ତି । ସ୍ଥୂଳ ପଦାର୍ଥ ଦ୍ୱାରା ସ୍ଥୂଳ ଦେହରେ ସ୍ଥୂଳ-ପୂଜା ହେଉଛି ଦ୍ରବ୍ୟଯଜ୍ଞ । ଏହା ବହିର୍ଯାଗ, ଅଛି ଯାହାର ସେ ମୁକ୍ତ ହସ୍ତରେ ଦେବତାଙ୍କ ଉଦ୍ଦେଶ୍ୟରେ ଦେବା ଉଚିତ୍ । କିନ୍ତୁ ଯାହାର ନାହିଁ, ତା' ପାଇଁ ମଧ୍ୟ ଯଜ୍ଞ ବ୍ୟବସ୍ଥା ଅଛି । ସେଥିପାଇଁ ଆବଶ୍ୟକ ଅଧ୍ୟାତ୍ମଭାବ । ଭାବ ଥିଲେ ଅଭାବ ରହିବ ନାହିଁ । ଭାବମୟୀ ଦେବତା ତାଙ୍କର ସେ ଯଜ୍ଞ ଅନ୍ତର୍ଯାଗ ଭାବନାତ୍ମକ । 'ଭାବନୋପନିଷଦ୍'ରେ 'ଯଜ୍ଞପ୍ରିୟା ଯଜ୍ଞକର୍ତ୍ତ୍ରୀ ଯଜମାନସ୍ୱରୂପିଣୀ' ବୋଲି ଶ୍ରୀ ଲଳିତା ସହସ୍ର ନାମୋକ୍ତ ରାଜରାଜେଶ୍ୱରୀ ମହାତ୍ରିପୁରସୁନ୍ଦରୀ ଷୋଡଶୀ ଲଳିତାଙ୍କ ସପର୍ଯ୍ୟା ବର୍ଣ୍ଣିତ ହୋଇଛନ୍ତି । ଯୋଗମାର୍ଗରେ ଷଟ୍‌ଚକ୍ର ଭେଦକରି ସହସ୍ରାରରେ ଶିବଶକ୍ତି ମିଳନାତ୍ମକ ମହାଯଜ୍ଞର ବିଧାନ ମଧ୍ୟ ରହିଛି, ଏସବୁ ସାଧନାର କଥା— ସାଧକଙ୍କ ଯଜ୍ଞ । ଏହାଛଡ଼ା ଆଉ ଏକ ଯଜ୍ଞପ୍ରକ୍ରିୟା ରହିଛି—କେବଳ ଯଜ୍ଞ, ସିଦ୍ଧ ମହାପୁରୁଷଙ୍କ ସର୍ବଦ ବ୍ରହ୍ମାନୁଭୂତି ବା 'ସର୍ବଂ ଖଳ୍ୱିଦଂ ବ୍ରହ୍ମ' 'ତତ୍ତ୍ୱମସି', ଅହମାତ୍ମାବ୍ରହ୍ମ' ପ୍ରଭୃତି ଭାବରତି ହେଉଛି କେବଳ ଯଜ୍ଞ । ସେଥିରେ—

ସଂପୂର୍ଣ୍ଣଂ ଜଗଦେବ ନନ୍ଦନବନଂ ସର୍ବେଽପି କଳ୍ପଦ୍ରୁମାଃ
ଗାଙ୍ଗଂ ବାରି ସମସ୍ତବାରିନିବହାଃ ପୁଣ୍ୟାଃ ସମସ୍ତାଃ କ୍ରିୟାଃ ।
ବାଚଃ ପ୍ରାକୃତସଂସ୍କୃତାଃ ଶ୍ରୁତିଗିରୋ ବାରାଣସୀ ମେଦିନୀ
ସର୍ବୈବ ସ୍ଥିତିରସ୍ୟ ମୁକ୍ତପଦବୀ ଦୃଷ୍ଟେ ପରବ୍ରହ୍ମଣି ॥
ଆତ୍ମା ତ୍ୱଂ ଗିରିଜା ମତିଃ ସହଚରାଃ ପ୍ରାଣାଃ ଶରୀରଂ ଗୃହଂ
ପୂଜା ତେ ବିଷୟୋପଭୋଗରଚନା ନିଦ୍ରା ସମାଧିସ୍ଥିତିଃ ।
ସଂଚାରଃ ପଦୟୋଃ ପ୍ରଦକ୍ଷିଣବିଧିଃ ସ୍ତୋତ୍ରାଣି ସର୍ବା ଗିରଃ
ଯଦ୍ ଯତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋସ୍ତବାରାଧନମ୍ ॥

ଦ୍ରବ୍ୟାତ୍ମକ ଯଜ୍ଞ ଶୁଦ୍ଧିପ୍ରଧାନ । ଭାବନାତ୍ମକ ଯଜ୍ଞ ଭକ୍ତି ପ୍ରଧାନ ହେତୁ ଧ୍ୟାନ ଧାରଣା, ସାଧନ, ଭଜନର ଅନୁକୂଳ । କେବଳାତ୍ମକ ଯଜ୍ଞ—ଜ୍ଞାନ ପ୍ରଧାନ । ଯଜ୍ଞରେ ଭାବନାତ୍ମକ ଅନ୍ତର୍ଯାଗ ହିଁ ପ୍ରଧାନ ଓ ମହତ୍ତ୍ୱପୂର୍ଣ୍ଣ । ତନ୍ତ୍ରଶାସ୍ତ୍ରରେ ମଧ୍ୟ ଯଜ୍ଞ ସ୍ୱୀକୃତ, ଦକ୍ଷିଣମାର୍ଗରେ ସମିଧ ସହ ଘୃତାହୁତି ଏବଂ ସ୍ଥଳ ବିଶେଷରେ କୁଙ୍କୁମାର୍ଚ୍ଚନାକୁ ମଧ୍ୟ ଯଜ୍ଞ ବୋଲି

କୁହାଯାଏ । ବାମମାର୍ଗରେ କିନ୍ତୁ ଘୃତ ବଦଳରେ ମଦ୍ୟ ଆହୁତି ଦିଆଯାଇଥାଏ ଏବଂ ମଦ୍ୟପାନରେ ହୋମବୁଦ୍ଧି ଓ ସାର୍ଯ୍ୟାଧାନରେ ଆହୁତି ବୁଦ୍ଧି କରାଯାଏ । ତନ୍ତ୍ରରେ ପଶ୍ୱାଚାର, ବୀରାଚାର ଓ ଦିବ୍ୟାଚାର ଭେଦରେ ସାଧନ ଓ ଯଜ୍ଞରେ ଭେଦ ଦୃଷ୍ଟ ହୁଏ । ତନ୍ତ୍ରଯୋଗ ଅନୁସାରେ ମୂଳାଧାରରେ ଦ୍ରବ୍ୟଯଜ୍ଞ, ମଣିପୁରରେ ତପୋଯଜ୍ଞ, ଅନାହତରେ ଭାବନାତ୍ମକ ଯଜ୍ଞ, ଆଜ୍ଞାଚକ୍ରରେ ଜ୍ଞାନ ଯଜ୍ଞ ଓ ସହସ୍ରାରରେ କେବଳାତ୍ମକ ଯଜ୍ଞର ଅନୁଷ୍ଠାନ କରାଯାଇଥାଏ । ଅନ୍ୟତ୍ର ମୂଳାଧାରରେ ପାଦ୍ୟ ଓ ଗନ୍ଧ, ମଣିପୁରରେ ଅର୍ଘ୍ୟ ଓ ପୁଷ୍ପ, ଅନାହତରେ ଧୂପ, ଆଜ୍ଞାଚକ୍ରରେ ଦୀପ ଓ ସହସ୍ରାରରେ ନୈବେଦ୍ୟ ଅର୍ପଣ କରିବା ପାଇଁ ବିଧି ରହିଛି ।

ଯଜ୍ଞକୁଣ୍ଡ ବୋଲି ବାମାଚାରୀମାନେ ଶକ୍ତିର ପ୍ରାକୃତ ଅଙ୍ଗ ବା ଯୋନିକୁ ଗ୍ରହଣ କଲାବେଳେ ଦକ୍ଷିଣାଚାରୀମାନେ ନାଦ ରୂପରେ ସ୍ଫୁରିତ ବ୍ରହ୍ମଶକ୍ତି ବିନ୍ଦୁଗତ କରି ଅ-କ-ଥ ତ୍ରିରେଖାତ୍ମକ ତ୍ରିକୋଣ ଯୋନିରେ ପରିଣତିକୁ ଗ୍ରହଣ କରନ୍ତି । ଜଗତ୍ ଜୀବର ଉତ୍ପତ୍ତି ସ୍ଥାନ ଇଚ୍ଛା ଜ୍ଞାନ-କ୍ରିୟାରୂପ ଏହି ତ୍ରିଶକ୍ତି ଯୋନି ଗୀତୋକ୍ତ 'ମହଦ୍ ବ୍ରହ୍ମଯୋନି' ଅଟେ ଏବଂ ଏହା ହିଁ ଆଗମ ଶାସ୍ତ୍ରରେ 'ଚିତ୍କୁଣ୍ଡ' ନାମରେ ପରିଚିତ । ଏହି ଚିତ୍କୁଣ୍ଡ ହିଁ ଭାବନାତ୍ମକ ଯଜ୍ଞର ହୋମକୁଣ୍ଡ । ଦେବୀ ଚିଦଗ୍ନିକୁଣ୍ଡ ସଂଭୂତା ।

ତନ୍ତ୍ରଶାସ୍ତ୍ରରେ ଷଟ୍ଚକ୍ରକୁ, ଛ କୁଣ୍ଡରୂପେ ବର୍ଣ୍ଣନା କରାଯାଇଛି । ମୂଳାଧାରରେ କ୍ଷିତି, ସ୍ୱାଧିଷ୍ଠାନରେ ଅପ୍, ମଣିପୁରରେ ତେଜ, ଅନାହତରେ ମରୁତ୍, ବିଶୁଦ୍ଧିରେ ବ୍ୟୋମ ଏବଂ ଆଜ୍ଞାଚକ୍ରରେ ଜୀବାତ୍ମାକୁ ଆହୁତି ଦିଆଯାଏ । ଫଳରେ ପଞ୍ଚତନ୍ମାତ୍ର ଓ ଏଥିରୁ ଉତ୍ପନ୍ନ ପଞ୍ଚଭୂତାତ୍ମକ ସ୍ଥୂଳଦେହ ପଞ୍ଚପ୍ରାଣ, ମନ, ବୁଦ୍ଧି, ଚିତ୍ତ, ଅହଂକାର ଓ ଜୀବାତ୍ମା —ଏହିପରି ସକଳ 'ଇଦଂ' ପଦାର୍ଥଙ୍କୁ ପୂର୍ଣ୍ଣାହଂତା ଶିବରେ ଆହୁତି ଦିଆହୁଏ । ଅର୍ଥାତ୍ ଚିତ୍-ପଦାର୍ଥ ଅହଂ-ଅଗ୍ନିରେ ସମସ୍ତ ତ୍ୱଂ ପଦାର୍ଥ ଇଦଂତାକୁ ନିବେଦନ କରି 'ତତ୍ତ୍ୱମସି' ମହାବାକ୍ୟ ଉପଲବ୍ଧି କରିବା ହେଉଛି ତନ୍ତ୍ରୋକ୍ତ କେବଳ ଭାବନାତ୍ମକ ଯଜ୍ଞର ପ୍ରଧାନ ଉଦ୍ଦେଶ୍ୟ । ଜୀବ ଦେହରେ ଶିବତ୍ୱାନୁଭବ ହେଉଛି ତନ୍ତ୍ରର ସାରତତ୍ତ୍ୱ । ଆମର

ଆଖିର ଦୃଷ୍ଟିଶକ୍ତି ବା ରୂପ ଜଗତ୍, ଆମ କାନର ଶ୍ରୁତିଶକ୍ତି ବା ଶବ୍ଦାକାଶ, ଆମ ଦେହର ସ୍ପର୍ଶଶକ୍ତି, ଆମ ଜିହ୍ୱାର ରସବୋଧ ଶକ୍ତି ତଥା ଆମ ମନର ବିଚାର ଶକ୍ତି—ସବୁ ସେହି ଏକ ଶକ୍ତିର ସ୍ଫୁରଣ ବା ଲୀଳାବିଳାସ । ଏସବୁର ବିଦ୍ୟ ଅନୁଭବରେ ତାଙ୍କର ସତ୍ତାନୁଭବ କରିହେବ, ସେ ହେଉଛନ୍ତି—

ଶ୍ରୋତ୍ରସ୍ୟ ଶ୍ରୋତ୍ରଂ, ମନସୋ ମନୋଯତ୍,
ବାଚୋ ହ ବାଚଂ, ସ ଉ ପ୍ରାଣସ୍ୟ ପ୍ରାଣଃ,
ଚକ୍ଷୁଷଶ୍ଚକ୍ଷୁଃ ତସ୍ମୈ ପରମାତ୍ମନେ— ଜୁହୋମି ସ୍ୱାହା ।

ତୁମେ ହେଉଛ ଶ୍ରୁତିର ଶ୍ରୁତି ପରମଶ୍ରୁତି, ମନର ମନ ପରମ ମନ, ବାକ୍‌ର ବାକ୍ ପରମ ବାକ୍, ପ୍ରାଣର ପ୍ରାଣ ପରପ୍ରାଣ, ଚକ୍ଷୁର ଚକ୍ଷୁ ପରମ ଚକ୍ଷୁ—ତେଣୁ ତୁମେ ପରମାତ୍ମା । ତୁମଠାରେ ମୋର ଆତ୍ମ ନିବେଦନ—ଗ୍ରହଣ କର ।

ଅନ୍ତଃକରଣ ବୃତ୍ତିଭିଃ ସର୍ବଂ ହେଦ୍ୟଂ ଦ୍ରବ୍ୟମ୍,
ଇନ୍ଦ୍ରିୟାଣି ସ୍ରୁଚଃ, ଶକ୍ତୟୋ ଜ୍ୱାଳାଃ,
ଆତ୍ମା ଶିବଃ ପାବକଃ, ସ୍ୱୟମେବ ହୋତା ॥

ଅନ୍ତଃକରଣ ବୃତ୍ତି ଦ୍ୱାରା ଜ୍ଞେୟ ବିଷୟ ସବୁ ଦ୍ରବ୍ୟ, ଇନ୍ଦ୍ରିୟ ସବୁ ଆହୁତି ଦେବା ପାଇଁ ସ୍ରୁଚ । ପ୍ରାଣାଦି ଶକ୍ତି ଉକ୍ତ ଯଜ୍ଞାଗ୍ନିର ଶିଖା । ମୋର ଆତ୍ମା ହେଉଛି ଉକ୍ତ ହବନର ମଙ୍ଗଳମୟ ଅଗ୍ନି ଏବଂ ମୁଁ ନିଜେ ହୋତା ବା ଆହୁତି ଦାତା ଯଜ୍ଞକର୍ତ୍ତା ।

ଅନ୍ତର୍ନିରନ୍ତର ମନିନ୍ଧନମେଧମାନେ
ମୋହାନ୍ଧକାର ପରିପନ୍ଥିନି ସଂବିଦଗ୍ନୌ ।
କସ୍ମିଂଶ୍ଚିଦଦ୍ଭୁତ ମରୀଚି ବିକାଶଭୂମୌ
ବିଶ୍ୱଂ ଜୁହୋମି ବସୁଧାଦି ଶିବାବସାନମ୍ ॥

ଅନ୍ତଃ ( ସାଧକର ଅନ୍ତଃକରଣରେ ) ଅନିନ୍ଧନଂ ( ଇନ୍ଧନ ବା ଜାଳେଣି ବିନା ) ନିରନ୍ତରମ୍ ( ସବୁବେଳେ ) ଏଧମାନମ୍ (ଅଧିକ

ଜଳୁଥିବା) ମୋହାନ୍ଧକାର ପରିପନ୍ଥିନ (ମୋହରୂପକ ଅନ୍ଧକାରର ବିନାଶକ) ଅଦ୍ଭୁତ ମରୀଚିବିକାଶଭୂମି (ଯେଉଁଠାରୁ ଦିବ୍ୟତେଜ ପ୍ରସ୍ଫୁଟ ହୁଏ, ସେହି ମାତୃକାଚକ୍ର ବିକସିତ) କସ୍ମିଂଶ୍ଚିଦ୍ ସମ୍ବିଦଗ୍ନୌ (ଲୋକୋତ୍ତର ସମ୍ବିଦ୍ରୂପକ ଅଗ୍ନିରେ) ବସୁଧାଦି ଶିବାବସାନଂ ବିଶ୍ୱଂ (ପୃଥିବୀତତ୍ତ୍ୱଠାରୁ ଶିବତତ୍ତ୍ୱ ପର୍ଯ୍ୟନ୍ତ ୩୬ ତତ୍ତ୍ୱାତ୍ମକ ବିଶ୍ୱକୁ) ଜୁହୋମି (ଆହୁତି ଦେଉଛି) ସ୍ୱାହା ।

ଏଠାରେ ପୃଥିବୀତତ୍ତ୍ୱଠାରୁ ଶିବତତ୍ତ୍ୱ ପର୍ଯ୍ୟନ୍ତ ଷଟ୍‌ତ୍ରିଂଶତ୍ ତତ୍ତ୍ୱାତ୍ମକ ଏହି ବିଶ୍ୱକୁ ହୃଦୟରେ ସତତଦୀପ୍ତ ଅଲୌକିକ ସମ୍ବିଦଗ୍ନି ବା ବିଶୁଦ୍ଧ ମହାଚୈତନ୍ୟରେ ଆହୁତି ଦିଆଯାଏ । ଯେଉଁ ଅଗ୍ନି ଶିବତତ୍ତ୍ୱକୁ ମଧ୍ୟ ଗ୍ରାସ କରିପାରେ, ସେହି ଅଗ୍ନିତତ୍ତ୍ୱାଶ୍ରିତ ଅଖଣ୍ଡ ପ୍ରକାଶ ବ୍ରହ୍ମଜ୍ୟୋତି ବ୍ୟତୀତ ଆଉ କଣ ବା ହୋଇପାରେ ?

ଧର୍ମାଧର୍ମହବିଃ ଦୀପ୍ତାବାତ୍ମାଗ୍ନୌ ମନସା ସ୍ରୁଚା ।
ସୁଷୁମ୍ନାବର୍ତ୍ମନା ନିତ୍ୟମ୍ ଅକ୍ଷାବୃତ୍ତିଃ ଜୁହୋମ୍ୟହମ୍ ॥

ଧର୍ମ-ଅଧର୍ମରୂପକ ହବିରେ ଦୀପ୍ତ ଆତ୍ମାରୂପକ ଅଗ୍ନିରେ ମନରୂପକ ସ୍ରୁକ୍ ଦ୍ୱାରା ସୁଷୁମ୍ନା ମାର୍ଗରେ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟ ବୃତ୍ତିକୁ ସବୁବେଳେ ଆହୁତି ଦେଇ ସମର୍ପଣ କରୁଛି—ସ୍ୱାହା ।

**ହୋମେନ ଚେତନାଂ ଜିତ୍ୱା ଧ୍ୟାୟେଦାତ୍ମାନମ୍ ଆତ୍ମନା ।**
**ଦ୍ୱେ ଆହୁତୀ ଜୁହୋତ୍ୟେତେ ଅଗ୍ନିହୋତ୍ର ବିଧାନତଃ ।**
**ମମତାଂ ପ୍ରଥମଂ ହୁତ୍ୱା ଅହନ୍ତାଂ ଚ ଜୁହୁୟାତ୍ ତତଃ ॥**

ପୂର୍ବୋକ୍ତ ହୋମ ଦ୍ୱାରା ଦ୍ୱୈତ ଚେତନା ଉପରେ ବିଜୟ ଲାଭ କରି ଆତ୍ମତତ୍ତ୍ୱକୁ ଆତ୍ମାରେ ଅଦ୍ୱୟ-ଭାବରେ ଧ୍ୟାନ କରି, ଅଗ୍ନିହୋତ୍ର ବିଧାନ ଅନୁସାରେ ଦ୍ୱୈତ (ଦୁଇଥର) ଆହୁତି ଦିଆଯାଏ । ପ୍ରଥମେ ମମତା ଓ ଦ୍ୱିତୀୟରେ ଅହଂତାକୁ ଆହୁତି ଦେଲେ ଅଦ୍ୱୈତ-ଆତ୍ମତତ୍ତ୍ୱର ଜ୍ଞାନ ହେବ । ତାପରେ ସେ ଆହୁତି ଦିଏ ।—

'ଇୟଂ ପୃଥିବୀ, ଇମା ଆପଃ, ଅୟମଗ୍ନିଃ, ଅୟଂ ବାୟୁଃ; ଅୟମାକାଶଃ, ଅୟମାଦିତ୍ୟଃ, ଅୟଂ ଚନ୍ଦ୍ରଃ, ଇୟଂ ବିଦ୍ୟୁତ୍, ଇମା ଦିଶଃ, ଅୟଂ ଧର୍ମଃ,

ଇଦଂ ସତ୍ୟଂ, ଅସ୍ୟଂ ମାନୁଷଃ, ଇମାନି ଭୂତାନି, ଅୟମାତ୍ମା, ସର୍ବେଷାଂ ଭୂତାନାଂ ମଧୁ, ଏତେଷାଂ ସର୍ବାଣି ଭୂତାନି ମଧୁ, ଯେ ଏତେଷୁ ତେଜୋମୟ ଅମୃତମୟଃ ପୁରୁଷଃ, ସ ଏବ ଆତ୍ମା । ଅମୃତଂ ବ୍ରହ୍ମେଦଂ ସର୍ବମ୍ । ଓଁ ବ୍ରହ୍ମଣେ ସ୍ୱାହା ।'

ସବୁ ବ୍ରହ୍ମ-'ସର୍ବଂ ଖଳ୍ୱିଦଂ ବ୍ରହ୍ମ' । ଏ ସୃଷ୍ଟି ଅମୃତମୟ । ପରଂ ବ୍ରହ୍ମଙ୍କ ଅମୃତ ସନ୍ତାନର ଅମୃତ ଭାବନା—ଅଣୁ ପରମାଣୁରେ ଅମୃତ ସତ୍ତାର ଦିବ୍ୟ ଓ ଭବ୍ୟ ଅନୁଭବ—ମଧୁରାଧିପତେ ରଖିଳଂ ମଧୁରମ୍ । 'ଲୀଳାର୍ଥେ ଦ୍ୱୈତରୂପ ଅନୁଭବରେ ଏକ ଓ ଅଦ୍ୱୈତ ହୋଇଯାଏ । କାହିଁକି ଏ ସବୁ ? କାରଣ – 'ଲୀଳାର୍ଥଂ କଳ୍ପିତଂ ଦ୍ୱୈତମ୍ ଅଦ୍ୱୈତାଦପି ସୁନ୍ଦରମ୍' ଲୀଳାର୍ଥେ ଦ୍ୱୈତର ମନୋଜ୍ଞ କଳ୍ପନା ଅଦ୍ୱୈତ-ଠାରୁ ଆହୁରି ସୁନ୍ଦର । ପ୍ରକାଶରେ ଦ୍ୱୈତ କିନ୍ତୁ ବିମର୍ଶରେ ଅଦ୍ୱୈତ ।

ଓଁ ବ୍ରହ୍ମାର୍ପଣଂ ବ୍ରହ୍ମହବିଃ ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମ ସମାଧିନା ॥
ଓଁ ବ୍ରହ୍ମଣେ ସ୍ୱାହା । ଓଁ ସର୍ବଂ ଖଳ୍ୱିଦଂ ବ୍ରହ୍ମ । ଓଁ ବ୍ରହ୍ମଣେ ସ୍ୱାହା ॥
ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥

ପୂର୍ଣ୍ଣତା ପାଇଁ ସବୁ ଆହୁତି । ତେଣୁ ପୂର୍ଣ୍ଣାହୁତିରେ ଯଜ୍ଞର ପରିସମାପ୍ତି । ସର୍ବନ ପରିପୂର୍ଣ୍ଣ ମହାପ୍ରକାଶର ଏକ ପୂର୍ଣ୍ଣ ପ୍ରକାଶ ରୂପେ ଆତ୍ମାକୁ ଅନୁଭବ କରିବା ସକାଶେ ଜଠରାଗ୍ନି ସମ୍ବଳିତ ଏହି ମଣିଷ ପାର୍ଥିବ ଅଗ୍ନିରେ ଘୃତ (ଦୁଗ୍ଧର ସାରସର୍ବସ୍ୱକୁ) ଆହୁତି ଦେଇ ପାପ୍ରଶିଖାରେ ଧୂମବର୍ତ୍ତିକୁ ବିଷ୍ଣୁଙ୍କ ଅନନ୍ତ ଆକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ କରି ସକଳତେଜର ଆଧାର ଜଗତର ସେଇ ଏକ ଚକ୍ଷୁ ପରମାତ୍ମାଙ୍କ-ଠାରେ ନିଜକୁ ମିଶାଇ ଦେବାପାଇଁ 'ଯଜ୍ଞ' । ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।

ଡି-୧୧୭, ମ୍ୟୁଜିୟମ୍ ଫ୍ଲାଟ୍ସ୍
ଭୁବନେଶ୍ୱର-୭୫୧୦୧୪
ତା ୨୮ ଅଗଷ୍ଟ ୧୯୮୭
ଗଣେଶ ଚତୁର୍ଥୀ

**ମହାମେଧାନନ୍ଦନାଥ**
( ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ )
ସଂପାଦକ, ସଂସ୍କୃତ ବିଭାଗ, ଓଡ଼ିଶା
ଭୁବନେଶ୍ୱର-୭୫୧୦୧୪

# ଅଥାତ୍ମବାକ୍ସଂବିତାନଂ

ଐଂକାର ହ୍ରୀଂକାର ରହସ୍ୟଯୁକ୍ତ ଶ୍ରୀଂକାର ଗୂଢ଼ାର୍ଥମହାବିଭୂତ୍ୟା ।
ଓଁକାରମର୍ମପ୍ରତିପାଦକାଭ୍ୟାଂ ନମୋ ନମଃ ଶ୍ରୀଗୁରୁପାଦୁକାଭ୍ୟାମ୍ ॥୧॥

ଯନ୍ମୁଖାମ୍ନାୟମାସାଦ୍ୟ ବିଦ୍ୟାସିଦ୍ଧିରଭୂନ୍ମମ ।
ମହାତ୍ରିପୁରସୁନ୍ଦର୍ଯ୍ୟାସ୍ତମଦ୍ୱୟଂ ଗୁରୁଂ ଭଜେ ॥ ୨ ॥

ମାତା ଧର୍ମପରାୟଣା ସୁକୃତିନୀ ଯା ତ୍ୱନ୍ନପୂର୍ଣ୍ଣେତି ଧୀଃ ।
ତାତୋ ଦାନ ଦୟାନ୍ୱିତୋ ହରିହରୋ ବାତ୍ସଲ୍ୟବାରାଂନିଧିଃ ।
ନାନାଦେବସୁପୂଜନୈକପରୟୋର୍ଜାତସ୍ତ ପୁତ୍ରଃ ସୁଧୀଃ
ଦୁଃଖିଶ୍ୟାମ ଇତି ପ୍ରସିଦ୍ଧବିବୁଧଃ ଶାସ୍ତ୍ରେଷ୍ୱବାଧପ୍ରଧୀଃ ॥ ୩ ॥

ପରମଗୁରୁକୃପାତୋ ଦୀକ୍ଷିତଃ ପୂର୍ଣ୍ଣସିକ୍ତୋ
ଭଜନପର-ମହାମେଧାନନ୍ଦନାଥଃ ।
ସ୍ତବକୁସୁମମନୋଜ୍ଞୈର୍ମାତୃସେବାତିସକ୍ତୋ
ବ୍ୟରଚୟଦତିରମ୍ୟଂ 'ନିତ୍ୟପୂଜାବିଧାନମ୍' ॥ ୪ ॥

ଈଶ୍ୱରଭକ୍ତିନିଷ୍ଠାୟ ପିତ୍ରେ ହରିହରାୟ ମେ
ବାତ୍ସଲ୍ୟମମତାଗାଧ-ସ୍ୱର୍ଯାତାୟାସ୍ତୁ ତର୍ପଣମ୍ ।
ମୁନିବସୁଗ୍ରହେନ୍ଦୌ (୧୯୮୭) ଚ ଖ୍ରୀଷ୍ଟାବ୍ଦେ ପୂର୍ଣ୍ଣତାମିତମ୍
ମହାମେଧାନନ୍ଦନାଥ କଳିତଂ ସ୍ତବରତ୍ନକମ୍ ॥ ୫ ॥

---

ବାଗ୍ ବୀଜ ଐଂକାର, ଭୁବନେଶ୍ୱରୀ ବୀଜ ହ୍ରୀଂକାର ଲକ୍ଷ୍ମୀବୀଜ ଶ୍ରୀଂକାରର ଗୂଢ଼ରହସ୍ୟାର୍ଥ ରୂପକ ମହାବିଭୂତି ସହ ପ୍ରଣବ – ଓଁକାରର ମର୍ମ ପ୍ରତିପାଦନ କରୁଥିବା ଗୁରୁଚରଣରେ ମୋର ପ୍ରଣାମ ॥ ୧ ॥

ଯାହାଙ୍କ ମୁଖରୁ ଶାସ୍ତ୍ରବାଣୀ ଶୁଣି ମୋର ବିଦ୍ୟାସିଦ୍ଧି ବା ମନ୍ତ୍ରସିଦ୍ଧି, ସେହି ମହାଶକ୍ତି ତ୍ରିପୁରସୁନ୍ଦରୀଙ୍କ ସହ ଅଦ୍ୱୟ ଓ ଏକୀଭୂତ ଗୁହ୍ୟାପୀଠାଧୀଶ୍ୱର ଗୁରୁଦେବ ଶ୍ରୀ ଅଦ୍ୱୟାନନ୍ଦନାଥ ସରସ୍ୱତୀଙ୍କୁ ମୋର ପ୍ରଣାମ ॥ ୨ ॥

ମୋର ମା' ଧର୍ମପରାୟଣା ପୁଣ୍ୟଶୀଳା ସ୍ୱୟଂ ଅନ୍ନପୂର୍ଣ୍ଣା ବୋଲି ଜାଣ । ମୋର ପିତା ଦାନଦୟାଦିଗୁଣଯୁକ୍ତ ହରିହର ଥିଲେ ବାତ୍ସଲ୍ୟରସର ସାଗର । ନାନାଦେବପୂଜା କରୁଥିବା ପିତାମାତାଙ୍କଠାରୁ ଜାତ ଉତ୍ତମ ବୁଦ୍ଧିସମ୍ପନ୍ନ ବହୁ ଶାସ୍ତ୍ରରେ ଅବାଧବୁଦ୍ଧି ଦୁଃଖିଶ୍ୟାମ (ପଟ୍ଟନାୟକ) ଜଣେ ପ୍ରସିଦ୍ଧ ବିଦ୍ୱାନ୍ ॥ ୩ ॥

ଗୁରୁଙ୍କର ପରମ କୃପାରୁ ଶାକ୍ତକ୍ରମରେ ଦୀକ୍ଷାପ୍ରାପ୍ତ ଓ ପୂର୍ଣ୍ଣାଭିଷିକ୍ତ ଭଜନପ୍ରିୟ ଜଗନ୍ମାତାଙ୍କ ସେବାରେ ଅତି ଆସକ୍ତ ମହାମେଧାନନ୍ଦନାଥ ମନୋହର ସ୍ତବକୁସୁମରେ ଅତି ସୁନ୍ଦର 'ନିତ୍ୟପୂଜାବିଧାନ' ରଚନା କଲେ ॥୪॥

ଈଶ୍ୱର (ଖଲ୍ଲିକୋଟ ବାଲୁକେଶ୍ୱର)ଙ୍କଠାରେ ଭକ୍ତିପରାୟଣ ମୋର ପିତା ବାତ୍ସଲ୍ୟ ମମତାପୂର୍ଣ୍ଣ (ତା ୩୧ ଅକ୍ଟୋବର ୧୯୮୭ରେ) ସ୍ୱର୍ଗତ ହରିହରଙ୍କର ଏହାଦ୍ୱାରା ତର୍ପଣ ବା ତୃପ୍ତି ହେଉ । ୧୯୮୭ ଖ୍ରୀଷ୍ଟାବ୍ଦ (ଗଣେଶ ଚତୁର୍ଥୀ, ୨୮ ତାରିଖ ଶୁକ୍ରବାରେ) ମହାମେଧାନନ୍ଦନାଥ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ଲିଖିତ 'ନିତ୍ୟପୂଜାବିଧାନ ଓ ସ୍ତବରତ୍ନ' ସଂପୂର୍ଣ୍ଣ ହେଲା ॥ ୫ ॥

# ନୈତ୍ୟ-ପୂଜା-ବିଧାନ
# ଓ
# ସ୍ତବରତ୍ନ

## ଶ୍ରୀଗୁରୁ ଧ୍ୟାନଂ

ଓଁ ଆନନ୍ଦମାନନ୍ଦକରଂ ପ୍ରସନ୍ନଂ
ଜ୍ଞାନସ୍ୱରୂପଂ ନିଜବୋଧରୂପମ୍ ।
ଯୋଗୀନ୍ଦ୍ରମୀଡ୍ୟଂ ଭବରୋଗବୈଦ୍ୟଂ
ଶ୍ରୀମଦ୍‌ଗୁରୁଂ ନିତ୍ୟମହଂ ଭଜାମି ॥ ୧ ॥

ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁଃ ଗୁରୁର୍ଦେବୋ ମହେଶ୍ୱରଃ ।
ଗୁରୁରେବ ପରଂ ବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ॥ ୨ ॥

ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଳାକୟା ।
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥ ୩ ॥

---

ଗୁରୁ ହିଁ ଦେହଧାରୀ ମୂର୍ତ୍ତିମନ୍ତ ଆନନ୍ଦ, ଆନନ୍ଦଦାୟକ ବିଗ୍ରହ, ପ୍ରସନ୍ନତାର ଦ୍ୟୋତକ, ଜ୍ଞାନ ସ୍ୱରୂପ, ନିଜର ଅରୂପ ତତ୍ତ୍ୱକୁ ବୁଝିବା ସକାଶେ ରୂପଧାରୀ ବିଗ୍ରହ, ଯୋଗୀବୃନ୍ଦଙ୍କ ଦ୍ୱାରା ପୂଜିତ, ସଂସାର ରୋଗର ଚିକିତ୍ସକ ବୈଦ୍ୟ । ତାଙ୍କୁ ମୁଁ ନିତ୍ୟ ଧ୍ୟାନ କରୁଛି ॥ ୧ ॥

ଗୁରୁ ହିଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ପରମବ୍ରହ୍ମ । ତେଣୁ ଗୁରୁଙ୍କୁ ମୋର ପ୍ରଣାମ ॥ ୨ ॥

ଅଜ୍ଞାନ ରୂପକ ଅନ୍ଧକାରରେ ଅନ୍ଧ ଭଳି କିଛି ଦେଖିପାରୁ ନଥିବା ବ୍ୟକ୍ତିର ଜ୍ଞାନନେତ୍ରକୁ ଯେ ଜ୍ଞାନ ରୂପକ (କଜଳ ଲଗାଇବା) କାଠିରେ ଖୋଲି ଦିଅନ୍ତି । ସେହି ଗୁରୁଙ୍କୁ ମୋର ନମସ୍କାର ॥ ୩ ॥

ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍ ।
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥ ୪ ॥
ଜ୍ଞାନଶକ୍ତିସମାରୂଢ଼ଃ ତତ୍ତ୍ୱମାଳା-ବିଭୂଷିତଃ ।
ଭୁକ୍ତିମୁକ୍ତିପ୍ରଦାତା ଚ ତସ୍ମୈ ଶ୍ରୀ ଗୁରବେ ନମଃ ॥ ୫ ॥
ମନ୍ନାଥଃ ଶ୍ରୀ ଜଗନ୍ନାଥୋ ମଦ୍‌ଗୁରୁଃ ଶ୍ରୀ ଜଗଦ୍‌ଗୁରୁଃ ।
ମମାତ୍ମା ସର୍ବଭୂତାତ୍ମା ତସ୍ମୈ ଶ୍ରୀ ଗୁରବେ ନମଃ ॥ ୬ ॥
ଯନ୍ମୁଖାମ୍ନାୟମାସାଦ୍ୟ ବିଦ୍ୟାସିଦ୍ଧିରଭୂନ୍ମମ ।
ମହାତ୍ରିପୁରସୁନ୍ଦର୍ଯ୍ୟା ସ୍ତମଦ୍ୱୟଂ ଗୁରୁଂ ଭଜେ ॥ ୭ ॥
ଶ୍ରୀମତ୍ପରଂ ବ୍ରହ୍ମ ଗୁରୁଂ ବଦାମି, ଶ୍ରୀମତ୍ପରଂ ବ୍ରହ୍ମ ଗୁରୁଂ ଭଜାମି ।
ଶ୍ରୀମତ୍ପରଂ ବ୍ରହ୍ମ ଗୁରୁଂ ସ୍ମରାମି, ଶ୍ରୀମତ୍ପରଂ ବ୍ରହ୍ମ ଗୁରୁଂ ନମାମି ॥ ୮ ॥
ବ୍ରହ୍ମାନନ୍ଦଂ ପରମସୁଖଦଂ କେବଳଂ ଜ୍ଞାନମୂର୍ତ୍ତିଂ
ଦ୍ୱନ୍ଦ୍ୱାତୀତଂ ଗଗନସଦୃଶଂ ତତ୍ତ୍ୱମସ୍ୟାଦିଲକ୍ଷ୍ୟମ୍ ।
ଏକଂ ନିତ୍ୟଂ ବିମଳମଚଳଂ ସର୍ବଧୀସାକ୍ଷିଭୂତଂ
ଭାବାତୀତଂ ତ୍ରିଗୁଣରହିତଂ ସଦ୍‌ଗୁରୁଂ ତଂ ନମାମି ॥ ୯ ॥

---

ଯାହାଙ୍କ ପଦ ବିସ୍ତୃତ ଆକାଶ ଭଳି ଏଇ ଚରାଚର ଅଖଣ୍ଡମଣ୍ଡଳରେ ପରିଦୃଷ୍ଟ ହୁଏ, ସେହି ଗୁରୁଙ୍କୁ ମୋର ପ୍ରଣାମ ॥ ୪ ॥

ଜ୍ଞାନ ହେଉଛି ତାଙ୍କର ଶକ୍ତି । ତାକୁ ଆଧାର କରି ସେ ବର୍ତ୍ତମାନ । ତତ୍ତ୍ୱ ହେଉଛି ତାଙ୍କର ମାଳା । ସେଇ ମାଳା ସେ ଧାରଣ କରିଛନ୍ତି । ସେ ଭୋଗ ଓ ମୋକ୍ଷ ଉଭୟର ପ୍ରଦାନକାରୀ । ତାହାଙ୍କୁ ମୋର ନମସ୍କାର ॥ ୫ ॥

ଜଗତର ନାଥ ମୋର ଗୁରୁ ହିଁ ମୋର ନାଥ ପ୍ରଭୁ । ମୋର ଗୁରୁ ହିଁ ଜଗତର ଗୁରୁ । ମୋର ଏହି ଆତ୍ମା ହିଁ ସର୍ବ ଭୂତରେ ବ୍ୟାପିଥିବା ଆତ୍ମା । ତେଣୁ ସେହି ଗୁରୁଦେବଙ୍କୁ ମୋର ପ୍ରଣାମ ॥ ୬ ॥

ଯାହାଙ୍କ ମୁଖରୁ ଶାସ୍ତ୍ରବାଣୀ ଶୁଣି ମୋର ବିଦ୍ୟା ବା ମନ୍ତ୍ରସିଦ୍ଧି, ସେହି ତ୍ରିପୁର ସୁନ୍ଦରୀ ମହାଶକ୍ତିଙ୍କ ସହ ଅଦ୍ୱୟ ଓ ଏକୀଭୂତ ଗୁରୁଦେବ ଶ୍ରୀ ଅଦ୍ୱୟାନନ୍ଦନାଥ ସରସ୍ୱତୀଙ୍କୁ ମୋର ପ୍ରଣାମ ॥ ୭ ॥

ପରଂବ୍ରହ୍ମ ଗୁରୁଙ୍କୁ ହିଁ କହିବି, ଭଜିବି, ସ୍ମରଣ କରିବି, ପ୍ରଣାମ କରିବି ॥୮॥

ବ୍ରହ୍ମାନନ୍ଦ, ପରମସୁଖ ଦାୟକ, ଶୁଦ୍ଧ ଜ୍ଞାନମୂର୍ତ୍ତି, ଦ୍ୱନ୍ଦ୍ୱାତୀତ, ଗଗନ ସଦୃଶ ବିଶାଳ ଓ ସର୍ବବ୍ୟାପୀ, ତତ୍-ତ୍ୱଂ-ଅସି ପ୍ରଭୃତିର ବୋଧ ଯାହାର ଲକ୍ଷ୍ୟ, ଏକ, ନିତ୍ୟ, ମଳିନତା ରହିତ, ପର୍ବତ ପରି ସ୍ଥିର, ସମସ୍ତ ବୁଦ୍ଧିର ସାକ୍ଷୀ, ଭାବାତୀତ, ତ୍ରିଗୁଣରହିତ ସଦ୍‌ଗୁରୁଙ୍କୁ ମୋର ପ୍ରଣାମ ॥ ୯ ॥

ନମସ୍ତେ ନାଥ ଭଗବନ୍ ଶିବାୟ ଗୁରୁରୂପିଣେ ।
ବିଦ୍ୟାବତାରସଂସିଦ୍ଧ୍ୟୈ ସ୍ୱୀକୃତାନେକ ବିଗ୍ରହ ॥ ୧୦ ॥

ନବାୟ ନରରୂପାୟ ପରମାର୍ଥ ସ୍ୱରୂପିଣେ ।
ସର୍ବାଜ୍ଞାନତମୋଭେଦଭାନବେ ଚିଦ୍‌ଘନାୟ ତେ ॥ ୧୧ ॥

ସ୍ୱତନ୍ତ୍ରାୟ ଦୟାକ୍ଳୃପ୍ତବିଗ୍ରହାୟ ଶିବାତ୍ମନେ ।
ପରତନ୍ତ୍ରାୟ ଭକ୍ତାନାଂ ଭବ୍ୟାନାଂ ଭବ୍ୟରୂପିଣେ ॥ ୧୨ ॥

ବିବେକିନାଂ ବିବେକାୟ ବିମର୍ଶାୟ ବିମର୍ଶିନାମ୍ ।
ପ୍ରକାଶାନାଂ ପ୍ରକାଶାୟ ଜ୍ଞାନିନାଂ ଜ୍ଞାନରୂପିଣେ ॥ ୧୩ ॥

ପୁରସ୍ତାତ୍ ପାର୍ଶ୍ୱୟୋଃ ପୃଷ୍ଠେ ନମସ୍କୁର୍ଯ୍ୟାମୁପର୍ଯ୍ୟଧଃ ।
ସଦା ମଚ୍ଚିତ୍ତରୂପେଣ ବିଧେହି ଭବଦାସନମ୍ ॥ ୧୪ ॥

ତ୍ୱତ୍ ପ୍ରସାଦାଦହଂ ଦେବ କୃତକୃତ୍ୟୋଽସ୍ମି ସର୍ବଦା ।
ମାୟାମୃତ୍ୟୁମହାପାଶାତ୍ ବିମୁକ୍ତୋଽସ୍ମି ଶିବୋଽସ୍ମି ଚ ॥ ୧୫ ॥

---

ହେ ପ୍ରଭୁ ଭଗବାନ୍ ! ଆପଣ ବିଦ୍ୟାବତାର ସିଦ୍ଧି ପକାଶେ ଅନେକ ବିଗ୍ରହ ସ୍ୱୀକାର କରି ଗୁରୁରୂପରେ ସ୍ୱୟଂ ଶିବ ଅବତୀର୍ଣ୍ଣ । ଆପଣଙ୍କୁ ମୋର ନମସ୍କାର ॥ ୧୦ ॥

ନର, ନରରୂପ, ପରମାର୍ଥସ୍ୱରୂପ ଗୁରୁଙ୍କୁ ମୋର ନମସ୍କାର । ସକଳ-ଅଜ୍ଞାନ ଅନ୍ଧକାରକୁ ଭେଦ କରିବାରେ ସୂର୍ଯ୍ୟ ସଦୃଶ ସେହି ଚିଦ୍‌ଘନ ବିଗ୍ରହ ଗୁରୁଦେବଙ୍କୁ ପ୍ରଣାମ ॥ ୧୧ ॥

ସ୍ୱତନ୍ତ୍ର, ଦୟାଘନ ବିଗ୍ରହ ଶିବାତ୍ମ, ଭକ୍ତମାନଙ୍କ ପାଇଁ ପରମ ଶାନ୍ତ, ଭଗବାନଙ୍କ ଭଳି ଭବ୍ୟ ହେଉ ଗୁରୁଙ୍କୁ ପ୍ରଣାମ ॥ ୧୨ ॥

ବିବେକୀ ଲୋକଙ୍କ ବିବେକ, ଚିନ୍ତାଶୀଳ ଲୋକଙ୍କ ବିମର୍ଶ, ପ୍ରକାଶଶୀଳ ବସ୍ତୁର ପ୍ରକାଶ ବା ଜ୍ୟୋତି, ଜ୍ଞାନୀମାନଙ୍କର ଜ୍ଞାନ ସ୍ୱରୂପ ଗୁରୁଙ୍କୁ ମୋର ପ୍ରଣାମ ॥ ୧୩ ॥

ଆଗରେ ପାର୍ଶ୍ୱରେ, ପଛରେ, ଉପରେ, ତଳେ ସବୁ ଦିଗରେ ସ୍ଥିତ ସେହି ଗୁରୁଦେବଙ୍କୁ ନମସ୍କାର । ସବୁବେଳେ ମୋର ମନ ରୂପରେ ଆପଣଙ୍କର ସ୍ଥିତି ଅବସ୍ଥାନ ହେଉ ॥ ୧୪ ॥

ହେ ଦେବ ! ଆପଣଙ୍କ ପ୍ରସାଦରୁ ମୁଁ ସବୁବେଳେ କୃତକୃତ୍ୟ ଓ କୃତାର୍ଥ । ମାୟା ଓ ମୃତ୍ୟୁର ମହାପାଶରୁ ବିମୁକ୍ତ ହୋଇ ମୁଁ ଅଛି ଶିବସ୍ୱରୂପ---ମଙ୍ଗଳମୟ ମହାବିଭୂତ ॥ ୧୫ ॥

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥ ୧ ॥

ଓଁ ଶଂ ନୋ ମିତ୍ରଃ ଶଂ ବରୁଣଃ । ଶଂ ନୋ ଭବତ୍ୱର୍ଯ୍ୟମା ।
ଶଂ ନ ଇନ୍ଦ୍ରୋ ବୃହସ୍ପତିଃ । ଶଂ ନୋ ବିଷ୍ଣୁରୁରୁକ୍ରମଃ ।
ନମୋ ବ୍ରହ୍ମଣେ ନମସ୍ତେ ବାୟୋ । ତ୍ୱମେବ ପ୍ରତ୍ୟକ୍ଷଂ ବ୍ରହ୍ମାସି ।
ତ୍ୱାମେବ ପ୍ରତ୍ୟକ୍ଷଂ ବ୍ରହ୍ମ ବଦିଷ୍ୟାମି । ଋତଂ ବଦିଷ୍ୟାମି ।
ସତ୍ୟଂ ବଦିଷ୍ୟାମି । ତନ୍ମାମବତୁ । ତଦ୍ବକ୍ତାରମବତୁ ।
ଅବତୁ ମାମ୍ । ଅବତୁ ବକ୍ତାରମ୍ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ (ତୈତ୍ତିରୀୟୋପନିଷଦ୍ ୧।୧) ॥ ୨ ॥

---

ଓଁ-ସଚ୍ଚିଦାନନ୍ଦଘନ, ଅଦଃ-ସେହି ପରଂବ୍ରହ୍ମ, ପୂର୍ଣ୍ଣମ୍-ପୂର୍ଣ୍ଣ ଅଟନ୍ତି । ଇଦଂ-ଏହି ନାମରୂପାତ୍ମକ ଜଗତ୍ ମଧ୍ୟ, ପୂର୍ଣ୍ଣମ୍ ବ୍ରହ୍ମରେ ପୂର୍ଣ୍ଣ ଅଟେ । ପୂର୍ଣ୍ଣାତ୍ ସେହି ପୂର୍ଣ୍ଣବ୍ରହ୍ମଙ୍କଠାରୁ, ପୂର୍ଣ୍ଣ-ଏହି ପୂର୍ଣ୍ଣ ଜଗତ୍, ଉଦଚ୍ୟତେ-ଉଦ୍‌ଗତ ବା ଉତ୍ପନ୍ନ ହୋଇଛି । ପୂର୍ଣ୍ଣସ୍ୟ-ପୂର୍ଣ୍ଣର, ପୂର୍ଣ୍ଣମ୍-ପୂର୍ଣ୍ଣକୁ, ଆଦାୟ-ବାହାର କରି ଆଣିଲେ, ପୂର୍ଣ୍ଣମ୍ ପୂର୍ଣ୍ଣ, ଏବ-ହିଁ ଅବଶିଷ୍ୟତେ ଅବଶେଷ ରହେ । ସମସ୍ତଙ୍କର ସର୍ବତ୍ର ସର୍ବଥା ଶାନ୍ତି ହେଉ ॥ ୧ ॥

ମିତ୍ରଃ- ଦିନ ଓ ପ୍ରାଣର ଅଧିଷ୍ଠାତୃ ଦେବତା) ସୂର୍ଯ୍ୟ, ନଃ-ଆମ୍ଭମାନଙ୍କ ପାଇଁ, ଶଂ-ମଙ୍ଗଳମୟ ହୁଅନ୍ତୁ, ବରୁଣଃ-(ରାତ୍ରି ଓ ଅପାନର ଅଧିଷ୍ଠାତା) ବରୁଣ ମଧ୍ୟ ଶଂ-ମଙ୍ଗଳପ୍ରଦ ହୁଅନ୍ତୁ । ଅର୍ଯ୍ୟମା (ଚକ୍ଷୁ ଓ ଆଦିତ୍ୟ ମଣ୍ଡଳର ଅଧିଷ୍ଠାତା) ଆମମାନଙ୍କ କଲ୍ୟାଣକର ହୁଅନ୍ତୁ । ଜଳର ଦେବତା ଇନ୍ଦ୍ର ଏବଂ ବାକ୍ ଓ ବୁଦ୍ଧିର ଦେବତା ବୃହସ୍ପତି ଆମର ମଙ୍ଗଳକାରକ ହୁଅନ୍ତୁ । ତ୍ରିବିକ୍ରମ ରୂପରେ ସର୍ବତ୍ର ବ୍ୟାପନଶୀଳ ଭଗବାନ ବିଷ୍ଣୁ, ଆମର ମଙ୍ଗଳକର ହୁଅନ୍ତୁ । ଏ ସମସ୍ତ ବ୍ରହ୍ମଙ୍କୁ ମୋର ପ୍ରଣାମ । ହେ ବାୟୁ, ତୁମକୁ ମୋର ନମସ୍କାର । ତୁମେହିଁ ପ୍ରାଣରୂପରେ ପ୍ରତ୍ୟକ୍ଷ ବ୍ରହ୍ମ । ତୁମକୁ ହିଁ ପ୍ରତ୍ୟକ୍ଷ ବ୍ରହ୍ମ ବୋଲି କହିବ । ବୁଦ୍ଧିରେ ଯଥାଶାସ୍ତ୍ର ଯଥା କର୍ତ୍ତବ୍ୟ ସକଳ କଲ୍ୟାଣକର ନିୟମ ତୁମର ଅଧୀନ ହେତୁ ତୁମକୁ 'ଋତ' ବୋଲି କହିବ । ବାକ୍‌କାୟ ଦ୍ୱାରା ଉକ୍ତ କର୍ତ୍ତବ୍ୟ ମଧ୍ୟ ଯଥାର୍ଥତଃ ତୁମର ଅଧୀନ ହେତୁ ତୁମକୁ 'ସତ୍ୟ' ବୋଲି କହିବ । ସେଇ ସର୍ବଶକ୍ତିମାନ ପ୍ରାଣବାୟୁ ମତେ ରକ୍ଷା କରନ୍ତୁ । ବକ୍ତା ଆଚାର୍ଯ୍ୟଙ୍କୁ ରକ୍ଷା କରନ୍ତୁ । ମତେ ଓ ମୋର ବକ୍ତା ଗୁରୁଦେବଙ୍କୁ ରକ୍ଷା କରନ୍ତୁ । ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ବିଘ୍ନ ଦୂର ହୋଇ ସର୍ବଦା ଶାନ୍ତି ହେଉ । ॥ ୨ ॥

ଓଁ ସହ ନାବବତୁ । ସହ ନୌ ଭୁନକ୍ତୁ । ସହବୀର୍ଯ୍ୟଂ
କରବାବହୈ । ତେଜସ୍ୱି ନାବଧୀତମସ୍ତୁ । ମା ବିଦ୍ୱିଷାବହୈ ॥
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ; (ତୈତ୍ତିରୀୟ ୨।୧) ॥ ୩ ॥

ଓଁ ବାଙ୍ମେ ମନସି ପ୍ରତିଷ୍ଠିତା, ମନୋ ମେ ବାଚି ପ୍ରତିଷ୍ଠିତମ୍ ଆବିରାବିର୍ମ ଏଧି । ବେଦସ୍ୟ ମ ଆଣୀସ୍ଥଃ, ଶ୍ରୁତଂ ମେ ମା ପ୍ରହାସୀ—ରନେନାଧୀତେନାହୋରାତ୍ରାନ୍ ସଂଦଧାମି, ଋତଂ ବଦିଷ୍ୟାମି, ସତ୍ୟଂ ବଦିଷ୍ୟାମି । ତନ୍ମାମବତୁ । ତଦ୍ ବକ୍ତାରମବତୁ । ଅବତୁ ମାମ୍, ଅବତୁ ବକ୍ତାରମ, ଅବତୁ ବକ୍ତାରମ୍ ॥ ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।
(ଐତରେୟ ୧।୧) ॥ ୪ ॥

---

ଓଁ-ବ୍ରହ୍ମ ପରମାତ୍ମା, ନୌ-ଆମ ଗୁରୁଶିଷ୍ୟ ଉଭୟଙ୍କୁ, ସହ-ଉଭୟରୂପେ, ଅବତୁ-ରକ୍ଷାକରନ୍ତୁ । ନୌ-ଆମଦୁହିଁଙ୍କୁ, ସହ-ଏକାଠି,(ବିଦ୍ୟାଫଳକୁ) ଭୁନ-କ୍ତୁ-ଭୋଗ କରାନ୍ତୁ, ସହ-ଏକସାଥିରେ (ଆମେଦୁହେଁ) ବୀର୍ଯ୍ୟଂ-ବଳ, କରବାବହୈ-ପ୍ରାପ୍ତକରୁଁ. ନୌ-ଆମଦୁହିଙ୍କର, ଅଧୀତଂ-ଅଧ୍ୟୟନ ବା ବିଦ୍ୟା, ତେଜସ୍ୱି-ତେଜଃ ସମ୍ପନ୍ନ ବା ତାତ୍ପୂର୍ଣ୍ଣ-ପ୍ରକାଶକ, ଅସ୍ତୁ-ହେଉ । ମା ବିଦ୍ୱିଷାବହୈ-ଆମେ ଦୁହେଁ ପରସ୍ପରକୁ ଯେପରି ଦ୍ୱେଷ ନ କରୁ । ସବପ୍ରକାରେ ଶାନ୍ତି ହେଉ ॥ ୩ ॥

ଓଁ-ହେ ସଚ୍ଚିଦାନନ୍ଦ ସ୍ୱରୂପ ପରମାତ୍ମା ମେ-ମୋର, ବାକ୍-ବଳ ବା ବାକ୍-ଇନ୍ଦ୍ରିୟ, ମନସି-ମନରେ, ପ୍ରତିଷ୍ଠିତ- ପ୍ରତିଷ୍ଠିତ ହେଉ, ଅର୍ଥାତ୍ ମନରେ ଯାହା କହିବାକୁ ଚାହୁଁଛି ତାହାହିଁ ବାକ୍ୟ ଆକାରରେ ପ୍ରକାଶ ପାଉ, ମେ-ମୋର, ମନଃ-ମନ, ବାଚ-ବାକ୍ୟରେ, ପ୍ରତିଷ୍ଠିତଂ-ପ୍ରତିଷ୍ଠିତ ହେଉ । ଅର୍ଥାତ୍-ବ୍ରହ୍ମବିଦ୍ୟା ପ୍ରତିପାଦକ ଶବ୍ଦଗୁଡ଼ିକ ହିଁ ମନର ବିଷୟ ହେଉ । ଆବିଃ-ହେ ସ୍ୱପ୍ରକାଶ ବ୍ରହ୍ମ, ମେ-ମୋ ପାଇଁ, ଆବିଃ ଏଧି-ପ୍ରକାଶ ପାଅ । ବେଦସ୍ୟ-ବେଦ ବିଷୟକ ଜ୍ଞାନକୁ, ମେ-ମୋ ପାଇଁ, ଆଣୀସ୍ଥଃ-ଆନୟନକାରୀ ହୁଅ । ମେ-ମୋର, ଶ୍ରୁତଂ-ଯାହା ଶୁଣିକରି ଜ୍ଞାନ ହୋଇଛି, ମା ପ୍ରହାସୀଃ-ମତେ ତ୍ୟାଗ ନକରୁ । ଅନେନ ଅଧୀତେନ-ଏହି ଅଧ୍ୟୟନ ଦ୍ୱାରା, ଅହୋରାତ୍ରାନ୍-ଦିନ ଓ

ଓଁ ଆପ୍ୟାୟନ୍ତୁ ମମାଙ୍ଗାନି ବାକ୍ ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରମଥୋ ବଳମିନ୍ଦ୍ରିୟାଣି ଚ ସର୍ବାଣି । ସର୍ବଂ ବ୍ରହ୍ମୋପନିଷଦଂ; ମାହଂ ବ୍ରହ୍ମ ନିରାକୁର୍ଯ୍ୟାଂ ମା ମା ବ୍ରହ୍ମ ନିରାକରୋତ୍, ଅନିରାକରଣମସ୍ତୁ, ଅନିରାକରଣଂ ମେଽସ୍ତୁ । ତଦାତ୍ମନି ନିରତେ ଯ ଉପନିଷତ୍ସୁ ଧର୍ମାସ୍ତେ ମୟି ସନ୍ତୁ, ତେ ମୟି ସନ୍ତୁ ।

ଓଁ ଶାନ୍ତିଃ, ଶାନ୍ତିଃ ଶାନ୍ତିଃ, (କେନ, ଛାନ୍ଦୋଗ୍ୟ) ।। ୫ ।।

---

ବକ୍ତାଙ୍କୁ. ସଂବଦିଷ୍ୟାମି-ସମ୍ୟକ୍ ରୂପେ ଧାରଣା କରିବ ବା କହାଇଦେବ । ଋତଂ* ଉତ୍ତମ ନିର୍ଦ୍ଦୋଷ ଶାସ୍ତ୍ରାନୁମୋଦିତ କଥା, ବଦିଷ୍ୟାମି-କହିବି । ସତ୍ୟଂ △ ଯେପରି ଦେଖିଥିବି, ଯେପରି ଶୁଣିଥିବି, ଯେପରି ଠିକ୍ ବୁଝିଥିବି ଠିକ୍ ଅବିକଳ ସେପରି ଠିକ୍ ଛଳନାହୀନ କଥା, ବଦିଷ୍ୟାମି-କହିବି । ତତ୍ ସେଇ ବ୍ରହ୍ମ, ବକ୍ତାରଂ-ବକ୍ତା ଗୁରୁଙ୍କୁ ରକ୍ଷାକରନ୍ତୁ । ସେ ମତେ ଓ ମୋର ବ୍ରହ୍ମବକ୍ତା ଆଚାର୍ଯ୍ୟଙ୍କୁ ରକ୍ଷା କରନ୍ତୁ । ସର୍ବବିଧ ଶାନ୍ତି ହେଉ ।

ଓଁ-ହେ ପରବ୍ରହ୍ମ ପରମାତ୍ମା, ମମ-ମୋର, ବାକ୍-ବାଣୀ, ପ୍ରାଣଃ-ପ୍ରାଣ ଚକ୍ଷୁଃ-ନେତ୍ର, ଶ୍ରୋତ୍ର କର୍ଣ୍ଣ, ଚ-ଏବଂ, ସର୍ବାଣି-ସବୁ, ଇନ୍ଦ୍ରିୟାଣି-ଇନ୍ଦ୍ରିୟ, ଅଥୋ ତଥା ବଳଂ-ଶକ୍ତି, ଆପ୍ୟାୟନ୍ତୁ-ପୁଷ୍ଟ ହୁଅନ୍ତୁ । ସର୍ବଂ-ସବୁ ଔପନିଷଦଂ-ଉପନିଷଦ୍ ପ୍ରତିପାଦିତ ବ୍ରହ୍ମ-ବ୍ରହ୍ମ ଅଟେ । ଅହଂ ମୁଁ: ବ୍ରହ୍ମ ବ୍ରହ୍ମଙ୍କୁ ମା ନିରାକୁର୍ଯ୍ୟାଂ-ଯେପରି ଅସ୍ୱୀକାର ନକରେ । ବ୍ରହ୍ମ-ବ୍ରହ୍ମ ମା-ମତେ, ମା ନିରାକରୋତ୍ ପ୍ରତ୍ୟାଖ୍ୟାନ ନକରନ୍ତୁ । ଅନିରାକରଣମ୍ ଅପ୍ରତ୍ୟାଖ୍ୟାନ ବା ଆମ ଦୁହିଁଙ୍କ ମଧ୍ୟରେ ନିତ୍ୟ ଅବିଚ୍ଛେଦ୍ୟ ସମ୍ବନ୍ଧ ଅସ୍ତୁ ହେଉ ; ଉପନିଷତ୍ସୁ ଉପନିଷଦ୍ ମାନଙ୍କରେ ଯେ ଯେଉଁ, ଧର୍ମାଃ ଧର୍ମ ସକଳ ତେ ସେ ସବୁ, ତଦାତ୍ମନି ସେଇ ପରମାତ୍ମାଙ୍କଠାରେ, ନିରତେ ନିରତ ବା ସଂଲଗ୍ନ, ମୟି-ମୋଠାରେ, ସନ୍ତୁ-ହୁଅନ୍ତୁ । ସେ ସବୁ ଧର୍ମ ମୋଠାରେ ରହନ୍ତୁ । ସର୍ବବିଧ ଶାନ୍ତିହେଉ ।।୬।।

---

* ଋତଂ ଯଥାଶାସ୍ତ୍ରଂ ଯଥାକର୍ତ୍ତବ୍ୟଂ ବୁଦ୍ଧୌ ସୁପରିନିଶ୍ଚିତାମର୍ଥମିତି ଭଗବତ୍ପାଦଶଙ୍କରସ୍ୱର୍ଯ୍ୟାଃ । ମାନସମଥଚାଽୃତମ୍ ଋତମିତି ଭଟ୍ଟଭାସ୍କରଃ । ଯଥାର୍ଥବ୍ୟବହୃତମ୍ ଋତମିତି ଗୋବିନ୍ଦସ୍ୱାମୀ ।।

△ ସତ୍ୟମିତି ବାକ୍କାୟାଭ୍ୟାଂ ସମ୍ପାଦ୍ୟମାନ ଇତି ଭଗବତ୍ ପାଦ-ଶଙ୍କରସ୍ୱର୍ଯ୍ୟାଃ । ବାଚକମର୍ଥ ତଥା ତ୍ୱଂ ସତ୍ୟମିତି ଭଟ୍ଟଭାସ୍କରଃ । ଯଥାର୍ଥ ଦୃଷ୍ଟବାଦିତ୍ୱଂ ସତ୍ୟମିତି ଗୋବିନ୍ଦସ୍ୱାମୀ ।।

ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା, ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ,
ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂସସ୍ତନୂଭିର୍ବ୍ୟଶେମ ଦେବହିତଂ ଯଦାୟୁଃ ।
ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ;
ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ।
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।[ପ୍ରଶ୍ନୋପନିଷତ୍] ॥ ୬ ॥

ବେଦାହମେତଂ ପୁରୁଷଂ ମହାନ୍ତ—
ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାଽତି ମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ॥ ୧ ॥
(ଶ୍ୱେତାଶ୍ୱତର ୩।୮)

---

ଓଁ ଦେବାଃ-ହେ ଦେବଗଣ ! (ବୟଂ) ଯଜତ୍ରାଃ (ଯନ୍ତାଃ)-ଆମେମାନେ ଭଗବାନଙ୍କ ଉଦ୍ଦେଶ୍ୟରେ ଯଜନ (ବା ଆରାଧନା) କରି, କର୍ଣ୍ଣେଭିଃ କାନରେ, ଭଦ୍ରଂ-ଭଲକଥା, ଶୃଣୁୟାମ-ଯେପରି ଶୁଣୁ, ଅକ୍ଷଭିଃ-ଆଖିରେ, ଭଦ୍ରଂ-ଭଲ, ପଶ୍ୟେମ-ଯେପରି ଦେଖୁ, ସ୍ଥିରୈଃ-ସୁଦୃଢ଼, ଅଙ୍ଗୈଃ-ଅଙ୍ଗଦ୍ୱାରା, ତନୂଭିଃ-ଶରୀରରେ ମଧ୍ୟ, ତୁଷ୍ଟୁବାଂସଃ ସ୍ତୁତି କରି କରି (ଆମେ) ଯତ୍-ଯେଉଁ, ଆୟୁଃ-ଆୟୁଷ ଦେବହିତଂ-ଦେବତାଙ୍କ ହିତରେ ଅର୍ପିତ, ତତ୍ ସେହିକି ଆୟୁଷ, ବ୍ୟଶେମ-ଉପଭୋଗ କରୁ ବୃଦ୍ଧଶ୍ରବାଃ ସୁଶ୍ରୁତ ବା ସୁଖ୍ୟାତ, ଇନ୍ଦ୍ରଃ-ଇନ୍ଦ୍ର, ନଃ-ଆମର, ସ୍ୱସ୍ତି-ମଙ୍ଗଳ ଦଧାତୁ-କରନ୍ତୁ । ବିଶ୍ୱବେଦାଃ ସମସ୍ତ ବିଶ୍ୱକୁ ଜାଣିଥିବା, ପୂଷା ଜଗତ୍‌ପୋଷକ ଦେବତା ନଃ-ଆମର, ସ୍ୱସ୍ତି-ମଙ୍ଗଳ, ଦଧାତୁ-କରନ୍ତୁ । ଅରିଷ୍ଟନେମିଃ-ଅରିଷ୍ଟ ବା ଉପଦ୍ରବ ନାଶ କରିବାରେ ରଥର ଚକ ସଦୃଶ ଅଥବା ଯାହାର ରଥର ଚକ ଗତିକଲାବେଳେ କୌଣସି ରିଷ୍ଟ ବା ବାଧା ନଥାଏ ସେହିପରି, ତାର୍କ୍ଷ୍ୟଃ-ଗରୁତ୍ମାନ୍, ନଃ-ଆମର, ସ୍ୱସ୍ତି-ମଙ୍ଗଳ, ଦଧାତୁ କରନ୍ତୁ । ବୃହସ୍ପତିଃ-ଦେବଗୁରୁ, ନଃ-ଆମର, ସ୍ୱସ୍ତି ମଙ୍ଗଳ, ଦଧାତୁ କରନ୍ତୁ ।

ସର୍ବବିଧ ଶାନ୍ତିହେଉ ॥ ୬ ॥

ଅବିଦ୍ୟା ବା ଅଜ୍ଞାନ ଅନ୍ଧକାରଠାରୁ ସର୍ବଦା ଅଲଗା, ଆଦିତ୍ୟବର୍ଣ୍ଣ ସେହି ମହାନ୍ ପୁରୁଷ ପରମେଶ୍ୱରଙ୍କୁ ମୁଁ ଜାଣେ । ତାଙ୍କୁ ଜାଣି ମୃତ୍ୟୁକୁ ମଧ୍ୟ ଉଲ୍ଲଂଘନ କରାଯାଏ । ସଂସାର ବା ଅଧ୍ୟାତ୍ମ ମାର୍ଗରେ ଯିବାପାଇଁ ଆଉ ଅନ୍ୟ ବାଟ ନାହିଁ ॥ ୧ ॥

ରୂପଂ ରୂପଂ ପ୍ରତିରୂପୋ ବଭୂବ ତଦସ୍ୟ ରୂପଂ ପ୍ରତିଚକ୍ଷଣାୟ ।
ଇନ୍ଦ୍ରୋ ମାୟାଭିଃ ପୁରୁରୂପ ଈୟତେ ଯୁକ୍ତା ହ୍ୟସ୍ୟ ହରୟଃ ଶତା ଦଶ ॥ ୨॥
[ବୃହଦାରଣ୍ୟକ]

ଏକୋ ବଶୀ ସର୍ବ ଭୂତାନ୍ତରାତ୍ମା
ଏକଂ ରୂପଂ ବହୁଧା ଯଃ କରୋତି ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରା—
ସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥ ୩ ॥ (କ୦୨।୧୨)

ନିତ୍ୟୋ ନିତ୍ୟାନାଂ ଚେତନଶ୍ଚେତନାନାମ୍
ଏକୋ ବହୂନାଂ ଯୋ ବିଦଧାତି କାମାନ୍ ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରା—
ସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥୪ ॥ (କ୦୨।୧୩)

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ
ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାସା ସର୍ବମିଦଂ ବିଭାତି ॥ ୫ ॥ [ମୁଣ୍ଡକ ୨।୧୦]

---

ରୂପ ଭେଦରେ ପରମାତ୍ମା ଅନୁରୂପ ହୋଇଥାନ୍ତି. ସେହି ରୂପର ପ୍ରଖ୍ୟାପନ ପାଇଁ । ଇନ୍ଦ୍ର ବା ଈଶ୍ୱର ଜୀବର ମାୟା ବା ମିଥ୍ୟାଭିମାନ ଦ୍ୱାରା ଅନେକ ରୂପ ଧାରଣ କରିଥାନ୍ତି । ଏହି ଜୀବ ଶରୀରରେ (ହରି) ହରଣକାରୀ ସହସ୍ର ଇନ୍ଦ୍ରିୟ (ଅଶ୍ୱ) ଯୁକ୍ତ ହୋଇ ଅଛନ୍ତି ॥ ୨ ॥

ସମସ୍ତଙ୍କୁ ବଶରେ ରଖୁଥିବା ସେହି ଏକ ସର୍ବଭୂତ ଅନ୍ତରାତ୍ମା ନିଜର ଗୋଟିଏ ରୂପକୁ ବହୁ ପ୍ରକାର କରିଥାଆନ୍ତି । ତାହାଙ୍କୁ ଯେଉଁ ଧୀସଂପନ୍ନ ଲୋକେ ଦେଖି ପାରନ୍ତି, ସେମାନଙ୍କର ହିଁ ଶାଶ୍ୱତ ସୁଖ ଅନ୍ୟମାନଙ୍କର ନୁହେଁ ॥୩॥

ଯେ ନିତ୍ୟ ଚେତନ ଆତ୍ମାର ମଧ୍ୟ ନିତ୍ୟ ଚେତନ ଆତ୍ମା ଏବଂ ଯେ ଏକା ଅନେକ ଜୀବଙ୍କ କାମନାକୁ ସେମାନଙ୍କର କର୍ମାନୁସାରେ ବିଧାନ କରନ୍ତି, ତାହାଙ୍କୁ ଯେଉଁ ଧୀସମ୍ପନ୍ନ ବ୍ୟକ୍ତିମାନେ ନିଜ ଅନ୍ତର ମଧ୍ୟରେ ଦେଖିପାରନ୍ତି, ସେମାନଙ୍କ ପାଇଁ ହିଁ ନିତ୍ୟଶାନ୍ତି, ଅନ୍ୟମାନଙ୍କପାଇଁ ନୁହେଁ ॥ ୪ ॥

ସେହି ସ୍ୱପ୍ରକାଶ ସଚ୍ଚିଦାନନ୍ଦ ପରବ୍ରହ୍ମଙ୍କ ନିକଟରେ ସୂର୍ଯ୍ୟ ମଧ୍ୟ ପ୍ରକାଶ ପାଏ ନାହିଁ । ଚନ୍ଦ୍ର ତାରା ବିଦ୍ୟୁତ୍ ମଧ୍ୟ ପ୍ରକାଶ ହୀନ । ତାଙ୍କ ଆଗରେ ଅଗ୍ନି ବା କେତେ ? ସେହି ବ୍ରହ୍ମଙ୍କ ପ୍ରକାଶରୁ ହିଁ ସବୁର ପ୍ରକାଶ । ତାଙ୍କର ପ୍ରକାଶ ଶକ୍ତି ଦ୍ୱାରା ହିଁ ସମସ୍ତ ବିଶ୍ୱର ପ୍ରକାଶ ॥ ୫ ॥

ବ୍ରହ୍ମୈବେଦମମୃତଂ ପୁରସ୍ତାଦ୍ ବ୍ରହ୍ମ
ପଶ୍ଚାଦ୍ ବ୍ରହ୍ମ ଦକ୍ଷିଣତଶ୍ଚୋତ୍ତରେଣ ।
ଅଧଶ୍ଚୋର୍ଦ୍ଧ୍ୱଂ ଚ ପ୍ରସୃତଂ ବ୍ରହ୍ମ
ଏବେଦଂ ବିଶ୍ୱମିଦଂ ବରିଷ୍ଠମ୍ ॥ ୬ ॥ [ମୁଣ୍ଡକ ୨।୧୧]

ଇହୈବ ସନ୍ତୋଽଥ ବିଦ୍ମସ୍ତଦ୍ ବୟଂ
ନ ଚେଦବେଦୀର୍ମହତୀ ବିନଷ୍ଟିଃ ।
ଯେ ତଦ୍ୱିଦୁରମୃତାସ୍ତେ ଭବନ୍ତି
ଅଥେତରେ ଦୁଃଖମେବାପି ଯନ୍ତି ॥ ୭ ॥

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ॥ ୮ ॥ (ଶ୍ୱେତାଶ୍ୱତର ୩।୧୯)

ଅଣୋରଣୀୟାନ୍ ମହତୋ ମହୀୟାନ୍
ଆତ୍ମା ଗୁହାୟାଂ ନିହିତୋଽସ୍ୟ ଜନ୍ତୋଃ ।
ତମକ୍ରତୁଂ ପଶ୍ୟତି ବୀତଶୋକୋ
ଧାତୁଃ ପ୍ରସାଦାନ୍ମହିମାନମୀଶମ୍ ॥ ୯ ॥
(ଶ୍ୱେତଶ୍ୱତର ୩।୨୦)

---

ଅମୃତ ସ୍ୱରୂପ ବ୍ରହ୍ମ ହିଁ ଆଗରେ, ପଛରେ, ଦକ୍ଷିଣ ଓ ବାମରେ, ଉପରେ ଓ ତଳେ ସର୍ବତ୍ର ବ୍ୟାପ୍ତ ହୋଇଛନ୍ତି । ଏହି ବିରାଟ ବିଶ୍ୱ ବ୍ରହ୍ମାଣ୍ଡ ରୂପରେ ବ୍ରହ୍ମ ହିଁ ଦେଖାଯାଆନ୍ତି ॥ ୬ ॥

ଏହି ଶରୀରରେ ବା ଇହ ଜନ୍ମରେ ଆମେ ଜାଣିବା ଯେ ସେହି ପରଂବ୍ରହ୍ମ ହେଉଛୁ ଆମେ । ଯଦି ନ ଜାଣି ପାରିବା ତେବେ ବହୁତ କ୍ଷତି ଏହି ଜନ୍ମ ନିରର୍ଥକ । ଯେଉଁମାନେ ଜାଣି ପାରନ୍ତି, ସେମାନେ ଅମର ହୋଇ ଯାଆନ୍ତି । ଅନ୍ୟମାନେ ଦୁଃଖ ପାଆନ୍ତି ॥ ୭ ॥

ବ୍ରହ୍ମ ପାଦ ନଥାଇ ଗତି କରନ୍ତି, ହାତ ନଥାଇ ଗ୍ରହଣ କରନ୍ତି, ଆଖି ନଥାଇ ଦେଖନ୍ତି କାନ ନଥାଇ ଶୁଣନ୍ତି । ସେ ଯାହା ଜାଣିବା କଥା ସବୁ ଜାଣନ୍ତି । ତାଙ୍କୁ ଜାଣିବା ଲୋକ କେହି ନାହିଁ । ସେହି ବ୍ରହ୍ମଙ୍କୁ ମହାନ ଆଦି ପୁରୁଷ କୁହାଯାଏ ॥ ୮ ॥

ଅଣୁଠାରୁ ଯେ ଆହୁରି ଅଣୁ ଅର୍ଥାତ୍ ପରମାଣୁ ପରି ଯେ ଅତି ସୂକ୍ଷ୍ମ । ସେହି ଆତ୍ମା ଜୀବର ହୃଦୟ କନ୍ଦରରେ ଲୁଚି ରହିଛନ୍ତି । ବିଧାତାର କୃପାରୁ

ସୂକ୍ଷ୍ମାତିସୂକ୍ଷ୍ମଂ କଲିଳସ୍ୟ ମଧ୍ୟେ
ବିଶ୍ୱସ୍ୟ ସ୍ରଷ୍ଟାରମନେକରୂପମ୍ ।
ବିଶ୍ୱସ୍ୟୈକଂ ପରିବେଷ୍ଟିତାରଂ
ଜ୍ଞାତ୍ୱା ଶିବଂ ଶାନ୍ତିମତ୍ୟନ୍ତମେତି ॥ ୧୦ ॥

(ଶ୍ୱେତାଶ୍ୱତର ୪।୧୪)

ସ ଏବ କାଳେ ଭୁବନସ୍ୟ ଗୋପ୍ତା
ବିଶ୍ୱସ୍ୟାଧିପଃ ସର୍ବଭୂତେଷୁ ଗୂଢ଼ଃ ।
ଯସ୍ମିନ୍ ଯୁକ୍ତା ମହର୍ଷୟୋ ଦେବାଶ୍ଚ
ତମେବ ଜ୍ଞାତ୍ୱା ମୃତ୍ୟୁପାଶାଂଶ୍ଛିନତ୍ତି ॥ ୧୧ ॥

[ଶ୍ୱେତାଶ୍ୱତର ୪।୧୫]

ଏଷ ଦେବୋ ବିଶ୍ୱକର୍ମା ମହାତ୍ମା
ସଦା ଜନାନାଂ ହୃଦୟେ ସଂନିବିଷ୍ଟଃ ।
ହୃଦା ମନୀଷା ମନସାଽଭିକ୍ଳୃପ୍ତୋ
ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି ॥ ୧୨ ॥

(ଶ୍ୱେତାଶ୍ୱତର ୪।୧୭)

---

ସର୍ବଥା ଦୁଃଖରହିତ କେବଳ ସେହି ସଙ୍କଳରହିତ ଈଶ୍ୱରଙ୍କୁ ଓ ତାଙ୍କର ମହିମାକୁ ଦେଖିପାରେ ॥ ୯ ॥

ଆମ ହୃଦୟ ଗୁହା ମଧ୍ୟରେ କେହି ସୂକ୍ଷ୍ମାତିସୂକ୍ଷ୍ମ ପରମାତ୍ମା, ବିଶ୍ୱର ସ୍ରଷ୍ଟା, ଅନେକ ରୂପୀ, ବିଶ୍ୱରେ ପରିବ୍ୟାପ୍ତ, ଏକ ଶିବ (ମଙ୍ଗଳମୟ)ଙ୍କୁ ଜାଣିଲେ ଅତ୍ୟନ୍ତ ଶାନ୍ତି ମିଳେ ॥ ୧୦ ॥

ସେହି ପରମେଶ୍ୱର ହିଁ ଆବଶ୍ୟକ ବେଳେ ଭୁବନର ରକ୍ଷାକର୍ତ୍ତା, ବିଶ୍ୱର ଅଧିପତି ଏବଂ ସକଳ ପ୍ରାଣୀର ଅନ୍ତରରେ ଗୋପନରେ ରହିଛନ୍ତି । ଯାହାଙ୍କଠାରେ ଦେବତା ଓ ମହର୍ଷିଗଣ ଧ୍ୟାନ ଦ୍ୱାରା ଯୁକ୍ତ ହୋଇ ରହିଥାଆନ୍ତି । ସେହି ପରମେଶ୍ୱରଙ୍କୁ ଜାଣି ମନୁଷ୍ୟ ମୃତ୍ୟୁପାଶକୁ ଛିନ୍ନ କରିଥାଏ ॥ ୧୧ ॥

ଏହି ବିଶ୍ୱର କର୍ତ୍ତା ମହାନ୍ ଆତ୍ମା ଦେବତା ପରମେଶ୍ୱର ଲୋକମାନଙ୍କ ହୃଦୟରେ ସର୍ବଦା ଅବସ୍ଥିତ । ହୃଦୟ ଦ୍ୱାରା, ବୁଦ୍ଧି ଦ୍ୱାରା ଓ ମନ ଦ୍ୱାରା ଧ୍ୟାନ କଲେ ସେ ଦୃଷ୍ଟ ହୁଅନ୍ତି । ଏହା ଯେଉଁମାନେ ଜାଣନ୍ତି, ସେମାନେ ଅମର ॥ ୧୨ ॥

ନ ସଂଦୃଶେ ତିଷ୍ଠତି ରୂପମସ୍ୟ
ନ ଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ ।
ହୃଦା ହୃଦିସ୍ଥଂ ମନସା ଯ ଏନମ୍
ଏବଂ ବିଦୁରମୃତାସ୍ତେ ଭବନ୍ତି ॥ ୧୩ ॥ (ଶ୍ୱେତାଶ୍ୱତର ୪।୨୦)
ନ ତସ୍ୟ କାର୍ଯ୍ୟଂ କରଣଂ ଚ ବିଦ୍ୟତେ
ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।
ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ
ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ ॥ ୧୪ ॥ (ଶ୍ୱେତାଶ୍ୱତର ୬।୮)
ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ
ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।
କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ
ସାକ୍ଷୀ ଚେତା କେବଳ ନିର୍ଗୁଣଶ୍ଚ ॥ ୧୫ ॥ (ଶ୍ୱେତାଶ୍ୱତର ୬।୧୧)
ନମସ୍ତେ ସତେ ସର୍ବଲୋକାଶ୍ରୟାୟ
ନମସ୍ତେ ଚିତେ ବିଶ୍ୱରୂପାତ୍ମକାୟ ।
ନମୋଽଦ୍ୱୈତତତ୍ତ୍ୱାୟ ମୁକ୍ତିପ୍ରଦାୟ
ନମୋ ବ୍ରହ୍ମଣେ ବ୍ୟାପିନେ ଶାଶ୍ୱତାୟ ॥ ୧୬ ॥(ମହାନିର୍ବାଣ ୩।୫୯)

---

ଏହି ପରମାତ୍ମାଙ୍କ ରୂପ ଆଖି ଆଗରେ ନଥାଏ । କେହି ଏହାଙ୍କୁ ଆଖିରେ ଦେଖେ ନାହିଁ । ହୃଦୟରେ ଥିବା ଏହାଙ୍କୁ ଯେ ଭକ୍ତିଯୁକ୍ତ ହୃଦୟରେ ନିର୍ମଳ ମନରେ ଜାଣିଥାଏ, ସେ ଅମର ଅଟେ ॥ ୧୩ ॥

ସେହି ପରବ୍ରହ୍ମଙ୍କର କାର୍ଯ୍ୟ-ଶରୀର କି କରଣ-ଇନ୍ଦ୍ରିୟ ନାହିଁ । ତାଙ୍କ ଭଳି କି ତାଙ୍କଠାରୁ ବଡ ବୋଲି କେହି ନାହିଁ । ଏହି ପରମାତ୍ମାଙ୍କ ଜ୍ଞାନ ବଳ-କ୍ରିୟାରୂପ ସ୍ୱାଭାବିକ ଏବଂ ଶକ୍ତି ହିଁ ବିବିଧ ଭାବରେ ଶ୍ରୁତ ହୋଇଥାଏ ॥ ୧୪ ॥

ସେହି ଏକ ପରମାତ୍ମା ଦେବତା ସକଳ ପ୍ରାଣୀଙ୍କ ଭିତରେ ନିଗୂଢ଼ ଭାବରେ ଅଛନ୍ତି । ସେ ସର୍ବବ୍ୟାପୀ । ସକଳ ପ୍ରାଣୀଙ୍କ ଅନ୍ତରାତ୍ମା । ସେ ସକଳ କର୍ମର ଅଧ୍ୟକ୍ଷ ବା ତତ୍ତ୍ୱାବଧାରକ । ସେ ସମସ୍ତ ଜୀବଙ୍କ ନିବାସସ୍ଥାନ । ସେ ସବୁ ଘଟଣାର ସାକ୍ଷୀ, ଚେତନା ସ୍ୱରୂପ, ସର୍ବ ଶୁଦ୍ଧ ଓ ଗୁଣାତୀତ ଅଟନ୍ତି ॥ ୧୫ ॥

ସତ୍, ସର୍ବଲୋକର ଆଶ୍ରୟ, ଚିତ୍, ବିଶ୍ୱରୂପ, ଆତ୍ମାସ୍ୱରୂପ, ଅଦ୍ୱୈତ ତତ୍ତ୍ୱ, ମୁକ୍ତିପ୍ରଦ, ସର୍ବବ୍ୟାପୀ, ଶାଶ୍ୱତ ବ୍ରହ୍ମଙ୍କୁ ଅନେକ ପ୍ରଣାମ ॥ ୧୬ ॥

ତ୍ୱମେକଂ ଶରଣ୍ୟଂ ତ୍ୱମେକଂ ବରେଣ୍ୟଂ
ତ୍ୱମେକଂ ଜଗତ୍ପାଳକଂ ସ୍ୱପ୍ରକାଶମ୍ ।
ତ୍ୱମେକଂ ଜଗତ୍କର୍ତ୍ତୃପାତୃପ୍ରହର୍ତ୍ତୃ
ତ୍ୱମେକଂ ପରଂ ନିଶ୍ଚଳଂ ନିର୍ବିକଳ୍ପମ୍ ।। ୧୭ ।।
(ମହାନିର୍ବାଣ ୩।୬୦)

ଭୟାନାଂ ଭୟଂ ଭୀଷଣଂ ଭୀଷଣାନାଂ
ଗତିଃ ପ୍ରାଣିନାଂ ପାବନଂ ପାବନାନାମ୍ ।
ମହୋଚ୍ଚୈଃ ପଦାନାଂ ନିୟନ୍ତୃ ତ୍ୱମେକଂ
ପରେଷାଂ ପରଂ ରକ୍ଷଣଂ ରକ୍ଷଣାନାମ୍ ।। ୧୮ ।।
(ମହାନିର୍ବାଣ ୩।୬୧)

ବୟଂ ତ୍ୱାଂ ସ୍ମରାମୋ ବୟଂ ତ୍ୱାଂ ଭଜାମୋ
ବୟଂ ତ୍ୱାଂ ଜଗତ୍ସାକ୍ଷିରୂପଂ ନମାମଃ ।
ସଦେକଂ ନିଧାନଂ ନିରାଲମ୍ବମୀଶଂ
ଭବାମ୍ଭୋଧିପୋତଂ ଶରଣ୍ୟଂ ବ୍ରଜାମଃ ।। ୧୯ ।।
(ମହାନିର୍ବାଣ ୩।୬୩)

---

ତୁମେ ହିଁ ଏକମାତ୍ର ଶରଣ୍ୟ, ବରେଣ୍ୟ, ଜଗତ୍ତର ପାଳକ, ଜଗତ୍ତର ପ୍ରକାଶ; ଜଗତର ସ୍ରଷ୍ଟା, ପାଳକ ଓ ସଂହାରକ । ତୁମେ ହିଁ ନିଶ୍ଚଳ, ନିର୍ବିକଳ୍ପ ପରମ ପୁରୁଷ ।। ୧୭ ।।

ତୁମେ ଭୟର ଭୟ, ଭୟଙ୍କରର ଭୟଙ୍କର, ସକଳ ପ୍ରାଣୀଙ୍କ ଗତି, ପବିତ୍ରମାନଙ୍କର ପବିତ୍ର । ବ୍ରହ୍ମା-ବିଷ୍ଣୁ-ଶିବାଦି ଅତି ଉଚ୍ଚ ପଦସ୍ଥାର ତୁମେ ହିଁ ଏକ ନିୟାମକ । ତୁମେ ରକ୍ଷକମାନଙ୍କର ରକ୍ଷକ ତଥା ପ୍ରଧାନର ପ୍ରଧାନ ପରମ ପୁରୁଷ ।। ୧୮ ।।

ଆମେ ତୁମକୁ ସ୍ମରଣ, ଭଜନ କରୁଛୁ । ଜଗତ୍ତର ସାକ୍ଷିସ୍ୱରୂପ ତୁମକୁ ପ୍ରଣାମ କରୁଛୁ । ସତ୍ ସ୍ୱରୂପ, ଅଦ୍ୱିତୀୟ, ନିରାଲମ୍ବ, ଭବସାଗର ତରିବା ସକାଶେ ଏକମାତ୍ର ପୋତ ସଦୃଶ ତୁମଠାରେ ଶରଣ ପଶୁଛୁ ।। ୧୯ ।।

ନ ତସ୍ୟ କଶ୍ଚିତ୍ ପତିରସ୍ତି ଲୋକେ
ନ ଚେଶିତା ନୈବ ଚ ତସ୍ୟ ଲିଙ୍ଗମ୍ ।
ସ କାରଣଂ କରଣାଧିପାଧିପୋ
ନ ଚାସ୍ୟ କଶ୍ଚିଜ୍ଜନିତା ନ ଚାଧିପଃ ॥ ୨୦ ॥

ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ
ତଂ ଦେବତାନାଂ ପରମଂ ଚ ଦୈବତମ୍ ।
ପତିଂ ପତୀନାଂ ପରମଂ ପରସ୍ତାଦ୍
ବିଦାମ ଦେବଂ ଭୁବନେଶମୀଡ୍ୟମ୍ ॥ ୨୧ ॥

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବ ଦେବଃ ॥ ୨୨ ॥
[ପ୍ରପନ୍ନଗୀତା । ୨୮]

ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ ।
ତସ୍ମାତ୍ କାରୁଣ୍ୟ ଭାବେନ ରକ୍ଷ ରକ୍ଷ ମହେଶ୍ୱର ॥

---

ଏହି ସଂସାରରେ ପରମେଶ୍ୱରଙ୍କର ପ୍ରଭୁ ବା ଶାସକ କେହି ନାହିଁ । ତାଙ୍କର ଚିହ୍ନ କିଛି ନାହିଁ । ସେ ହିଁ ସବୁର କାରଣ ବା ହେତୁ, ସକଳ କରଣର ସର୍ବାଧିପ । ତାଙ୍କର ସ୍ରଷ୍ଟା ଓ ଅଧିପତି ଅଛି କେହି ନାହିଁ ॥ ୨୦ ॥

ସେହି ସକଳ ଈଶ୍ୱରଙ୍କ ଉପରେ ମହେଶ୍ୱର, ଦେବତାମାନଙ୍କ ଉପରେ ପରମ ଦେବତା, ପ୍ରଭୁମାନଙ୍କ ଉପରେ ପରମ ପ୍ରଭୁ ସମଗ୍ର ଭୁବନର ବନ୍ଦ୍ୟ ପରମାତ୍ମା ଦେବତାଙ୍କୁ ଜାଣୁଛୁ ॥ ୨୧ ॥

ତୁମେ ହିଁ ମାତା, ପିତା, ବନ୍ଧୁ, ସଖା, ବିଦ୍ୟା, ଧନ ସବୁକିଛି । ତୁମେ ହିଁ ମୋର ଦେବ ଦେବ ପରମଦେବ ॥ ୨୨ ॥

ଆଉ କେଉଁଠି ମୋର ଶରଣ ରହିବାପାଇଁ କେହି ନାହିଁ । ତୁମପାଖରେହିଁ ଶରଣ ପଶୁଛି । ହେଶ୍ ହେ ବିଶ୍ୱନିୟନ୍ତା ମହାନ ଈଶ୍ୱର ! କରୁଣା କରି ମୋତେ ରକ୍ଷାକର ॥

ଏହାପରେ ଗୁରୁ ଓ ଇଷ୍ଟଦେବଙ୍କୁ ଧ୍ୟାନ କରି ବ୍ରାହ୍ମମୁହୂର୍ତ୍ତରେ ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟା ତ୍ୟାଗ କରିବ । ପୃଥିବୀ ମାତା ଆମକୁ ଧରି ରଖି ଆମର କେତେ ଅଳି-ଦଳି ସହୁଛି । ତା' ଉପରେ ପାଦ ଦେବା ପୂର୍ବରୁ କୃତଜ୍ଞତା ଓ ନମ୍ରତା ପ୍ରକାଶ କରି କହିବ —

ସମୁଦ୍ରମେଖଳେ ଦେବି ପର୍ବତସ୍ତନମଣ୍ଡଳେ ।
ବିଷ୍ଣୁପତ୍ନି ନମସ୍ତୁଭ୍ୟଂ ପାଦସ୍ପର୍ଶଂ କ୍ଷମସ୍ୱ ମେ ॥

ହେ ଧରଣୀ ମାତା ! ସମୁଦ୍ର ତୁମର କଟିର ମେଖଳା ଭଳି, ପର୍ବତ ତୁମର ସ୍ତନ ପରି । ଏ ବିଶ୍ୱର ରକ୍ଷାକର୍ତ୍ତା ଜଗତ୍ପିତା ଭଗବାନ୍ ବିଷ୍ଣୁଙ୍କ ତୁମେ ପତ୍ନୀ ଅଛ । ତୁମକୁ ମୋର ପ୍ରଣାମ । ମା' ମୋର ପାଦସ୍ପର୍ଶ ଦୋଷ କ୍ଷମାକର ॥

## ମୁଖ ପ୍ରକ୍ଷାଳନ—

ତା'ପରେ 'ଓଁ ବଶ୍ୟମୁଖି ରାଜମୁଖି ସ୍ୱାହା' ମନ୍ତ୍ର ପଢ଼ି ସାତଥର ମୁଖ ପ୍ରକ୍ଷାଳନ କଲେ ସମସ୍ତେ ବଶୀଭୂତ ହେବେ । ଦେବ ବିଗ୍ରହ ଦର୍ଶନ ପରେ ଦର୍ପଣରେ ନିଜ ମୁଖ ଦର୍ଶନ କରିବ । ତାପରେ ଗୁରୁଜନମାନଙ୍କୁ ବିନୟର ସହ ପ୍ରଣାମ କରିବ ।

## ପ୍ରାତଃଭ୍ରମଣ ଓ ପୁଷ୍ପାବଚୟ—

ତା'ପରେ ପ୍ରାତଃ ଭ୍ରମଣ ଓ ପୁଷ୍ପାବଚୟ ସ୍ନାନ ପୂର୍ବରୁ କରିବ ।

## ନିତ୍ୟକୃତ୍ୟ ଓ ସ୍ନାନ—

ଦନ୍ତଧାବନ, ମଳୋତ୍ସର୍ଗାଦି କ୍ରିୟା ସମାପନ କରି ଶୁଦ୍ଧ ନିର୍ମଳ ଜଳରେ ତୀର୍ଥ ଭାବନା କରି ସ୍ନାନ କରିବ ।

## ପୂଜାଗୃହ—

ସ୍ନାନ ପରେ ପୂଜାଗୃହରେ ଦେବ ମନ୍ଦିର ଭାବନାରେ ପ୍ରବେଶ କରିବ । ପୂଜାଗୃହ ଖୋଲିବା ପୂର୍ବରୁ କବାଟରେ କରାଙ୍ଗୁଳି ଦ୍ୱାରା ମୃଦୁ ଶବ୍ଦ କରିବ । ତା'ପରେ ପ୍ରଣାମ ପୁରଃସର ଗୃହ ସଂମାର୍ଜନ ଓ ଭୂମି ଶୁଦ୍ଧି ପାଇଁ ସୁବାସିତ ଜଳ ସାମାନ୍ୟ ସିଞ୍ଚନ କରିବ । ପୂଜାଗୃହକୁ ସର୍ବତୋଭାବେ ନିର୍ମଳ, ପରିଶୁଦ୍ଧ ଓ ସୁବାସିତ ରଖିବ ।

## ଲଘୁ ପଞ୍ଚୋପଚାର ପୂଜା—

ପ୍ରଥମେ ବାସି ଫୁଲସବୁ ବାହାର କରି ଦେବ ବିଗ୍ରହମାନଙ୍କୁ ସେବକ ବୁଦ୍ଧିରେ ସ୍ନାନ କରାଇଦେବ । ବିଗ୍ରହ ନଥାଇ କାଗଜ ଫଟୋ ପ୍ରଭୃତି ଥିଲେ ଫୁଲଟିଏ ସୁବାସିତ (ଗୋଲାପ) ଜଳରେ ବୁଡ଼ାଇ 'ଅମୁକ ଦେବାୟ / ଦେବ୍ୟୈ ସ୍ନାନୀୟଂ ସମର୍ପୟାମି' (ବା ଓଡ଼ିଆରେ 'ସ୍ନାନ କରାଇ ଦେଉଛୁ' ବୋଲି ଅନୁମତ ଭାଷା) କହି 'ତୁମେ ନିତ୍ୟ ଶୁଦ୍ଧ । ତୁମର ଏ ସଂସାରର ସମସ୍ତଙ୍କୁ ପରିଶୁଦ୍ଧ କର' ବୋଲି ଭକ୍ତିଭାବନାରେ 'ଶିବ (ମଙ୍ଗଳ) ତୀର୍ଥ (ଜଳ)'ରେ ଅଭିଷିଞ୍ଚିତ କରିବ । କାରଣ ଶିବ ଜଳତତ୍ତ୍ୱ । ତାଙ୍କର ନିବାସ ହିମାଳୟରେ, ମସ୍ତକରେ ଗଙ୍ଗା, ଜଳାଭିଷେକରେ ତାଙ୍କର ତୃପ୍ତି, ବର୍ଷା ମଧ୍ୟ ଜଳ ଭଳି ସ୍ୱଚ୍ଛ । ଶିବଙ୍କ ପାଟକୁ ଗଲାବେଳେ 'ବଂ ବଂ ଶିବ ଶିବ, ବା ବଂ ବଂ ହରହର' ବୋଲି କହିବାକୁ ହୁଏ । କାରଣ 'ବଂ' ହେଉଛି ଅମୃତ ବୀଜ । ମଣିଷ ସ୍ନାନ କଲାପରେ ସତେଜ ଦେଖାଯାଏ ଓ କର୍ମ କରିବା ସକାଶେ ନବୀନ ପ୍ରେରଣା ପାଏ । ତେଣୁ ଦେବସ୍ନାନ ବେଳେ ମଧ୍ୟ ଜଳକୁ ସାମାନ୍ୟ ଜଳ ମନେ ନକରି ଶିବୋଦକ ତୀର୍ଥଜଳ ଓ ଅମୃତବାରି ମନେକରି ସବୁ ଦେବ ବିଗ୍ରହ ସଜୀବ ଓ ପ୍ରାଣବନ୍ତ ଏବଂ ସେମାନେ ପ୍ରଫୁଲ୍ଲ ହେଉଛନ୍ତି ଭାବି ନିଜେ ସ୍ନାନରଶୀତ-ସୁଖସ୍ପର୍ଶରେ ଶୁଦ୍ଧବୁଦ୍ଧ ଓ ପ୍ରଫୁଲ୍ଲିତ ହେବ ।

ପଞ୍ଚୋପଚାର କହିଲେ 'ଗନ୍ଧପୁଷ୍ପେ ଧୂପଦୀପୌ ନୈବେଦ୍ୟଂ ପଞ୍ଚ ତେ କ୍ରମାତ୍'—କ୍ରମଶଃ (୧) ଗନ୍ଧ, (୨) ପୁଷ୍ପ, (୩) ଧୂପ, (୪) ଦୀପ ଓ (୫) ନୈବେଦ୍ୟ ଅଟନ୍ତି ।

ପୃଥିବୀର ଗୁଣ ହେଉଛି ଗନ୍ଧ । ଶାସ୍ତ୍ର ମଧ୍ୟ କହେ 'ଗନ୍ଧବତୀ ପୃଥିବୀ' । ଗଣେଶ ହେଉଛନ୍ତି ଏହି ଗନ୍ଧତତ୍ତ୍ୱର ଦେବତା । ପଞ୍ଚୋପଚାରରେ ଗନ୍ଧ ପ୍ରଥମ ତତ୍ତ୍ୱ । ପଞ୍ଚ ଦେବତାଙ୍କ ମଧ୍ୟରେ ଗଣେଶ ଅଗ୍ରପୂଜ୍ୟ । ହସ୍ତୀ ତା'ର ଶୁଣ୍ଢ ନାସାରେ ପୃଥିବୀର ଗନ୍ଧ ଆଘ୍ରାଣ କରି କରି ବୁଲୁଥାଏ । ଗଣେଶଙ୍କ ଗଜମୁଖର ଶୁଣ୍ଢନାସା ସେଇଥିପାଇଁ ପରିକଳ୍ପିତ । ଗଣେଶଙ୍କ ଉଦରର ପୃଥୁଳତା ପୃଥିବୀର ପୃଥୁଳତାର ପ୍ରତୀକ । ତେଣୁ ଚନ୍ଦନ ସେବାରେ ଦେବତାମାନଙ୍କ ଆନନ୍ଦ ପାଇଁ ପ୍ରଥମେ ଚନ୍ଦନ ଘୋରି ଟିକିଏ ଶ୍ରୀକର୍ପୂର ମିଶାଇ 'ଅମୁକ ଦେବାୟ / ଦେବ୍ୟୈ ଚନ୍ଦନଂ ଗନ୍ଧଂ ସମର୍ପୟାମି' କହି 'ହେ ପ୍ରଭୁ'! ତୁମେ ଏ ସଂସାରକୁ ଗନ୍ଧଭରା କରିଛ । ମଳୟାଚଳରୁ ଚନ୍ଦନର ସୁଗନ୍ଧ ସହ କେତେ କୁସୁମର ସୁରଭି ନେଇ ମଳୟାନିଳ ସମସ୍ତଙ୍କୁ ଆମୋଦିତ କରୁଛି ! ଦେଖ ତ ତୁମର ଏ ଚନ୍ଦନ କେମିତି ସୁଗନ୍ଧ ?' ବୋଲି ଭାବନା କରି ଚନ୍ଦନର ଟୋପା ଲଗାଇ ଦେଇ ଦେବତାମାନେ ଆନନ୍ଦିତ ହେଲେ ଭକ୍ତ ନିଜେ ଆନନ୍ଦିତ ହେବ ।

ତା'ପରେ ପୁଷ୍ପ । ପୁଷ୍ପ ହେଉଛି ଆକାଶ ବା ବ୍ୟୋମତତ୍ତ୍ୱର ପ୍ରତୀକ । ତେଣୁ କୁହାଯାଏ—'ଖଂ (ଆକାଶଂ) ପୁଷ୍ପମ୍ ।' ଆକାଶର ଦେବତା ବିଷ୍ଣୁ । 'ବିଷ୍ଲୃ—ବ୍ୟାପ୍ତୌରୁ ଗଠିତ ବିଷ୍ଣୁ ଶବ୍ଦର ଅର୍ଥ ବ୍ୟାପନଶୀଳ । ଭଗବାନ୍ ବିଷ୍ଣୁ ତ୍ରିବିକ୍ରମ ବାମନ ଅବତାରରେ ତିନି ପାଦରେ ପୃଥିବୀକୁ ଅଭିବ୍ୟାପ୍ତ କରିଥିଲେ ବୋଲି ବେଦରେ ମଧ୍ୟ କୁହାଯାଇଛି—'ଏକୋ ବିମମେ ତ୍ରିଭିରିତ୍ ପଦେଭିଃ' । ବୈଦିକ ବିଷ୍ଣୁ ଓ ବେଦର ସୂର୍ଯ୍ୟ ଅଭିନ୍ନ । ଉଭୟେ ଦ୍ୟୁଲୋକର ଦେବତା । ବିଷ୍ଣୁଙ୍କ ବର୍ଣ୍ଣ ମଧ୍ୟ ଆକାଶର ବର୍ଣ୍ଣ । ଆକାଶ ଅଭିମୁଖରେ ପୁଷ୍ପର ଉଦ୍‌ଗମ ହୁଏ । ତେଣୁ ଦେବତା ମାନଙ୍କୁ ପୁଷ୍ପର ଉଦ୍‌ଗମ ଅନୁସାରେ ସୁବାସିତ ଫୁଲ ଦେଇ ପୁଷ୍ପର କୋମଳତା ଓ ଆକାଶର ମହନୀୟତାରେ ମଣ୍ଡିତ ମନକୁ ମହିମାମୟ କରିବା ସଙ୍ଗେ ସଙ୍ଗେ ଏ ସୃଷ୍ଟିକୁ ଆହୁରି ସୁନ୍ଦର କରିବା ପାଇଁ ପ୍ରାର୍ଥନା କରି 'ଅମୁକ ଦେବାୟ/ ଦେବ୍ୟୈ ପୁଷ୍ପଂ ସମର୍ପୟାମି' କହି ରଙ୍ଗିନ୍ ଫୁଲରେ ଦେବତାମାନଙ୍କ ଶୃଙ୍ଗାର ବା ବେଶଭୂଷା କରିଦେବ ।

ତା'ପରେ ଧୂପ । ଧୂପ ହେଉଛି ପ୍ରାଣ ବା ମରୁତ୍ ତତ୍ତ୍ୱର ପ୍ରତୀକ । ମଣିଷର ପ୍ରାଣଶକ୍ତି ବା ଜୀବନୀଶକ୍ତି ହେଉଛନ୍ତି ଦେବୀ । ତେଣୁ ଦେବୀ ପୂଜାରେ ଧୂପର ବହୁଳ ବ୍ୟବହାର କରାଯାଏ । ପଞ୍ଚଭୂତାତ୍ମକ ଶରୀରରୁ ପ୍ରାଣବାୟୁ ଗୁଲିଗଲେ ଦେହଟାକୁ କୁହାଯାଏ ଶବ । ସେଥିରେ ପ୍ରାଣଶକ୍ତିର ସଞ୍ଚାର ହେଲେ, ତାହା ହୁଏ 'ଶିବ' ଏବଂ କାର୍ଯ୍ୟକ୍ଷମ ମଙ୍ଗଳମୟ ବିଗ୍ରହ । ତେଣୁ ପ୍ରାଣତତ୍ତ୍ୱ ବା ଶକ୍ତିକୁ ସମୃଦ୍ଧିତ ଶକ୍ତିମାନ୍ ହେବାପାଇଁ ଚେଷ୍ଟା ସମସ୍ତଙ୍କର କର୍ତ୍ତବ୍ୟ । ଶକ୍ତି ବିନା ସବୁ ଜଡ଼, ନିଷ୍ଫଳ, ନିର୍ଜୀବ । ମଣିଷ ଧରାପୃଷ୍ଠରେ ପ୍ରାଣବାନ୍ ହୋଇ ଜନ୍ମ ହେବାମାତ୍ରେ ପ୍ରଥମେ ଦେଖେ ମା'କୁ, ପ୍ରଥମ ସ୍ପର୍ଶ ପାଏ ମାଆର ଓ ଡାକେ ମା'କୁ । ସେ ହିଁ ପ୍ରାଣଦାତ୍ରୀ ଆଦ୍ୟାଶକ୍ତି । ତା'ର ପୂଜା ହିଁ ମାତୃପୂଜା । ସନ୍ତାନ ଲାଗି ଧୂପିତ ହୋଇ ନିଃଶେଷ ହୋଇଯାଏ । ତାକୁ ପାଇବାକୁ ହେଲେ ଶିଶୁମନର ସରଳତା ଓ ନିଷ୍କପଟତା ଆବଶ୍ୟକ । 'କ୍ଷୁଧା-ତୃଷାର୍ତ୍ତାଃ ଜନନୀଂ ସ୍ମରନ୍ତି'—ଭୋକ ହେଲେ, ଶୋଷ ହେଲେ, ବିପଦ ପଡ଼ିଲେ ସନ୍ତାନର ସ୍ମୃତିକୁ ଆସେ ମା' ଓ ତା'ର ବରାଭୟ ମୁଦ୍ରା । ନିଜର ପ୍ରତି ଶ୍ୱାସ ପ୍ରଶ୍ୱାସରେ ତା'ର ସ୍ମରଣ ଦ୍ୱାରା ପ୍ରାଣବାନ୍ ଓ ବୀର୍ଯ୍ୟବାନ୍ ହୁଅ—'ଅମୁକ ଦେବାୟୈ/ଦେବ୍ୟୈ ଧୂପଂ ସମର୍ପୟାମି' କହି ଧୂପ ଟିକିଏ ଦିଅ ।

ପ୍ରାଣଶକ୍ତିର ସଂଗ୍ରହ ପରେ ଆସିଯାଏ ଜ୍ୟୋତି । ଶିଶୁଟି ଆଖିରେ ଦେଖେ ଏ ସଂସାରର ଦିବ୍ୟ ପ୍ରକାଶ । ସୂର୍ଯ୍ୟଚନ୍ଦ୍ରଙ୍କ ଆଲୋକରେ ବସ୍ତୁର ପ୍ରକାଶ ହୁଏ ସତ କିନ୍ତୁ ଆଖି ନଥିଲେ ବା ଆଖିରେ ଜ୍ୟୋତି ନଥିଲେ, ସବୁ ଅନ୍ଧାର । ତେଣୁ ମଣିଷ ଆଖିରେ ଲିଭିଛି ଦିବ୍ୟ ଜ୍ୟୋତି, ଚନ୍ଦ୍ରସୂର୍ଯ୍ୟଙ୍କ ଅଂଶ ବା ଦ୍ୟୁତି । ଘିଅଦୀପଟିଏ ଜାଳି 'ଅମୁକ ଦେବାୟୈ/ଦେବ୍ୟୈ ଦୀପଂ ଦର୍ଶୟାମି' କହି ନିଜ ଆଖିରେ ଜ୍ୟୋତି ଦେଇଥିବାରୁ ଆକାଶରେ ସୂର୍ଯ୍ୟଚନ୍ଦ୍ର ଗ୍ରହ ନକ୍ଷତ୍ର ରଖି ସଂସାରକୁ ପ୍ରକାଶ କରୁଥିବାରୁ ଐଶୀଶକ୍ତି ପ୍ରତି କୃତଜ୍ଞତା ପ୍ରକାଶ କରି ଦିବ୍ୟସତ୍ତାକୁ ସର୍ବତ୍ର ଅନୁଭବ କରି । ଦିବ୍ୟଜ୍ୟୋତିର ଧ୍ୟାନରେ ତଲ୍ଲୀନ ହୁଅ ।

ଏ ବିଶ୍ୱ 'ଈଶାବାସ୍ୟ' ଈଶ୍ୱରଙ୍କ ବାସଯୋଗ୍ୟ ଭୂମି । 'ଯତ୍କିଂଚ ଜଗତ୍ୟାଂଜଗତ୍'—ଜଗତରେ ଯାହାକିଛି ଅଛି, ଏହାର ଅଣୁ

ପରମାଣୁରେ ଐଶୀଶକ୍ତିର ସତ୍ତା ଅନ୍ତର୍ନିହିତ । ମା'ର ସ୍ତନରେ କ୍ଷୀରର ସଞ୍ଚାର କରିବାଠାରୁ, ଝରଣା ଓ ନଦୀରେ ପାନୀୟ ଜଳର କ୍ଷରଣ ତଥା ବୃକ୍ଷଲତାରେ ଭୋଜ୍ୟ ଫଳର ବିଧାନ ଓ ସଞ୍ଚୟ—ଯିଏ ଆମପାଇଁ କରିଛନ୍ତି, ଆମେ ଖାଇଲାବେଳେ ତାଙ୍କ କଥା ଚିନ୍ତା ନ କରିବା ଓ ତାଙ୍କଠାରେ କୃତଜ୍ଞତା ପ୍ରକାଶ ନ କରିବାଠାରୁ ପାପ ଆଉ କିଛି ନାହିଁ । 'ତେନ ତ୍ୟକ୍ତେନ ଭୁଞ୍ଜୀଥାଃ'—ତେଣୁ ତାଙ୍କ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ କରି, ତାଙ୍କଠାରେ ସମର୍ପଣ କରି, ତାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରି ଭୋଗ କରିବାକୁ ହେବ । ଭୋଗରେ ଆତ୍ମହରା ହୋଇ, ଅନ୍ନଦାତ୍ରୀ ମା'କୁ ଭୁଲିଯିବା ଅନୁଚିତ । 'ମା ଗୃଧଃ'—ଲୋଭ କରି ଅତି ଭୋଗରେ ଲିପ୍ତ ହୁଅନାହିଁ । 'କସ୍ୟସ୍ୱିଦ୍ ଧନମ୍ ?'—ଧନ ବା କାହାର ? କିଏ ବା ନେଇ ଗଲାଣିବ ? ସବୁ ଯା'ର ତା'କୁ ସ୍ମରଣ କର ! 'ତଦୀୟଂ ବସ୍ତୁ ଗୋବିନ୍ଦ ତୁଭ୍ୟମେବ ସମର୍ପୟେ'—ଭଗବାନ୍‌ଙ୍କ ତୋ ଜିନିଷ ତୋତେ ଦେଉଛି, ମୋର କିଛି ନାହିଁ. ମୋ ଅପରାଧ କ୍ଷମାକର' ବୋଲି 'ଅମୁକ ଦେବାୟ/ଦେବ୍ୟୈ ନୈବେଦ୍ୟଂ ସମର୍ପୟାମି' ବୋଲି ନିବେଦନ କରି ତା'ର 'ନୈବେଦ୍ୟ'—ପ୍ରସାଦାମୃତ ଗ୍ରହଣ କର । ନିଜକୁ ଅମୃତର ସନ୍ତାନ ମନେକର ।

ଏହାହିଁ ତାତ୍ପର୍ଯ୍ୟପୂର୍ଣ୍ଣ ପଞ୍ଚୋପଚାର ପୂଜା ।
ଓଁ ଶ୍ରୀ ଗୁରବେ ନମଃ ।

## ଶ୍ରୀ ଗଣେଶ—

ଗଣଦେବତା ଗଣେଶ (ଗଣ+ଈଶ) । ଶିଷ୍ୟଗଣଙ୍କ ଦେବତା ଭାବରେ ସେ ଗୁରୁ । ତେଣୁ ଶୁକ୍ଳାମ୍ବରଧର ବିଷ୍ଣୁ ବା ବ୍ୟାପନଶୀଳ ଦେବତା । ଦେବଗଣଙ୍କ ଅଧିପତି ବୃହସ୍ପତି ରୂପେ ତାଙ୍କର ପୂଜା । ବେଦର 'ଗଣାନାଂ ତ୍ୱାଂ ଗଣପତିଂ ହବାମହେ' ଇତ୍ୟାଦି ମନ୍ତ୍ର ଦେବଗଣର ଅଧିପତି ବୃହସ୍ପତିଙ୍କ ପାଇଁ ଉଦ୍ଦିଷ୍ଟ । ଉକ୍ତ ମନ୍ତ୍ରଟି ଗଣେଶଙ୍କ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇଥାଏ । ପଶୁଭାବାପନ୍ନ ଅଜ୍ଞାନ

ନରଗଣର ଜ୍ଞାନଦାତା ବିଘ୍ନବିନାଶକ ସେ ଅଗ୍ରପୂଜ୍ୟ ଶୁଭସୂଚକ ହସ୍ତୀମୁଖ ଦେବତା—ଗଣେଶ । ସେ ମୂଳଦେବତା—ମୂଳାଧାରର ଦେବତା । ଦିବ୍ୟ ପ୍ରାସାଦ ସକାଶେ ଭବ୍ୟ ଆଧାର ବା ଦୃଢ଼ ଭିତ୍ତି ଆବଶ୍ୟକ । ମୂଳାଧାରକୁ ଦୃଢ଼ କଲେ, ସବୁ ଦୃଢ଼ତର ହେବ— କୁଣ୍ଡଳିନୀ ଜାଗ୍ରତ ହେବ । ମୂଳାଧାର ପଦ୍ମରେ ସାର୍ଦ୍ଧତ୍ରି ବଳୟାକୃତିରେ କୁଣ୍ଡଳିନୀ ଶକ୍ତି ସୁପ୍ତ । ଋଦ୍ଧି ଓ ସିଦ୍ଧିଙ୍କ ଅଧିପତି ଗଣେଶ ସନ୍ତୋଷ ହେଲେ, କୁଣ୍ଡଳିନୀ ଜାଗ୍ରତ ହେବ, ଅଜ୍ଞାନାନ୍ଧକାର ଦୂର ହୋଇଯିବ ଏବଂ ସହସ୍ରାରରେ ସହସ୍ରାଂଶୁ ବା ଜ୍ଞାନ ସୂର୍ଯ୍ୟ ଉଦୟ ହେବେ । ସାପଟିଏ ଦେଖିଲେ, ହାତୀ କ'ଣ କରେ ଜାଣନ୍ତି ? ତା'ର ଶୁଣ୍ଢରେ ସାପକୁ ଟେକି ଉପରକୁ ଉଠାଇ ଛାଡ଼ିଦିଏ । ମୂଳାଧାର ପଦ୍ମରେ ଶୋଇଥିବା କୁଣ୍ଡଳିନୀ-ସର୍ପର ଉତ୍ଥାନ ପାଇଁ ଗଜମୁଖ ଗଣେଶଙ୍କ ପୂଜା ।

## ଶ୍ରୀ ଗଣେଶ ଧ୍ୟାନଂ—

ଓଁ ଶୁକ୍ଲାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜମ୍ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥ ୧ ॥

ଖର୍ବଂ ସ୍ଥୂଳତନୁଂ ଗଜେନ୍ଦ୍ରବଦନଂ ଲମ୍ବୋଦରଂ ସୁନ୍ଦରଂ
ପ୍ରସ୍ୟନ୍ଦନ୍ମଦଗନ୍ଧଲୁବ୍ଧମଧୁପବ୍ୟାଲୋଲଗଣ୍ଡସ୍ଥଳମ୍ ।
ଦନ୍ତାଘାତବିଦାରିତାରିରୁଧିରୈଃ ସିନ୍ଦୂରଶୋଭାକରଂ
ବନ୍ଦେ ଶୈଳସୁତାସୁତଂ ଗଣପତିଂ ସିଦ୍ଧିପ୍ରଦଂ କାମଦମ୍ ॥ ୨ ॥

---

ଶୁକ୍ଳବସ୍ତ୍ର ପରିହିତ, ବ୍ୟାପନଶୀଳ, ଚନ୍ଦ୍ରସୁନ୍ଦର, ଚତୁର୍ଭୁଜ, ପ୍ରସନ୍ନମୁଖ ଗୁରୁ ଗଣେଶଙ୍କୁ ସକଳ ବିଘ୍ନ-ଶାନ୍ତି ନିମିତ୍ତ ଧ୍ୟାନ କରୁଛୁ ।। ୧ ।।

ଖର୍ବାକୃତି, ସ୍ଥୂଳକାୟ, ହସ୍ତୀମୁଖ, ଲମ୍ବୋଦର, ଅଥଚ ସୁନ୍ଦର, ଯାହାଙ୍କ ଗଣ୍ଡସ୍ଥଳ କପୋଳକ୍ଷରିତ ମଦଜଳର ଗନ୍ଧ ପ୍ରତି ଲୋଭୀ ଭ୍ରମରମାନଙ୍କ ଚଳାଚଳରେ ଚଞ୍ଚଳ; ଯାହାଙ୍କ ଦନ୍ତର ଆଘାତ ଦ୍ୱାରା ବିଦୀର୍ଣ୍ଣ ଶତ୍ରୁମାନଙ୍କ ରକ୍ତରେ ସିନ୍ଦୂର ପରି ଶୋଭା ହୋଇଛି; ସେହି ଶୈଳଜା ପାର୍ବତୀଙ୍କ ପୁତ୍ର ସିଦ୍ଧିପ୍ରଦ ଓ କାମଦ ଗଣେଶଙ୍କୁ ବନ୍ଦନା କରୁଛୁ ।। ୨ ।।

ଗଜାନନାୟ ମହସେ ପ୍ରତ୍ୟୂହତିମିରଚ୍ଛିଦେ ।
ଅପାରକରୁଣାପୂର ତରଙ୍ଗିତଦୃଶେ ନମଃ ॥ ୩ ॥

ଅଗଜାନନପଦ୍ମାର୍କଂ ଗଜାନନମହର୍ନିଶମ୍ ।
ଅନେକଦନ୍ତଂ ଭକ୍ତାନାମେକଦନ୍ତମୁପାସ୍ମହେ ॥ ୪ ॥

ଅନ୍ତରାୟ-ତିମିରୋପଶାନ୍ତୟେ ଶାନ୍ତପାବନମଚିନ୍ତ୍ୟବୈଭବମ୍ ।
ତନ୍ନରଂ ବପୁଷି କୁଞ୍ଜରଂ ମୁଖେ ମନ୍ମହେ କମପି ତୁନ୍ଦିଲଂ ମହଃ ॥୫॥

ଲମ୍ବୋଦରଂ ପରମସୁନ୍ଦରମେକଦନ୍ତଂ
ରକ୍ତାମ୍ବରଂ ତ୍ରିନୟନଂ ପରମଂ ପବିତ୍ରମ୍ ।
ଉଦ୍ୟଦ୍ଦିବାକର-କରୋଜ୍ଜ୍ୱଳକାୟକାନ୍ତଂ
ବିଘ୍ନେଶ୍ୱରଂ ସକଳବିଘ୍ନହରଂ ନମାମି ॥ ୬ ॥

ଦେବେନ୍ଦ୍ରମୌଳିମନ୍ଦାରମକରନ୍ଦକଣାରୁଣାଃ ।
ବିଘ୍ନଂ ହରନ୍ତୁ ହେରମ୍ବ ଚରଣାମ୍ବୁଜରେଣବଃ ॥ ୭ ॥

---

ବିଘ୍ନରୂପକ ଅନ୍ଧକାର ନାଶକ ମହାତେଜା ଗଣେଶ, ଯାହାଙ୍କର ନୟନ ଅନେକ କରୁଣା ଜଳରେ ଭରପୂର ହୋଇ ତରଙ୍ଗାୟିତ, ତାଙ୍କୁ ମୋର ନମସ୍କାର ॥ ୩ ॥

(ଅଗ) ପର୍ବତ (ଜା) ଜାତା ପାର୍ବତୀଙ୍କ ମୁଖପଦ୍ମକୁ ଉଲ୍ଲସିତ କରିବାରେ ସୂର୍ଯ୍ୟ ସଦୃଶ, ଭକ୍ତମାନଙ୍କ ପାଇଁ ଅନେକ ଅଭୀଷ୍ଟଦାତା ଏକଦନ୍ତ ଗଜାନନଙ୍କୁ ମୁଁ ଦିନରାତି ସବୁବେଳେ ଉପାସନା କରୁଛି ॥ ୪ ॥

ବିଘ୍ନରୂପକ ଅନ୍ଧକାରର ଶାନ୍ତି ନିମିତ୍ତ ଶାନ୍ତ, ପବିତ୍ର, ଚିନ୍ତାତୀତ-ବିଭବଯୁକ୍ତ ନର ଶରୀରରେ ଗଜମୁଖ ବିଶିଷ୍ଟ ସେଇ ଅଲୌକିକ ବିପୁଳ ତେଜକୁ ଚିନ୍ତା କରୁଛି ॥ ୫ ॥

ଲମ୍ବୋଦର, ପରମ ସୁନ୍ଦର, ଏକଦନ୍ତ, ରକ୍ତାମ୍ବର ତ୍ରିନୟନ; ପରମ ପବିତ୍ର, ଉଦୟକାଳୀନ ସୂର୍ଯ୍ୟଙ୍କ କିରଣ ପରି ଯାହାଙ୍କ ଶରୀର ଅରୁଣବର୍ଣ୍ଣ, ବିଘ୍ନମାନଙ୍କର ଶାସକ, ସକଳ ବିଘ୍ନ ହରଣକାରୀ ଗଣେଶଙ୍କୁ ପ୍ରଣାମ କରୁଛି ॥ ୬ ॥

ଦେବରାଜ ଇନ୍ଦ୍ରଙ୍କ ମସ୍ତକସ୍ଥିତ ମନ୍ଦାର ଫୁଲର ମକରନ୍ଦ ବା ମଧୁକଣା (ପ୍ରଣାମବେଳେ) ମିଶି ଅରୁଣ ବର୍ଣ୍ଣ ଧାରଣ କରିଥିବା ଗଣେଶଙ୍କ ପାଦଧୂଳି ସକଳ ବିଘ୍ନ ହରଣ କରନ୍ତୁ ॥ ୭ ॥

## ଶ୍ରୀ ଭାସ୍କର ବା ସୂର୍ଯ୍ୟ —

'ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ'

—ସୂର୍ଯ୍ୟ ହେଉଛନ୍ତି ଜଗତର ଆତ୍ମା । ତାଙ୍କର ଉଦୟରେ ସମସ୍ତ ଜୀବଜଗତର ନିଦ୍ରାଭଙ୍ଗ ହୁଏ ଓ ଚୈତନ୍ୟ-ଜାଗ୍ରତ ହୁଏ । ସମସ୍ତେ ନିଜ ନିଜ କର୍ମରେ ପ୍ରବୃତ୍ତ ହୁଅନ୍ତି । ତେଣୁ ସୂର୍ଯ୍ୟ ହେଉଛନ୍ତି କର୍ମ ପ୍ରେରଣାର ପ୍ରବୋଧକ ଦେବତା । ଆଲୋକ ନଥିଲେ ଚକ୍ଷୁ ବୃଥା ଏବଂ ଚକ୍ଷୁ ନଥିଲେ ଆଲୋକ ନିଷ୍ପ୍ରୟୋଜନ । ସୂର୍ଯ୍ୟ କେବଳ 'ଜଗଦେକ ଚକ୍ଷୁଃ'—ଜଗତର ଏକମାତ୍ର ଚକ୍ଷୁ ଏବଂ ସର୍ବ ତେଜ ବା ସକଳ ଆଲୋକର ଆଧାର । ତାଙ୍କର ଉଦୟ ଫଳରେ ଅନ୍ଧାରରୁ ଜନ୍ମ ନିଏ ଏ ପୃଥିବୀ । ତେଣୁ ତାଙ୍କର ନାମ ସୂର୍ଯ୍ୟ ବା ସବିତା (ଅର୍ଥାତ୍ ପ୍ରସବକାରିଣୀ ଦେବତା) । ତାଙ୍କର ଏକଚକ୍ର ବିଶିଷ୍ଟ ରଥର ସାରଥି ହେଉଛନ୍ତି ଅରୁଣ । ସୂର୍ଯ୍ୟ ଉଦୟ ପୂର୍ବରୁ ଉଷାକାଳରେ ସିନ୍ଦୂର ଫାଟିଲାବେଳେ ଯେଉଁ ଅରୁଣ ବର୍ଣ୍ଣ ଆମେ ଦେଖିବାକୁ ପାଉଁ, ତାହାକୁ ଲକ୍ଷ୍ୟ କରି ବୋଧହୁଏ ଅରୁଣଙ୍କୁ କରାଯାଇଛି ସୂର୍ଯ୍ୟଙ୍କ ରଥର ସାରଥି । ସୂର୍ଯ୍ୟଙ୍କ ଉଦୟରେ ପ୍ରସ୍ଫୁଟିତ ପଦ୍ମର ଶୋଭାକୁ ଲକ୍ଷ୍ୟ କରି ମନୀଷି ଦେଇଛନ୍ତି ସବିତୃଦେବଙ୍କ ହାତରେ ପଦ୍ମ । ପ୍ରାର୍ଥନା କରିଛନ୍ତି—

ଓଁ ଜବାକୁସୁମସଂକାଶଂ କାଶ୍ୟପେୟଂ ମହାଦ୍ୟୁତିମ୍ ।
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରମ୍ ॥ ୧ ॥
ନମଃ ସବିତ୍ରେ ଜଗଦେକଚକ୍ଷୁଷେ
ଜଗତ୍ ପ୍ରସୂତି-ସ୍ଥିତି-ନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ
ବିରିଞ୍ଚିନାରାୟଣ ଶଙ୍କରାତ୍ମନେ ॥ ୨ ॥

---

ଜବା ବା ମନ୍ଦାର ଫୁଲ ପରି ରକ୍ତବର୍ଣ୍ଣ, କଶ୍ୟପଙ୍କ ପୁତ୍ର, ଅତ୍ୟନ୍ତ ତେଜଃଶାଳୀ, ଅନ୍ଧକାରର ନାଶକାରୀ, ସକଳ ପାପ ବିନାଶକ ଦିବାକର ସୂର୍ଯ୍ୟଦେବଙ୍କୁ ପ୍ରଣାମ କରୁଛି ॥ ୧ ॥

ଜଗତର ଏକଚକ୍ଷୁ, ଜଗତର ସୃଷ୍ଟି, ସ୍ଥିତି ତଥା ଲୟର କାରଣ,

ରକ୍ତାବ୍ଜଯୁଗ୍ମାଭୟଦାନହସ୍ତଂ
କେୟୂରହାରାଙ୍ଗଦକୁଣ୍ଡଳାଢ୍ୟମ୍ ।
ମାଣିକ୍ୟମୌଳିଦ୍ଦିନନାଥମୀଡ଼େ
ବନ୍ଧୂକକାନ୍ତିଂ ବିଳସତ୍ତ୍ରିନେତ୍ରମ୍ ॥ ୩ ॥

## ଅଥ ସୂର୍ଯ୍ୟୋପନିଷଦ୍—

ଓଁ ନମୋ ମିତ୍ରାୟ ଭାନବେ ମୃତ୍ୟୋର୍ମା ପାହି
ଭ୍ରାଜିଷ୍ଣବେ ବିଶ୍ୱହେତବେ ନମଃ ।
ସୂର୍ଯ୍ୟାଦ୍ଭବନ୍ତି ଭୂତାନି ସୂର୍ଯ୍ୟେଣ ପାଳିତାନି ତୁ
ସୂର୍ଯ୍ୟେ ଲୟଂ ପ୍ରାପ୍ନୁବନ୍ତି ଯଃ ସୂର୍ଯ୍ୟଃ ସୋଽହମେବ ଚ ॥ ୧ ॥

ଚକ୍ଷୁର୍ନୋ ଦେବଃ ସବିତା ଚକ୍ଷୁର୍ନ ଉତ ପର୍ବତଃ ।
ଚକ୍ଷୁର୍ଧାତା ଦଧାତୁ ନଃ ॥ ୨ ॥

---

ବେଦବର୍ଣ୍ଣିତ; ସତ୍ତ୍ୱ-ରଜ-ତମୋଗୁଣ ସ୍ୱଧାରୀ, ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନକର୍ତ୍ତା ବିଷ୍ଣୁ ଏବଂ ସଂହାର କର୍ତ୍ତା ଶିବଙ୍କର ଆତ୍ମା ସଦ୍ଗୁଣ ସବିତାଙ୍କୁ ପ୍ରଣାମ ॥ ୨ ॥

ରକ୍ତପଦ୍ମ, ହସ୍ତ ଓ ଅଭୟ ଦାନ ମୁଦ୍ରା ଧାରଣ କରିଥିବା; କେୟୂର, ହାର, ଅଙ୍ଗଦ, କୁଣ୍ଡଳ, ହାର ବିଭୂଷିତ, ମସ୍ତକରେ ମାଣିକ୍ୟ ରତ୍ନ ଧାରଣ କରିଥିବା, ବନ୍ଧୂକ ପୁଷ୍ପ ପରି ଲାଲବର୍ଣ୍ଣ ତ୍ରିନେତ୍ର ଦିବାକରଙ୍କୁ ଧ୍ୟାନ କରୁଛୁ ॥ ୩ ॥

ଜଗତର ବନ୍ଧୁ, ବିଶେଷ କିରଣଶାଳୀ ଭାନୁଙ୍କୁ ପ୍ରଣାମ । ସେ ମୃତ୍ୟୁରୁ ମୋତେ ରକ୍ଷା କରନ୍ତୁ । ପ୍ରକାଶଶୀଳ ତଥା ବିଶ୍ୱର ହେତୁଭୂତ ସୂର୍ଯ୍ୟଦେବଙ୍କୁ ନମସ୍କାର । ଜୀବଗଣ ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ ହୋଇ, ସୂର୍ଯ୍ୟଙ୍କ ଦ୍ୱାରା ପାଳିତ ହୋଇ ସୂର୍ଯ୍ୟଙ୍କଠାରେ ବିଲୀନ ହୁଅନ୍ତି । ଯେ ସେହି ସୂର୍ଯ୍ୟ—ମୁଁ ତାଙ୍କଠାରୁ ଅଭିନ୍ନ ଅଟେ ॥ ୧ ॥

ଆମମାନଙ୍କର ପ୍ରକାଶଶୀଳ ଦେବତା ସବିତା ହେଉଛନ୍ତି ଆଲୋକପ୍ରଦ ଚକ୍ଷୁ, କାଳସ୍ୱରୂପ ପର୍ବତ✻ ବୋଲି ସେ ମଧ୍ୟ ହେଉଛନ୍ତି କାଳଜ୍ଞାନରୂପକ ଚକ୍ଷୁ । ବିଧାତା ଆମକୁ ସେହି ଜ୍ଞାନଚକ୍ଷୁ ପ୍ରଦାନ କରନ୍ତୁ ॥ ୨ ॥

---

✻ ପର୍ବଣୋ ଖଣ୍ଡନାତ୍ମକତ୍ୱା ପର୍ବଶବ୍ଦେନ କାଳଃ ଇହ ବୁଧ୍ୟତେ ।

ଆଦିତ୍ୟାସ୍ତୁ ବଦ୍ମହେ ସହସ୍ର କିରଣାୟ ଧୀମହି ।
ତନ୍ନଃ ସୂର୍ଯ୍ୟଃ ପ୍ରଚୋଦୟାତ୍ ।। ୩ ।।
ସବିତା ପୁରସ୍ତାତ୍ ସବିତା ପଶ୍ଚାତ୍ତାତ୍
ସବିତୋତ୍ତରାତ୍ତାତ୍ ସବିତାଽଧରାତ୍ତାତ୍ ।
ସବିତା ନଃ ସୁବତୁ ସର୍ବତାତିଂ
ସବିତା ନୋ ରାସତାଂ ଦୀର୍ଘମାୟୁଃ ।। ୪ ।।

ଏହାପରେ ଦଶଥର ପ୍ରାଣାୟାମ ପୂର୍ବକ ଜପ କରି ୧୦୮ ଥର ମାଳାରେ ଗାୟତ୍ରୀ ମନ୍ତ୍ର (ଅର୍ଥବୋଧ ସହ) ଜପ କରିବ ।

## ଅଥ ଗାୟତ୍ରୀ—

ଓଁ ଆୟାହି ବରଦେ ଦେବି ଜପ୍ୟେ ମେ ସନ୍ନିଧୌ ଭବ ।
ଗାୟନ୍ତଂ ତ୍ରାୟତେ ଯସ୍ମାଦ୍ ଗାୟତ୍ରୀ ତ୍ୱଂ ତତଃ ସ୍ମୃତା ।।

ହେ ମା ବରଦାୟିନୀ ଗାୟତ୍ରୀ ! ମୋର ଜପବେଳେ ତୁମେ ଆସ । ତୁମର ଗୁଣ ଗାନ କରୁଥିବା (ବା ମନ୍ତ୍ର ଜପ କରୁଥିବା) ଲୋକକୁ ତୁମେ ରକ୍ଷାକର ବୋଲି ତୁମର ନାମ ଗାୟତ୍ରୀ ହୋଇଛି ।

ଏହିପରି ପ୍ରାର୍ଥନା କରି ଋଷ୍ୟାଦି ସ୍ମରଣ କରିବ—

ଅଥ ଗାୟତ୍ରୀ ମନ୍ତ୍ରସ୍ୟ ବିଶ୍ୱାମିତ୍ର ଋଷିଃ, ସବିତା ଦେବତା, ଦଶ/ଅଷ୍ଟୋତ୍ତରଶତମନ୍ତ୍ର ଜପେ ବିନିଯୋଗଃ ।

---

**ଆଦିତ୍ୟଙ୍କୁ ଜାଣିବାକୁ ଇଚ୍ଛା କରୁଛୁ** । ସହସ୍ରାଂଶୁଙ୍କୁ ଧ୍ୟାନ **କରୁଛୁ** । **ସେହି ସୂର୍ଯ୍ୟ ଆମକୁ ପ୍ରେରଣା ପ୍ରଦାନ କରନ୍ତୁ** ।। ୩ ।।

ସବିତା ଆମର ଆଗରେ, ପଛରେ, ଉତ୍ତରରେ ଅଧୋଭାଗରେ— ସର୍ବତ୍ର ସେ ବିଦ୍ୟମାନ । ସବିତା ଆମମାନଙ୍କ ନିକଟରେ (ସର୍ବତାତିଂ=) ସର୍ବବ୍ୟାପକତା (ସୁବତୁ=) ବିସ୍ତାର କରନ୍ତୁ । ସବିତା ଆମକୁ ଦୀର୍ଘଜୀବନ (ରାସତାଂ=) ଦାନ କରନ୍ତୁ ।। ୪ ।।

[ତାପରେ ନିମ୍ନ ପ୍ରକାରେ ନ୍ୟାସ କରିବ]

ଓଁ ଶିରସି ବିଶ୍ୱାମିତ୍ରର୍ଷୟେ ନମଃ । ମୁଖେ ଗାୟତ୍ରୀଚ୍ଛନ୍ଦସେ ନମଃ । ହୃଦି ସବିତ୍ରେ ଦେବତାୟୈ ନମଃ । ଓଁ ଭୂର୍ଭୁବଃ ନମଃ । ଓଁ ଭୁବଃ ଶିରସେ ସ୍ୱାହା । ଓଁ ସ୍ୱଃ ଶିଖାୟୈ ବଷଟ୍ । ଓଁ ତତ୍ସବିତୁର୍ବରେଣ୍ୟଂ କବଚାୟ ହୁମ୍ । ଭର୍ଗୋଦେବସ୍ୟ ଧୀମହି—ନେତ୍ରତ୍ରୟାୟ ବୌଷଟ୍ । ଧିୟୋ ଯୋ ନଃ ପ୍ରଚୋଦୟାତ୍—ଅସ୍ତ୍ରାୟ ଫଟ୍ । ଗାୟତ୍ରୀ-ମନ୍ତ୍ର ଜପେ ବିନିଯୋଗଃ—

ଓଁ ଭୂର୍ଭୁବଃ ସ୍ୱଃ । ତତ୍ସବିତୁର୍ବରେଣ୍ୟଂ
ଭର୍ଗୋ ଦେବସ୍ୟ ଧୀମହି ।
ଧିୟୋ ଯୋନଃ ପ୍ରଚୋଦୟାତ୍ ।। ✿

ଜପକାଲବେଳେ ସେହି ବରେଣ୍ୟ ସବିତୃ-ତେଜକୁ ଅନ୍ତରରେ ଧ୍ୟାନ କରିବ । ସାଧାରଣତଃ ଲୋକେ ତ୍ରିପଦା ଗାୟତ୍ରୀ ଜପ କରିଥାନ୍ତି । ଯେଉଁ ଦ୍ୱିଜଗଣ ତ୍ରିସନ୍ଧ୍ୟା କରନ୍ତି ସେମାନେ ପ୍ରାତଃ ସନ୍ଧ୍ୟାରେ ଗାୟତ୍ରୀଙ୍କୁ ମଧ୍ୟାହ୍ନ ସନ୍ଧ୍ୟାରେ ସାବିତ୍ରୀଙ୍କୁ ଏବଂ ସାୟଂ ସନ୍ଧ୍ୟାରେ ସରସ୍ୱତୀଙ୍କୁ ଧ୍ୟାନ କରିଥାନ୍ତି । ଏତଦ୍ବ୍ୟତୀତ ସିଦ୍ଧ ସାଧକଗଣ ତୁରୀୟ ସନ୍ଧ୍ୟା ବା ମଧ୍ୟରାତ୍ରିରେ ଗାୟତ୍ରୀର ଚତୁର୍ଥ ପାଦ ଆବୃତ୍ତି ସହ ଜପ କରିଥାନ୍ତି । ପ୍ରକୃତରେ ତୁରୀୟ ପାଦ ସହ ଗାୟତ୍ରୀର ଜପ ଅତ୍ୟନ୍ତ ଫଳପ୍ରଦ । ତେଣୁ କୁହାଯାଇଛି—

ତୁରୀୟପଦମୁତ୍ସୃଜ୍ୟ ଗାୟତ୍ରୀଂ ଯୋ ଜପେଦ୍ଦ୍ୱିଜଃ ।
ସ ମୂଢ଼ୋ ନରକଂ ଯାତି କାଳସୂତ୍ରମଧୋଗତମ୍ ।।

---

✿ ଯଃ (ସବିତାଦେବଃ)-ଯେଉଁ ସବିତା ଦେବତା, ନଃ ଅମର, ଧିୟଃ (କର୍ମାଣି ଧର୍ମାଦି ବିଷୟା ବା ବୁଦ୍ଧୀଃ) ବୁଦ୍ଧିକୁ, ପ୍ରଚୋଦୟାତ୍ ପ୍ରେରିତ କରନ୍ତୁ । ତତ୍ ସେହି, ସବିତୁଃ-ଜଗତର ପ୍ରସବକାରୀ, ଦେବସ୍ୟ-ଦ୍ୟୋତମାନ ବା ପ୍ରକାଶଶୀଳ ଦେବତାଙ୍କର, ବରେଣ୍ୟଂ-ସର୍ବଶ୍ରେଷ୍ଠ, ଭର୍ଗଃ-ତେଜକୁ, ଧୀମହି-ଧ୍ୟାନ କରୁଛୁ ।

ଅର୍ଥାତ୍ ଚତୁର୍ଥ ପାଦକୁ ଗୁଡ଼ ଯେଉଁ ଦ୍ୱିଜ ଗାୟତ୍ରୀ ଜପକରେ, ସେହି ମୂର୍ଖ ଯମ ଦଉଡ଼ିରେ ବନ୍ଧାହୋଇ ପାତାଳ ଓ ନରକକୁ ଯାଏ ।

ତୁରୀୟ ସନ୍ଧ୍ୟାର ରହସ୍ୟ ଗୁରୁମୁଖଗମ୍ୟ ଅଟେ । ଯେଉଁମାନେ ଏହି ତୁରୀୟ ସନ୍ଧ୍ୟାର ରହସ୍ୟ ଅବଗତ ନୁହନ୍ତି, ସେମାନେ ସଂସ୍କାରହୀନ ହେତୁ ଦ୍ୱିଜ ପଦବାଚ୍ୟ ନୁହନ୍ତି । ଅନ୍ୟମାନେ ତ୍ରିପଦା ଗାୟତ୍ରୀରେ ଅଧିକାରୀ ଅଟନ୍ତି ।

•

ଜପପରେ ଜପ ସମର୍ପଣ କରିବ ଓ ତାପରେ କହିବ—

ଓଁ ଉତ୍ତର ଶିଖରେ ଜାତା ଭୂମ୍ୟାଂ ପର୍ବତବାସିନୀ ।
ବ୍ରହ୍ମଣା ସମନୁଜ୍ଞାତା ଗଚ୍ଛ ଦେବି ଯଥେଚ୍ଛୟା ।।

•

ଏହାପରେ ବିସର୍ଜନ କରି ଭକ୍ତିର ସହିତ ତଦ୍‌ଭାବ ଭାବିତ ହୋଇ ସବିତା-ସୂର୍ଯ୍ୟଙ୍କ ଦିବ୍ୟ ତେଜ ମନରେ ଧ୍ୟାନ କରି ହୃଦୟ ନିହିତ କରିବ, ଯେପରିକି ଆଖି ବୁଜିଲେ ମଧ୍ୟ ସେ ତେଜ ମାନସ ପଟରେ ଅବସ୍ଥିତ ହୋଇ ରହିବ ।

•

ଆମର ଧୂପ-ପ୍ରଦର୍ଶନ ସେହି ଦିବ୍ୟ ଜ୍ୟୋତି ପ୍ରତି ସମ୍ମାନ ପ୍ରଦର୍ଶନ । ତେଣୁ ଆରତି ବେଳେ କୁହାଯାଇଥାଏ—

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ
ନେମା ବିଦ୍ୟୁତୋ ଭାନ୍ତି
କୁତୋଽୟମଗ୍ନିଃ ?

ଯେଉଁଠାରେ ସୂର୍ଯ୍ୟ ମଧ୍ୟ ତେଜୋହୀନ, ଯେଉଁଠାରେ ଚନ୍ଦ୍ର ଓ ତାରାଗଣ ମଧ୍ୟ ଦୀପ୍ତିହୀନ, ଯେଉଁଠାରେ ବିଦ୍ୟୁତ୍ ମଧ୍ୟ ପ୍ରକାଶହୀନ; ସେହି ପରମେଶ୍ୱରଙ୍କୁ ମୁଁ ସାମାନ୍ୟ ଦୀପାଲୋକ ପ୍ରଦର୍ଶନ କରୁଛି ? ଏହା ମୋର ସ୍ୱଳ୍ପ ବୁଦ୍ଧିରେ ନୈବେଦ୍ୟ ମାତ୍ର । ତାଙ୍କର ଶାଶ୍ୱତ ଦୀପ

ସୂର୍ଯ୍ୟଙ୍କର ପ୍ରତିନିଧି ମାତ୍ର । ସେ ସୂର୍ଯ୍ୟଙ୍କ ଦ୍ୱାରା ଏ ବିଶ୍ୱକୁ ପ୍ରକାଶ କରିଛନ୍ତି ଓ ମୋ ଚକ୍ଷୁରେ ଜ୍ୟୋତି ବା ଆଲୋକ ଦେଇଛନ୍ତି । ତେଣୁ ତାଙ୍କ କୃପାରୁ ମୁଁ ସବୁ ଦେଖୁଛି । ତାଙ୍କୁ ଦେଖିବାକୁ ହେଲେ ତାଙ୍କର କୃପା ଜ୍ୟୋତି ଆବଶ୍ୟକ । ତେଣୁ ଏ ଦୀପ-ପ୍ରଦର୍ଶନ······ ।

## ଶ୍ରୀ ବିଷ୍ଣୁ —

ଯସ୍ୟ ସ୍ମରଣମାତ୍ରେଣ ଜନ୍ମ ସଂସାରବନ୍ଧନାତ୍ ।
ବିମୁଚ୍ୟତେ ନମସ୍ତସ୍ମୈ ବିଷ୍ଣବେ ପ୍ରଭବିଷ୍ଣବେ ॥

ଯାହାଙ୍କର ସ୍ମରଣମାତ୍ରକେ ପ୍ରାଣୀ ଜନ୍ମ ମରଣ ତଥା ସଂସାର ବନ୍ଧନରୁ ମୁକ୍ତ ହୁଏ, ସେହି ସର୍ବବ୍ୟାପକ ପ୍ରଭୁ ଭଗବାନ୍ ବିଷ୍ଣୁଙ୍କୁ ପ୍ରଣାମ ଜଣାଇ 'ଶ୍ରୀ ବିଷ୍ଣୁ ସହସ୍ରନାମ'ର ଅଦ୍ୟୁମାରମ୍ଭ ହୋଇଛି ।

'ବିଷ୍ଣୁ' ଶବ୍ଦଟି 'ବିଷ୍ଲୃ-ବ୍ୟାପ୍ତୌ' ବା ବ୍ୟାପ୍ତି-ଅର୍ଥକ ବିଷ୍-ଧାତୁରୁ ନିଷ୍ପନ୍ନ । କାରଣ ଭଗବାନ୍ ବିଷ୍ଣୁ ଅନନ୍ତ ଆକାଶ ପରି ସର୍ବତ୍ର ଅଭିବ୍ୟାପ୍ତ । ତେଣୁ ତାଙ୍କର ବର୍ଣ୍ଣ ମେଘ-ଶ୍ୟାମ । ତାଙ୍କର ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ବିରାଜମାନ । ଶଙ୍ଖ ମଙ୍ଗଳର, ଚକ୍ର ପ୍ରଗତିର ବା ସଂସାର ପ୍ରବୃତ୍ତିର, ଗଦା ରକ୍ଷା ନିମିତ୍ତ ଆବଶ୍ୟକ ଶୌର୍ଯ୍ୟର ଏବଂ ପଦ୍ମ ସୁଗୁଣ-ସୁଗନ୍ଧ ବା କୋମଳତାର ପ୍ରତୀକ ।

ଆମର ପ୍ରତ୍ୟେକ ଶୁଭକର୍ମର ଆରମ୍ଭରେ ଭଗବାନ୍ ବିଷ୍ଣୁଙ୍କ ସ୍ମରଣ ପୂର୍ବକ ଆତ୍ମା, ଭୂମି ଓ ଯଜମାନର ଶୁଦ୍ଧି ପାଇଁ❁ 'ଓଁ ବିଷ୍ଣୁଃ, ବିଷ୍ଣୁଃ, ବିଷ୍ଣୁଃ' ବୋଲି ତାଙ୍କର ନାମ ତିନିଥର ଉଚ୍ଚାରଣ କରି କୁହାଯାଇଥାଏ—

---

❁ ପ୍ରଥମେ ବ୍ରହ୍ମନଃ ଶୁଦ୍ଧି ଦ୍ୱିତୀୟେ ଭୂମି ଶୋଧନମ୍ ।
ତୃତୀୟେ ଯଜମାନସ୍ୟ ବିଷ୍ଣୁଃ ସମ୍ପଦାହୃତମ୍ ॥
(ଇତି ଗୃହ୍ୟସୂତ୍ରକାଶିକାୟାଂ ବଶିଷ୍ଠଃ)

ସ୍ମୃତେ ସକଳକଲ୍ୟାଣଭାଜନଂ ଯତ୍ର ଜାୟତେ ।
ପୁରୁଷଂ ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିମ୍ ॥
ଶଙ୍ଖଚକ୍ରଗଦାପାଣେ ଦ୍ୱାରକାନିଲୟାଚ୍ୟୁତ ।
ଗୋବିନ୍ଦ ! ପୁଣ୍ଡରୀକାକ୍ଷ ! ରକ୍ଷ ମାଂ ଶରଣାଗତମ୍ ॥

ଯାହାଙ୍କୁ ସ୍ମରଣ କଲେ ଜୀବ ସକଳ କଲ୍ୟାଣର ପାତ୍ର ହୋଇଥାଏ, ସେହି ଅଜ, ନିତ୍ୟ ପୁରୁଷ ଶ୍ରୀହରିଙ୍କଠାରେ ଶରଣ ପଶୁଛି । ହେ ଶଙ୍ଖଚକ୍ରଗଦାହସ୍ତ ଦ୍ୱାରକାପତି ଅଚ୍ୟୁତ ଗୋବିନ୍ଦ ପୁଣ୍ଡରୀକାକ୍ଷ ! ତୁମେ ଏହି ଶରଣାଗତକୁ ରକ୍ଷାକର ।

ବ୍ରହ୍ମା ସୃଷ୍ଟିକର୍ତ୍ତା, ବିଷ୍ଣୁ ପାଳନକର୍ତ୍ତା ଏବଂ ଶିବ ସଂହାରକର୍ତ୍ତା । ଯେତେବେଳେ ଧର୍ମର ଗ୍ଳାନି ହୋଇଛି, ଅଧର୍ମର ଉତ୍ଥାନ ହୋଇଛି, ସେତେବେଳେ ଭଗବାନ୍ ବିଷ୍ଣୁ ଅବତାର ଗ୍ରହଣ କରି ସାଧୁମାନଙ୍କର ରକ୍ଷା କରି ଅସୁରମାନଙ୍କର ବିନାଶ ଘଟାଇଛନ୍ତି । ତେଣୁ ହିଁ ଗୀତାରେ ତାଙ୍କର ପ୍ରତିଶ୍ରୁତି ବାଣୀ ଧ୍ୱନିତ ହୋଇଛି—

ଯଦା ଯଦା ହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥

ଭଗବାନ୍ ବିଷ୍ଣୁଙ୍କ ଅନ୍ୟନାମ 'ଅଚ୍ୟୁତ' । ସେ ତାଙ୍କ ଧର୍ମରକ୍ଷା ବା ପ୍ରତିଶ୍ରୁତି ରକ୍ଷାରୁ ଚ୍ୟୁତ ହୁଅନ୍ତି ନାହିଁ । ସେ ସ୍ୱାଧିଷ୍ଠାନର ଦେବତା । ତାଙ୍କର ଅଧିଷ୍ଠାନ ଗୁପ୍ତ ନାହିଁ । ସ୍ୱାଧିଷ୍ଠାନ ତଳେ ମୂଳାଧାରରେ କୁଣ୍ଡଳିନୀ ସାର୍ଦ୍ଧତ୍ରିବଳୟାକୃତିରେ ସୁପ୍ତ । ଭଗବାନ୍ ବିଷ୍ଣୁଙ୍କ ଅଧିଷ୍ଠାନ ଏହି କୁଣ୍ଡଳିନୀ ଶକ୍ତି ଉପରେ । ପୁରାଣୋକ୍ତ କ୍ଷୀର ସମୁଦ୍ର—ସେଥିରେ ଅର୍ଥାତ୍ ଆମର ମା'-କ୍ଷୀରରେ, ଗୋ-କ୍ଷୀରରେ ଏବଂ ପୃଥିବୀ କ୍ଷରିତ ଦ୍ରବ୍ୟ ଉପରେ ପୁଷ୍ଟ ଆମର ଏ ଶରୀର । ତା'ମଧ୍ୟରେ

କୁଣ୍ଡଳମା ଶକ୍ତି—ଅନନ୍ତ ନାଗ । ସେଥିରେ ବିଷ୍ଣୁଙ୍କ ଅଧିଷ୍ଠାନ । ତେଣୁ ଯୋଗମାର୍ଗରେ ବିଷ୍ଣୁଙ୍କ ଦର୍ଶନ ପାଇଁ ଯୋଗୀଋଷିଗଣ ନିରନ୍ତର ନିମ୍ନ ପ୍ରକାରେ ଧ୍ୟାନମଗ୍ନ—

ଶାନ୍ତାକାରଂ ଭୁଜଗଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗିଭି ର୍ଧ୍ୟାନଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବଲୋକୈକ ନାଥମ୍ ॥

ଭଗବାନ୍ ବିଷ୍ଣୁ ଦେଖିବାକୁ ଅତି ଶାନ୍ତ, ଶଯ୍ୟା ତାଙ୍କର ଶେଷ ନାଗ, ନାଭିରୁ ପଦ୍ମ ବାହାରି ତା' ଉପରେ ବସିଛନ୍ତି ଜଗତ୍-ସ୍ରଷ୍ଟା ବ୍ରହ୍ମା । ଏହିପରି ଯୋଗୀମାନଙ୍କ ଧ୍ୟାନଗମ୍ୟ ଦେବତାମାନଙ୍କର ଅଧୀଶ୍ୱର, ବିଶ୍ୱର ଆଧାର, ଆକାଶ ପରି ଅନନ୍ତ ଓ ବିଶାଳ, ମେଘ ବର୍ଣ୍ଣ, ଶୁଭାଙ୍ଗ, ଲକ୍ଷ୍ମୀନାଥ, ପଦ୍ମନେତ୍ର, ସକଳ ଲୋକର ଏକମାତ୍ର ଈଶ୍ୱର ଭବଭୟ ବିନାଶକ ଭଗବାନ୍ ବିଷ୍ଣୁଙ୍କୁ ପ୍ରଣାମ ।

ସଶଙ୍ଖଚକ୍ରଂ ସକିରୀଟକୁଣ୍ଡଳଂ ସପୀତବସ୍ତ୍ରଂ ସରସୀରୁହେକ୍ଷଣମ୍ ।
ସହାରବକ୍ଷଃସ୍ଥଳକୌସ୍ତୁଭଶ୍ରିୟଂ ନମାମି ବିଷ୍ଣୁଂ ଶିରସା ଚତୁର୍ଭୁଜମ୍ ॥

ହାତରେ ଶଙ୍ଖ ଚକ୍ର, ମସ୍ତକରେ କିରୀଟ ଓ କର୍ଣ୍ଣରେ କୁଣ୍ଡଳ ଧାରଣ କରି ପୀତ ବସ୍ତ୍ର ପରିଧାନ କରିଥିବା ଓ ବକ୍ଷରେ କୌସ୍ତୁଭମଣି-ଯୁକ୍ତ ହାର ଲଗାଇଥିବା ଚତୁର୍ଭୁଜ ବିଷ୍ଣୁଙ୍କୁ ନତମସ୍ତକରେ ପ୍ରଣାମ କରୁଛି ।

ଏହିପରି ଭଗବାନ୍ ବିଷ୍ଣୁଙ୍କ ରୂପ ମାନସପଟଳରେ ସମ୍ୟକ୍ ଅବଧାରଣ କରି 'ପୂଜା' ବିଧାନରେ ପ୍ରବେଶ କରିବା ଉଚିତ । ବାର-ମ୍ବାର ତାଙ୍କର ରୂପ ମନନ ଓ ନିଦିଧ୍ୟାସନ କଲେ ଧ୍ୟାନରେ ସେ ଅନିନ୍ଦ୍ୟ ସୁନ୍ଦର ଦିବ୍ୟ ବିଗ୍ରହର ଭାନ ବା ସ୍ଫୁରଣ ହେବ । ପ୍ରାଣ ଦେଇ ତାଙ୍କର

ଗୁଣାବଳୀକୁ କୀର୍ତ୍ତନ କଲେ, ତାଙ୍କୁ ଭଲ ପାଇଲେ ପ୍ରତିମୂର୍ତ୍ତି ତାଙ୍କର ଚିନ୍ତାରେ ବ୍ୟସ୍ତ ହେଲେ, ମଣିଷ ମୋକ୍ଷର ଦ୍ୱାରରେ ଉପନୀତ ହେବ ।

'ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ'—'ଯାହାର ଭାବନା ଯେତେ, ତାହାର ପ୍ରଭୁ ତେତେ' । ତେଣୁ ଦେବ ପୂଜା ଭାବ ପ୍ରଧାନ । ସେଇ ଭାବକୁ ଉନ୍ନତ କରିବା ସକାଶେ ସଦ୍‌ଗୁରୁ ଆବଶ୍ୟକ । କେବଳ କର୍ମକାଣ୍ଡର ଆଡ଼ମ୍ବର ବହୁଳତାରେ ଦେବତା ନଥା'ନ୍ତି, ଥାଆନ୍ତି ମନର ଦିବ୍ୟତାରେ । ମନ ଦିବ୍ୟଭାବାପନ୍ନ ନ ହେଲେ, ସବୁ ବୃଥା, ସବୁ ନିରର୍ଥକ—ପଣ୍ଡଶ୍ରମ ।

ତେଣୁ ମନକୁ ଦିବ୍ୟଭାବାପନ୍ନ କରିବା ସକାଶେ ଦେବତାଙ୍କ ଉଦ୍ଦେଶ୍ୟରେ ରଚିତ ସ୍ତୋତ୍ରାବଳୀର ଆବୃତ୍ତି ଦ୍ୱାରା ଦିବ୍ୟଗୁଣାନୁକୀର୍ତ୍ତନ କରନ୍ତୁ ଓ ଦେବତାଙ୍କ ଦିବ୍ୟରୂପର ଚିନ୍ତନ କରନ୍ତୁ । ଭାବରାଜ୍ୟରେ ଅନନ୍ୟ ଅଖଣ୍ଡତାର ଅଧିକାରୀ ହୁଅନ୍ତୁ ।

ଭଗବଦ୍‌ ଭକ୍ତିର ଅଧିକାରୀ ହେବାପାଇଁ ଆବଶ୍ୟକ ନାହିଁ—ଜାତି ବା ବିଦ୍ୟା ବା ବୟସ ବା ସମ୍ପଦର, କେବଳ ଆବଶ୍ୟକ ଐକାନ୍ତିକୀ ନିଷ୍ଠା ସହ ଅନବରତ ତଦ୍‌ଭାବ ଭାବିତ ହୋଇ ନିରବଚ୍ଛିନ୍ନ ଭାବରେ ଇଷ୍ଟ ସ୍ମରଣ ।

କ'ଣ ଥିଲା ବ୍ୟାଧର ଆଚରଣ ? କ'ବା ଥିଲା ଧ୍ରୁବର ବୟସ ? କି ପାଠ ପଢ଼ିଥିଲା ଗଜରାଜ ? କୁବ୍‌ଜାର କ'ଣ ନାମ ଥିଲା ନା ରୂପ ? କ'ଣ ଧନ ଥିଲା ସୁଦାମାର ? ବଂଶଗତ ବୈଶିଷ୍ଟ୍ୟ କ'ଣ ଥିଲା ଦାସୀପୁତ୍ର ବିଦୁରର ? ପୌରୁଷ ବା କ'ଣ ଥିଲା ଯାଦବ ପତି ଉଗ୍ରସେନର ? ଏମାନେ ସମସ୍ତେ ଭଗବାନ୍‌ଙ୍କୁ ପାଇଥିଲେ କାରଣ ତାଙ୍କର ଭକ୍ତି ଥିଲା ।

✽ ବ୍ୟାଧସ୍ୟାଚରଣଂ ଧ୍ରୁବସ୍ୟ ଚ ବୟୋ ବିଦ୍ୟା ଗଜେନ୍ଦ୍ରସ୍ୟ କା ?
କୁବ୍‌ଜାୟାଃ କମୁ ନାମ ରୂପମଧିକଂ କିଂ ତତ୍‌ ସୁଦାମ୍ନୋ ଧନମ୍‌ ।
ବଂଶଃ କୋ ବିଦୁରସ୍ୟ ଯାଦବପତେରୁଗ୍ରସ୍ୟ କିଂ ପୌରୁଷଂ ।
ଭକ୍ତ୍ୟା ତୁଷ୍ୟତି କେବଳଂ ନ ଚ ଗୁଣୈର୍ଭକ୍ତିପ୍ରିୟୋ ମାଧବଃ ॥

ତେଣୁ ଭକ୍ତର ସର୍ବଦା ତାଙ୍କର ଗୁଣାନୁକୀର୍ତ୍ତନ କରନ୍ତୁ, ତାଙ୍କ ବିଷୟରେ ସତ୍କଥା ଶ୍ରବଣ କରନ୍ତୁ, ଠିକ୍ ନିଜ ଲୋକ ପାଖରେ କହିଲା ପରି ତାଙ୍କୁ କହନ୍ତୁ, ତାଙ୍କୁ ପାଇବେ । ସଂସ୍କୃତ ପଢ଼ିନାହାନ୍ତି ବୋଲି ଭକ୍ତ ନିବେଦନରେ ବା ପୂଜା କରିବାରେ କୁଣ୍ଠିତା ବା ହୀନମନ୍ୟତା ପ୍ରକାଶ କରନ୍ତୁ ନାହିଁ ।

ମୂର୍ଖୋ ବଦତି ବିଷ୍ଣାୟ ଧୀରୋ ବଦତି ବିଷ୍ଣବେ ।
ଉଭୟୋସ୍ତୁ ଫଳଂ ତୁଲ୍ୟଂ ଭାବଗ୍ରାହୀ ଜନାର୍ଦ୍ଦନଃ ॥

ଉ-କାରାନ୍ତ ବିଷ୍ଣୁ-ଶବ୍ଦର ଚତୁର୍ଥୀ ଏକବଚନ ରୂପ 'ବିଷ୍ଣବେ' । ପଣ୍ଡିତ ଲୋକ ବ୍ୟାକରଣ ପଢ଼ି ଶୁଦ୍ଧ ଭାବରେ 'ବିଷ୍ଣବେ ନମଃ' କହେ । ମାତ୍ର ମୂର୍ଖ ଲୋକ ଅକାରାନ୍ତ ରାମ ଓ ଗଣେଶ ଶବ୍ଦର ଚତୁର୍ଥୀ ଏକବଚନରେ ଯଥାକ୍ରମେ ରାମାୟ ଓ ଗଣେଶାୟ ହେଲା ପରି ଭୁଲ୍‌ରେ କହେ 'ବିଷ୍ଣାୟ ନମଃ' । ମାତ୍ର ଏହି ଉଭୟଙ୍କ ଉଚ୍ଚାରଣର ଫଳ ସମାନ । କାରଣ ଭଗବାନ୍ ଭାବଗ୍ରାହୀ । ତେଣୁ, ତଦ୍-ଭାବ-ଭାବିତ ହୋଇ 'ଭାବ'—ସମ୍ପଦରେ ସମୃଦ୍ଧି ହେଲେ, ଦିବ୍ୟ ଅନୁଭୂତି ଓ ପ୍ରସନ୍ନତା ଆସିବ ।

ସକଳ ଅଭିମାନ ତ୍ୟାଗ କରି, କୌଣସି ଗୌରବ ବା ସମ୍ମାନର ମୁକୁଟ ପିନ୍ଧିବାକୁ ଅଭିଳାଷ ନକରି, ସମସ୍ତ ଯଶଃ ପ୍ରତିଷ୍ଠାକୁ ଜଳାଞ୍ଜଳି ଦେଇ କେବଳ ହରି ଭଜନରେ ମନୋନିବେଶ କଲେ, ଶାନ୍ତି ଓ ମୁକ୍ତି ମିଳିବ । ତେଣୁ କୁହାଯାଇଛି—

ଅଭିମାନଂ ସୁରାପାନଂ ଗୌରବଂ ରୌରବଂ ସମମ୍ ।
ପ୍ରତିଷ୍ଠା ଶୂକରୀବିଷ୍ଠା ତ୍ରୟଂ ତ୍ୟକ୍ତ୍ୱା ହରିଂ ଭଜେତ୍ ॥

ଭଗବାନଙ୍କୁ ହୃଦୟାଭିଷିକ୍ତ କରିବା ସକାଶେ ହୃଦୟ ରାଜ୍ୟକୁ ନିର୍ମଳ ଭାବପୂର୍ଣ୍ଣ କରନ୍ତୁ । ସେଥିପାଇଁ ମାତ୍ର କେତେଗୋଟି ସ୍ତୋତ୍ର ଦିଆଗଲା ।

ଶ୍ରୀବତ୍ସସ୍ୟ ଧ୍ୟାନଂ—

ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ
ହାରୀ ହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ॥ ୧ ॥

ଶ୍ରୀବତ୍ସସ୍ୟ ପ୍ରଣାମଶ୍ଳୋକଃ—

ଓଁ ନମୋ ବ୍ରହ୍ମଣ୍ୟଦେବାୟ ଗୋବ୍ରାହ୍ମଣହିତାୟ ଚ ।
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ॥ ୨ ॥
ଓଁ ନମସ୍ତୁଭ୍ୟଂ ଭଗବତେ ବାସୁଦେବାୟ ଧୀମହି ।
ପ୍ରଦ୍ୟୁମ୍ନାୟାନିରୁଦ୍ଧାୟ ନମଃ ସଂକର୍ଷଣାୟ ଚ ॥ ୩ ॥ †

---

ସୂର୍ଯ୍ୟ ମଣ୍ଡଳର ମଧ୍ୟବର୍ତ୍ତୀ, ପଦ୍ମାସନରେ ଉପବିଷ୍ଟ ଭୁଜ (ବା ବାହୁ ମୂଳରେ ଅଙ୍ଗଦ ଧାରଣ କଲାପରେ ତା' ତଳେ କେୟୂର ଧାରଣ କରାଯାଏ)ରେ କେୟୂର ଭୂଷିତ, କର୍ଣ୍ଣରେ ମକରାକୃତି କୁଣ୍ଡଳ-ଅଲଂକୃତ, ଶିରୋଦେଶରେ ମୁକୁଟ ଓ ବକ୍ଷୋଦେଶରେ ହାର ବିଭୂଷିତ, ସ୍ୱର୍ଣ୍ଣବର୍ଣ୍ଣ କୋମଳମୟ ଶରୀର, ଶଙ୍ଖଚକ୍ରଧାରୀ, ନରମାନଙ୍କର ଗତି ଭଗବାନ୍ ନାରାୟଣ ହିଁ ଧ୍ୟାନଯୋଗ୍ୟ ।୧।

ବ୍ରହ୍ମସ୍ୱରୂପ ଦେବ, ଗୋ ତଥା ବ୍ରାହ୍ମଣଙ୍କ ହିତକାରୀ, ଜଗତ୍‌ର ମଙ୍ଗଳକାରୀ ଭଗବାନ ଶ୍ରୀକୃଷ୍ଣ ଗୋବିନ୍ଦ❁ଙ୍କୁ ଅନେକ ପ୍ରଣାମ ॥ ୨ ॥

---

❁ 'ଗୋଭିରେବ ଯତୋ ବେଦ୍ୟୋ ଗୋବିନ୍ଦଃ ସମୁଦାହୃତଃ ।'

ଗୌ-ଦ୍ୱାରା ଯେ ବେଦ୍ୟ ବା ଜ୍ଞେୟ ହୋନ୍ତି ତାଙ୍କର ନାମ ଗୋବିନ୍ଦ । ଏହି 'ଗୌ'ର ଅର୍ଥ ବେଦବାଣୀ, ଧେନୁ ଓ ଭୂମି ପ୍ରଭୃତି । ତେଣୁ କୁହାଯାଇଛି—

'ଗାଂ ବେଦଲକ୍ଷଣାଂ ବାଣୀଂ ଗୋ ଭୂମ୍ୟାଦିକଂ ବା ବେତ୍ତୀତି ।'

† ଭଗବାନ ବାସୁଦେବଙ୍କୁ ଧ୍ୟାନ କରି ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ସଙ୍କର୍ଷଣଙ୍କୁ ନମସ୍କାର କରୁଛି । (ବାସୁଦେବ ହେଉଛନ୍ତି; ବିଶ୍ରାମ ଭୂମି ଅନ୍ତର୍ଗତ ଜ୍ଞାନ, ଐଶ୍ୱର୍ଯ୍ୟ ଓ ଶକ୍ତିଯୋଗ ତଥା ଶ୍ରମ ଭୂମି ଅନ୍ତର୍ଗତ ବଳ, ବୀର୍ଯ୍ୟ ଓ ତେଜ ଯୋଗ—ଏହି ଉଭୟ ଯୋଗଗତ ଷାଡ୍‌ଗୁଣ୍ୟମୟ ପ୍ରଥମ ବ୍ୟୂହ ଦେବତା ।

ନମୋ ବିଜ୍ଞାନମାତ୍ରାୟ ପରମାନନ୍ଦମୂର୍ତ୍ତୟେ ।
ଆତ୍ମାରାମାୟ ଶାନ୍ତାୟ ନିବୃତ୍ତଦ୍ୱୈତଦୃଷ୍ଟୟେ ।। ୪ ।।
ଆତ୍ମାନନ୍ଦାନୁଭୂତ୍ୟୈବ ନ୍ୟସ୍ତଶକ୍ତ୍ୟୂର୍ମୟେ ନମଃ ।
ହୃଷୀକେଶାୟ ମହତେ ନମସ୍ତେ ବିଶ୍ୱମୂର୍ତ୍ତୟେ ।। ୫ ।।
(ଶ୍ରୀମଦ୍ଭାଗବତ ୬।୧୬।୧୮-୨୦)

## ଭଗବତ୍‌ପ୍ରଣାମ—

ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃ ସାଙ୍ଗ ପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତ-ତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ।। ୬ ।।
[ଶ୍ରୀମଦ୍ଭାଗବତ ୧୨।୧୩।୧]

---

ତାଙ୍କର ଅଗ୍ରଜ ସଙ୍କର୍ଷଣ ହେଉଛନ୍ତି ଦ୍ୱିତୀୟ ବ୍ୟୂହ ଅର୍ଥାତ୍ ଜ୍ଞାନ ଓ ବଳର ଦେବତା । ଜ୍ୟେଷ୍ଠପୁତ୍ର ପ୍ରଦ୍ୟୁମ୍ନ ହେଉଛନ୍ତି ତୃତୀୟ ବ୍ୟୂହ ଅର୍ଥାତ୍ ଐଶ୍ୱର୍ଯ୍ୟ ଓ ବୀର୍ଯ୍ୟର ଦେବତା । ପୌତ୍ର ଅନିରୁଦ୍ଧ ହେଉଛନ୍ତି ଚତୁର୍ଥ ବ୍ୟୂହ ଅର୍ଥାତ୍ ଶକ୍ତି ଓ ତେଜର ଦେବତା । ଏହିପରି ଭାଗବତ ଧର୍ମର ଚତୁର୍ବ୍ୟୂହ ଏଥିରେ ସଂଶ୍ଳିଷ୍ଟ ।) ।। ୩ ।।

ବିଜ୍ଞାନ ମାତ୍ର (ବାସୁଦେବ), ପରମ-ଆନନ୍ଦ-ମୂର୍ତ୍ତି, ଆତ୍ମାରାମ, ଶାନ୍ତ, ନିବୃତ୍ତ ଦ୍ୱୈତଦୃଷ୍ଟି (ପ୍ରଦ୍ୟୁମ୍ନ) ତଥା ଆତ୍ମାନନ୍ଦାନୁଭୂତି ଦ୍ୱାରା ପ୍ରକଟ ଶକ୍ତି-ତେଜ (ଅନିରୁଦ୍ଧ)— ଏହିପରି ଚତୁର୍ବ୍ୟୂହ ଆକାରରେ ପ୍ରକାଶ ମହାନ୍ ବିଶ୍ୱମୂର୍ତ୍ତି ହୃଷୀକେଶଙ୍କୁ ପ୍ରଣାମ ।। ୪-୫ ।।

ଯାହାଙ୍କୁ ବ୍ରହ୍ମା, ବରୁଣ, ଇନ୍ଦ୍ର, ରୁଦ୍ର, ମରୁତ ପ୍ରଭୃତି ଦିବ୍ୟସ୍ତବ ଦ୍ୱାରା ସ୍ତୁତି କରନ୍ତି, ସାମଗାୟକଗଣ ସାଙ୍ଗପଦ ଓ ଉପନିଷଦ୍ ଦ୍ୱାରା ଗାନ କରନ୍ତି, ଯୋଗୀମାନେ ଯାହାଙ୍କୁ ଧ୍ୟାନରେ ଦେଖନ୍ତି, ଯାହାଙ୍କର ଅନ୍ତ ଦେବତା ବା ଅସୁର କେହି ପାଇପାରନ୍ତି ନାହିଁ, ସେହି ଅସାମାନ୍ୟ ଦେବତାଙ୍କୁ ମୋର ପ୍ରଣାମ ।। ୬ ।।

# କାରୁଣ୍ୟାଷ୍ଟକଂ

ଅପରାଧସହସ୍ରଭାଜନଂ ପତିତଂ ଭୀମଭବାର୍ଣ୍ଣବୋଦରେ ।
ଅଗତିଂ ଶରଣାଗତଂ ହରେ କୃପୟା କେବଳମାତ୍ମସାତ୍କୁରୁ ।। ୧ ।।
ଅବିବେକଘନାନ୍ଧଦିଙ୍ମୁଖେ ବହୁଧା ସନ୍ତତଦୁଃଖବର୍ଷିଣି ।
ଭଗବନ୍ ଭବଦୁର୍ଦ୍ଦିନେ ପଥଃ ସ୍ଖଳିତ ମାମବଲୋକୟାଚ୍ୟୁତ ।। ୨ ।।
ନ ମୃଷା ପରମାର୍ଥମେବ ମେ ଶୃଣୁ ବିଜ୍ଞାପନମେକମଗ୍ରତଃ ।
ଯଦି ମେ ନ ଦୟିଷ୍ୟସେ ତତୋ ଦୟନୀୟସ୍ତବ ନାଥ ଦୁର୍ଲ୍ଲଭଃ ।। ୩ ।।
ତଦହଂ ତ୍ୱଦୃତେ ନ ନାଥବାନ୍ ମଦୃତେ ତ୍ୱଂ ଦୟନୀୟବାନ୍ନ ଚ ।
ବିଧିନିର୍ମିତମେତଦନ୍ୱୟଂ ଭଗବନ୍ ପାଳୟ ମା ସ୍ମ ଜୀହପଃ ।। ୪ ।।
ବପୁରାଦିଷୁ ଯୋଽପି କୋଽପି ବା ଗୁଣତୋଽସାନି ଯଥାତଥାବିଧଃ ।
ତଦୟଂ ତବ ପାଦପଦ୍ମୟୋରହମଦ୍ୟୈବ ମୟା ସମର୍ପିତଃ ।। ୫ ।।

---

ହେ ହରି ! ସହସ୍ର ଅପରାଧ କରିଥିବା, ଭୟଙ୍କର ସଂସାରସାଗର ଗର୍ଭରେ ପଡ଼ିଥିବା, ଗତିହୀନ, ଶରଣାଗତ ମତେ କୃପାକରି ତୁମେ ନିଜର କରିନିଅ ।। ୧ ।।

ହେ ଭଗବାନ୍, ଅବିବେକ ମେଘଦ୍ୱାରା ଯେତେବେଳେ ସବୁଦିଗ ଅନ୍ଧକାର ହୋଇଛି ଓ ସବୁବେଳେ ଦୁଃଖ ହିଁ ବର୍ଷା ହେଉଛି, ସେତେବେଳେ ହେ ଅଚ୍ୟୁତ, (ତୁମର ତ ସ୍ଖଳନ ବା ଚ୍ୟୁତି ହୁଏନାହିଁ ବୋଲି ତୁମେ ଅଚ୍ୟୁତ) ସଂସାରର ଦୁର୍ଦ୍ଦିନ ପଥରେ ଖସି ପଡ଼ିଥିବା ମତେ ଦେଖ ।। ୨ ।।

ହେ ପ୍ରଭୁ, ତୁମେ ମୋର ଏକମାତ୍ର ଘୋଷଣା ଶୁଣିଥାଅ । ଏହା ମିଥ୍ୟା ନୁହେଁ, ଅତ୍ୟନ୍ତ ସତ୍ୟ । ତୁମେ ଯଦି ମତେ ଦୟା କରିବ ନାହିଁ, ତେବେ ମୋଠାରି ଦୟାର ପାତ୍ର ଆଉ ପାଇବ ନାହିଁ ।। ୩ ।।

ତୁମକୁ ଛାଡ଼ିଦେଲେ ମୋର ପ୍ରଭୁ ବା ନାଥ ହୋଇ ଆଉ କେହି ନାହିଁ, ତେଣୁ ମୁଁ ଅନାଥ । ମୋପରି ଦୀନକୁ ଛାଡ଼ିଦେଲେ ବା ଦୟା ନ କଲେ ତୁମେ ବି ଆଉ 'ଦୀନଦୟାଳୁ' ହୋଇପାରିବ ନାହିଁ, ତେଣୁ ବିଧିନିର୍ଦ୍ଦିଷ୍ଟ ତୁମର ଓ ମୋର ଏହି ସମ୍ବନ୍ଧ ବା ସମ୍ପର୍କକୁ ତୁମେ ତ୍ୟାଗ ନ କରି ରକ୍ଷାକର ।। ୪ ।।

ହେ ପ୍ରଭୁ, ଶରୀର, ଇନ୍ଦ୍ରିୟ, ମନ, ପ୍ରାଣ ଓ ବୁଦ୍ଧି ପ୍ରଭୃତିରେ ଗୁଣ ଅନୁରୂପେ ଯାହା କିଛି ମୁଁ ହୋଇଛି, ତାକୁ ତୁମର ପାଦପଦ୍ମରେ ଏବେ ଏଇଠି ସମର୍ପଣ କରି ଦେଉଛି ।। ୫ ।।

ମମ ନାଥ ଯଦସ୍ତି ଯୋଽସ୍ମ୍ୟହଂ ସକଲଂ ତଦ୍ଧି ତବୈବ ମାଧବ ।
ନିୟତସ୍ୱମିତି ପ୍ରବୁଦ୍ଧଧୀରଥବା କିନ୍ନୁ ସମର୍ପୟାମି ତେ ॥ ୬ ॥
ଅବବୋଧିତବାନିମାଂ ଯଥା ମୟି ନିତ୍ୟାଂ ଭବଦୀୟତାଂ ସ୍ୱୟମ୍ ।
କୃପୟୈବମନନ୍ୟଭୋଗ୍ୟତାଂ ଭଗବନ୍ ଭକ୍ତିମପି ପ୍ରୟଚ୍ଛ ମେ ॥ ୭ ॥
ତବ ଦାସ୍ୟସୁଖୈକସଙ୍ଗିନାଂ ଭବନେଷ୍ୱସ୍ତ୍ୱପି କୀଟଜନ୍ମ ମେ ।
ଇତରାବସଥେଷୁ ମା ସ୍ମ ଭୂଦପିମେ ଜନ୍ମ ଚତୁର୍ମୁଖାତ୍ମନା ॥ ୮ ॥

ପ୍ରାର୍ଥନା-ନାଥଯୋନିସହସ୍ରେଷୁ ଯେଷୁ ଯେଷୁ ବ୍ରଜାମ୍ୟହମ୍ ।
ତେଷୁ ତେଷ୍ୱଚଳା ଭକ୍ତିରଚ୍ୟୁତାସ୍ତୁ ସଦା ତ୍ୱୟି ॥ ୯ ॥
ଯା ପ୍ରୀତିରବିବେକାନାଂ ବିଷୟେଷ୍ୱନପାୟିନୀ ।
ତ୍ୱାମନୁସ୍ମରତଃ ସା ମେ ହୃଦୟାନ୍ମାପସର୍ପତୁ ॥ ୧୦ ॥
ଫଳଶ୍ରୁତିଃ-ନିତ୍ୟୋତ୍ସବସ୍ତଦା ତେଷାଂ ନିତ୍ୟଶ୍ରୀର୍ନିତ୍ୟମଙ୍ଗଳମ୍ ।
ଯେଷାଂ ହୃଦିସ୍ଥୋ ଭଗବାନ୍ମଙ୍ଗଳାୟତନଂ ହରିଃ ॥

---

ହେ ପ୍ରଭୁ, ମୁଁ ବା ମୋର ଯାହା କିଛି ଅଛି—ସବୁ ନିଶ୍ଚୟ ତୁମର ହିଁ ନିଯତ—ଧନ ବୋଲି ମୋ ବୁଦ୍ଧିରେ ମୁଁ ବୁଝିଛି । ହେ ମାଧବ, (ମୋର ପାଖରେ ଅନ୍ୟ କ'ଣ ଅଛି ଯେ) ମୁଁ କ'ଣ ତୁମକୁ ଦେବି ? ୬ ॥

ମୁଁ ସବୁବେଳେ (ଭବଦୀୟ ବା) ଆପଣଙ୍କର ବୋଲି ଆପଣ ନିଜେ ମୋତେ ଯେପରି ଜଣାଇଛନ୍ତି ବା ଜାଣିବାକୁ ଦେଇଛନ୍ତି ସେଇପରି କୃପାକରି ଆପଣଙ୍କଠାରେ ଅନନ୍ୟଭକ୍ତିକୁ ମତେ ପ୍ରଦାନ କରନ୍ତୁ ॥ ୭ ॥

ଆପଣଙ୍କର ଦାସତ୍ୱ କରିବାରେ ଏକାନ୍ତ ସୁଖ ମଣୁଥିବା ଲୋକଙ୍କର ଘରେ ମୋର ଜନ୍ମ କୀଟ ରୂପରେ ହେଉପଛେ, ଅନ୍ୟଘରେ ଚତୁର୍ମୁଖ-ବ୍ରହ୍ମା ରୂପରେ ମୋର ଜନ୍ମ ନହେଉ (କାରଣ ଆପଣଙ୍କ ଗୁଣାନୁଶ୍ରବଣ-କୀର୍ତ୍ତନର ସୌଭାଗ୍ୟ ଅନ୍ୟଘରେ ମିଳିବନାହିଁ) ॥ ୮ ॥

ହେ ପ୍ରଭୁ ! ଯେଉଁ ଯେଉଁ ଯୋନିରେ ମୁଁ ସହସ୍ର ଜନ୍ମ ଗ୍ରହଣ କରିବି, ସେହି ସେହି ଜନ୍ମରେ ସବୁବେଳେ ତୁମଠାରେ ମୋର ଅଚଳା ଭକ୍ତିରହୁ । ପ୍ରୀତି ଯାହା ଅବିବେକୀ ଲୋକର ବିଷୟଭୋଗରେ ସ୍ଥିରନିବଦ୍ଧ ଥାଏ, ସେହି ପ୍ରୀତି ତୁମର ଅନୁସ୍ମରଣରେ ମୋ ହୃଦୟରୁ କେବେହେଲେ ସ୍ଖଳନଯାଉ ॥ ୯-୧୦ ।

ଯେଉଁମାନଙ୍କ ହୃଦୟରେ ମଙ୍ଗଳ ଧାମ ଭଗବାନ ଶ୍ରୀହରି ରହିଛନ୍ତି, ସେମାନଙ୍କଠାରେ ସବୁବେଳେ ଲକ୍ଷ୍ମୀ, ସର୍ବଦା ମଙ୍ଗଳ ଓ ସତତ ଆନନ୍ଦ-ଉତ୍ସବ ଥାଏ ॥

## ଶ୍ରୀ ହରିଶରଣାଷ୍ଟକଂ

ଧ୍ୟେୟଂ ବଦନ୍ତି ଶିବମେବ ହି କେଚିଦନ୍ୟେ
ଶକ୍ତିଂ ଗଣେଶମପରେ ତୁ ଦିବାକରଂ ବୈ ।
ରୂପୈସ୍ତୁ ତୈରପି ବିଭାସି ଯତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୧ ॥

ନୋ ସୋଦରୋ ନ ଜନକୋ ଜନନୀ ନ ଜାୟା
ନୈବାତ୍ମଜୋ ନ ଚ କୁଳଂ ବିପୁଳଂ ବଳଂ ବା ।
ସନ୍ଦୃଶ୍ୟତେ ନ କିଲ କୋଽପି ସହାୟକୋ ମେ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୨ ॥

ନୋପାସିତା ମଦମପାସ୍ୟ ମୟା ମହାନ୍ତ-
ସ୍ତୀର୍ଥାନି ଚାସ୍ତିକଧିୟା ନହି ସେବିତାନି ।
ଦେବାର୍ଚ୍ଚନଂ ଚ ବିଧିବନ୍ନ କୃତଂ କଦାପି
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୩ ॥

ଦୁର୍ବାସନା ମମ ସଦା ପରିକର୍ଷୟନ୍ତି
ଚିତ୍ତଂ ଶରୀରମପି ରୋଗଗଣା ଦହନ୍ତି ।
ସଞ୍ଜୀବନଂ ଚ ପରହସ୍ତଗତଂ ସଦୈବ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୪ ॥

---

କିଏ କହନ୍ତି ଶିବଙ୍କୁ ଧ୍ୟାନ କର; ଆଉ କିଏ କହନ୍ତି ଶକ୍ତି ବା ଦେବୀଙ୍କୁ, କିଏ ଗଣେଶଙ୍କୁ, ଅନ୍ୟମାନେ ସୂର୍ଯ୍ୟଙ୍କୁ ଧ୍ୟାନ କରିବାପାଇଁ କହନ୍ତି । ସେ ସବୁ ରୂପରେ ତୁମେ ହିଁ ପ୍ରକାଶିତ ହୋଇଛ । ତେଣୁ ହେ ଦୀନବନ୍ଧୁ, ତୁମେ ହିଁ ମୋର ଶରଣର ରକ୍ଷକ । ୧ ॥

ମୋର ଭାଇ, ବାପା, ମା, ସ୍ତ୍ରୀ, ପୁଅ, କୁଳ ବା ବିଶେଷ ବଳ ନାହିଁ । ମୋର ସହାୟକ ମଧ୍ୟ କେହି ଦେଖା ଯାଉନାହିଁ । ହେ ଦୀନବନ୍ଧୁ ! ତେଣୁ ତୁମେ ହିଁ ମୋର ଶରଣ-ରକ୍ଷକ ॥ ୨ ॥

ଅଭିମାନ ବା ଗର୍ବ ତ୍ୟାଗକରି ମହାତ୍ମାମାନଙ୍କର ସେବା ମୁଁ କରିନାହିଁ । ଆସ୍ତିକ ବୁଦ୍ଧିରେ ଧର୍ମାର୍ଜନ କରିବା ପାଇଁ ମୁଁ ତୀର୍ଥାଟନ କରିନାହିଁ । ବିଧିବତ ଭାବରେ ଦେବତାମାନଙ୍କର ପୂଜା ମଧ୍ୟ ମୁଁ କେବେ କରିନାହିଁ । ତେଣୁ ହେ ଦୀନବନ୍ଧୁ ! ତୁମଠାରେ ମୁଁ ଶରଣ ପଶୁଛି ॥ ୩ ।

ମନ୍ଦ ଅଭିଳାଷ ସବୁବେଳେ ଖରାପ କଥା କରିବାକୁ ମନକୁ ମତେ ଟାଣି-ନେଉଛନ୍ତି । ଶରୀରକୁ ନାନାପ୍ରକାର ରୋଗ ପୀଡ଼ା ଦେଉଛନ୍ତି । ବଞ୍ଚିବାଟା ବା ଏ ଜୀବନ ଅନ୍ୟ (ଯମ ବା ଆକସ୍ମିକ ଦୁର୍ଘଟଣା ଘଟାଉଥିବା ଶତ୍ରୁ) ହାତରେ

ପୂର୍ବଂ କୃତାନି-ଦୁରିତାନି ମୟାତୁଯାନି
ସ୍ମୃତ୍ୱାଖିଳାନି ହୃଦୟଂ ପରିକମ୍ପତେ ମେ ।
ଖ୍ୟାତା ଚ ତେ ପତିତପାବନତା ତୁ ଯସ୍ମାତ୍
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୫ ॥
ଦୁଃଖଂ ଜରାମରଣଜଂ ବିବିଧାଶ୍ଚ ରୋଗାଃ
କାକାଶ୍ୱସୂକରଜନିର୍ନିରୟେ ଚ ପାତଃ ।
ତେ ବିସ୍ମୃତେ ଫଳମିଦଂ ବିତତଂ ହି ଲୋକେ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୬ ॥
ମୂଢୋଽପି ପାପକଳିତୋଽପି ବିନିନ୍ଦିତୋଽପି
ବ୍ରୂୟାତ୍ତବାହମିତି ଯସ୍ତୁ କିଲୈକବାରଂ ।
ତଂ ଯଚ୍ଛସୀଶ ନିଜଲୋକମିତି ବ୍ରତଂ ତେ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୭ ॥
ବେଦେଷୁ ଧର୍ମବଚନେଷୁ ତଥାଗମେଷୁ
ରାମାୟଣେଽପି ଚ ପୁରାଣକଦମ୍ବକେ ବା ।
ସର୍ବତ୍ର ସର୍ବବିଧିନା ଗଦିତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ॥ ୮ ॥ ବ୍ରହ୍ମାନନ୍ଦ ରଚିତ

---

ନିର୍ଭର କରେ । ହେ ଦୀନବନ୍ଧୁ । ତେଣୁ ତୁମେହିଁ ମୋର ଶରଣ-ରକ୍ଷକ ।। ୪ ।।

ପୂର୍ବେ ମୁଁ ଯେଉଁ ସବୁ ଅତି ପାପ କରିଛି ସେ ସବୁ ଭାବିଲେ ଆଜି ମୋର ହୃଦୟ କମ୍ପି ଉଠୁଛି । ପତିତଙ୍କୁ ପବିତ୍ର କରିବା ଯୋଗୁଁ ପତିତପାବନ ବୋଲି ତୁମର ଖ୍ୟାତି ରହିଛି । ହେ ଦୀନବନ୍ଧୁ, ତୁମଠାରେ ମୁଁ ଶରଣ ପଶୁଛି ।। ୫ ।।

ବୃଦ୍ଧାବସ୍ଥା ତଥା ମରଣଯୋଗୁଁ ଦୁଃଖ; ଅନେକ ପ୍ରକାର ରୋଗ, କାଉ, ଘୋଡ଼ା, ଘୁଷୁରି ହୋଇ ବିଭିନ୍ନ ଯୋନିରେ ଜନ୍ମ ହେବା ଏବଂ ନରକରେ ପଡ଼ି ଘାଣ୍ଟି ହେବା ପ୍ରଭୃତି ତୁମକୁ ଭୁଲିଯିବାର ଫଳ ବୋଲି ସଂସାରରେ ପ୍ରଚଳିତ ଅଛି । ହେ ଦୀନବନ୍ଧୁ ! ତେଣୁ ତୁମେହିଁ ମୋର ଶରଣ ରକ୍ଷ ।। ୬ ।।

ମଢ ହେଉ କି ପାପୀ ହେଉ କି ନିନ୍ଦିତ ଲୋକ ହେଉପଛେ ଯେ ଯଦି ମୁଁ 'ତୁମର' ବୋଲି ଥରେହେଲେ କହିଦିଏ, ତେବେ ତୁମେ ତାକୁ ନିଜ ପାଖରେ ରଖି ସାଲୋକ୍ୟ ମୁକ୍ତି ଦେବା ହେଉଛି ତୁମର ବ୍ରତ ବା ପଣ । ତେଣୁ ହେ ଦୀନବନ୍ଧୁ, ମୁଁ ତୁମର ଶରଣ ପଶୁଛି ।। ୭ ।।

ବେଦାଦି ନିଗମ ଶାସ୍ତ୍ରରେ ମନ୍ୱାଦି ଧର୍ମଶାସ୍ତ୍ରରେ ଏବଂ ତନ୍ତ୍ରାଦି ଆଗମ ଶାସ୍ତ୍ରରେ, ରାମାୟଣ ଓ ଅଷ୍ଟାଦଶ ପୁରାଣରେ ସବୁଥିରେ ସବୁପ୍ରକାରେ ତୁମକଥା କୁହାଯାଇଛି । ହେ ଦୀନବନ୍ଧୁ । ତେଣୁ ତୁମଠାରେ ଶରଣ ପଶୁଛି ।। ୮ ।।

# ଦ୍ୱାଦଶାକ୍ଷର ସ୍ତୋତ୍ର ବା ମଧୁସୂଦନ ସ୍ତୋତ୍ର

ମନ୍ୱାଦି ଧର୍ମଶାସ୍ତ୍ରୋକ୍ତ ମଧୁସୂଦନସ୍ତୋତ୍ରସ୍ୟ, ନାରଦଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ନିରଞ୍ଜନୋ ଦେବତା, ମଂ ବୀଜଂ, ଧୁଂ ଶକ୍ତିଃ ମମାଭୀଷ୍ଟସିଦ୍ଧ୍ୟର୍ଥେ ବିନିଯୋଗଃ ।

—କରନ୍ୟାସଃ—

ମଂ ଅଙ୍ଗୁଷ୍ଠାଭ୍ୟାଂ ନମଃ, ଧୁଂ ତର୍ଜନୀଭ୍ୟାଂ ସ୍ୱାହା, ସୂଂ ମଧ୍ୟମାଭ୍ୟାଂ ବୌଷଟ୍ ଦଂ ଅନାମିକାଭ୍ୟାଂ ହୁଂ, ନଃ କରତଳ କରପୃଷ୍ଠାଭ୍ୟାଂ ଫଟ୍ । ଏବମଙ୍ଗନ୍ୟାସଃ "ଅସ୍ୟାର୍ଥ ପଣ୍ଡିତ ବିଶେଷଃ"

—ଧ୍ୟାନଂ—

ପ୍ରଳୟଜଳଧିମଧ୍ୟେ ଜାନୁଦଘ୍ନ-ସ୍ୱକର୍ଣ୍ଣୋ-
ତ୍ଥିତ ମଧୁଦନୁଜସ୍ୟ ଛେଦନେ ଯତ୍ନବନ୍ତଃ ।
ଧୃତ ସରସିଜ ହସ୍ତଂ ଶଙ୍ଖ କୌମୋଦକୀଭ୍ୟାଂ
ହୃଦୟକମଳ ମଧ୍ୟେ ତ୍ୱାଂ ଭଜେ ଶୈଘ୍ରମୂର୍ତ୍ତିମ୍ ॥ ୦ ॥
ଓମ୍ ଇତି ଜ୍ଞାନମାତ୍ରେଣ ଯତ୍ର ଜୀର୍ଯ୍ୟନ୍ତି ନର୍ଜିତାଃ ।
କାଳନିଦ୍ରାଂ ପ୍ରପନ୍ନୋଽସ୍ମି ତ୍ରାହିମାଂ ମଧୁସୂଦନ ॥ ୧ ॥
ନ ଗତିର୍ବିଦ୍ୟତେ ନାଥ ତ୍ୱମେବ ଶରଣଂ ପ୍ରଭୋ ।
ପାପପଙ୍କେ ନିମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ ॥ ୨ ॥

---

ପ୍ରଳୟକାଳୀନ ଜଳ ମଧ୍ୟରେ ଜାନୁ ଉପରେ କର୍ଣ୍ଣଜାତ 'ମଧୁ' ନାମକ ଅସୁରଙ୍କୁ ଚକ୍ରରେ ଛେଦନ କରୁଥିବା ଶଙ୍ଖ, ଚକ୍ର, ଗଦା, ପଦ୍ମ ହସ୍ତ ଉଗ୍ରମୂର୍ତ୍ତି ମଧୁସୂଦନଙ୍କୁ ହୃଦୟପଦ୍ମରେ ଭଜନ କରୁଅଛୁ । ୦ ।

ଓଁକାର ସ୍ୱରୂପ ଏକାକ୍ଷର ବ୍ରହ୍ମତତ୍ତ୍ୱ ବୋଧହେଲେ ବିଷୟାସକ୍ତି ନଷ୍ଟ ହୁଏ କିନ୍ତୁ ମୁଁ କାଳନିଦ୍ରାରେ ଅଭିଭୂତ ହେତୁ ସେତତ୍ତ୍ୱ ବୋଧରେ ଅକ୍ଷମ । ହେ ମଧୁସୂଦନ ମୋତେ ପରିତ୍ରାଣ କର । ୧ ।

ହେ ନାଥ । ମୋର ଅନ୍ୟ ଆଶ୍ରୟ ନାହିଁ, ତୁମେ ହିଁ ଏକମାତ୍ର ଆଶ୍ରୟ । ମୁଁ ପାପ ପଙ୍କରେ ବୁଡିଯାଇଛି । ହେ ମଧୁସୂଦନ ମୋତେ ଉଦ୍ଧାର କର । ୨ ।

ମୋହିତୋ ମୋହଜାଲେନ ପୁତ୍ରଦାରଧନାଦିଷୁ ।
ତୃଷ୍ଣୟା ପୀଡ୍ୟମାନୋଽସ୍ମି ତ୍ରାହି ମାଂ ମଧୁସୂଦନ ॥ ୩ ॥
ଭକ୍ତିହୀନଞ୍ଚ ଦୀନଞ୍ଚ ଦୁଃଖ ଶୋକାତୁରଂ ପ୍ରଭୋ ।
ଅନାଶ୍ରୟମନାଥଞ୍ଚ ତ୍ରାହି ମାଂ ମଧୁସୂଦନ ॥ ୪ ॥
ଗତାଗତେନ ଶ୍ରାନ୍ତୋଽସ୍ମି ଦୀର୍ଘସଂସାରବର୍ତ୍ମସୁ ।
ପୁନର୍ନାଗନ୍ତୁମିଚ୍ଛାମି ତ୍ରାହି ମାଂ ମଧୁସୂଦନ ॥ ୫ ॥
ବସାମି ଗର୍ଭବାସେଷୁ ବିବିଧେଷୁ ପୁନଃପୁନଃ ।
ଗର୍ଭବାସ ମହାଦୁଃଖାତ୍ ତ୍ରାହି ମାଂ ମଧୁସୂଦନ ॥ ୬ ॥
ତେନ ଦେବ ପ୍ରପନ୍ନୋଽସ୍ମି ତ୍ରାଣାର୍ଥଂ ତ୍ୱତ୍ପରାୟଣଃ ।
ଦୁଃଖାର୍ଣ୍ଣବନିମଗ୍ନୋଽହଂ ତ୍ରାହି ମାଂ ମଧୁସୂଦନ ॥ ୭ ॥
ବାଚା ଯଚ୍ଚ ପ୍ରତିଜ୍ଞାତଂ କର୍ମଣା ନୋପପାଦିତମ୍ ।
ତତ୍ପାପାବ୍ଧି ନିମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ ॥ ୮ ॥

---

ମୁଁ ପୁତ୍ର, ପତ୍ନୀ, ଗୃହ ପ୍ରଭୃତି ମାୟାପାଶରେ ମୋହିତ ହୋଇଅଛି । ଧନ ଲୋଭରେ କଷ୍ଟ ପାଉଛି; ହେ ମଧୁସୂଦନ ମୋତେ ପରିତ୍ରାଣ କର । ୩ ।

ହେ ପ୍ରଭୋ, ମୁଁ ଭକ୍ତିହୀନ, ଦୀନ, ଦୁଃଖ ଓ ଶୋକରେ କାତର, ନିରାଶ୍ରୟ ଓ ନିଃସହାୟ; ହେ ମଧୁସୂଦନ ମୋତେ ପରିତ୍ରାଣ କର । ୪ ।

ଏହି ସଂସାର ପଥ ଅସୀମ, ଏଥିରେ ବାରମ୍ବାର ଯିବା ଆସିବା ଦ୍ୱାରା (ପୁନର୍ଜନ୍ମ, ଓ ମୃତ୍ୟୁରୂପକ ଯାତ୍ରାରେ) ମୁଁ ପରିଶ୍ରାନ୍ତ ହୋଇଅଛି । ଆଉ ଏ ପଥରେ ଆସିବା ପାଇଁ (ପୁନର୍ଜନ୍ମ ଲାଭ) ମୋର ଇଚ୍ଛା ନାହିଁ । ହେ ମଧୁସୂଦନ ମୋତେ ପରିତ୍ରାଣ କର । ୫ ।

ମୁଁ ପୁନଃପୁନଃ ନାନା ପ୍ରକାର ଗର୍ଭରେ ବାସ କରିଅଛି । ହେ ମଧୁସୂଦନ ଗର୍ଭବାସ ହେତୁକ ମହାଦୁଃଖରୁ ମୋତେ ପରିତ୍ରାଣ କର । ୬ ।

ହେ ଦେବ; ଗର୍ଭବାସ ଦୁଃଖ ବହୁବାର ଭୋଗକରି ଏଥର ଆପଣଙ୍କ ଠାରେ ଶରଣ ପଶିଛି । ଦୁଃଖ ସାଗରରେ ନିମଗ୍ନ ହୋଇଅଛି । ହେ ମଧୁସୂଦନ ମୋତେ ପରିତ୍ରାଣ କର । ୭ ।

ବାକ୍ୟରେ ପ୍ରତିଜ୍ଞା କରିଥିଲି ଯେ 'ଜୀବ ମାତୃଗର୍ଭରେ ଥିବାବେଳେ କଷ୍ଟରୁ ମୁକ୍ତି ପାଇବା ପାଇଁ ଭଗବାନଙ୍କୁ ସ୍ମରଣ କରୁଥାଏ ଓ ସେଥିରୁ ମୁକ୍ତ ହେଲେ ସର୍ବଦା ଶୁଭକର୍ମ କରିବ ଓ ଭଗବାନଙ୍କଠାରେ ଭକ୍ତି ରଖିବ । କିନ୍ତୁ ଜନ୍ମହେଲାମାତ୍ରେ ମାୟାଗ୍ରସ୍ତ ହୋଇ ସବୁ ପାଶୋରି ଦେଲି ।

ସୁକୃତଂ ନକୃତଂ କିଞ୍ଚିଦ୍ ଦୁଷ୍କୃତଞ୍ଚ କୃତଂ ମୟା ।
ସଂସାରାର୍ଣ୍ଣବମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ ॥ ୯ ॥
ଦେହାନ୍ତରସହସ୍ରେଷୁ ପ୍ରାପିତଂ ଭ୍ରମଣଂ ମୟା ।
ତିର୍ଯ୍ୟକ୍‌ତ୍ୱଂ ମାନୁଷତ୍ୱଞ୍ଚ ତ୍ରାହି ମାଂ ମଧୁସୂଦନ ॥ ୧୦ ॥
ବାଚୟାମି ଯଥୋନ୍ମତ୍ତଃ ପ୍ରଲପାମି ତବାଗ୍ରତଃ ।
ଜରାମରଣଭୀତୋଽସ୍ମି ତ୍ରାହି ମାଂ ମଧୁସୂଦନ ॥ ୧୧ ॥
ଯତ୍ର ଯତ୍ର ଚ ଜାତୋଽସ୍ମି ସ୍ତ୍ରୀଷୁ ବା ପୁରୁଷେଷୁ ବା ।
ଦେହି ତତ୍ରାଚଳାଂ ଭକ୍ତିଂ ତ୍ରାହିମାଂ ମଧୁସୂଦନ ॥ ୧୨ ॥
ଗତ୍ୱା ଗତ୍ୱା ନିବର୍ତ୍ତନ୍ତେ ଚନ୍ଦ୍ରସୂର୍ଯ୍ୟାଦୟୋ ଗ୍ରହାଃ ।
ଅଦ୍ୟାପି ନ ନିବର୍ତ୍ତନ୍ତେ ଦ୍ୱାଦଶାକ୍ଷରଚିନ୍ତକାଃ । ୧୩ ।

---

କାର୍ଯ୍ୟରେ ତାହା କରିନାହିଁ, ପ୍ରତିଜ୍ଞାଭଙ୍ଗ ଫଳରେ ପାପସାଗରରେ ମୁଁ ବୁଡ଼ିଯାଇଛି, ହେ ମଧୁସୂଦନ, ମୋତେ ପରିତ୍ରାଣ କର । ୮ ।

ମୁଁ କୌଣସି ପୁଣ୍ୟକାମ କରିନାହିଁ, ପାପ କରିଅଛି । ଫଳରେ ସଂସାର ସାଗରରେ ବୁଡ଼ିଯାଇଅଛି (ସାଂସାରିକ ମାୟା ମୋତେ ଘାରି ପକାଇଲାଣି) । ହେ ମଧୁସୂଦନ ମୋତେ ପରିତ୍ରାଣ କର । ୯ ।

ମୁଁ ସହସ୍ର ସହସ୍ର ଦେହରେ ଭ୍ରମଣ କଲିଣି କେତେବେଳେ ମନୁଷ୍ୟେତର ବା କେତେବେଳେ ମନୁଷ୍ୟ ଜନ୍ମ ଲାଭ କରିଅଛି । ହେ ମଧୁସୂଦନ, ମୋତେ ପରିତ୍ରାଣ କର । ୧୦ ।

ମୁଁ ଆପଣଙ୍କ ସମ୍ମୁଖରେ ଉନ୍ମତ୍ତ ହୋଇ କେତେକଥା କହୁଛି କେତେ ପ୍ରଳାପ ମଧ୍ୟ କରୁଛି (ମୁଁ ଯେଉଁସବୁ ସାର୍ଥକ ବା ନିରର୍ଥକ କଥା କହୁଅଛି ସେଥିରେ ଭଗବଦ୍ଭକ୍ତି ନାହିଁ) । ମୁଁ ଜରା ତଥା ମରଣଭୀତ । ହେ ମଧୁସୂଦନ, ମୋତେ ପରିତ୍ରାଣ କର । ୧୧ ।

ଭବିଷ୍ୟତ ଜନ୍ମରେ ମୁଁ ସ୍ତ୍ରୀ ବା ପୁରୁଷ ହୁଏ, ମୋତେ ଅଚଳା ଭକ୍ତି ଦାନ କର, ହେ ମଧୁସୂଦନ, ମୋତେ ପରିତ୍ରାଣ କର । ୧୨ ।

ଚନ୍ଦ୍ର ସୂର୍ଯ୍ୟ ପ୍ରଭୃତି ଗ୍ରହମାନେ ପୁନଃ ପୁନଃ ଗମନାଗମନ କରୁଛନ୍ତି ଅର୍ଥାତ୍ ଉଦୟ ତଥା ଅସ୍ତଗତ ସେମାନଙ୍କର ଅଛି । କିନ୍ତୁ ଦ୍ୱାଦଶାକ୍ଷର ଚିନ୍ତକମାନଙ୍କର ଫେରିବା କଥା ନାହିଁ । ଅର୍ଥାତ୍ ସେମାନେ ମୁକ୍ତିଲାଭ କରିଥାନ୍ତି । ୧୩ ।

ବହୂନି ସନ୍ତି ସ୍ତୋତ୍ରାଣି ବାଞ୍ଛିତାର୍ଥପ୍ରଦାନି ବୈ ।
ଦ୍ୱାଦଶାକ୍ଷରାତ୍ ପରଂ ନାସ୍ତି ବାସୁଦେବେନ ଭାଷିତମ୍ ।। ୧୪ ।।
ଊର୍ଦ୍ଧ୍ୱେ ପାତାଳମର୍ତ୍ତ୍ୟେଷୁ ବ୍ୟାପ୍ତଲୋକ ଜଗତ୍ପ୍ରଭୁମ୍ ।
ଦ୍ୱାଦଶାକ୍ଷରାତ୍ପରଂ ନାସ୍ତି ବାସୁଦେବେନ ଭାଷିତମ୍ ।। ୧୫ ।।

ଦ୍ୱାଦଶାକ୍ଷରଂ ମହାସ୍ତୋତ୍ରଂ ସର୍ବକାମଫଳପ୍ରଦମ୍ ।
ଗର୍ଭବାସନିବାସାୟ ଶୁକେନ ପରିଭାଷିତମ୍ ।। ୧୬ ।।

ଦ୍ୱାଦଶାକ୍ଷରଂ ନରଦ୍ୱାରେ ଯଃ ପଠେଦ୍ଧରିବାସରେ ।
ସ ଗଚ୍ଛେଦ୍ ବୈଷ୍ଣବଂ ଧାମ ଯତ୍ର ଯୋଗେଶ୍ୱରୋ ହରିଃ ।। ୧୭ ।।

ଇତି ଶ୍ରୀଶୁକବିରଚିତଂ ଦ୍ୱାଦଶାକ୍ଷରଂ ମଧୁସୂଦନ ସ୍ତୋତ୍ରଂ ସମାପ୍ତମ୍ ।

---

ବାଞ୍ଛିତଫଳ ପ୍ରଦାନ କରିବା ଅନେକ ସ୍ତୋତ୍ର ଅଛି । କିନ୍ତୁ ଦ୍ୱାଦଶାକ୍ଷର-ମନ୍ତ୍ରସମ୍ବଳିତ ଏହି ସ୍ତୋତ୍ରଠାରୁ ଅଧିକ କୌଣସି ସ୍ତୋତ୍ର ନାହିଁ ବୋଲି ଶ୍ରୀବାସୁଦେବ କହିଛନ୍ତି । ୧୪ ।

ସ୍ୱର୍ଗ, ମର୍ତ୍ତ୍ୟ ପାତାଳରେ ବ୍ୟାପ୍ତ ହୋଇଥିବା ଶ୍ରୀ ବାସୁଦେବଙ୍କ ଦ୍ୱାରା କଥିତ ଏହି ସ୍ତୋତ୍ର ସର୍ବ ଉତ୍ତମ ଅଟେ । ୧୫ ।

ଶୁକ କଥିତ ଦ୍ୱାଦଶାକ୍ଷର ମହାସ୍ତୋତ୍ର ସର୍ବକାମନା ପୂରଣ କରେ ଓ ଗର୍ଭବାସ ଦୁଃଖରୁ ମୁକ୍ତ କରିଥାଏ । ୧୬ ।

ଏକାଦଶୀ ଦିନ ନରଦ୍ୱାର ହୋଇ ଏହି ସ୍ତୋତ୍ର ଯେ ପାଠ କରିବ ସେ ଯୋଗେଶ୍ୱର ଶ୍ରୀହରିଙ୍କ ବାସସ୍ଥଳ (ବୈଷ୍ଣବ ଧାମ ବୈକୁଣ୍ଠ)କୁ ଗମନ କରିବ । ୧୭ ।

---

ଭକ୍ତପ୍ରବର ଦେବର୍ଷି ନାରଦଙ୍କଠାରୁ ଦ୍ୱାଦଶାକ୍ଷର ବାସୁଦେବମନ୍ତ୍ର ପାଇ ବାଳକ ଧ୍ରୁବ ଭଗବାନ ବିଷ୍ଣୁଙ୍କର ଦର୍ଶନ ପାଇଥିଲେ । ଏଣୁ ଏହି ସ୍ତୋତ୍ର ଅତୀବ ମହତ୍ତ୍ୱପୂର୍ଣ୍ଣ । (ମହାମେଧାନନ୍ଦନାଥ)

# ସଙ୍କଟନାଶନ ଲକ୍ଷ୍ମୀନୃସିଂହ ସ୍ତୋତ୍ର

ଶ୍ରୀମତ୍ପୟୋନିଧିନିକେତନ ଚକ୍ରପାଣେ
ଭୋଗୀନ୍ଦ୍ର ଭୋଗମଣିରଞ୍ଜିତ-ପୁଣ୍ୟମୂର୍ତ୍ତେ ।
ଯୋଗୀଶ ଶାଶ୍ୱତ ଶରଣ୍ୟ ଭବାବ୍ଧିପୋତ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୧ ॥

ବ୍ରହ୍ମେନ୍ଦ୍ର ରୁଦ୍ରମରୁଦର୍କକିରୀଟ-କୋଟି-
ସଂଘଟ୍ଟିତାଙ୍ଘ୍ରି-କମଲାମଲକାନ୍ତିକାନ୍ତ
ଲକ୍ଷ୍ମୀଲସତ୍କୁଚସରୋରୁହରାଜହଂସ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୨ ॥

ସଂସାରଘୋରଗହନେ ଚରତୋ ମୁରାରେ
ମାରୋଗ୍ର-ଭୀକର-ମୃଗପ୍ରବରାର୍ଦ୍ଦିତସ୍ୟ ।
ଆର୍ତ୍ତସ୍ୟ ମତ୍ସରନିଦାଘନିପୀଡ଼ିତସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୩ ॥

---

ହେ ଶ୍ରୀପତି, କ୍ଷୀରସାଗର ଆପଣଙ୍କର ନିବାସ ସ୍ଥାନ । ହେ ଚକ୍ରପାଣି, ନାଗରାଜ ଅନନ୍ତଙ୍କର ଫଣାସ୍ଥ ମଣିମାନଙ୍କ କିରଣାବଳୀରେ ଅନୁରଞ୍ଜିତ ହୋଇଛି ଆପଣଙ୍କର ପୁଣ୍ୟମୂର୍ତ୍ତି । ଆପଣ ଯୋଗୀଶ୍ୱର, ସନାତନ ଶରଣାଗତର ଆଶ୍ରୟ । ହେ ଭବସାଗରରେ ପୋତତୁଲ୍ୟ, ହେ ଲକ୍ଷ୍ମୀନୃସିଂହ, ମୋତେ କରାବଲମ୍ବନ ପ୍ରଦାନ କର ॥ ୧ ॥

ବ୍ରହ୍ମା, ଇନ୍ଦ୍ର, ରୁଦ୍ର, ମରୁଦ୍‌ଗଣ ଓ ଆଦିତ୍ୟାଦି ସମସ୍ତେ ସତତ ଆପଣଙ୍କର ପାଦପଦ୍ମରେ ପ୍ରଣାମ କରନ୍ତି । ସେତେବେଳେ ଆପଣଙ୍କର ପାଦପଦ୍ମ ସେ ସମସ୍ତଙ୍କ ଅନେକ ମୁକୁଟସ୍ଥ ମଣିମାନଙ୍କର କାନ୍ତି ବା ପ୍ରଭା ମିଶ୍ରିତ ହେବାରୁ ଅତି ସୁନ୍ଦର ଦେଖାଯାଏ । ହେ କମଳାକୁଚସରୋଜ ରାଜହଂସ, ହେ ଲକ୍ଷ୍ମୀନୃସିଂହ ଆପଣ ମୋତେ କରାବଲମ୍ବନ ପ୍ରଦାନ କରନ୍ତୁ ॥ ୨ ॥

ହେ ମୁରାରି ମୁଁ ସଂସାରରୂପକ ଘୋର ବଣରେ ଭ୍ରମଣ କରୁଅଛି । କାମରୂପ ଉଗ୍ର ଓ ଭୟଙ୍କର ସିଂହ ମୋତେ ସର୍ବଦା ପୀଡ଼ା ଦେଉଅଛି । ମୁଁ ମାତ୍ସର୍ଯ୍ୟରୂପ ଗ୍ରୀଷ୍ମ ପୀଡ଼ାରେ ପୀଡ଼ିତ ଓ ଅତ୍ୟନ୍ତ ଆର୍ତ୍ତ ହୋଇ ତାହି ତାହି ଡାକୁଛି । ହେ ଲକ୍ଷ୍ମୀନୃସିଂହ ମୋତେ କରାବଲମ୍ବନ ପ୍ରଦାନ କର ॥ ୩ ॥

ସଂସାରକୂପମତି ଘୋରମଗାଧମୂଳଂ
ସମ୍ପ୍ରାପ୍ୟ ଦୁଃଖଶତସର୍ପସମାକୁଳସ୍ୟ
ଦୀନସ୍ୟ ଦେବ କୃପୟାପଦମାଗତସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୪ ॥
ସଂସାରସାଗରବିଶାଳକରାଳକାଳ-
ନକ୍ରଗ୍ରହଗ୍ରସନନିଗ୍ରହବିଗ୍ରହସ୍ୟ,
ବ୍ୟଗ୍ରସ୍ୟ ରାଗରସନୋର୍ମିନିପୀଡିତସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୫ ॥
ସଂସାର ବୃକ୍ଷମଘବୀଜମନନ୍ତ କର୍ମ –
ଶାଖାଶତଂ କରଣପତ୍ରମନଙ୍ଗପୁଷ୍ପମ୍ ।
ଆରୁହ୍ୟ ଦୁଃଖଫଳିତଂ ପତତୋ ଦୟାଳୋ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୬ ॥
ସଂସାରସର୍ପଘନବକ୍ତ୍ର-ଭୟୋଗ୍ରତୀବ୍ର
ଦଂଷ୍ଟ୍ରାକରାଳ ବିଷଦଗ୍ଧବିନଷ୍ଟ ମୂର୍ତ୍ତେଃ ।
ନାଗାରିବାହନ ସୁଧାବ୍ଧି ନିବାସ ଶୌରେ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ॥ ୭ ॥

---

ହେ ପ୍ରଭୁ, ମୁଁ ଅତି ଭୀଷଣ ଅଗାଧ ଭବକୂପରେ ନିମଗ୍ନ, ଶତ ଶତ ଦୁଃଖରୂପକ ଭୁଜଙ୍ଗଦ୍ୱାରା ପୀଡ଼ିତ, ମୁଁ ଅତି ଦୀନ ଓ ମହାଦୁଃଖ ଭୋଗ କରୁଅଛି । ହେ ଲକ୍ଷ୍ମୀନୃସିଂହ କୃପାକରି ବିପଦ୍‌ଗ୍ରସ୍ତ ମୋତେ କରାବଲମ୍ବନ ଦିଅ ॥ ୪ ॥

ଭବସାଗରରେ ବିଶାଳ କରାଳ କାଳ ସ୍ୱରୂପ କୁମ୍ଭୀରର ଆକ୍ରମଣ ଓ ଗ୍ରାସ ଭୟରେ ମୋର ଶରୀର ପୀଡ଼ିତ । କାମ ଓ ଲୋଭରୂପ ଲହରୀର ଆଘାତରେ ପିଡ଼ା ପାଇ ମୁଁ ଉଦ୍ଧାରଲାଗି ବଡ ବ୍ୟାକୁଳ । ହେ ଲକ୍ଷ୍ମୀନୃସିଂହ ମୋତେ କରାବଲମ୍ବ ପ୍ରଦାନ କର ॥ ୫ ॥

ହେ ଦୟାଳୁ, ପାପସକଳ ଯାହାର ବୀଜ, ଅନନ୍ତକର୍ମ ଯାହାର ଶତ ଶତ ଶାଖା, ଇନ୍ଦ୍ରିୟଗଣ ଯାହାର ପତ୍ର, ଏବଂ ସ୍ୱୟଂ ଅନଙ୍ଗ ଯାହାର ପୁଷ୍ପ, ଦୁଃଖ ଯାହାର ଫଳ, ସେହି ସଂସାର ବୃକ୍ଷରେ ମୁଁ ଆରୋହଣକରି ପଡ଼ିଯାଉଛି । ହେ ଲକ୍ଷ୍ମୀନୃସିଂହ ମୋତେ କରାବଲମ୍ବନ ଦିଅ ॥ ୬ ॥

ହେ ଗରୁଡବାହାନ, ସଂସାରରୂପକ ସର୍ପବଦନ ଦ୍ୱାରା ଜଣେ ମୋତେ ଦଂଶନ କରୁଅଛି, ତାହାର ଦନ୍ତର ତୀବ୍ରତର ବିଷ ମୋର ସର୍ବାଙ୍ଗକୁ ଦଗ୍ଧ

ସଂସାର ଦାବ ଦହନାକୁଳଭୀକରୋରୁ-
ଜ୍ୱାଳାବଳୀଭିରଭିଦଗ୍ଧତନୂରୁହସ୍ୟ ।
ତ୍ୱତ୍ପାଦପଦ୍ମସରସୀଶରଣାଗତସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ।। ୮ ।।
ସଂସାରଜାଲପତିତସ୍ୟ ଜଗନ୍ନିବାସ
ସର୍ବେନ୍ଦ୍ରିୟାର୍ଥବଡ଼ିଶାର୍ଥଝଷୋପମସ୍ୟ ।
ପ୍ରୋତ୍ଖଣ୍ଡିତ ପ୍ରଚୁରତାଲୁକମସ୍ତକସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ।। ୯ ।।
ସଂସାରଭୀକର-କରୀନ୍ଦ୍ର କରାଭିଘାତ-
ନିଷ୍ପିଷ୍ଟ ମର୍ମ ବପୁଷଃ ସକଳାର୍ତ୍ତିନାଶ ।
ପ୍ରାଣପ୍ରୟାଣ ଭବଭୀତି ସମାକୁଳସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ।। ୧୦ ।।
ଅନ୍ଧସ୍ୟ ମେ ହୃତବିବେକ-ମହାଧନସ୍ୟ
ଚୌରୈଃ ପ୍ରଭୋ ବଳିଭିରିନ୍ଦ୍ରିୟନାମଧେୟୈଃ ।
ମୋହାନ୍ଧକୂପକୁହରେ ବିନିପାତିତସ୍ୟ
ଲକ୍ଷ୍ମୀନୃସିଂହ ମମ ଦେହି କରାବଲମ୍ବମ୍ ।। ୧୧ ।।

---

କରିବା ଫଳରେ ମୁଁ ଜାଣ ହେଲିଣି । ହେ ସୁଧାସାଗରଶାୟୀ, ହେ ଶୌରି, ହେ ଲକ୍ଷ୍ମୀନୃସିଂହ ମୋତେ କରାବଲମ୍ବନ ଦିଅ ।। ୭ ।।

ମୁଁ ସଂସାର ଦାବାନଳଦ୍ୱାରା କାତର । ସେ ଦାବାନଳର ବିପୁଳ ବ୍ୟାପ୍ତ ଶିଖା ମୋ ଶରୀରର ରୋମ ରାଶିକୁ ଦଗ୍ଧ କଲାଣି । ମୁଁ ତେଣୁ ସେ ଦାବାନଳର ଉପଶମ ଲାଗି ଆପଣଙ୍କ ପଦାରବିନ୍ଦ ସରୋବରକୁ ଆଶ୍ରୟ କରିଛି । ହେ ଲକ୍ଷ୍ମୀ-ନୃସିଂହ, ମୋତେ କରାବଲମ୍ବନ ପ୍ରଦାନକର ।। ୮ ।।

ହେ ଜଗନ୍ନିବାସ, ମୁଁ ସଂସାର ଜାଲରେ ମୀନତୁଲ୍ୟ ପଡ଼ିଅଛି । ଇନ୍ଦ୍ରିୟର ସକଳ ବିଷୟ ବଡ଼ିଶ କଣ୍ଟାତୁଲ୍ୟ ମୋତେ ବିଦ୍ଧ କରି ତାଲୁ ପ୍ରଦେଶକୁ ତାଡ଼ି ମୋ ମସ୍ତକକୁ ବିଦୀର୍ଣ୍ଣ କଲାଣି । ହେ ଲକ୍ଷ୍ମୀନୃସିଂହ ଆପଣଙ୍କ ଅଭୟ ହସ୍ତର ଆଶ୍ରୟ ମୋତେ ମିଳୁ ।। ୯ ।।

ହେ ସକଳ ଦୁଃଖ ହରଣକାରୀ, ସଂସାରରୂପକ ଭୀଷଣ ଗଜରାଜ ନିଜ ଶୁଣ୍ଢାଘାତରେ ମୋର ଶରୀରର ସୂକ୍ଷ୍ମ ମର୍ମସ୍ଥାନ ନିଷ୍ପେଷଣ କରୁଅଛି । ମୁଁ ପ୍ରାଣୋତ୍କ୍ରମଣରେ ଅତିଶୟ ବ୍ୟାକୁଳ । ହେ ଲକ୍ଷ୍ମୀନୃସିଂହ ମୋତେ କରାବଲମ୍ବନ ପ୍ରଦାନକର ।। ୧୦ ।।

ହେ ପ୍ରଭୁ ମୁଁ ଅନ୍ଧ ମୋର ଇନ୍ଦ୍ରିୟ ସବୁ ବଳବାନ୍ ଚୋରପରି ମୋର

ଲକ୍ଷ୍ମୀପତେ କମଳନାଭ ସୁରେଶ ବିଷ୍ଣୋ
ବୈକୁଣ୍ଠ କୃଷ୍ଣ ମଧୁସୂଦନ ପୁଷ୍କରାକ୍ଷ ।
ବ୍ରହ୍ମଣ୍ୟ କେଶବ ଜନାର୍ଦ୍ଦନ ବାସୁଦେବ
ଦେବେଶ ଦେହି କୃପଣସ୍ୟ କରାବଲମ୍ବମ୍ ।। ୧୨ ।।
ଯନ୍ମାୟୟୋର୍ଜିତ ବପୁଃ ପ୍ରଚୁର ପ୍ରବାହ-
ମଗ୍ନାର୍ଥମାତ୍ରନିବହୋରୁ କରାବଲମ୍ବମ୍ ।
ଲକ୍ଷ୍ମୀନୃସିଂହ ଚରଣାବ୍ଜ ମଧୁବ୍ରତେନ
ସ୍ତୋତ୍ରଂ କୃତଂ ସୁଖକରଂ ଭୁବି ଶଙ୍କରେଣ ।। ୧୩ ।

---

ବିବେକ-ମହାଧନକୁ ହରଣ କରି ମୋହାନ୍ଧ କୂପରି ଗଭୀର ଗର୍ତ୍ତରେ ମୋତେ ଠେଲି ପକାଇ ଦେଇଛନ୍ତି । ହେ ଲକ୍ଷ୍ମୀନୃସିଂହ ତୁମେ ମୋତେ ଉଦ୍ଧାର କରିବାପାଇଁ ଆଶାବାକ୍ଷି ପରି ତୁମର ହାତଟିକୁ ମୋ ଆଡକୁ ବଢ଼ାଇଦିଅ ।। ୧୧ ।

ହେ ଲକ୍ଷ୍ମୀପତି ହେ ପଦ୍ମନାଭ, ହେ ବିଷ୍ଣୁ ହେ ବୈକୁଣ୍ଠ, ହେ କୃଷ୍ଣ ହେ ମଧୁସୂଦନ, ହେ ପୁଷ୍କରାକ୍ଷ, ହେ ମଙ୍ଗଳମୟ ହେ କେଶବ, ହେ ଜନାର୍ଦ୍ଦନ, ହେ ବାସୁଦେବ; ହେ ଦେବେଶ ! ଏହି କୃପା ପ୍ରାପ୍ୟ ବ୍ୟକ୍ତିକୁ ଆପଣ ଅଭୟ ହସ୍ତର ଆଶ୍ରୟ ଦିଅନ୍ତୁ ।। ୧୨ ।।

ଏହି ଭୂମଣ୍ଡଳ ସୁଖକର କରାବଲମ୍ବନ ସ୍ତୋତ୍ର, ଲକ୍ଷ୍ମୀନୃସିଂହଙ୍କ ପଦାରବିନ୍ଦ ଭ୍ରମର ଶଙ୍କରଙ୍କ ଦ୍ୱାରା ରଚିତ ହେଲା । ଯେଉଁ ପ୍ରଭୁଙ୍କର ମାୟା-ବଳରେ ସମ୍ପାଦିତ ଅନାଦି ଓ ଅସଂଖ୍ୟ ଜନ୍ମ ପ୍ରବାହରେ ନିମଗ୍ନ ଜୀବର ସେତେ ବିଷୟ ଅଛି ଏହି ସ୍ତୋତ୍ର ସେ ସବୁଠାରୁ ଉତ୍କୃଷ୍ଟ ଅଟେ । ଫଳିତାର୍ଥ ଏହି ଯେ ସଂସାର ଦୁଃଖ ନିବାରଣ ନିମନ୍ତେ ଏହି ସ୍ତୋତ୍ର ଏକମାତ୍ର ଆଶ୍ରୟ ।। ୧୩ ।।

ଦୁଃଖକଷ୍ଟ ନିବାରଣରେ ଅମୋଘଅସ୍ତ୍ର ବୋଲି ପ୍ରସିଦ୍ଧ ଏହି ସ୍ତୋତ୍ର ଯେତେଦୂର ସମ୍ଭବ ପୁରୀ ଶଙ୍କରାନନ୍ଦ ମଠ ବା ଭୋଗବର୍ଦ୍ଧପୀଠାଧୀଶ୍ୱର ଭାଗବତର ପ୍ରସିଦ୍ଧ ଟୀକାକାର ନୃସିଂହ ଉପାସକ ଶ୍ରୀଧରସ୍ୱାମୀଙ୍କ-ଦ୍ୱାରା ରଚିତ । ଭୋଗବର୍ଦ୍ଧନପୀଠାଧୀଶ୍ୱର ବର୍ତ୍ତମାନ ମଧ୍ୟ ଲୋକନାଥ ମନ୍ଦିର ପରିଚାଳନା ସମିତିର ଅଧ୍ୟକ୍ଷ । ପାଲିଙ୍କିରେ ବସି ବିଦୁତ୍ତଜାଳ ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ ପର୍ଯ୍ୟନ୍ତ ଯିବା ଅଧିକାର ପାଇଥିବାରୁ ଶ୍ରୀମନ୍ଦିରରେ ତାଙ୍କର ପ୍ରାଧାନ୍ୟ ସହଜେ ଅନୁମେୟ । ଶ୍ରୀମନ୍ଦିରର ନୃସିଂହମୂର୍ତ୍ତି ଓ ଲିଙ୍ଗରାଜ ମନ୍ଦିରରେ ଥିବା ମନୋହର ଲକ୍ଷ୍ମୀନୃସିଂହ

ମୂର୍ତ୍ତି—ଭକ୍ତହୃଦୟରେ ଭବ୍ୟ ଭାବର ଉଦ୍ରେକ କରୁଥାଆନ୍ତି । ଶ୍ରୀନୃସିଂହ ହିଁ ଜଗନ୍ନାଥ ମନ୍ଦିରର ଆଦି ଦେବତା । ନୃସିଂହଙ୍କ ସମ୍ମୁଖ ବାହାରଥିବାରୁ ତାଙ୍କର ଦାରୁ ବିଗ୍ରହ । ନବକଳେବର ବେଳେ ନରସିଂହଙ୍କ ମନ୍ତ୍ରରାଜର ବହୁଧା ଉପଯୋଗ ହୁଏ । ସ୍କନ୍ଦ ପୁରାଣର ପୁରୁଷୋତ୍ତମ ମାହାତ୍ମ୍ୟରୁ ଜଣାଯାଏ ଯେ ବ୍ରହ୍ମା କର୍ତ୍ତୃକ ଚତୁର୍ଦ୍ଧାମୂର୍ତ୍ତିଙ୍କ ପ୍ରତିଷ୍ଠା ପରେ ସେମାନେ ଅନ୍ତର୍ଦ୍ଧାନ ହୋଇଗଲେ ଓ ତାଙ୍କ ସ୍ଥାନରେ ଦେଖାଦେଲେ ନୃସିଂହ । ମହାରାଜା ଇନ୍ଦ୍ରଦ୍ୟୁମ୍ନ ଏହା ଦେଖି ଆଶ୍ଚର୍ଯ୍ୟ ହେଲେ । ସେତେବେଳେ ତାଙ୍କୁ ଆକାଶବାଣୀ ହୋଇଥିଲାଯେ ନୃସିଂହ ହିଁ ହେଉଛନ୍ତି ପୁରୁଷୋତ୍ତମ କ୍ଷେତ୍ରର ଆଦ୍ୟମୂର୍ତ୍ତି (ପୁରୁଷୋତ୍ତମ-ମାହାତ୍ମ୍ୟ, ୨୮।୨୭-୨୯)

ଆଦ୍ୟାମୂର୍ତ୍ତିର୍ଭଗବତୋ ନରସିଂହାକୃତିର୍ନୃପ ।
ନାରଦୃଣେନ ପ୍ରଥିତା ମଦନୁଗ୍ରହତଃ ତ୍ୱୟି ॥
ଦାରବୀ ମୂର୍ତ୍ତିରେଷେତି ପ୍ରତିମା ବୁଦ୍ଧିରତ୍ର ବୈ ।
ମା ଭୂତ୍ତେ ନୃପ ଶାର୍ଦ୍ଦୂଳ ପରବ୍ରହ୍ମାକୃତିସ୍ତ୍ୱିୟମ୍ ॥

ତାପରେ ରତ୍ନବେଦୀରେ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠା ହୋଇଥିଲେ । ତେଣୁ ଏହାପରେ ପରେ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ଓ ସ୍ତୋତ୍ରର ଅବତାରଣା ପାଠକଙ୍କ ସକାଶେ ହୋଇଛି ।

## ଶ୍ରୀଜଗନ୍ନାଥ—

ଶ୍ରୀ ଜଗନ୍ନାଥ ଦାରୁବ୍ରହ୍ମ ପୁରୁଷୋତ୍ତମ ଭାବରେ ବିଶ୍ୱବିଖ୍ୟାତ । ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ସହ ଜଗନ୍ନାଥ ଶ୍ରୀମନ୍ଦିରର ରତ୍ନ-ସିଂହାସନରେ ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳ ଦେବାପାଇଁ ଚତୁର୍ଦ୍ଧାମୂର୍ତ୍ତି ରୂପେ ବିରାଜିତ ହୋଇଛନ୍ତି ।

'ଯଥା ଦେହେ ତଥା ଦେବେ' ନ୍ୟାୟରେ ଏ ଜାତି ତା'ର ଦେବତାକୁ ଅପୂର୍ଣ୍ଣ ରଖିଛି କାରଣ ଦେବତା ମଧ୍ୟ ଦେହୀ ଭଳି ସର୍ବସମ୍ପନ୍ନ (Perfect) ହେବା ସମ୍ଭବ ନୁହେଁ । କିନ୍ତୁ ତା'ର ଦେବତା ପୂର୍ଣ୍ଣ

ନ ହେଲେ ମଧ୍ୟ ପୂର୍ଣ୍ଣବ୍ରହ୍ମ ପରଂବ୍ରହ୍ମ ପୁରୁଷୋତ୍ତମ—'ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ'—ପୂର୍ଣ୍ଣରୁ ପୂର୍ଣ୍ଣ ବାହାର କରିନେଲେ ପୂର୍ଣ୍ଣ ବଳକା ରହେ, ଯେପରି ଶୂନ୍ୟରୁ ଶୂନ କାଢ଼ିନେଲେ ଶୂନ ହିଁ ରହେ । ତେଣୁ ଶୂନ୍ୟବ୍ରହ୍ମ ହିଁ ପୂର୍ଣ୍ଣବ୍ରହ୍ମ । ଫଳରେ ବୌଦ୍ଧ ଶୂନ୍ୟବାଦ ହିଁ ଅଦ୍ୱୈତ ବ୍ରହ୍ମବାଦ ଏବଂ ଉଭୟର ପ୍ରମୂର୍ତ୍ତି ବିଗ୍ରହ ଶ୍ରୀଜଗନ୍ନାଥ-ଅସଂପୂର୍ଣ୍ଣ ହେଲେବ ପୂର୍ଣ୍ଣ-ସର୍ବସମ୍ପନ୍ନ । 'ଅପାଣିପାଦୋ ଜବନୋ ଗ୍ରହୀତା'–ହାତ ନାହିଁ ଗୋଡ଼ ନାହିଁ ତଥାପି ପୃଥିବୀ ପ୍ରସିଦ୍ଧ ଯାତ୍ରା କରେ; 'ପଶ୍ୟତ୍ୟଚକ୍ଷୁଃ ଶୃଣୋତ୍ୟକର୍ଣ୍ଣଃ'—କାନ ନାହିଁ ସବୁ ଶୁଣେ, ଆଖି ମାତ୍ର ଆଖି ଭଳି ପୂରା ଗୋଲ ପତା ନାହିଁ । ମୁହଁ ପରେ ପରେ ଅଣ୍ଟା ଆରମ୍ଭ, ପେଟ ମୋଟେ ନାହିଁ ଅଥଚ ଭୋଗରାଗର ମହାସମ୍ଭାର, ଛପନ ପଉଟି ଭୋଗ ହୁଏ । ନିଜ ଖାଇବା ନା'ରେ ସମସ୍ତଙ୍କୁ ଖୁଆଏ । କୁହାଯାଏ, ବଦ୍ରିନାରାୟଣ ଶୋଇବା ଦିଅଁ, ଜଗନ୍ନାଥ ଖାଇବା ଦିଅଁ । ତିରୁପତି (ସୁନାଗହଣା) ପିନ୍ଧିବା ଦିଅଁ । ଅନ୍ୟନ୍ୟ ଦିଅଁ ପାଷାଣ, ଜଗନ୍ନାଥ କିନ୍ତୁ ଦାରୁ ବିଗ୍ରହ । 'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି, ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ'—ଗୀତାବାଣୀ ପ୍ରକାରେ—ମଣିଷ ଭଳି ତା'ର ବି ଯୁଗାନ୍ତରରେ ନବ କଳେବର ହୁଏ । ମଣିଷ ପରି ଉତ୍ଥାପନଠାରୁ ଶୟନ ପର୍ଯ୍ୟନ୍ତ ସମସ୍ତ ନିତ୍ୟକର୍ମ ପ୍ରତ୍ୟହ ଯଥାବିଧି ସମାହିତ ହୁଏ । ସ୍ନାନପୂର୍ଣ୍ଣିମା ଦିନ ଅଧିକ ସ୍ନାନ ପରେ ଜ୍ୱର ହୁଏ ଏବଂ ଅଣସର ଘରେ ଅଖିଆ ଅପିଆ ଉଦ୍‌ବସ୍ତ୍ର ହୋଇ ସେ ମଣିଷ ଭଳି ଯନ୍ତ୍ରଣା ଭୋଗ କରେ । ତା'ପରେ ସେ ମନ ବା ସ୍ଥାନ ପରିବର୍ତ୍ତନ ପାଇଁ କିଛି ଦିନ ଯାତ୍ରା କରେ । ଫେରିଲାବେଳେ ବାଟରେ ଏକାଦଶୀ ଦିନ ନିଷ୍ଫଳା ବୋଲି ଯାତ୍ରା ନକରି ଉପବାସ କରେ ଓ ନବଦିନ ଯାତ୍ରା ସମାପନ କରି ଶ୍ରୀମନ୍ଦିରକୁ ଫେରେ । ପତ୍ନୀ ଲକ୍ଷ୍ମୀଙ୍କୁ ନ ନେଇ ଯାତ୍ରା କରିଥିବାରୁ ସେ କବାଟ କିଳି ଦିଅନ୍ତି ଏବଂ ବହୁ ବୁଝାଶୁଝା ପରେ ଶ୍ରୀଜଗନ୍ନାଥଙ୍କ ସହ ସୁଭଦ୍ରା ଓ ବଳଭଦ୍ରଙ୍କ ମନ୍ଦିର ପ୍ରବେଶ ହୁଏ । ନିଜ ଜୀବନର ନିତିଦିନିଆ ସବୁକଥା ଓଡ଼ିଆ ଖଞ୍ଜି ଦେଇଛି ଜଗନ୍ନାଥଙ୍କଠାରେ । ଓଡ଼ିଆ ସବୁ ଭାଷା କହେ, ସବୁ ଧର୍ମପ୍ରତି ସମାନ ମନୋଭାବ ପୋଷଣ କରେ—ତେଣୁ ସେ ତା'ରି

ପ୍ରାଣର ହିଁ ଜଗନ୍ନାଥଙ୍କଠାରେ ସବୁ ଦେଖେ, ସବୁ ଅନୁଭବ କରେ । ଖ୍ରୀଷ୍ଟାନ୍‌ର ପ୍ରେମ ଛନ୍ଦଣି (Cross)ରେ ବନ୍ଧା, ମୁସଲମାନ୍‌ର ଚନ୍ଦ୍ର ହେଉଛି ତା'ର ସ୍ମିତହାସ. ଜୈନଙ୍କ ନାଥ ଅଛି ତା'ର ନାମ ଶେଷରେ, ବୌଦ୍ଧର ଜାତି ଧର୍ମ ନିର୍ବିଶେଷ ବୁଦ୍ଧତ୍ୱ ଅଛି ତା'ର ଆଚରଣରେ, ତାନ୍ତ୍ରିକର ସେ ହେଉଛି ଭୈରବ, ବୈଷ୍ଣବର ସେ ହେଉଛି ବିଷ୍ଣୁ-କଳାକାହ୍ନୁ—ଏହିପରି ସବୁକିଛି-ସର୍ବସ୍ୱ । ଜଗନ୍ନାଥ—ଅକ୍ଷରବ୍ରହ୍ମ ।

ହେ ଭବଗ୍ରାହୀ । ଭବର ଦେବତା । ମହାଭାବମୟ । ମୁଖରେ ସନ୍ନିତ ହୋଇଛି ବଶୀକରଣର ମହାବିଭୂତି । ଦେଖିଲେ ଆଖି ଲାଖି ରହୁଛି । ଭାବିଲେ ମନର ସକଳ କଳ୍ମଷ ଦୂର ହୋଇଯାଉଛି । ତାଙ୍କୁ ଅନାଇ ସେ ରୂପକୁ ଆତ୍ମୀୟ ଓ ଆତ୍ମପ୍ରତ କରି ହୃଦୟଭାବରେ କୁହାଯାଇପାରେ—

ରତ୍ନାକରସ୍ତବଗୃହଂ ଗୃହିଣୀ ଚ ପଦ୍ମା
କିଂ ଦେୟମସ୍ତି ଭବତେ ପୁରୁଷୋତ୍ତମାୟ ?
ଆଭୀରବାମନୟନାହୃତମାନସାୟ
ଦତ୍ତଂ ମନୋ ଯଦୁପତେ କୃପୟା ଗୃହାଣ ।

ହେ ଜଗନ୍ନାଥ ! ତୁମର ନିବାସ ସ୍ଥାନ ରତ୍ନର ଆକର ବା ସବୁ ରତ୍ନର ଭଣ୍ଡାର କ୍ଷୀର ସମୁଦ୍ର । ପୁଣି ତୁମର ଗୃହିଣୀ ହେଉଛନ୍ତି ପଦ୍ମାଳୟା ମହାଲକ୍ଷ୍ମୀ । ତୁମେ ପୁରୁଷୋତ୍ତମ, ତୁମର କ'ଣ ଅଭାବ ଅଛି ଏବଂ ମୋର କ'ଣ ବା ଅଛି ଯେ ତୁମକୁ ଦେବି । ତୁମେ ସୁନ୍ଦରୀ ଗୋପରମଣୀଙ୍କର ମନ ଚୋରି କରିଥିଲ । ତେଣୁ ଭାବୁଛି ତୁମର ବୋଧହୁଏ ମନଟି ଦରକାର, ଅତଏବ ହେ ଯଦୁପତି ମୋର ମନଟିକୁ ତୁମଠାରେ ଅର୍ପଣ କରୁଛି । କୃପାକରି ଗ୍ରହଣ କର ।

# ଦଶାବତାର ସ୍ତୋତ୍ରମ୍

ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍
ବିହିତ ବହିତ୍ରଚରିତ୍ରମଖେଦମ୍ ।
କେଶବ, ଧୃତ ମୀନ ଶରୀର ! ଜୟ ଜଗଦୀଶ ହରେ ॥ ୧ ॥
କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣିଧରଣକିଣଚକ୍ରଗରିଷ୍ଠେ ।
କେଶବ, ଧୃତ କଚ୍ଛପ ରୂପ ! ଜୟ ଜଗଦୀଶ ହରେ ॥ ୨ ॥
ବସତି ଦଶନଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କ କଳେବ ନିମଗ୍ନା ।
କେଶବ, ଧୃତ ଶୂକର ରୂପ ! ଜୟ ଜଗଦୀଶ ହରେ ॥ ୩ ॥
ତବକରକମଳବରେ ନଖମଦ୍ଭୁତଶୃଙ୍ଗମ୍
ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍ ।
କେଶବ, ଧୃତ ନରହରି ରୂପ ! ଜୟ ଜଗଦୀଶ ହରେ ॥ ୪ ॥

---

ହେ କେଶବ । ହେ ମୀନଦେହଧର । ପ୍ରଳୟବେଳେ ସାଗରରେ ନିମଗ୍ନ ବେଦକୁ ତୁମେ ଅନାୟାସରେ ନୌକା ପରି ଲୀଳାକରି ଉଦ୍ଧାର କରିଥାଅ । ହେ ଜଗନ୍ନାଥ, ହେ ହରି । ତୁମର ଜୟ ହେଉ । ୧ ।

ହେ କେଶବ । ହେ କୂର୍ମରୂପଧର । ତୁମର ଅତି ବିପୁଳ ପୃଷ୍ଠରେ ପୃଥିବୀ ରହିଛି । ପୃଥିବୀକୁ ଧରି ଥିବାରୁ ତୁମର ପିଠିରେ ବ୍ରଣଚିହ୍ନ ଅଛି ତା ବଣ୍ଡି ବଢିଯାଇଛି । ହେ ଜଗନ୍ନାଥ ହେ ହରି ତୁମର ଜୟ ହେଉ । ୨ ।

ହେ କେଶବ । ତୁମେ ବରାହ ରୂପ ଧର । ତୁମର ଦନ୍ତର ଅଗରେ ଚନ୍ଦ୍ରରେ କଳଙ୍କ ଭଳି ଭଳି ପୃଥିବୀ ସଂଲଗ୍ନ ହୋଇଛି । ହେ ଜଗନ୍ନାଥ । ହେ ହରି । ତୁମର ଜୟ ହେଉ । ୩ ।

ହେ କେଶବ ! ତୁମେ ନରସିଂହ ରୂପ ଧର । ସାଧାରଣତଃ ଭ୍ରମର କମଳ ପୁଷ୍ପକୁ ଭେଦକରି ରହିଥାଏ । ତୁମର କର କମଳରେ ନଖ ହେଉଛି ଏକ ଆଶ୍ଚର୍ଯ୍ୟଜନକ ଶୃଙ୍ଗ । ଏହା ହିରଣ୍ୟକଶିପୁର ଶରୀରରୂପକ ଭୃଙ୍ଗକୁ ଭେଦ କରୁଛି । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୪ ।

ଛଳୟସି ବିକ୍ରମଣେ ବଳିମଦ୍ଭୁତବାମନ—
ପଦନଖନୀରଜନିତଜନପାବନ ।
କେଶବ, ଧୃତବାମନ ରୂପ ! ଜୟ ଜଗଦୀଶ ହରେ ॥ ୫ ॥
କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍
ସ୍ନପୟସି ପୟସି ଶମିତଭବତାପମ୍ ।
କେଶବ, ଧୃତଭୃଗୁପତିରୂପ ! ଜୟ ଜଗଦୀଶ ହରେ ॥ ୬ ॥
ବିତରସି ଦିକ୍ଷୁ ରଣେ ଦିକ୍ପତିକମନୀୟମ୍
ଦଶମୁଖମୌଳିବଳିଂ ରମଣୀୟମ୍ ।
କେଶବ, ଧୃତରଘୁପତିରୂପ ! ଜୟ ଜଗଦୀଶ ହରେ ॥ ୭ ॥
ବହସି ବପୁଷି ବିଶଦେ ବସନଂ ଜଳଦାଭମ୍,
ହଳହତିଭୀତିମିଳିତଯମୁନାଭମ୍ ।
କେଶବ, ଧୃତହଳଧରରୂପ ! ଜୟ ଜଗଦୀଶ ହରେ ॥ ୮ ॥
ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍,
ସଦୟ ହୃଦୟ ଦର୍ଶିତପଶୁଘାତମ୍ ।
କେଶବ, ଧୃତବୁଦ୍ଧଶରୀର ! ଜୟ ଜଗଦୀଶ ହରେ ॥ ୯ ॥

---

ହେ କେଶବ ! ତୁମେ ବାମନ ରୂପ ଧର । ତୁମେ ବଳିକୁ ଛଳି ତିନି ପାଦରେ ତ୍ରିଭୁବନ ଆକ୍ରମଣ କରିଥିଲ । ଅଦ୍ଭୁତ ବାମନଙ୍କ (ବିଷ୍ଣୁ) ପଦନଖାଗ୍ରରୁ ନିଃସୃତ ଗଙ୍ଗା ଜଳ ସକଳ ଲୋକଙ୍କୁ ପବିତ୍ର କରୁଛି । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୫ ।

ହେ କେଶବ ! ତୁମେ ପରଶୁରାମ ରୂପ ଧର । କ୍ଷତ୍ରିୟମାନଙ୍କ ରୁଧିରମୟ ଜଳରେ ଜଗତର ପାପକୁ ଧୋଇ ସଂସାର ତାପକୁ ତୁମେ ଉପଶମ କରୁଛ । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୬ ।

ହେ କେଶବ ! ତୁମେ ରାମରୂପ ଧର । ଦଶଦିଗପାଳଙ୍କ ଅଭିଳଷିତ ରାବଣର ଦଶମୁଣ୍ଡକୁ ତୁମେ ଯୁଦ୍ଧରେ ସୁନ୍ଦର ଭାବରେ ବଳି ଦେଲ । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୭ ।

ହେ କେଶବ ! ତୁମେ ବଳରାମ ରୂପ ଧର । ତୁମେ ତୁମର ଧବଳ ଶରୀରରେ ମେଘ ନୀଳ ବସନ ପରିଧାନ କର । ତେଣୁ ତୁମର ହଳାକର୍ଷଣ ଭୟରେ ସତେ ଯେପରି ଯମୁନା ଆସି ତୁମ ସହିତ ମିଶି ଯାଇଛି… ସେପରି ଦେଖାଯାଉଛି । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୮ ।

ହେ କେଶବ ! ତୁମେ ବୁଦ୍ଧ ଶରୀର ଧର । ତୁମେ ସଦୟ ହୃଦୟରେ

ମ୍ଲେଚ୍ଛନିବହନିଧନେ କଲୟସି କରବାଳମ୍,
ଧୂମକେତୁମିବ କିମପି କରାଳମ୍ ।
କେଶବ, ଧୃତକଳ୍କିଶରୀର ! ଜୟ ଜଗଦୀଶ ହରେ ॥ ୧୦ ॥
ଶ୍ରୀଜୟଦେବକବେରିଦମୁଦିତମୁଦାରମ୍,
ଶୃଣୁ ସୁଖଦଂ ଶୁଭଦଂ ଭବସାରମ୍ ।
କେଶବ, ଧୃତଦଶବିଧରୂପ ! ଜୟ ଜଗଦୀଶ ହରେ ॥ ୧୧ ॥

## ଶ୍ରୀନୀଳଶୈଳେଶ୍ୱରାଷ୍ଟକଂ

ପ୍ରସାରିତ ଭୁଜଦ୍ୱୟୋ ନିଖିଲଲୋକରକ୍ଷାକୁଳୋ
ବିପତ୍ତିବନବାରଣେ ବିକଟଲୋଚନାଭ୍ୟଞ୍ଚିତଃ ।
ନିଜାନ୍ତରନୁରାଗତୋ ଗଳଦ୍‌ଗୁରୁବିମ୍ବାଧରୋ
ମମାପି ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୧ ॥

---

ପଶୁବଧ ଦେଖି ଯଜ୍ଞବିଧି ସମ୍ବନ୍ଧୀୟ ବେଦବାକ୍ୟକୁ ନିନ୍ଦା କରୁଛ । (ନିଜେ ବେଦରକ୍ଷକ ହୋଇ ବେଦର ନିନ୍ଦା କରୁଥିବାରୁ ଅଦ୍ଭୁତ ବାଚକ ଅହହ ଶବ୍ଦ) । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୯ ।

ହେ କେଶବ ! ତୁମେ କଳ୍କି ଶରୀର ଧର । ତୁମେ ମ୍ଲେଚ୍ଛମାନଙ୍କର ନିଧନ କାରଣେ ଧୂମକେତୁ ଭଳି ଆବର୍ତ୍ତିତ ହୋଇ ଭୟଙ୍କର ଖଡ୍ଗ ଧାରଣ କରିଥାଅ । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୧୦ ।

ହେ କେଶବ ! ତୁମେ ଦଶ ପ୍ରକାର ରୂପ ଧର । କବି ଶ୍ରୀ ଜୟଦେବଙ୍କର ସୁଖଦ ଶୁଭପ୍ରଦ ସଂସାରରେ ସାର ଏହି ହରି ଗୁଣାନୁକୀର୍ତ୍ତନ କଥନକୁ ଶୁଣ । ହେ ଜଗନ୍ନାଥ ! ହେ ହରି ! ତୁମର ଜୟ ହେଉ । ୧୧ ।

ଯେ ନିଜର ଦୁଇଭୁଜ ଆଗକୁ ବଢ଼ାଇ ଜଗତ୍-ଜନଙ୍କୁ ରକ୍ଷାକରିବା ପାଇଁ ବ୍ୟଗ୍ର, ବିପଦରୁ ରକ୍ଷା କରିବା ପାଇଁ ଆଖିଖୋଲି (ଚକାଡୋଳା) ଅନାଇ ରହିଛନ୍ତି । ନିଜ ଅନ୍ତରର ଅନୁରାଗ ବା ସ୍ନେହାତିଶଯ୍ୟ ପରି ଯେପରି ବିଗଳିତ ହୋଇ ଅଧର ବାଟେ ବାହାରି ବିମ୍ବଫଳ ପରି ରୁଚିର ଦେଖାଯାଉଛି । ସେହି ନୀଳାଚଳର ଅଧୀଶ୍ୱର ଶ୍ରୀଜଗନ୍ନାଥ ମୋର ହୃଦୟ ଭିତରେ ସ୍ଫୁରିତ ହୁଅନ୍ତୁ । ୧ ।

ଘନାଘନସମଦ୍ୟୁତିର୍ବାଞ୍ଛିତପ୍ରିୟଂଭବୁକୋ୯ଃ
ଶ୍ରୀନୀଳାଚଳଗୁହାନ୍ତରେ କଳିତବାରଣୋପକ୍ରମଃ ।
ଅନେକକୃଜିନାବଳୀଘନବନଦ୍ରୁମୋଦ୍ଭେଦନୋ
ମଦୀୟ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱର ॥ ୨ ॥

ମହାକରୁଣୟା କଳୌ କଳୁଷରାଶିନାଶୋଦ୍ୟତଃ
କୃତାବତରଣଃ କ୍ଷଣେ ରୁଚିରଦାରୁମୂର୍ତ୍ତ୍ୟା ଭୁବି ।
ବିଶିଷ୍ଟ ମହିମାପି ସନ୍ ସ୍ୱଜନଭବନେଚ୍ଛୋଦ୍ୟତୋ
ମଦୀୟ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱର ॥ ୩ ॥

ମନୋରଥଫଳପ୍ରଦଃ ସୁମନସାଂ ଗଣୈଃ ସେବିତଃ
ତ୍ରିଲୋକଜନତାଗ୍ରଣୀଃ ପରମପାବନ ଶୀର୍ଷାକୃତିଃ ।
ବିଶିଷ୍ଟ ମହିମାସ୍ପଦଂ ସ୍ୱଜନ-କଳ୍ପଶାଖୀ ସ୍ୱୟଂ
ମଦୀୟ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୪ ॥

---

ବର୍ଷାକାଳୀନ ମେଘ ପରି କୃଷ୍ଣବର୍ଣ୍ଣ, କଳ୍ପବୃକ୍ଷ ପରି ଭକ୍ତଜନର ପ୍ରିୟ-ଭାବନାକାରୀ ବା କାମନା ପୂରଣକାରୀ, ଶ୍ରୀନୀଳାଚଳ ବା ନୀଳାଚଳ କନ୍ଦରରେ ହାତୀ ଭଳି ଯେ ଶୋଭା ପାଉଛନ୍ତି, ଅନେକ ପାପରୂପକ ନିବିଡ଼ ଅରଣ୍ୟର ଦ୍ରୁମାବଳୀକୁ ଯେ ଉତ୍ପାଟନ କରନ୍ତି, ସେହି ନୀଳଶୈଳର ଅଧିପତି ଶ୍ରୀଜଗନ୍ନାଥ ମୋର ହୃଦୟ ଭିତରେ ସ୍ଫୁରିତ ହୁଅନ୍ତୁ । ୨ ।

ଯେ ଅପାର କରୁଣା କରି କଳିର ସକଳ କଳୁଷ ନାଶ କରିବା ପାଇଁ ଉଦ୍ୟତ, ଯେ ସୁନ୍ଦର ଦାରୁବିଗ୍ରହ ଭାବରେ ସଂସାରରେ ଅବତୀର୍ଣ୍ଣ ହୋଇଛନ୍ତି, ବିଶିଷ୍ଟ ମହିମାବନ୍ତ ହେଲେ ମଧ୍ୟ ଯେ ସବୁବେଳେ ସମସ୍ତଙ୍କ ନିଜର ପରି ଦେଖନ୍ତି, ସେଇ ନୀଳାଦ୍ରିର ଅଧିପତି ଶ୍ରୀ ଜଗନ୍ନାଥ ମୋର ହୃଦୟ ଭିତରେ ସ୍ଫୁରିତ ହୁଅନ୍ତୁ ॥ ୩ ॥

ବାଞ୍ଛିତ ଫଳପ୍ରଦାନକାରୀ ଦେବଗଣଙ୍କ ଦ୍ୱାରା ସେବିତ, ତ୍ରିଭୁବନର ଜନଗଣଙ୍କ ଅଗ୍ରଣୀ, ପରମ ପବିତ୍ର ଓ ବିଶିଷ୍ଟ ଯାହାଙ୍କ ଆକୃତି, ବିଶିଷ୍ଟ-ମହିମାବାନ୍ ନିଜଜନମାନଙ୍କ ପାଇଁ ଯେ ସ୍ୱୟଂ ସକଳ କାମନା ପୂରଣକାରୀ କଳ୍ପବୃକ୍ଷ, ଶ୍ରୀଜଗନ୍ନାଥ ମୋର ହୃଦୟ କନ୍ଦରରେ ପ୍ରତିଷ୍ଠିତ ହୁଅନ୍ତୁ ॥ ୪ ॥

ଚତୁର୍ବିଧକଳେବରଂ ହରଚତୁର୍ମୁଖୋପାସିତଂ
ବିଧାୟ ବଟ ଭୂତଟେ ନଟତି ଯଶ୍ଚତୁର୍ବର୍ଗଦଃ ।
ଇଦଂ ନିଗମଦୁର୍ଲଭଂ ପ୍ରକଟୟତ୍ୟହୋ ବୈଷ୍ଣବଂ
ମମାସ୍ତୁ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୫ ॥

ବଳେନ ବଳିନା ସମଂ ପରମ ଭଦ୍ରୟା ଭଦ୍ରୟା
ବିରାଜିତ ମହାଦ୍ଭୁତ ରୁଚିରରତ୍ନସିଂହାସନେ ।
ମହାବିଭବ ବୈଭବୈର୍ବହତିରାମରାମଶ୍ରିୟଂ
ମମାସ୍ତୁ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୬ ॥

ଧରାଧରଶିରୋମଣିର୍ନିଖିଳଦେବବୃନ୍ଦାଗ୍ରଣୀଃ
ସୁତଳ୍ପିତ ମହାଫଣୀଃ ସତତ ଭକ୍ତ ଚିନ୍ତାମଣିଃ ।
ସୁରାର୍ତ୍ତିଭୟ-ଧୋରଣୀ-ଦଳନଚକ୍ରପାଣିର୍ବିଭୁ
ମମାସ୍ତୁ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୭ ॥

---

ଶିବ ବ୍ରହ୍ମା ପ୍ରଭୃତିଙ୍କ ଉପାସିତ ଚତୁର୍ଦ୍ଧାମୂର୍ତ୍ତି ଧାରଣ କରି କଳ୍ପବଟ ନିକଟରେ ଯେଉଁ ଚତୁର୍ବର୍ଗପ୍ରଦାୟକ ଲୀଳା କରୁଛନ୍ତି ଓ ବେଦର ଅଗୋଚର ବିଷ୍ଣୁପଦକୁ ଯେ ଆଶ୍ଚର୍ଯ୍ୟଜନକ ଭାବରେ ପ୍ରକଟ କରୁଛନ୍ତି, ସେହି ନୀଳକନ୍ଦର-ନାଥ ଜଗନ୍ନାଥ ମୋର ହୃଦୟ ଭିତରେ ସ୍ଫୁରିତ ହୁଅନ୍ତୁ ॥ ୫ ॥

ବଳବାନ୍ ବଳଭଦ୍ର ଓ ଅତିଭଦ୍ର ସୁଭଦ୍ରାଙ୍କ ସହିତ ବିଶାଳ ବିଗ୍ରହ ଶ୍ରୀଜଗନ୍ନାଥ ରତ୍ନସିଂହାସନ ଉପରେ ବିଜେ କରିଛନ୍ତି । ମହାବିଭବର ଐଶ୍ୱର୍ଯ୍ୟ ମଧ୍ୟରେ ରମଣୀୟ ରାମଚନ୍ଦ୍ରଙ୍କର ଶୋଭାକୁ ସେ ଧାରଣ କରିଛନ୍ତି । ସେହି ନୀଳାଚଳାଧିପତି ଜଗନ୍ନାଥ ମୋର ହୃଦୟ ଭିତରେ ବିରାଜନ୍ତୁ ॥ ୬ ॥

ନୀଳ ପର୍ବତ ଶିଖର ଦେଶର ମଣି ବା ଭୂଷଣ, ସକଳ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅନନ୍ତ ନାଗକୁ ଯେ ତଳ୍ପ ବା ଶଯ୍ୟା କରିଥିବା ଅନନ୍ତ-ଶୟନକାରୀ, ସବୁବେଳେ ଭକ୍ତମାନଙ୍କ ଅଭିଳାଷ ପୂରଣ କରିବାରେ ଯେ ଚିନ୍ତାମଣି, ଦେବତାମାନଙ୍କର ବିପଦ ଓ ଭୟ ସମୂହକୁ ନାଶକରିବା ସକାଶେ ଯେଉଁ ପ୍ରଭୁ ଚକ୍ରପାଣି, ସେହି ନୀଳାଦ୍ରିନାଥ ଜଗନ୍ନାଥ ମୋର ହୃଦୟ ମଧ୍ୟରେ ବିରାଜନ୍ତୁ ॥ ୭ ॥

ବଳୋତ୍କଟ ବଳନାଂବରୋ ଭଗବତୀ ସୁଭଦ୍ରା ସତୀ
ସୁଦର୍ଶନ ଇତି ପ୍ରଭୁଃ ପତିତପାବନୋ ବାମନଃ ।
ବିଧାୟ ଜଗତାଂ ହିତଂ ସ୍ୱଜନକାମନାପୂରକୋ
ମଦୀୟ ହୃଦୟାନ୍ତରେ ସ୍ଫୁରତୁ ନୀଳଶୈଳେଶ୍ୱରଃ ॥ ୮ ॥

ଇତି ଶ୍ରୀନୀଳଶୈଳେଶ୍ୱରାଷ୍ଟକଂ ସମ୍ପୂର୍ଣ୍ଣମ୍ ।

## ଶ୍ରୀଜଗନ୍ନାଥାଷ୍ଟକଂ

କଦାଚିତ୍ କାଳିନ୍ଦୀତଟବିପିନସଙ୍ଗୀତକବରୋ
ମୁଦାଭୀରୀନାରୀବଦନକମଳାସ୍ୱାଦମଧୁପଃ ।
ରମାଶମ୍ଭୁବ୍ରହ୍ମାମରପତିଗଣେଶାର୍ଚ୍ଚିତପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୧ ॥

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପିଞ୍ଛଂ କଟିତଟେ
ଦୁକୂଳଂ ନେତ୍ରାନ୍ତେ ସହଚରକଟାକ୍ଷଂ ଚ ବିଦଧତ୍ ।
ସଦା ଶ୍ରୀମଦ୍ ବୃନ୍ଦାବନବସତିଲୀଳାପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୨ ॥

---

ବଳବାନ୍ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ବଳଭଦ୍ର, ଭଗବତୀ ସତୀ ସୁଭଦ୍ରା, ସୁଦର୍ଶନ ଓ ପ୍ରଭୁ ପତିତପାବନ ବାମନ ଜଗତ୍‌ର ହିତ ବିଧାନ କରି ସକଳ ଲୋକର କାମନା ପୂରଣକାରୀ ସେହି ନୀଳାଚଳାଧିପତି ଜଗନ୍ନାଥ ମୋର ହୃଦୟରେ ଅବିର୍ଭୂତ ହୁଅନ୍ତୁ ॥ ୮ ॥

ଏକଦା ଯମୁନାତୀର ବନରେ ସେହି ଶ୍ରେଷ୍ଠ ସଙ୍ଗୀତକାରୀ, ଗୋପାଙ୍ଗନାମାନଙ୍କର ମୁଖପଦ୍ମ ଆସ୍ୱାଦନକାରୀ ଭ୍ରମର; ଲକ୍ଷ୍ମୀ, ଶିବ, ବ୍ରହ୍ମା, ଇନ୍ଦ୍ର, ଗଣେଶ ପ୍ରଭୃତିଙ୍କ ଦ୍ୱାରା ଯାହାଙ୍କ ପାଦ ସମର୍ଚ୍ଚିତ—ସେହି ପ୍ରଭୁ ଜଗନ୍ନାଥ ମୋର ନେତ୍ରପଥରେ ରହିଥାଆନ୍ତୁ ॥ ୧ ॥

ବାମ ହସ୍ତରେ ବଂଶୀ, ଶିରୋଦେଶରେ ମୟୂର ପୁଚ୍ଛ, କଟିତଟରେ ସୂକ୍ଷ୍ମ (ପୀତ) ବସ୍ତ୍ର, ନୟନପ୍ରାନ୍ତରେ ସହଚରୀ ଗୋପାଙ୍ଗନାମାନଙ୍କ ପ୍ରତି କଟାକ୍ଷ ଧାରଣ କରି, ଯେ ସର୍ବଦା ବୃନ୍ଦାବନରେ ରାସଲୀଳା ପ୍ରଦର୍ଶନ କରିଥାନ୍ତି, ସେହି ପ୍ରଭୁ ଜଗନ୍ନାଥ ମୋର ନେତ୍ରପଥରେ ରହନ୍ତୁ ॥ ୨ ॥

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତଃ ସହଜବଳଭଦ୍ରେଣ ବଳିନା ।
ସୁଭଦ୍ରାମଧ୍ୟସ୍ଥଃ ସକଳସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୩ ॥
କୃପା ପାରାବାରଃ ସଜଳଜଳଦଶ୍ରେଣିରୁଚିରୋ
ରମାବାଣୀସୋମସ୍ଫୁରଦମଳପଦ୍ମୋଦ୍ଭବମୁଖୈଃ ।
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖୋଦ୍‌ଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୪ ॥
ରଥାରୂଢ଼ୋ ଗଚ୍ଛନ୍ ପଥି ମିଳିତ ଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ୟ ସଦୟଃ ।
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୫ ॥
ପରେ ବର୍ହାପୀଡଃ କୁବଳୟଦଳୋତ୍ଫୁଲ୍ଲନୟନୋ
ନିବାସୋ ନୀଳାଦ୍ରୌ ନିହିତଚରଣୋଽନନ୍ତଶିରସି ।

---

ସମୁଦ୍ରତୀରରେ ସୁବର୍ଣ୍ଣ ସୁନ୍ଦର ନୀଳାଚଳ ଶିଖରରେ ବଳବାନ୍ ଭାଇ ବଳଭଦ୍ରଙ୍କ ସହିତ ଦେବୀ ସୁଭଦ୍ରାଙ୍କୁ ମଝିରେ ରଖି ଯେ 'ବଡଦେଉଳ' ନାମକ ପ୍ରାସାଦ ବା ଶ୍ରୀମନ୍ଦିରରେ ବାସକରି ସମସ୍ତ ଦେବତାମାନଙ୍କ ସେବା ଗ୍ରହଣ ସକାଶେ ଅବସର ପ୍ରଦାନ କରିଛନ୍ତି, ସେହି ପ୍ରଭୁ ଜଗନ୍ନାଥ ମୋର ନୟନପଥରେ ରହନ୍ତୁ ॥ ୩ ॥

କରୁଣାସାଗର, ସଜଳ ମେଘସମୂହ ପରି ସୁନ୍ଦର; ଲକ୍ଷ୍ମୀ, ସରସ୍ୱତୀ, ଚନ୍ଦ୍ରଶେଖର ଶିବ, ବ୍ରହ୍ମା ଓ ଦେବରାଜ ଇନ୍ଦ୍ର ପ୍ରଭୃତିଙ୍କ ଆରାଧ୍ୟ; ଶ୍ରୁତିଶିଖା ବେଦାନ୍ତରେ ଯାହାଙ୍କ ଚରିତ ଉଦ୍‌ଗୀତ; ସେହି ପ୍ରଭୁ ଜଗନ୍ନାଥ ମୋର ନେତ୍ରପଥରେ ରହନ୍ତୁ ॥ ୪ ॥

ରଥରେ ଚଢ଼ି ଯାତ୍ରା କରିବାବେଳେ ବାଟରେ ବ୍ରାହ୍ମଣମାନଙ୍କ ସ୍ତୋତ୍ର ଶୁଣି ପଦେ ପଦେ ଯେ ସଦୟ ହୁଅନ୍ତି, ସେହି ଦୟାସାଗର, ସକଳଜଗତର ବନ୍ଧୁ ପ୍ରଭୁ ଜଗନ୍ନାଥ ସିନ୍ଧୁସୁତା ଲକ୍ଷ୍ମୀଙ୍କ ସହ ମୋର ଆଖି ଆଗରେ ଉଭା ହୁଅନ୍ତୁ, ଦର୍ଶନ ଦିଅନ୍ତୁ ॥ ୫ ॥

ଚୂଡାରେ ମୟୂର ପିଚ୍ଛ ଧାରଣ କରିଥିବା ପଦ୍ମପଲାଶ ସଦୃଶ ବିକଶିତ ନେତ୍ର, ନୀଳାଚଳନିବାସୀ, ଅନନ୍ତ (ଆକାଶ ବା) ନାଗର ଶିରୋଦେଶରେ ଚରଣସ୍ଥାପନ କରିଥିବା ଭଗବାନ୍ ଶ୍ରୀକୃଷ୍ଣ, ରସ ଓ ଆନନ୍ଦର ସ୍ୱରୂପ,

ରସାନନ୍ଦୋ ରାଧା❀ ସରସବପୁରାଲିଙ୍ଗନସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୬ ॥

ନ ବୈ ଯାଚେ ରାଜ୍ୟଂ ନ ଚ କନକମାଣିକ୍ୟବିଭବଂ
ନ ଯାଚେଽହଂ ରମ୍ୟାଂ ସକଳଜନକାମ୍ୟାଂ ବରବଧୂମ୍ ।
ସଦା କାଳେ କାଳେ ପ୍ରମଥପତିନା ଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୭ ॥

ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହର ତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ ।
ଅହୋ ଦୀନାନାଥେ ନିହିତମଚଳଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ॥ ୮ ॥

ଶ୍ରୀରାଧାଙ୍କ ରସମୟ ଶରୀର ଆଲିଙ୍ଗନର ସୁଖଭୋଗୀ ମୂର୍ତ୍ତି, ସେହି ଜଗନ୍ନାଥ ମୋର ନୟନପଥରେ ରହନ୍ତୁ ॥ ୬ ॥

ମୁଁ ରାଜ୍ୟ ମାଗୁନାହିଁ କି ସୁବର୍ଣ୍ଣ-ମାଣିକ୍ୟ ପ୍ରଭୃତି ରତ୍ନ ସମ୍ପଦ ମାଗୁନାହିଁ । ସବୁ ଲୋକ ବାଞ୍ଛିତ ପରମ ସୁନ୍ଦର ଶ୍ରେଷ୍ଠ ସ୍ତ୍ରୀଟିଏ ମଧ୍ୟ ମାଗୁନାହିଁ । ସବୁବେଳେ ଦେବ ଦେବ ମହାଦେବ ଯାହାଙ୍କ ଚରିତ ଗାଉଛନ୍ତି ସେହି ପ୍ରଭୁ ଜଗନ୍ନାଥ ମୋର ନୟନପଥରେ ଥାଆନ୍ତୁ ॥ ୭ ॥

ହେ ଦେବାଧିଦେବ ଜଗନ୍ନାଥ । ତୁମେ ଶୀଘ୍ର ଏହି ଅସାର ସଂସାର(ର ବିଷୟ ବାସନା) ହରଣ କରିନିଅ । ହେ ଯାଦବପତି ହରି ! ତୁମେ ପାପର ଅଶେଷ ବିସ୍ତୃତିକୁ ହରଣ କରି ନିଅ । ଦୀନ ଓ ଅନାଥଙ୍କଠାରେ ଯେ ଧ୍ରୁବ ଓ ନିଶ୍ଚିତ ସ୍ଥାନ ରଖିଛନ୍ତି ସେହି ପତିତପାବନ ପ୍ରଭୁ ଜଗନ୍ନାଥ ମୋର ନୟନପଥରେ ବରାବର ଥାଆନ୍ତୁ ॥ ୮ ॥

❀ କେତେକଙ୍କ ମତରେ ଜଗନ୍ନାଥାଷ୍ଟକର ପ୍ରଣେତା ଶ୍ରୀ ଶଙ୍କରାଚାର୍ଯ୍ୟ ଓ ଅନ୍ୟ କେତେକଙ୍କ ମତରେ ଶ୍ରୀଚୈତନ୍ୟ ଦେବ । ରାଧାଙ୍କର ଏଥିରେ ସ୍ପଷ୍ଟ ଉଲ୍ଲେଖ ଥିବାରୁ ଏହା ଶ୍ରୀଚୈତନ୍ୟ ଦେବଙ୍କ ଦ୍ୱାରା ରଚିତ ହୋଇଥିବା ଅଧିକ ସମ୍ଭବ ।

## ଶ୍ରୀଜଗନ୍ନାଥପଞ୍ଚକଂ

ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳକମଳେ ରତ୍ନସିଂହାସନସ୍ଥଂ
ସର୍ବାଳଂକାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ରବନ୍ଦ୍ୟଂ
ବେଦାନାଂ ସାରମୀଶଂ ସୁଜନପରିବୃତଂ ବ୍ରହ୍ମଦାରୁଂ ସ୍ମରାମି ।। ୧ ।।

ରକ୍ତାମ୍ଭୋରୁହଦର୍ପଭଞ୍ଜନମହାସୌନ୍ଦର୍ଯ୍ୟନେତ୍ରଦ୍ୱୟଂ
ମୁକ୍ତାହାରବିଲମ୍ବିହେମମୁକୁଟଂ ରତ୍ନୋଜ୍ଜ୍ୱଳତ୍କୁଣ୍ଡଳମ୍ ।
ବର୍ଷାମେଘସମାନନୀଳବପୁଷଂ ଗ୍ରୈବେୟହାରାନ୍ୱିତଂ
ଦେବଂ ଚକ୍ରଧରଂ ପ୍ରସନ୍ନବଦନଂ ନୀଳାଦ୍ରିନାଥଂ ଭଜେ ।। ୨ ।।

ଫୁଲ୍ଲେନ୍ଦୀବରଲୋଚନଂ ନବଘନଶ୍ୟାମାଭିରାମାକୃତିଂ
ବିଶ୍ୱେଶଂ କମଳାବିଳାସବିଳସତ୍ପାଦାରବିନ୍ଦଦ୍ୱୟମ୍ ।
ଦୈତ୍ୟାରିଂ ସକଳେନ୍ଦୁମଣ୍ଡିତମୁଖଂ ଚକ୍ରାବ୍ଜହସ୍ତଦ୍ୱୟଂ
ବନ୍ଦେ ଶ୍ରୀ ପୁରୁଷୋତ୍ତମଂ ପ୍ରତିଦିନଂ ଲକ୍ଷ୍ମୀନିବାସାଳୟମ୍ ।। ୩ ।।

---

ନୀଳାଦ୍ରିରେ ଶଙ୍ଖକ୍ଷେତ୍ରରେ ଶତଦଳ ପଦ୍ମରେ ରତ୍ନସିଂହାସନ ଉପରେ ଦକ୍ଷିଣରେ ଅଗ୍ରଜ ବଳଭଦ୍ର ଓ ବାମରେ ସୁଭଦ୍ରାଙ୍କୁ ରଖି ସର୍ବ-ଅଳଂକାରରେ ବିଭୂଷିତ, ନୂତନ ମେଘ ଭଳି କୃଷ୍ଣବର୍ଣ୍ଣ ବ୍ରହ୍ମା, ଶିବ-ଇନ୍ଦ୍ର ପ୍ରଭୃତିଙ୍କ ବନ୍ଦନୀୟ (ରଥଯାତ୍ରାବେଳେ) ରଥରୂପକ ପାଦ ବା ଚଳନଶକ୍ତିଯୁକ୍ତ ଭକ୍ତଜନ-ବେଷ୍ଟିତ ବେଦର ସାରତତ୍ତ୍ୱ ବ୍ରହ୍ମଦାରୁଙ୍କୁ ସ୍ମରଣ କରୁଛି ।। ୧ ।।

ଯାହାଙ୍କର ନେତ୍ରଦ୍ୱୟର ଅତିଶୟ ସୌନ୍ଦର୍ଯ୍ୟ ରକ୍ତପଦ୍ମର ଗର୍ବ ଭାଙ୍ଗି ଦେଉଛି, ଯାହାଙ୍କର ସୁବର୍ଣ୍ଣ ମୁକୁଟରେ ମୁକ୍ତାର ମାଳସବୁ ଝୁଲୁଛି, ଯାହାଙ୍କର କାନରେ ଉଜ୍ଜ୍ୱଳ ରତ୍ନକୁଣ୍ଡଳ ଶୋଭାପାଉଛି, ଯାହାଙ୍କର ବର୍ଣ୍ଣ ବର୍ଷାକାଳୀନ ମେଘ ପରି ନୀଳବର୍ଣ୍ଣ ଯାହାଙ୍କର ଗ୍ରୀବା ବା ବେକରେ ହାର ରହିଛି, ସେହି ପ୍ରସନ୍ନମୁଖ ଚକ୍ରଧର ଦେବତା ନୀଳାଦ୍ରିନାଥଙ୍କୁ ଭଜୁଛି ।। ୨ ।।

ପ୍ରସ୍ଫୁଟିତ ନୀଳପଦ୍ମ ପରି ଆଖି, ନୂଆ ମେଘପରି ଶ୍ୟାମଳ ସୁନ୍ଦର ଆକୃତି, ବିଶ୍ୱର ପ୍ରଭୁ, ଲକ୍ଷ୍ମୀଙ୍କର ବିଳାସ ରୂପେ ଶୋଭାପାଉଥିବା ପାଦପଦ୍ମ ଯାହାଙ୍କର, ସେହି ଦୈତ୍ୟାରି ପୂର୍ଣ୍ଣଚନ୍ଦ୍ରବଦନ, ଚକ୍ରଧର, ପଦ୍ମହସ୍ତ ଲକ୍ଷ୍ମୀଙ୍କ ନିବାସଯୋଗ୍ୟ ସ୍ଥାନ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ପ୍ରତିଦିନ ବନ୍ଦନା କରୁଛି ।।୩।।

ଉଦ୍ୟନ୍ନୀରଦନୀଳସୁନ୍ଦରତନୁଂ ପୂର୍ଣ୍ଣେନ୍ଦୁବିମ୍ବାନନଂ
ରାଜୀବୋତ୍ପଳପତ୍ରନେତ୍ରଯୁଗଳଂ କାରୁଣ୍ୟବାରାଂନିଧିମ୍ ।
ଭକ୍ତାନାଂ ସକଳାର୍ତ୍ତିନାଶନକରଂ ଚିନ୍ତାର୍ଥିଚିନ୍ତାମଣିଂ
ବନ୍ଦେ ଶ୍ରୀପୁରୁଷୋତ୍ତମଂ ପ୍ରତିଦିନଂ ନୀଳାଦ୍ରିଚୂଡ଼ାମଣିମ୍ ॥ ୪ ॥
ରାଧାସାଧାରଣଶ୍ରୀକମନସୁମନସଂ କେକିପିଚ୍ଛାବତଂସଂ
ଚନ୍ଦ୍ରାବଲ୍ୟାଦିରାଗାଙ୍କିଦୁରସୁରନଦୀସଂଗ୍ରହାଗାଧସିନ୍ଧୁମ୍ ।
ବଂଶୀସଂଶୀଳିତାଖ୍ୟଂ କନକମଣିମୟା କଳ୍ପମାକଳ୍ପୟନ୍ତଂ
ବିଦ୍ୟୁଦ୍‌ବିଦ୍ୟୋତିବସ୍ତ୍ରଂ ନବଜଳଦରୁଚିଂ ଶ୍ରୀଜଗନ୍ନାଥମୀଡ଼େ ॥୫॥

—

## ଶ୍ରୀକୃଷ୍ଣ—

ବଂଶୀବିଭୂଷିତକରାତ୍ ନବନୀରଦାଭାତ୍
ପୀତାମ୍ବରାଦ୍ ଅରୁଣବିମ୍ବଫଳାଧରୋଷ୍ଠାତ୍ ।
ପୂର୍ଣ୍ଣେନ୍ଦୁସୁନ୍ଦରମୁଖାଦ୍ ଅରବିନ୍ଦନେତ୍ରାତ୍
କୃଷ୍ଣାତ୍ ପରଂ କିମପି ତତ୍ତ୍ୱମହଂ ନ ଜାନେ ॥

ଶ୍ରୀକୃଷ୍ଣ—ଯାହାଙ୍କ ହାତରେ ବଂଶୀ ହୋଇଛି ଭୂଷଣ, ଯାହାଙ୍କର କାନ୍ତି ନବୀନ ମେଘ ଭଳି କୃଷ୍ଣବର୍ଣ୍ଣ, ଯେ ପରିଧାନ କରିଥାନ୍ତି ପୀତବସ୍ତ୍ର, ଯାହାଙ୍କର ଅଧରୋଷ୍ଠ ବିମ୍ବଫଳ ପରି ଲୋହିତ ବର୍ଣ୍ଣ, ଯାହାଙ୍କର ମୁଖ ପୂର୍ଣ୍ଣଚନ୍ଦ୍ର ଭଳି କମନୀୟ, ଯାହାଙ୍କର ଆଖି ପଦ୍ମ ପରି ସୁନ୍ଦର—ତାଙ୍କଛଡ଼ା ମୁଁ ଆଉ କିଛି ତତ୍ତ୍ୱ ଜାଣେନାହିଁ ।

---

ନବୀନ ମେଘପରି ଶ୍ୟାମଳ ସୁନ୍ଦର ଶରୀର, ପୂର୍ଣ୍ଣଚନ୍ଦ୍ର ମୁଖ, ପଦ୍ମପତ୍ର ସଦୃଶ ନେତ୍ରଦ୍ୱୟ, କରୁଣାସାଗର, ଭକ୍ତମାନଙ୍କ ସକଳ ପୀଡ଼ା ବିନାଶକ, ଚିନ୍ତାକୁଳ ଲୋକଙ୍କ କାମନା ପୂରଣକାରୀ ଚିନ୍ତାମଣି, ନୀଳାଚଳଶିଖରର ମଣି-ଭୂଷଣ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କୁ ପ୍ରତିଦିନ ବନ୍ଦନା କରୁଛି ॥ ୪ ॥

ଶ୍ରୀରାଧାଙ୍କର ଅସାଧାରଣ ସୌନ୍ଦର୍ଯ୍ୟ କାମନା କରୁଥିବା ଦେବତା, ମୟୂର ପୁଚ୍ଛ ବିଭୂଷିତ, ଚନ୍ଦ୍ରାବଳୀ ପ୍ରଭୃତିଙ୍କ ଅନୁରାଗ ଜନିତ ଦିବ୍ୟନଦୀକୁ ସଂଗ୍ରହ କରିବାରେ ଅଥଳ ସମୁଦ୍ର ସଦୃଶ, ବଂଶୀବାଦକ, ସୁବର୍ଣ୍ଣ ଓ ରତ୍ନ ଭୂଷଣବାନ୍, ବିଜୁଳି ପରି ପୀତବସନ ପରିଧାନକାରୀ ମେଘ ପରି ଶ୍ୟାମଳ ତନୁ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରୁଛି ॥ ୫ ॥

ଆନନ୍ଦ-ରସଘନ ନନ୍ଦନନ୍ଦନ ଶ୍ରୀକୃଷ୍ଣ ଷଡ଼ୈଶ୍ବର୍ଯ୍ୟପୂର୍ଣ୍ଣ ଭଗବାନ୍ । ପିଲାବେଳେ ମାଟି ଖାଇଥିବାରୁ ମା' ଯଶୋଦା ଶାସନ କଲାବେଳେ ସେ ଆଁ କରି ତାଙ୍କର ମୁଖ ଖୋଲି ଦେଖାଇଥିଲେ ନିଜ ଉଦର ମଧ୍ୟରେ ଅନନ୍ତ କୋଟି ବ୍ରହ୍ମାଣ୍ଡ । ବ୍ରଜରେ ଗୋପାଙ୍ଗନାମାନଙ୍କୁ, ଶାନ୍ତି ପ୍ରସ୍ତାବ ନେଇ ଦୂତରୂପେ ଯାଇଥିଲାବେଳେ ଦୁର୍ଯ୍ୟୋଧନଙ୍କୁ, ଯୁଦ୍ଧକ୍ଷେତ୍ରରେ ଅର୍ଜୁନଙ୍କୁ ଓ ମହାଭାରତ ଯୁଦ୍ଧରୁ ଫେରିଲାବେଳେ ମୁନି ଉତ୍ତଙ୍କଙ୍କୁ ନିଜର ବିରାଟ ବିଶ୍ବରୂପ ପ୍ରଦର୍ଶନ କରିଥିଲେ । ବାଲ୍ୟକାଳରେ ଶକଟାସୁର, ଅଘାସୁର, ବକାସୁର, ପୂତନାକୁ ମାରିଥିଲେ ଓ କାଳୀୟ ଦଳନ କରିଥିଲେ । କଂସ ଓ ଶିଶୁପାଳଙ୍କ ପରି ଅସୁର ବୃତ୍ତିର ସାକାର ବିଗ୍ରହର ବିନାଶ ଘଟାଇଥିଲେ । ବାଳକାଳରେ ଗୋଚାରଣରେ ବ୍ରହ୍ମାଙ୍କୁ ମୋହଗ୍ରସ୍ତ କରାଇଥିଲେ ଏବଂ କରାଗ୍ରରେ ଗୋବର୍ଦ୍ଧନ ଧରି ଇନ୍ଦ୍ରଙ୍କ ଗର୍ବ ଗଞ୍ଜନ କରିଥିଲେ । କୌରବଙ୍କ ସଭାରେ ଦ୍ରୌପଦୀଙ୍କୁ ଉଲଗ୍ନ କଲାବେଳେ ବସ୍ତ୍ର ଯୋଗାଇ ଦେଇ ସେ ଲଜ୍ଜା ନିବାରଣ କରିଥିଲେ । ଏହିପରି ସବୁ କଥା ତାଙ୍କ **ଐଶ୍ବର୍ଯ୍ୟ** ବା ଈଶ୍ବରସତ୍ତାର ଉତ୍କୃଷ୍ଟ ପ୍ରମାଣ ।

ଧର୍ମରକ୍ଷା ପାଇଁ ଅବତୀର୍ଣ୍ଣ ଭଗବାନ୍ କୃଷ୍ଣ ଏଗାର ବର୍ଷ ବୟସରେ ମାତାପିତାଙ୍କୁ କାରାଗାରରୁ ମୁକ୍ତ କରି ପାଳକପିତା ନନ୍ଦଙ୍କୁ ବରୁଣଲୋକରୁ ଉଦ୍ଧାର କରି ପିତାମାତାଙ୍କ ପ୍ରତି ନିଜର ଧର୍ମ ବା କର୍ତ୍ତବ୍ୟ ପାଳନ କରିଥିଲେ । ଗୁରୁଗୃହରେ ମାତ୍ର ଚଉଷଠି ଦିନରେ ଚୌଷଠି କଳା-ବିଦ୍ୟାରେ ନିପୁଣ ହୋଇ ଗୁରୁଦକ୍ଷିଣା ସ୍ବରୂପ ଗୁରୁଙ୍କର ମୃତପୁତ୍ରକୁ ଯମଲୋକରୁ ଫେରାଇ ଆଣି ଗୁରୁଙ୍କ ପ୍ରତି କର୍ତ୍ତବ୍ୟ ପାଳନ କରିଥିଲେ । ଗୋପରେ ଗୋ-କୁଳର ରକ୍ଷା ଏବଂ ଦ୍ୱାରକାରେ ଦୀନ ବ୍ରାହ୍ମଣ ବନ୍ଧୁ ସୁଦାମାର ପଦ ପ୍ରକ୍ଷାଳନ କରି ଗୋ-ବ୍ରାହ୍ମଣଙ୍କର ହିତ-ସାଧନ କରିଥିଲେ । ରାଜନୀତିରେ ବିନା ଶସ୍ତ୍ରଚାଳନାରେ ମହାଭାରତ ଯୁଦ୍ଧର ନାୟକ ରୂପେ 'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ' ଭୂମିକାରେ ଅବତୀର୍ଣ୍ଣ ହୋଇ 'ଦୁଷ୍ଟ ନିବାରି ସନ୍ଥ ପାଳି' ଜଗତ୍‌ର ହିତ ସାଧନ କରିଥିଲେ । ଶରଣାଗତ ଦ୍ରୌପଦୀଙ୍କ ମାନ-ଉଦ୍ଧାର

କରିବା ସଙ୍ଗେ ସଙ୍ଗେ ପାଣ୍ଡବମାନଙ୍କୁ ବହୁ ବିପଦରୁ ଉଦ୍ଧାର କରି ବନ୍ଧୁ ଭାବରେ ନିଜର ଧର୍ମ ରକ୍ଷା କରିଥିଲେ । ଗୋପୀମାନଙ୍କ ସହ ପ୍ରୀତି କରି ସ୍ୱାର୍ଥତ୍ୟାଗ ପୂର୍ବକ କପରି ପରାକାଷ୍ଠା ଓ ମହାନିଷ୍ଠା ଭାବରେ ପରମ ପୁରୁଷ ଭଗବାନଙ୍କ ଉଦ୍ଦେଶ୍ୟରେ କରାଯାଇପାରେ ତାହାର ଅନବଦ୍ୟ ଦୃଷ୍ଟାନ୍ତ ପ୍ରଦର୍ଶନ ବେଳେ ଗୋପୀମାନଙ୍କୁ ସେ ଯେଉଁ ସ୍ତ୍ରୀଧର୍ମ ଉପଦେଶ ଦେଇଛନ୍ତି; ସେଥିରୁ ତାହାଙ୍କ ପ୍ରେମଧର୍ମର ପରାକାଷ୍ଠା ପ୍ରତିପନ୍ନ ହେଉଛି । ରୁକ୍ମିଣୀ, ସତ୍ୟଭାମା ପ୍ରଭୃତି ଅଷ୍ଟ ପଟ୍ଟ ମହିଷୀଙ୍କ ନିକଟରେ ସମଭାବରେ ନିଜକୁ ପ୍ରକଟ କରି ନିଜର ଅସାଧାରଣ ପୌରୁଷର ପ୍ରମାଣ ଦେବା ସଙ୍ଗେ ସଙ୍ଗେ ଜୀବନରେ ଗାର୍ହସ୍ଥ୍ୟ ଧର୍ମ ପରିପାଳନରେ ନିଜର ନିପୁଣତା ପ୍ରଦର୍ଶନ କରି ଯାଇଛନ୍ତି । ସବୁଭାବରେ ସବୁଠାରେ ସବୁମତେ ଧର୍ମରକ୍ଷା କରିଛନ୍ତି ଭଗବାନ୍ ଶ୍ରୀକୃଷ୍ଣ ।

ଭଗବାନ୍ କୃଷ୍ଣଚନ୍ଦ୍ର ଷୋଳକଳାରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଲୀଳା ବିସ୍ତାର କରିଥିଲେ । ବାଳ, କିଶୋର, ଯୌବନ, ପ୍ରୌଢ଼—ସବୁ ଅବସ୍ଥାରେ ତାଙ୍କର ବିଚକ୍ଷଣ କାର୍ଯ୍ୟକୁଶଳତା ତାଙ୍କୁ ଅନନ୍ତ ଯଶର ଅଧିକାରୀ କରିଥିଲା । ପିଲାବେଳେ କାଳୀୟ ଦଳନ କରି ସେ ନାଗଲୋକର ପୂଜ୍ୟ ହେବା ସଙ୍ଗେ ସଙ୍ଗେ, ଇନ୍ଦ୍ରଙ୍କ ଗର୍ବ ଗଞ୍ଜନ କରି ସ୍ୱର୍ଗଲୋକରେ ମଧ୍ୟ ବନ୍ଦନୀୟ ହୋଇଥିଲେ । ରାଜସୂୟ ଯଜ୍ଞରେ ଲୀଳା-ପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣ ସର୍ବପୂଜ୍ୟ ଅର୍ଘ୍ୟ ଗ୍ରହଣ କରିଥିଲେ । ମହାମନା ଭୀଷ୍ମ ମଧ୍ୟ ତାଙ୍କର ସ୍ତବ କରି ତାଙ୍କୁ ପୁରାଣ ପୁରୁଷ ବା ପରମ ପୁରୁଷ ବୋଲି ପ୍ରତିପାଦନ କରିଥିଲେ । ଏହି **ଯଶଃ** ତାହାଙ୍କ ଭଗବତ୍ତାର ଅନ୍ୟତମ ନିଦର୍ଶନ ।

ମହାଲକ୍ଷ୍ମୀ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କର ଅନ୍ୟତମ ପଟ୍ଟମହିଷୀ । କୁବ୍ଜାକୁ ରୂପ ଦେବାରେ, ସୁଦାମାଙ୍କୁ ଧନ ଦେବାରେ ଏବଂ ପତ୍ନୀ ସତ୍ୟାଙ୍କୁ ସ୍ୱର୍ଗପୁରର ପାରିଜାତ ପୁଷ୍ପ ଦେବାରେ ତାଙ୍କର ସାମର୍ଥ୍ୟ, ତାହାଙ୍କ **'ଶ୍ରୀ'**-ମତ୍ତ୍ୱର ପରିଚାୟକ ।

କଂସକୁ ମାରି ମଧ୍ୟ ତା'ର ରାଜ୍ୟ ନ ନେବାରୁ, ରାଜସୂୟ ଯଜ୍ଞର ପରମପୁରୁଷ ହେଲେ ହେଁ ଅଭିମାନ ଶୂନ୍ୟ ହୋଇଥିବାରୁ, ଗୋପୀ-

ମାନଙ୍କ ସହ ମହାରାସ କରି ମଧ୍ୟ ସେଥିରେ ନିର୍ଲିପ୍ତ ହୋଇଥିବାରୁ ତାଙ୍କଠାରେ 'ବୈରାଗ୍ୟ'ର ବିଲକ୍ଷଣ ପରିଚୟ ମିଳେ ।

ମହାଭାରତ ଯୁଦ୍ଧରେ ବିଷାଦଗ୍ରସ୍ତ ସଖା ଅର୍ଜୁନଙ୍କୁ ଯୁଦ୍ଧରେ ପ୍ରବୃତ୍ତ କରିବା ସକାଶେ ଯେଉଁ ଗୀତା ଉପଦେଶ ଦେଲେ, ତାହା ବର୍ତ୍ତମାନ ପୃଥିବୀରେ ଏକ ଜ୍ଞାନଦୀପ ଭଳି ଜ୍ଞାନର ଶାଶ୍ୱତ ଆଲୋକ ଦ୍ୱାରା ମନୁଷ୍ୟ ସମାଜକୁ ଉଦ୍‌ବୁଦ୍ଧ କରୁଛି । ପରମପୁରୁଷଙ୍କ ଦିବ୍ୟ ସନ୍ଦେଶ ନେଇ 'ଗୀତା' କର୍ମ-ଭକ୍ତି-ଜ୍ଞାନର ମହାର୍ଘରତ୍ନ ରୂପେ ବିବେଚିତ ହେଉଛି ।

ଉପର୍ଯ୍ୟୁକ୍ତ ଭାବରେ ଅନନ୍ତ ଐଶ୍ୱର୍ଯ୍ୟ, ଅଧେୟ ଧର୍ମ, ଅଖଣ୍ଡ ଯଶ, ଦିବ୍ୟ-ଶ୍ରୀ, ଅନୁପମ ବୈରାଗ୍ୟ ଓ ଅମ୍ଳାନ ଜ୍ଞାନର ପରମାଧିକାରୀ ଲୀଳାପୁରୁଷୋତ୍ତମ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ । କାରଣ—

ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ଧର୍ମସ୍ୟ ଯଶସଃ ଶ୍ରିୟଃ ।
ଜ୍ଞାନବୈରାଗ୍ୟୟୋଶ୍ଚୈବ ଷଣ୍ଣାଂ ଭଗ ଇତୀଙ୍ଗନା ॥

—ଏହି ଭଗଷଟ୍‌କର ଅଧିକାରୀ ହୋଇଥିବାରୁ ସେ ଭଗବାନ୍— କର୍ତ୍ତା, ଅକର୍ତ୍ତା, ଅନ୍ୟଥାକର୍ତ୍ତା । ପ୍ରାଣୀମାନଙ୍କର ଉତ୍ପତ୍ତି, ବିନାଶ, ଗତି, ଅଗତି, ବିଦ୍ୟା ଓ ଅବିଦ୍ୟାକୁ ସେ ଭଲଭାବରେ ଜାଣନ୍ତି ବୋଲି ସର୍ବଜ୍ଞ ଭଗବାନ୍ ।

ଉତ୍ପତ୍ତିଂ ଚ ବିନାଶଂ ଚ ଭୂତାନାମଗତିଂ ଗତିମ୍ ।
ବେତ୍ତି ବିଦ୍ୟାମବିଦ୍ୟାଂ ଚ ସ ବାଚ୍ୟୋ ଭଗବାନିତି ॥

ସୃଷ୍ଟି ଆରମ୍ଭରେ ପ୍ରଳୟ ଜଳଧିର ଜଳରେ ଭାସମାନ ବଟପତ୍ର ଉପରେ ସୃଷ୍ଟିର ପ୍ରଥମ ବାଳକ ଭାବରେ ସେ ତାଙ୍କର କୁନି କୁନି ହାତରେ ନିଜର ପାଦପଦ୍ମକୁ ଟାଣି ଆଣି ନିଜ ମୁହଁରେ ପୂରାଉଥିଲେ । ଏହାକୁ ଧ୍ୟାନ କରି—

କରାରବିନ୍ଦେନ ପଦାରବିନ୍ଦଂ ମୁଖାରବିନ୍ଦେ ବିନିବେଶୟନ୍ତମ୍ ।
ବଟସ୍ୟ ପତ୍ରସ୍ୟ ପୁଟେ ଶୟାନଂ ବାଳଂ ମୁକୁନ୍ଦଂ ମନସା ସ୍ମରାମି ॥

— ବୋଲି ପୁଷ୍ଟିମାର୍ଗୀୟ ସେହି ମୂର୍ତ୍ତିକୁ ଧ୍ୟାନ କରି ବାଳ-ଗୋପାଳ ମନ୍ତ୍ର ଯଥାବିଧି ପୁରଶ୍ଚରଣ ସହ ଜପ କଲେ ଓ ଗୋପାଳ ସହସ୍ରନାମ ପାଠ କଲେ ସନ୍ତାନପ୍ରାପ୍ତି ହେବ ।

କିଶୋର କୃଷ୍ଣଙ୍କୁ ଗୋପସ୍ତ୍ରୀ ପରିବେଷ୍ଟିତ ଦେଖି ଶ୍ରୀ ବିଦ୍ୟାରାଜ ଗୋପାଳମନ୍ତ୍ର ବିଧିବଦ୍ଧ ଭାବରେ ଜପ କରି ଶ୍ରୀଲଳିତା ସହସ୍ରନାମ ପାଠ କଲେ ବିବାହ ନିମିତ୍ତ ଉତ୍ତମ ପତି ଲାଭ ହେବ । ଘରେ ଅଶାନ୍ତି ଦେଖାଦେଲେ ସ୍ୱାମୀଙ୍କଠାରେ କୃଷ୍ଣଙ୍କୁ ଏବଂ କୃଷ୍ଣଙ୍କଠାରେ ସ୍ୱାମୀଙ୍କୁ ଅଭିନ୍ନ ଦୃଷ୍ଟିରେ ଅନୁଭବ କରି କହିବାକୁ ହେବ—

କୃଷ୍ଣ କୃଷ୍ଣ ମହାଯୋଗିନ୍ ଭକ୍ତାନାମଭୟଙ୍କର ।
ଗୋବିନ୍ଦ ପରମାନନ୍ଦ ପତିଂ ମେ ବଶମାନୟ ॥

କୃଷ୍ଣଙ୍କ ବର୍ଣ୍ଣ ଘନ ଶ୍ୟାମ । କୃଷ୍ଣବର୍ଣ୍ଣ ବସ୍ତୁର ଆକର୍ଷଣ ଶକ୍ତି ପ୍ରବଳ । ଆମେ କଳାଛତା ବ୍ୟବହାର କରୁ । କାରଣ ତାହା ସୂର୍ଯ୍ୟ କିରଣର ତାପକୁ ଆକର୍ଷଣ କରି ଧରିରଖେ । ଏହି ଆକର୍ଷଣ ଶକ୍ତି ଥିବାରୁ କନ୍ଦର୍ପ କଳା । କୃଷ୍ଣ ମଧ୍ୟ ଅନୁରୂପ ଭାବରେ କଳା ଓ ଆକର୍ଷକ ହୋଇଥିବାରୁ ସେ ମନ୍ମଥସୁନ୍ଦର । କୃଷ୍ଣକର୍ଣ୍ଣାମୃତରେ ତାଙ୍କର ବର୍ଣ୍ଣନା କରି ବିଲ୍ୱମଙ୍ଗଳ ଲେଖିଛନ୍ତି—

କସ୍ତୂରୀତିଲକଂ ଲଲାଟପଟଳେ ବକ୍ଷଃସ୍ଥଳେ କୌସ୍ତୁଭଂ
ନାସାଗ୍ରେ ବରମୌକ୍ତିକଂ କରତଳେ ବେଣୁଃ କରେ କଙ୍କଣମ୍ ॥
ସର୍ବାଙ୍ଗେ ହରିଚନ୍ଦନଂ ସୁଲଳିତଂ କଣ୍ଠେ ଚ ମୁକ୍ତାବଳୀ
ଗୋପସ୍ତ୍ରୀପରିବେଷ୍ଟିତୋ ବିଜୟତେ ଗୋପାଳଚୂଡ଼ାମଣିଃ ।

ଲଲାଟରେ କସ୍ତୁରୀ ତିଳକ, ବକ୍ଷୋଦେଶରେ କୌସ୍ତୁଭମଣି, ନାସାରେ ଶ୍ରେଷ୍ଠ ମୁକ୍ତା, କଙ୍କଣ ଲଗା କରରେ ଧରିଛନ୍ତି ବଂଶୀ, ସର୍ବାଙ୍ଗରେ ବିଲେପନ ହୋଇଛନ୍ତି ହରିଚନ୍ଦନ, କଣ୍ଠରେ ଦୋହଲୁଛି ମୁକ୍ତାର ମାଳା ଏବଂଭୂତ ଗୋପାଳ ଚୂଡ଼ାମଣି ଶ୍ରୀକୃଷ୍ଣ ଗୋପୀ ପରିବେଷ୍ଟିତ ହୋଇ ଠିଆ ହୋଇଛନ୍ତି ।

ମୃଗ ତା'ର ନାଭିରେ ଥିବା କସ୍ତୁରୀର ବାସ୍ନାରେ ଆତ୍ମହରା ହୁଏ । ତେଣୁ କସ୍ତୁରୀ ତିଳକ ସେ ଆକର୍ଷଣ ବା ମୋହନ ପ୍ରକାଶେ ଧାରଣ କରିଥାଆନ୍ତି । ଜଗନ୍ନାଥଙ୍କ ନବକଳେବର ବେଳେ ଗୋଟିଏ ବାଲ୍‌ଟି କସ୍ତୁରୀ (ମୂଲ୍ୟ ଅପରିମେୟ) ଆବଶ୍ୟକ ହୁଏ । ସେତେବେଳେ ପହଣ୍ଡି କାଳରେ ଜଗନ୍ନାଥଙ୍କ ଦେହର ବାସ୍ନା ଯେ ଥରେ ବାରି ପାରିଛି, ତାହା ଜୀବନରେ ଭୁଲି ହେବ ନାହିଁ । କୌସ୍ତୁଭମଣି ସମୁଦ୍ରରୁ ସଂଜାତ । କୁଂ-(ଭୂବଂ) ପୃଥିବୀକୁ, ସ୍ତୁଭ୍ନାତି-(ବ୍ୟାପ୍ନୋତି) ପ୍ରଳୟକାଳରେ ବ୍ୟାପି-ଯାଏ ବୋଲି ସମୁଦ୍ରର ନାମ 'କୁସ୍ତୁଭ' । ସେଥିରୁ ଜାତ ହୋଇଥିବାରୁ ମଣିଟିର ନାମ 'କୌସ୍ତୁଭ' । ପୁଣି ସ୍ତମ୍ଭନାର୍ଥକ 'ଷ୍ଟୁଭ-ସ୍ତମ୍ଭେ' ଧାତୁରୁ (କୁଂ-)ପୃଥିବୀକୁ (ସ୍ତୋଭତେ) ସ୍ତମ୍ଭ କରି ରକ୍ଷା କରୁଥିବାରୁ ବିଷ୍ଣୁଙ୍କ ଅନ୍ୟନାମ କୁସ୍ତୁଭ । ମଣିଟି ତାଙ୍କର ହୋଇଥିବାରୁ ତାହାର ନାମ 'କୌସ୍ତୁଭ' । ଏଣୁ କୌସ୍ତୁଭମଣି ହେଉଛି ଭଗବାନ୍ ଶ୍ରୀକୃଷ୍ଣଙ୍କ ସ୍ତମ୍ଭନ ଶକ୍ତି । ସ୍ୱାତୀନକ୍ଷତ୍ରରେ ଶାମୁକା ତା'ର ଗର୍ଭରେ ବାରିବିନ୍ଦୁ ଧାରଣ କଲେ 'ମୁକ୍ତା' ଆକାରରେ ମୋଚନ କରେ । ତେଣୁ 'ମୁକ୍ତା ହେଉଛି 'ଧାରଣ' ତଥା, ବିସର୍ଜନ' ଶକ୍ତିର ପ୍ରତୀକ । ଏହା ଚନ୍ଦ୍ର ବା ମନ ସହିତ ସଂପୃକ୍ତ । 'ବଂଶୀ' ଭିତର ଶୂନ୍ୟ । ତାକୁ ଭଗବାନ କୃଷ୍ଣ ମୁଖ ଲଗାଇ ଫୁଙ୍କୁଛନ୍ତି । ମଣିଷ ସେହିପରି ସକଳ ଅହଙ୍କାର ଓ ଚାହିଦା ବାସନାକୁ ନିଜ ଭିତରୁ ଖାଲି କଲେ ଭଗବାନଙ୍କ ପ୍ରେମ ଲାଭ କରିପାରିବ ଓ ନିଜ ଭିତରେ ପ୍ରାଣଶକ୍ତିର ସଂଗୀତ ଅନୁଭବ କରିବ । ଚଦି-ଆହ୍ଲାଦନେ ଧାତୁରୁ ନିଷ୍ପନ୍ନ ହରିଚନ୍ଦନ ଆହ୍ଲାଦର ପ୍ରତୀକ । ନନ୍ଦନନ୍ଦନ ଶ୍ରୀକୃଷ୍ଣ ଆନନ୍ଦ ରସଘନ ବିଗ୍ରହ । ତେଣୁ ହୃଦୟରୁ ସମସ୍ତ ଦୁଃଖ ଦୂର କରି ତାଙ୍କର ସେହି ଆନନ୍ଦ ଘନ ବିଗ୍ରହକୁ ଧ୍ୟାନକଲେ, ଜୀବନ ସାର୍ଥକ

ହୋଇସିବ । ଫଳତଃ ଓ ସର୍ବନ ଆନନ୍ଦାନୁଭୂତି ହେଉଛି କୃଷ୍ଣ-ଚେତନାର ମୂଳକଥା ।

ଶ୍ରୀକୃଷ୍ଣ ଓ ରାଧାଙ୍କର ପ୍ରଣୟ ମହିମାରେ ବୈଷ୍ଣବ ସାହିତ୍ୟ ଭରପୂର । ପରମପୁରୁଷ ଶ୍ରୀକୃଷ୍ଣଙ୍କ ପ୍ରତି ଜୀବ-ରାଧାର ନିତ୍ୟ ଆସକ୍ତି ହିଁ ରାଧାକୃଷ୍ଣ ପ୍ରେମ । ଆକାଶର ମେଘରୁ ତଳକୁ ଜଳ ବର୍ଷା ହେଲେ ବା ତଳେ ପ୍ରବାହିତ ହେଲେ କୁହାଯାଏ 'ଧାରା' ଏବଂ ଏହି 'ଧାରା' ବିପରୀତ (ମୂଳ)ରେ ଊର୍ଦ୍ଧ୍ୱକୁ ପ୍ରବାହିତ ହେଲେ ହୁଏ 'ରାଧା' । ଯୋଗମାର୍ଗରେ କଥାଟିକୁ ବୁଝିଲେ କୁଳକୁଣ୍ଡଳିନୀର ମୂଳ ଧାରରୁ ସହସ୍ରାର ପ୍ରତି ଊର୍ଦ୍ଧ୍ୱ-ଗତି ହିଁ ରାଧାର ଅଭିସରଣ—ସେଠାରେ ପରମ ପୁରୁଷ କୃଷ୍ଣଙ୍କ ସହ ମିଳନ ସକାଶେ । ଅନ୍ୟ ଭାବରେ କହିଲେ 'ଆରାଧୟତୀତି ରାଧା (ଆ+ରାଧ୍+ଅଚ୍+ଟାପ୍) ଅର୍ଥାତ୍ ଯେ ଆରାଧନା କରେ ସେ ରାଧା ଏବଂ ଆକର୍ଷୟତୀତି କୃଷ୍ଣଃ' (ଆ+କୃଷ୍+ନକ୍) ଅର୍ଥାତ୍ ଯେ ଆକର୍ଷଣ କରେ ସେ କୃଷ୍ଣ । ଏହି ଶବ୍ଦାର୍ଥକୁ ବିଚାର କଲେ ଜଣାଯାଏ, ଆରାଧନା କରିବା ମନର ଧର୍ମ ଏବଂ ଆକର୍ଷଣ କରିବା ରୂପ ବା ଶରୀରର ଧର୍ମ । ରୂପ ବା ସୌନ୍ଦର୍ଯ୍ୟ ପ୍ରତି ମନ ସ୍ୱାଭାବିକ ଭାବରେ ଆକୃଷ୍ଟ ହୋଇଥାଏ । ଏହି ନିତ୍ୟ ପ୍ରାକୃତିକ ନିୟମକୁ ଆଧାର କରି ସୁନ୍ଦର-ଶେଖର ଶ୍ରୀକୃଷ୍ଣଙ୍କ ପ୍ରତି ସୁନ୍ଦରୀ ଶିରୋମଣି ରାଧାଙ୍କ ମଧୁର ପ୍ରେମଲୀଳାରେ ମୁଖରିତ ହୋଇଛି ବୈଷ୍ଣବ ସାହିତ୍ୟ ।

କୃଷ୍ଣପ୍ରେମବିଳାସିନୀ ରାଧା ଆତ୍ମହରା ହୋଇପଡ଼ନ୍ତି ସୁନ୍ଦରଶେଖର ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ସୁଧା ପାନକରି । ତାଙ୍କର ଅଙ୍ଗେଅଙ୍ଗେ ଅନିର୍ବଚନୀୟ ସୁଖ ପ୍ରବାହର ବିଦ୍ୟୁତ୍ ତରଙ୍ଗ ଖେଳିଯାଏ । ରାଧାଙ୍କର ଅପୂର୍ବ ସୁଖାନୁଭୂତି ଓ ଆନନ୍ଦ ଲକ୍ଷ୍ୟ କରି ଶ୍ରୀକୃଷ୍ଣଙ୍କର ପ୍ରବଳ ସ୍ପୃହା ହୁଏ ସେହି ସୁଖ ଆସ୍ୱାଦନ କରିବା ସକାଶେ । ତେଣୁ ସେ ରାଧା ଭାବରେ ସ୍ୱୟଂ ଅବତାର ଗ୍ରହଣ କରନ୍ତି ଚୈତନ୍ୟ ଦେବରୂପେ । ଏହାକୁ ସ୍ୱରୂପ ଗୋସ୍ୱାମୀଙ୍କ କଡ଼ଚାରୁ ଉଦ୍ଧାର କରି ଚୈତନ୍ୟଚରିତା-ମୃତରେ ଉଲ୍ଲେଖ କରାଯାଇଛି—

ଶ୍ରୀରାଧାୟାଃ ପ୍ରଣୟମହିମା କୀଦୃଶୋ ବାନୟୈବା—
ସ୍ୱାଦ୍ୟୋ ଯେନାଦ୍ଭୁତମଧୁରିମା କୀଦୃଶୋ ବା ମଦୀୟଃ ।
ସୌଖ୍ୟଂ ଚାସ୍ୟା ମଦନୁଭବତଃ କୀଦୃଶଂ ବେତି ଲୋଭା-
ତଦ୍ଭାବାଢ୍ୟଃ ସମଜନି ଶଚୀଗର୍ଭସିନ୍ଧୌ ହରୀନ୍ଦୁଃ ॥

ଅର୍ଥାତ୍, ଶ୍ରୀରାଧାଙ୍କର ପ୍ରଣୟର ମହିମା କିପରି ? ପୁଣି ରାଧାଙ୍କ ଦ୍ୱାରା ଆସ୍ୱାଦ୍ୟ ହେଉଥିବା ମୋର (ଶ୍ରୀକୃଷ୍ଣଙ୍କର) ମଧୁରିମା ବା ମାଧୁର୍ଯ୍ୟ କିପରି ? —ଏହି ସବୁ ଜାଣିବା ଲୋଭରେ ରାଧାଭାବଯୁକ୍ତ ହରି ଶଚୀଦେବୀଙ୍କ ଗର୍ଭସିନ୍ଧୁରୁ ଚନ୍ଦ୍ର ପରି ଜନ୍ମନେଲେ ଓ ଚୈତନ୍ୟଚନ୍ଦ୍ର ନାମରେ ବନ୍ଦିତ ହେଲେ ।

ଶ୍ରୀରାଧାଙ୍କର ପ୍ରତି ଅଙ୍ଗକୁ ଶ୍ରୀକୃଷ୍ଣ ଅଙ୍ଗେ ଅଙ୍ଗେ ଅବଧାରଣା କରି ନବଦ୍ୱୀପରେ ନିମାଇଁ ଭାବରେ ଜନ୍ମଗ୍ରହଣ କଲେ ଏବଂ ରାଧାଙ୍କର ଚିତ୍ତକୁ ନିଜ ଚିତ୍ତରେ ଆରୋପଣ କରି, ତାଙ୍କର ପ୍ରୀତିରସରେ ନିଜ ଚିତ୍ତକୁ ଅନୁସିକ୍ତ ଓ ପରିସିଞ୍ଚିତ କରି ଶ୍ରୀକୃଷ୍ଣ ନିଜକୁ ମହାଭାବମୟୀ ରାଧାରୂପରେ ପରିଣତ କଲେ ଏବଂ ରାଧାଭାବରେ କୃଷ୍ଣ ଅବତାର ହେଲେ ଶ୍ରୀଚୈତନ୍ୟ । ଶ୍ରୀକୃଷ୍ଣଙ୍କର ଶ୍ୟାମଳ ଶରୀର ଧାରଣ କଲା ତପ୍ତକାଞ୍ଚନବର୍ଣ୍ଣ ଏବଂ ଶ୍ୟାମସୁନ୍ଦର ହୋଇଗଲେ ଗୌରସୁନ୍ଦର— ଶ୍ରୀଚୈତନ୍ୟ । ଶ୍ରୀକୃଷ୍ଣ ଓ ତାଙ୍କର ହ୍ଲାଦିନୀ ଶକ୍ତି ଶ୍ରୀରାଧା ଅଭେଦ ହେଲେ ହେଁ ଦ୍ୱାପରରେ ଲୀଳା ପ୍ରକାଶ କରିବା ସକାଶେ ଦ୍ୱୈତ ତନୁ ଧାରଣ କରିଥିଲେ, କିନ୍ତୁ କଳିଯୁଗରେ ପୁଣି ଦ୍ୱୈତ ତନୁ ରାଧା ଓ ହରି ଅଦ୍ୱୈତ ଯେ ରାଧା ସେ ହରିରେ ପରିଣତ ହେଲେ ଚୈତନ୍ୟ ଅବ-ତାରରେ । ତେଣୁ ଶ୍ରୀ ରୂପଗୋସ୍ୱାମୀଙ୍କ କଡ଼ଚାରୁ ଉଦ୍ଧାର କରି ଚୈତନ୍ୟ ଚରିତାମୃତ କହେ—

"ରାଧାକୃଷ୍ଣ ପ୍ରଣୟବିକୃତିର୍ହ୍ଲାଦିନୀଶକ୍ତିରସ୍ମା-
ଦେକାତ୍ମାନାବପି ଭୁବି ପୁରା ଦେହଭେଦଂ ଗତୌ ତୌ ।
ଚୈତନ୍ୟାଖ୍ୟଂ ପ୍ରକଟମଧୁନା ତଦ୍ଦ୍ୱୟଂ ଚୈକ୍ୟମାପ୍ତଂ
ରାଧାଭାବଦ୍ୟୁତି ସୁବଳିତଂ ନୌମି କୃଷ୍ଣସ୍ୱରୂପମ୍ ॥"

ରାଧାଙ୍କ ସହିତ ଥିଲେ ହିଁ ସେହି ଯୁଗଳ ମୂର୍ତ୍ତିର ଅନୁପମ ସୌନ୍ଦର୍ଯ୍ୟରେ ସ୍ୱୟଂ କାମଦେବ ବିମୋହିତ ହୋଇଥାନ୍ତି ଏବଂ ଶ୍ରୀକୃଷ୍ଣ ରାଧା ସଙ୍ଗରେ ଥାଇ ହିଁ କନ୍ଦର୍ପଙ୍କୁ ବିମୋହିତ କରିପାରୁଥିବାରୁ ମଦନ-ମୋହନ ନାମ ଧାରଣ କରନ୍ତି । ଅନ୍ୟଥା ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ ବିଶ୍ୱକୁ ବିମୋହିତ କରିପାରିଲେ ମଧ୍ୟ ରାଧା ସଙ୍ଗ ବିନା ସେ ନିଜେ ମଦନ ଦ୍ୱାରା ମୋହିତ ହୋଇ ମଦନମୋହନ ହୁଅନ୍ତି । ଏହି ଦୁଇ ମଦନ ମୋହନ ମଧ୍ୟରେ ଭେଦ ଦେଖାଇ ଗୋବିନ୍ଦ ଲୀଳାମୃତରେ କୁହାଯାଇଛି—

ରାଧା ସଙ୍ଗେ ଯଦା ଭାତି ତଦା ମଦନମୋହନଃ ।
ଅନ୍ୟଥା ବିଶ୍ୱମୋହୋଽପି ସ୍ୱୟଂ ମଦନମୋହନଃ ॥

ରାଧା ହେଉଛନ୍ତି ସକଳ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଲାବଣ୍ୟର ମୂଳାଧାର । ତାଙ୍କ ଶରୀରର ପ୍ରାଣଶକ୍ତି ହେଉଛନ୍ତି କୃଷ୍ଣ, ତାଙ୍କର ମୁଖରେ କୃଷ୍ଣନାମ, ଆଖିରେ କୃଷ୍ଣ ରୂପ, ତାଙ୍କର ହୃଦୟରେ ଉଜ୍ଜ୍ୱଳ ପ୍ରେମରସର ଅଫୁରନ୍ତ ଉତ୍ସ ଓ ଅଙ୍ଗପ୍ରତ୍ୟଙ୍ଗରେ ସାତ୍ତ୍ୱିକାଦି ଭାବଭୂଷଣ ତାଙ୍କୁ ମହାଭାବମୟୀ ପ୍ରେମ ପ୍ରତିମା ରୂପରେ ପ୍ରମାଣିତ କରିଛି । ପରମାର୍ଥତଃ ରାଧାକୃଷ୍ଣ ହେଉଛନ୍ତି ଏକ ଓ ଅଭିନ୍ନ ତତ୍ତ୍ୱ । ମାତ୍ର ସ୍ୱରୂପତଃ ଏକ ହେଲେହେଁ ଲୀଳାରସ ଆସ୍ୱାଦନ ସକାଶେ ଉଭୟେ ପୃଥକ୍ ବିଗ୍ରହ ଧାରଣ କରିଛନ୍ତି । ଶକ୍ତି ଓ ଶକ୍ତିମାନଙ୍କ ଏହି ଅଭେଦ ମଧ୍ୟରେ ଭେଦ କଳ୍ପନାକୁ ଖଣ୍ଡନ କରି ଚୈତନ୍ୟ ଚରିତାମୃତ ଆଦି ଲୀଳାରେ କୁହାଯାଇଛି—

"ରାଧା ପୂର୍ଣ୍ଣଶକ୍ତି, କୃଷ୍ଣ ପୂର୍ଣ୍ଣଶକ୍ତିମାନ୍ ।
ଦୁଇ ବସ୍ତୁ ଭେଦ ନାହିଁ ଶାସ୍ତ୍ର ପରମାଣ ॥
ମୃଗମଦ ତାର ଗନ୍ଧ ଯେ ନ୍ଛେ ଅବିଚ୍ଛେଦ ।
ଅଗ୍ନିଜ୍ୱାଳାତେ ଯୈଛେ ନାଇ କଭୁ ଭେଦ ॥
ରାଧାକୃଷ୍ଣ ଐଛେ ସଦା ଏକଇ ସ୍ୱରୂପ ।
ଲୀଲାରସ ଆସ୍ୱାଦିତେ ଧରେ ଦୁଇରୂପ ॥

ବ୍ରହ୍ମବୈବର୍ତ୍ତ ପୁରାଣରେ ମଧ୍ୟ ଉପର୍ଯ୍ୟୁକ୍ତ ଭାବରେ ବର୍ଣ୍ଣନା ଦେଖିବାକୁ ମିଳେ । ବରଂ ସେଥିରେ ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କର ଅର୍ଦ୍ଧାଂଶ ସ୍ୱରୂପ ଓ ମୂଳପ୍ରକୃତି (ମମାର୍ଦ୍ଧାଂଶସ୍ୱରୂପା ତ୍ୱଂ ମୂଳପ୍ରକୃତିରୀଶ୍ୱରୀ) ବୋଲି କୁହାଯାଇଛି । ରାଧାକୃଷ୍ଣଙ୍କର ଅଚ୍ଛେଦ୍ୟ ସମ୍ପର୍କକୁ ବର୍ଣ୍ଣନା କରି ପୁରାଣକାର କହିଛନ୍ତି—

ଯଥା ତ୍ୱଂ ଚ ତଥାଽହଂ ଚ ଭେଦୋ ହି ନାବୟୋର୍ଧ୍ରୁବମ୍ ।
ଯଥା କ୍ଷୀରେ ଚ ଧାବଲ୍ୟଂ ଯଥାଗ୍ନୌ ଦାହିକା ସତି ।
ଯଥା ପୃଥିବ୍ୟାଂ ଗନ୍ଧଶ୍ଚ ତଥାହଂ ତ୍ୱୟି ସନ୍ତତମ୍ ॥

ଅର୍ଥାତ୍, ତୁମେ ଯେପରି ମୁଁ ସେପରି—ଆମ ଦୁହିଁଙ୍କ ମଧ୍ୟରେ କୌଣସି ଭେଦ ନାହିଁ । ଯେପରି କ୍ଷୀରରେ ଧବଳତା, ଅଗ୍ନିରେ ଦାହିକା ଶକ୍ତି ଓ ପୃଥିବୀରେ ଗନ୍ଧ ଅଭିନ୍ନ ଭାବରେ ରହିଛନ୍ତି, ସେହିପରି ତୁମଠାରେ ମୁଁ ମଧ୍ୟ ସବୁବେଳେ ଅଭିନ୍ନ ଭାବରେ ରହିଛି ।

ଚୈତନ୍ୟ ଚରିତାମୃତ (ଆଦିଲୀଳା-୪)ରେ ମଧ୍ୟ କୁହାଯାଇଛି-

ରାଧାକୃଷ୍ଣ ଏକ ଆତ୍ମା ଦୁଇଦେହ ଧରି,
ଅନ୍ୟୋଽନ୍ୟେ ବିଳାସେ ରସ ଆସ୍ୱାଦନ କରି ।

ବୈଷ୍ଣବ ଧର୍ମରେ ପ୍ରେମର ମହିମା ଓ ଗୁଣୋତ୍କର୍ଷ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ପ୍ରେମ ହେଉଛି ଗୌଡ଼ୀୟ ମତବାଦର ପରମ ପୁରୁଷାର୍ଥ । କୃଷ୍ଣଙ୍କ ପାଇଁ ସର୍ବସ୍ୱ ଅର୍ପଣ କରି ନିଜର ସକଳ ସ୍ୱାର୍ଥକୁ ବଳି ଦେଇ ନିଜକୁ ପରପାଇଁ ଉତ୍ସର୍ଗ କରିବା ହିଁ ପରକୀୟା ପ୍ରେମ ଏବଂ ତାହା ହିଁ ପରମ ପୁରୁଷାର୍ଥ ଓ ଶ୍ରେଷ୍ଠ ଅଭିଳଷିତ ବସ୍ତୁ ଯେଉଁଥିରେ କାମନାର ବା ସ୍ୱାର୍ଥର ଲେଶମାତ୍ର ସନ୍ଧି ନଥାଏ । ପ୍ରେମ ଓ କାମ ମଧ୍ୟରେ ପ୍ରଭେଦ ଦର୍ଶାଇ କୁହାଯାଇଛି—

ଆତ୍ମେନ୍ଦ୍ରିୟ ପ୍ରୀତିବାଞ୍ଛା ତାରେ ବୋଲି **କାମ** ।
କୃଷ୍ଣେନ୍ଦ୍ରିୟ ପ୍ରୀତିବାଞ୍ଛା ଧରେ **ପ୍ରେମ** ନାମ ॥

ଅତ୍ୟନ୍ତ ନିସ୍ୱାର୍ଥପର ଭାବରେ କୃଷ୍ଣଙ୍କଠାରେ ସର୍ବସ୍ୱ ସମର୍ପଣ କରି ପ୍ରେମଭକ୍ତିର ଚରମ ପରାକାଷ୍ଠା ପ୍ରଦର୍ଶନ କରିଥିବାରୁ ବ୍ରଜବନିତା-ଗଣ ଆଜି ଧରାପୃଷ୍ଠରେ ପ୍ରେମରସର ଏକମାତ୍ର ଅଧିକାରିଣୀ ରସମୟୀ ମୂର୍ତ୍ତିଭାବରେ ପୂଜିତ ହେଉଛନ୍ତି। ସେମାନଙ୍କର ପଦଧୂଳିରେ ଅନୁରଞ୍ଜିତ ବ୍ରଜଭୂମିର ପ୍ରତିଟି ରେଣୁକଣା ଆଜି ପରମ ପବିତ୍ର ଭାବରେ ଗୃହୀତ ହେଉଛି। ତେଣୁ ଚୈତନ୍ୟ ଚରିତାମୃତରେ କୁହାଯାଇଛି—

"ପରକୀୟା ଭାବେ ଅତି ରସେର ଉଲ୍ଲାସ,
ବ୍ରଜ ବିନା ଏହାର ଅନ୍ୟତ୍ର ନାହିଁ ବାସ।
ବ୍ରଜବଧୂଗଣେର୍ ଏଇ ଭାବ ନିରବଧି,
ତା'ର ମଧ୍ୟେ ଶ୍ରୀରାଧାର ଭାବେର ଅବଧି॥"

ପରମ ମଧୁର ଈଶ୍ୱରଙ୍କର ଉପାସନା ସେତେବେଳେ ହିଁ ସମ୍ଭବ ହୁଏ, ଯେତେବେଳେ ତାଙ୍କର ମାଧୁର୍ଯ୍ୟମୟୀ ସତ୍ତାକୁ ରୂପର ସୀମାରେ ସୀମିତ କରାଯାଏ। ମନୁଷ୍ୟର ସଂକୀର୍ଣ୍ଣ ବୁଦ୍ଧି ଅସୀମକୁ ଉପଲବ୍ଧି କରିବାରେ ଅକ୍ଷମ ହୋଇଥିବାରୁ, ରୂପକଳ୍ପନା ବା ବିଗ୍ରହ ପୂଜାରେ ଭକ୍ତପ୍ରାଣର ଆବେଗ ଓ ଆଗ୍ରହ ସ୍ୱାଭାବିକ ଭାବରେ ଲକ୍ଷିତ ହୁଏ। ତେଣୁ ଯୁଗେ ଯୁଗେ ଭକ୍ତ ନିରୁପାଧିକ ପ୍ରୀତି ଦ୍ୱାରା ଅସୀମକୁ ସସୀମ କରି ଅରୂପକୁ ସ୍ୱରୂପ କରି ଏବଂ ନିରୁପାଧିକକୁ ସୋପାଧିକ କରି ସ୍ତୁତି କରିଛନ୍ତି। ଏହାଦ୍ୱାରା ଅସୀମଈଶ୍ୱରଙ୍କ ମହିମା କେବେହେଲେ କ୍ଷୁଣ୍ଣ ହୁଏ ନାହିଁ। ଈଶ୍ୱର ଏକାଧାରରେ ସସୀମ ଓ ଅସୀମ, ସ୍ୱରୂପ ଓ ଅରୂପ। ସସୀମ ମଧ୍ୟରେ ଅସୀମର ବଂଶୀଧ୍ୱନି ଶୁଣିବା ପାଇଁ ଭକ୍ତର ସମାପ୍ଲୁତ ପ୍ରାଣ ହିଁ ସମର୍ଥ ହୋଇଥାଏ।

"ସ ଏବ ବିଗ୍ରହବ୍ୟାପୀ ପରିଚ୍ଛିନ୍ନଃ ସ ଏବ ହି।
ଏକସ୍ୟୈବୈକଦା ଗୃସ୍ୟ ଦ୍ୱିରୂପତ୍ୱଂ ବିରାଜତେ॥"

ବୈଷ୍ଣବ ସାଧନାର ଇଷ୍ଟଦେବତା ଶ୍ରୀକୃଷ୍ଣ ହେଉଛନ୍ତି ନିରୁପାଧିକ ପରଂବ୍ରହ୍ମଙ୍କ ସୋପାଧିକ ମୂର୍ତ୍ତି। ସେ ଅବ୍ୟକ୍ତ ଓ ଅଚିନ୍ତନୀୟ

ତତ୍ତ୍ୱ ହେଲେ ହେଁ ତାଙ୍କଦ୍ୱାରା ହିଁ ବ୍ୟକ୍ତ ହୋଇଛନ୍ତି ତାଙ୍କର ଚିନ୍ମାତ୍ରାହ୍ୟ ବିଗ୍ରହ । ତେଣୁ ଶ୍ରୀକୃଷ୍ଣ ସନ୍ଦର୍ଭରେ କୁହାଯାଇଛି—"ସ ଏବ କୃଷ୍ଣସ୍ତନ୍ତ୍ର ନିତ୍ୟମପ୍ରକଟଃ ସନ୍ ବିହରତି ସ ଏବ ସ୍ୱୟଂ ଜନ୍ମାଦିଲୀଳୟା ପ୍ରକଟଃ ଭବତି ।" ଭକ୍ତଙ୍କୁ ଆନନ୍ଦିତ କରିବା ପାଇଁ ଭଗବାନ୍ ଯୁଗେ ଯୁଗେ ମୂର୍ତ୍ତି ପରିଗ୍ରହ କରି ଆବିର୍ଭୂତ ହୁଅନ୍ତି । ସେହି ମୂର୍ତ୍ତି ଅପ୍ରାକୃତ ପ୍ରେମମୂର୍ତ୍ତି—ପ୍ରାକୃତ ବା ଲୌକିକ ଜନସାଧାରଣଙ୍କର କୋଣାର୍କ ମନ୍ଦିର ଗାତ୍ରରେ ଅଙ୍କିତ ଯୁଗଳ ମିଳିତ ବିଗ୍ରହ ନୁହନ୍ତି, ସେ ହେଉଛନ୍ତି ଦିବ୍ୟ ଲୋକୋତ୍ତର ମନମୁଗ୍ଧକର ପ୍ରେମ ବିଗ୍ରହ—ରାଧାକୃଷ୍ଣ ।

ଚୈତନ୍ୟଦେବ ରାଧା ଭାବରେ ସ୍ୱୟଂ ଶ୍ରୀକୃଷ୍ଣ । ଜଗନ୍ନାଥଙ୍କ-ଠାରେ ଶ୍ରୀକୃଷ୍ଣଙ୍କୁ ଦେଖି ନିଜଠାରେ ରାଧାଭାବ ଅନୁଭବ କରୁଥିଲେ । ଅନ୍ୟ ପକ୍ଷରେ ଆମର ଓଡ଼ିଆ ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସ ହେଉଛନ୍ତି କୃଷ୍ଣ ଭାବରେ ସ୍ୱୟଂ ଶ୍ରୀରାଧା । ଏ ସବୁ ଭାବର ବିଷୟ । ଚୈତନ୍ୟଙ୍କ ନାମକୀର୍ତ୍ତନ ଦ୍ୱାରା ଭଗବାନ୍ଙ୍କ ସତ୍ତାନୁଭବ କଳିଯୁଗର ବିଷୟଜଞ୍ଜାଳଗ୍ରସ୍ତ ମାନବ ପାଇଁ ଅମୋଘ ଅସ୍ତ୍ର । ତେଣୁ କୁହାଯାଇଛି—

ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍ ।
କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ॥

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ॥

—ଉପର୍ଯ୍ୟୁକ୍ତ ବୈଷ୍ଣବ ମହାମନ୍ତ୍ରର କୀର୍ତ୍ତନରେ ଭଗବତ୍ କଥା ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବା, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ବା ଶରଣାଗତି—ଏହିପରି ନବଧାଭକ୍ତି ଦ୍ୱାରା ଭଗବତ୍ କୃପା ଲାଭ କରିବା ସକାଶେ ଭାଗବତରେ କୁହାଯାଇଛି (୧) । ବିଷ୍ଣୁଙ୍କ ଭାଗବତ କଥା ଶ୍ରବଣ କରି ପରୀକ୍ଷିତ, କୀର୍ତ୍ତନ ଦ୍ୱାରା ଶୁକ,

(୧) ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥

ସ୍ମରଣ କରି ପ୍ରହ୍ଲାଦ, ପାଦସେବା ଦ୍ୱାରା ଲକ୍ଷ୍ମୀ, ପୂଜା କରି ପୃଥୁ, ବନ୍ଦନା କରି ଅକ୍ରୂର, ଦାସ୍ୟ ଦ୍ୱାରା ହନୁମାନ, ସଖ୍ୟ ଦ୍ୱାରା ଅର୍ଜୁନ ଏବଂ ଆତ୍ମନିବେଦନ କରି ବଳି ଭଗବାନଙ୍କୁ ପାଇଥିଲେ (୧)।

ଗୋପୀପ୍ରେମ ଗୋବିନ୍ଦପ୍ରାପ୍ତିର ପରମ ମାଧ୍ୟମ। ଗୋବିନ୍ଦଙ୍କୁ ଦେଖିବାରେ ହିଁ ସେମାନଙ୍କ ପରମାନନ୍ଦ। ତାଙ୍କୁ ଟିକିଏ ନ ଦେଖିଲେ ସେମାନଙ୍କୁ କୋଟିଯୁଗ ପରି। ତେଣୁ କୁହାଯାଇଛି—

ଗୋପୀନାଂ ପରମାନନ୍ଦ ଆସୀଦ୍ ଗୋବିନ୍ଦଦର୍ଶନେ।
କ୍ଷଣଂ ଯୁଗଶତମିବ ଯାସାଂ ଯେନ ବିନାଭବତ୍ ॥

ରାଧାଙ୍କର ସେମାନଙ୍କଠାରୁ ବୈଶିଷ୍ଟ୍ୟ ହେଲା, ରାଧା ଯେତେବେଳେ ଶ୍ରୀକୃଷ୍ଣଙ୍କର ସାନ୍ନିଧ୍ୟ ପାଉଥିଲେ, ସେତେବେଳେ ସେ ଶ୍ରୀକୃଷ୍ଣଙ୍କଠାରେ ହିଁ ଶ୍ରୀକୃଷ୍ଣଙ୍କୁ ଦେଖୁଥିଲେ। ଅନ୍ୟ ସମୟରେ ଶ୍ରୀକୃଷ୍ଣଙ୍କ ବିରହବେଦନା ଅନୁଭବ କରୁଥିଲେହେଁ ଆକାଶର ନୀଳିମାରେ, ବନର ସବୁଜିମାରେ ସବଂଥ ସବୁ ନୀଳ ବସ୍ତୁରେ ସେ ଶ୍ରୀକୃଷ୍ଣଙ୍କ ସତ୍ତା ଅନୁଭବ କରୁଥିଲେ। ତେଣୁ କୁହାଯାଇଛି—

ସଙ୍ଗମବିରହ ବିକଳ୍ପେ ବରମିହ ବିରହୋ ନ ସଙ୍ଗମସ୍ତସ୍ୟ।
ସଙ୍ଗେ ସୈବ ତଥୈକସ୍ତ୍ରିଭୁବନମପି ତନ୍ମୟଂ ବିରହେ ॥

—ସଙ୍ଗମ ଓ ବିରହ ମଧ୍ୟରୁ ବିରହ ବରଂ ଭଲ କାରଣ ସଙ୍ଗମରେ ସେ ଏକ ସ୍ଥାନରେ ଦେଖାଯାଆନ୍ତି, ମାତ୍ର ବିରହରେ ତ୍ରିଭୁବନ ତନ୍ମୟ ହୋଇଯାଏ।

---

(୧) ଶ୍ରୀବିଷ୍ଣୋଃ ଶ୍ରବଣେ ପରୀକ୍ଷିଦଭବଦ୍ ବୈୟାସକିଃ କୀର୍ତ୍ତନେ
ପ୍ରହ୍ଲାଦଃ ସ୍ମରଣେ ତଦଙ୍ଘ୍ରିଭଜନେ ଲକ୍ଷ୍ମୀଃ ପୃଥୁଃ ପୂଜନେ।
ଅକ୍ରୂରସ୍ତ୍ୱଭିବନ୍ଦନେ କପିପତିର୍ଦାସ୍ୟେଽଥ ସଖ୍ୟେଽର୍ଜୁନଃ
ସର୍ବସ୍ୱାତ୍ମନିବେଦନେ ବଳିରଭୂତ୍ କୃଷ୍ଣାପ୍ତିରେଷାଂ ପରମ୍ ॥

ତେଣୁ ଏହି ଶରୀରର ବ୍ୟାକୁଳତା ନେଇ ଆନନ୍ଦରସଘନ ନଟନାଗର ଶ୍ୟାମସୁନ୍ଦରଙ୍କୁ ଦେଖିବା ଓ ପାଇବା ପାଇଁ ଯଦି ଅଭିଳାଷ ଥିଲେ, ଅନବରତ ତଦ୍‌ଭାବ ଭାବିତ ହୋଇ, ତାଙ୍କର ଧ୍ୟାନ କରିବାକୁ ହେବ—

ବର୍ହାପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରଂ
ବିଭ୍ରଦ୍‌ବାସଃ କନକକପିଶଂ ବୈଜୟନ୍ତୀଂ ଚ ମାଳାମ୍ ।
ରନ୍ଧ୍ରାନ୍ ବେଣୋରଧରସୁଧୟା ପୂରୟନ୍ ଗୋପବୃନ୍ଦୈ-
ର୍ବୃନ୍ଦାରଣ୍ୟଂ ସ୍ୱପଦରମଣଂ ପ୍ରାବିଶଦ୍‌ଗୀତକୀର୍ତ୍ତିଃ ॥
[ଭାଗବତ-୧୦।୨୧।୫]

## ଶ୍ରୀକୃଷ୍ଣସ୍ତୋତ୍ର

ଭଜେ ବ୍ରଜୈକମଣ୍ଡନଂ ସମସ୍ତ ପାପଖଣ୍ଡନମ୍ ।
ସ୍ୱଭକ୍ତଚିତ୍ତରଞ୍ଜନଂ ସଦୈବ ନନ୍ଦନନ୍ଦନମ୍ ॥ ୧ ॥
ସୁପିଚ୍ଛଗୁଚ୍ଛମସ୍ତକଂ ସୁନାଦବେଣୁହସ୍ତକମ୍ ।
ଅନଙ୍ଗରଙ୍ଗସାଗରଂ ନମାମି କୃଷ୍ଣ ନାଗରମ୍ ॥ ୨ ॥
ମନୋଜଗର୍ବମୋଚନଂ ବିଶାଳ ଲୋଲଲୋଚନମ୍ ।
ବିଧୂତଗୋପଶୋଚନଂ ନମାମି ପଦ୍ମଲୋଚନମ୍ ॥ ୩ ॥

---

ବ୍ରଜ ମଣ୍ଡଳର ଏକମାତ୍ର ଅଳଙ୍କାରସ୍ୱରୂପ, ସମସ୍ତ ପାପ ଖଣ୍ଡନକାରୀ, ନିଜ ଭକ୍ତର ଚିତ୍ତରଞ୍ଜନକାରୀ ନନ୍ଦନନ୍ଦନ (ଶ୍ରୀକୃଷ୍ଣ)ଙ୍କୁ ସର୍ବଦା ଭଜନ କରୁଅଛି । ୧ ।

ସୁନ୍ଦର ମୟୂର ପୁଚ୍ଛଶୋଭିତ ମସ୍ତକ, ସୁସ୍ୱର ବେଣୁହସ୍ତ, ଅନଙ୍ଗରଙ୍ଗର ସାଗର ନାଗର ଶ୍ରୀକୃଷ୍ଣଙ୍କୁ ନମସ୍କାର କରୁଅଛି । ୨ ।

କାମଗର୍ବ ବିନାଶକ, ବିଶାଳ-ଚଞ୍ଚଳ ଲୋଚନଯୁକ୍ତ ଯାହାଙ୍କ ବିରହରେ ଗୋପାଳବୃନ୍ଦ ଶୋକନାଯୁକ୍ତ ଗୋବର୍ଦ୍ଧନ ଧାରଣ କଲାବେଳେ ଗୋପାଳ ମାନେ ଶ୍ରୀକୃଷ୍ଣଙ୍କଠାରେ ବାଲବୁଦ୍ଧି କରି ବନ୍ଦନ କରିଥିଲେ) ପଦ୍ମଲୋଚନଙ୍କୁ ନମସ୍କାର । ୩ ।

କରାରବନ୍ଦଭୂଧରଂ ସ୍ମିତାବଲୋକସୁନ୍ଦରମ୍ ।
ମହେନ୍ଦ୍ରମାନଦାରଣଂ ନମାମି କୃଷ୍ଣବାରଣମ୍ ॥ ୪ ॥
କଦମ୍ବସୂନକୁଣ୍ଡଳଂ ସୁଚାରୁଗଣ୍ଡମଣ୍ଡଳମ୍ ।
ବ୍ରଜାଙ୍ଗନୈକବଲ୍ଲଭଂ ନମାମି କୃଷ୍ଣଦୁର୍ଲଭମ୍ ॥ ୫ ॥
ଯଶୋଦୟା ସମୋଦୟା ସଗୋପୟା ସନନ୍ଦୟା
ଯୁତଂ ସୁଖୈକଦାୟକଂ ନମାମି ଗୋପନାୟକମ୍ ॥ ୬ ॥
ସଦୈବ ପାଦପଙ୍କଜଂ ମଦୀୟମାନସେ ନିଜମ୍ ।
ଦଧାନମୁତ୍ତମାଳକଂ ନମାମି ନନ୍ଦବାଳକମ୍ ॥ ୭ ॥
ସମସ୍ତ ଦୋଷ ଶୋଷଣଂ ସମସ୍ତ ଲୋକପୋଷଣମ୍ ।
ସମସ୍ତ-ଗୋପମାନସଂ ନମାମି କୃଷ୍ଣଲାଳସମ୍ ॥ ୮ ॥
ଭୁବୋ ଭରାବତାରକଂ ଭବାବ୍ଧିକର୍ଣ୍ଣଧାରକମ୍ ।
ଯଶୋମତୀ କିଶୋରକଂ ନମାମି ଦୁଗ୍ଧ ଚୋରକମ୍ ॥ ୯ ॥
ଦୃଗନ୍ତକାନ୍ତ ଭଙ୍ଗିନଂ ସଦାସଦାଳସାଙ୍ଗିନମ୍ ।
ଦିନେ ଦିନେ ନବଂ ନବଂ ନମାମି ନନ୍ଦସମ୍ଭବମ୍ ॥ ୧୦ ॥

---

ଯାହାଙ୍କର କରପଦ୍ମରେ ଭୂଧର (ଗୋବର୍ଦ୍ଧନ), ଈଷତ୍ ହାସ୍ୟଯୁକ୍ତ ସୁନ୍ଦର ଦୃଷ୍ଟିଯୁକ୍ତ, ଇନ୍ଦ୍ରଙ୍କର ଗର୍ବଗଞ୍ଜନକାରୀ ସେହି ଶ୍ରୀକୃଷ୍ଣରୂପୀ ବାରଣ (ହସ୍ତୀ)ଙ୍କୁ ନମସ୍କାର । ୪ ।

କଦମ୍ବ ପୁଷ୍ପକୃତ କୁଣ୍ଡଳ, ଗଣ୍ଡଦେଶ ଅତି ମନୋହର, ବ୍ରଜାଙ୍ଗନାଗଣଙ୍କର ଏକମାତ୍ର ପ୍ରିୟ ଦୁର୍ଲଭ କୃଷ୍ଣଙ୍କୁ ନମସ୍କାର । ୫ ।

ନନ୍ଦ ଓ ଗୋପୀଗଣସହ ହର୍ଷିତ, ଆନନ୍ଦିତା ଯଶୋଦା ସହ ଯୁକ୍ତ, ଏକମାତ୍ର ସୁଖପ୍ରଦାତା, ଗୋପନାୟକ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୬ ।

ମୋର ଅନ୍ତରରେ ଯେ ପାଦପଦ୍ମ ନିବେଶ କରିଛନ୍ତି, ଉତ୍ତମ ଅଳକଶୋଭା-ଯୁକ୍ତ, ନନ୍ଦନନ୍ଦନଙ୍କୁ ପ୍ରଣାମ କରୁଅଛି । ୭ ।

ଯେ ସମସ୍ତ ଦୋଷ ଶୋଷଣକାରୀ ସମସ୍ତ ଲୋକ ପୋଷଣକାରୀ, ସମସ୍ତ ଗୋପର ପ୍ରାର୍ଥନୀୟ ଲାଳସରୂପ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୮ ।

ପୃଥ୍ୱୀଭାର ହରଣକାରୀ, ସଂସାର ସାଗର କର୍ଣ୍ଣଧାର ସ୍ୱରୂପ, ଯଶୋମତୀଙ୍କ କିଶୋର, ଦୁଗ୍ଧ ଚୋର ଶ୍ରୀକୃଷ୍ଣଙ୍କୁ ପ୍ରଣାମ । ୯ ।

ଚକ୍ଷୁପ୍ରାନ୍ତରେ କମନୀୟ ଭଙ୍ଗୀବିହାରୀ, ସର୍ବଦା ଗୋପୀଯୁବତୀସଙ୍ଗୀ, ପ୍ରତିଦିନ ନୂତନ ଶୋଭାଯୁକ୍ତ ନନ୍ଦକୁମାରଙ୍କୁ ନମସ୍କାର । ୧୦ ।

ଗୁଣାକରଂ ସୁଖାକରଂ କୃପାକରଂ କୃପାବରମ୍ ।
ସୁରଦ୍ୱିଷନ୍ନିକନ୍ଦନଂ ନମାମି ଗୋପନନ୍ଦନମ୍ ॥ ୧୧ ॥
ନବୀନ ଗୋପନାଗରଂ ନବୀନ କେଳିଲମ୍ପଟମ୍ ।
ନମାମି ମେଘସୁନ୍ଦରଂ ତଡ଼ିତ୍ପ୍ରଭାଲସତ୍ପଟମ୍ ॥ ୧୨ ॥
ସମସ୍ତ ଗୋପନନ୍ଦନଂ ହୃଦମ୍ବୁଜୈକ ମୋହନମ୍ ।
ନମାମି କୁଞ୍ଜମଧ୍ୟଗଂ ପ୍ରସନ୍ନଭାନୁଶୋଭନମ୍ ॥ ୧୩ ॥
ନିକାମକାମଦାୟକଂ ଦୃଗନ୍ତଚାରୁସାୟକମ୍ ।
ରସାଳ ବେଣୁଗାୟକଂ ନମାମି କୁଞ୍ଜନାୟକମ୍ ॥ ୧୪ ॥
ବିଦଗ୍ଧଗୋପିକାମନୋମନୋଜ୍ଞତଲ୍ପଶାୟିନମ୍ ।
ନମାମି କୁଞ୍ଜକାନନେ ପ୍ରବୃଦ୍ଧବହ୍ନିପାୟିନମ୍ ॥ ୧୫ ॥
ଯଦା ତଦା ଯଥା ତଥା ତଥୈବ କୃଷ୍ଣସତ୍କଥା ।
ମୟା ସଦୈବ ଗୀୟତାଂ ତଥା କୃପା ବିଧୀୟତାମ୍ ॥ ୧୬ ॥
ପ୍ରମାଣିକାଷ୍ଟକଦ୍ୱୟଂ ଜପତ୍ୟଧୀତ୍ୟ ଯଃ ପୁମାନ୍ ।
ଭବେତ୍ସ ନନ୍ଦନନ୍ଦନେ ଭବେ ଭବେ ସୁଭକ୍ତିମାନ୍ ॥ ୧୭ ॥

---

ଗୁଣର ଆକର, ସୁଖର ଆକର, କୃପାର ଆକର, କୃପାରେ ଶ୍ରେଷ୍ଠ, ରାକ୍ଷସକୁଳ ନାଶକ ଗୋପନନ୍ଦନଙ୍କୁ ନମସ୍କାର । ୧୧ ।

ନବୀନ ଗୋପନାଗର, ସଦା ନୂତନ କ୍ରୀଡ଼ାରେ ଆସକ୍ତ, ବିଦ୍ୟୁତ୍ପ୍ରଭା ସମ୍ପନ୍ନ ବସ୍ତ୍ରଧାରୀ, ମେଘ ଶ୍ୟାମ ତନୁ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୧୨ ।

ସମସ୍ତ ଗୋପାଳମାନଙ୍କ ଆନନ୍ଦଦାୟକ, ହୃଦୟ ପଦ୍ମର ଏକମାତ୍ର ମୋହସମ୍ପାଦକ, ଉଜ୍ଜ୍ୱଳ ସୂର୍ଯ୍ୟବତ୍ ପ୍ରଭାସମ୍ପନ୍ନ, କୁଞ୍ଜମଧ୍ୟସ୍ଥିତ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୧୩ ।

ସକଳ କାମନା ପୂରଣକାରୀ, ରମଣୀୟ କଟାକ୍ଷବାଣଯୁକ୍ତ, ବେଣୁରେ ରସଗାନକାରୀ କୁଞ୍ଜନାୟକଙ୍କୁ ନମସ୍କାର । ୧୪ ।

ରସଜ୍ଞା ଗୋପୀମାନଙ୍କର ମନୋହର ଚିତ୍ତରୂପକ ଶଯ୍ୟାରେ ଶୟନକାରୀ, କୁଞ୍ଜବନରେ ବୃଦ୍ଧି ପାଉଥିବା ପ୍ରଜ୍ୱଳିତ ଅଗ୍ନିପାନକାରୀଙ୍କୁ ନମସ୍କାର ।୧୫

ହେ ପ୍ରଭୁ, ଯେ କୌଣସି ସ୍ଥାନରେ ଯେ କୌଣସି ଅବସ୍ଥାରେ ଆପଣଙ୍କ ସତ୍କଥା ମୋ ଦ୍ୱାରା ଗୀତ ହେଉ-ଏତିକିମାତ୍ର କୃପାବିଧାନ କରନ୍ତୁ । ୧୬ ।

ପ୍ରମାଣିକା ଛନ୍ଦରେ ଲିଖିତ ଏହି ଷୋଳଟି ଶ୍ଳୋକ ଅଧ୍ୟୟନ କଲେ, ଜପ କଲେ, ଶ୍ରୀକୃଷ୍ଣଙ୍କଠାରେ ଜନ୍ମ ଜନ୍ମରେ ଉତ୍ତମ ଭକ୍ତ ଜାତହୁଏ । ୧୭ ।

# ପ୍ରସିଦ୍ଧ ଚୌରାଷ୍ଟକଂ

ବ୍ରଜେ ପ୍ରସିଦ୍ଧଂ ନବନୀତଚୌରଂ ଗୋପାଙ୍ଗନାନାଂ ଚ ଦୁକୂଳଚୌରମ୍ ।
ଅନେକଜନ୍ମାର୍ଜ୍ଜିତପାପଚୌରଂ ଚୌରାଗ୍ରଗଣ୍ୟଂ ପୁରୁଷଂ ନମାମି ॥୧॥
ଶ୍ରୀରାଧିକାୟାଃ ହୃଦୟସ୍ୟ ଚୌରଂ ନବାମ୍ବୁଦଶ୍ୟାମଳକାନ୍ତିଚୌରମ୍ ।
ପଦାଶ୍ରିତାନାଂ ଚ ସମସ୍ତଚୌରଂ ଚୌରାଗ୍ରଗଣ୍ୟଂ ପୁରୁଷଂ ନମାମି ॥୨॥
ଅକିଞ୍ଚନୀକୃତ୍ୟ ପଦାଶ୍ରିତଂ ଯଃ କରୋତି ଭିକ୍ଷୁଂ ପଥି ଗେହହୀନମ୍ ।
କେନାପ୍ୟହୋ ଭୀଷଣଚୌର ଈଦୃଗ୍ ଦୃଷ୍ଟଃ ଶ୍ରୁତୋ ବା ନ ଜଗତ୍ତ୍ରୟେଽପି
ଯଦୀୟ ନାମାପି ହରତ୍ୟଶେଷଂ ଗିରିପ୍ରମାଣାନପି ପାପରାଶୀନ୍ ।
ଆଶ୍ଚର୍ଯ୍ୟରୂପୋ ନନୁ ଚୌର ଈଦୃଗ୍ ଦୃଷ୍ଟଃ ଶ୍ରୁତୋ ବା ନ ମୟା କଦାଽପି ॥
ଧନଂ ଚ ମାନଂ ଚ ତଥେନ୍ଦ୍ରିୟାଣି ପ୍ରାଣାଂଶ୍ଚ ହୃତ୍ୱା ମମ ସର୍ବମେବ ।
ପଲାୟସେ କୁତ୍ର ଧୃତୋଽଦ୍ୟଚୌରଃ ତ୍ୱଂ ଭକ୍ତିଦାମ୍ନାସି ମୟା ନିରୁଦ୍ଧଃ ॥୫॥
ଛିନତ୍ସି ଘୋରଂ ଯମପାଶବନ୍ଧଂ ଭିନତ୍ସି ଭୀମଂ ଭବପାଶବନ୍ଧମ୍ ।
ଛିନତ୍ସି ସର୍ବସ୍ୟ ସମସ୍ତବନ୍ଧଂ ନୈବାତ୍ମନୋ ଭକ୍ତକୃତଂ ତୁ ବନ୍ଧମ୍ ॥୬॥

---

ବ୍ରଜରେ ନବନୀ ଚୋର, ଗୋପାଙ୍ଗନାମାନଙ୍କର ବସ୍ତ୍ରଚୋର, ଭକ୍ତମାନଙ୍କର ଅନେକ ଜନ୍ମରେ ଅର୍ଜ୍ଜନ କରିଥିବା ପାପର ଚୋର ଭାବରେ ପ୍ରସିଦ୍ଧ ଚୋରଶ୍ରେଷ୍ଠ ଭଗବତ୍ ପୁରୁଷଙ୍କୁ ନମସ୍କାର ॥ ୧ ॥

ଶ୍ରୀରାଧାଙ୍କ ହୃଦୟ ଚୋର, ନୂଆ ମେଘର ଶ୍ୟାମଳବର୍ଣ୍ଣ ଚୋର, ପଦାଶ୍ରିତ ଭକ୍ତଙ୍କର ସର୍ବସ୍ୱ ଚୋର -ସେହି ଚୋରଶେଖର ଭଗବତ୍ ପୁରୁଷଙ୍କୁ ମୋର ନମସ୍କାର ॥ ୨ ॥

ଯେ ପଦାଶ୍ରିତ ଲୋକର କିଛି ନରଖି ତାଙ୍କୁ ରାସ୍ତାରେ ଭିକାରୀ ଗୃହହୀନ କରିଦିଅନ୍ତି ଏହିପରି ଭୀଷଣ ଚୋର କଥା ତିନିଭୁବନରେ ଦେଖା ଶୁଣା ଯାଇନାହିଁ । ଅର୍ଥାତ୍ ଭଗବାନଙ୍କ ନାମରେ ମତ୍ତ ହେଲେ ଭକ୍ତ ସଂସାରର ସବୁ ବସ୍ତୁ ବାସନା ତ୍ୟାଗ କରିଥାଏ ॥ ୩ ॥

ଯାହାଙ୍କର ନାମ ପର୍ବତ ପରି ବିଶାଳ ଓ ଅଶେଷ ପାପରାଶିକୁ ହରଣ କରି ନିଏ – ଏପରି ଚୋର କଥା ମୁଁ କେବେ ଦେଖିନାହିଁ କି ଶୁଣିନାହିଁ ॥ ୪ ॥

ମୋର ଧନ, ମାନ ଇନ୍ଦ୍ରିୟ, ପ୍ରାଣ ସବୁ ଚୋରି କରି ଧରାପଡିଲେ ମଧ୍ୟ ଭଦ୍ରଲୋକ ପରି କୁଆଡେ ଯିବ ହେ ଚୋର ? ତୁମେ ମୋର ଭକ୍ତିରଜ୍ଜୁରେ ବନ୍ଧା ହୋଇ ରହିଛ ॥ ୫ ॥

ଘୋର ଯମପାଶ ବନ୍ଧନ, ଭୟଙ୍କର ସଂସାରପାଶ ବନ୍ଧନ ତଥା

ମନ୍ମାନସେ ତାମସରାଶିଘୋରେ କାରାଗୃହେ ଦୁଃଖମୟେ ନିବଦ୍ଧଃ ।
ଲଭସ୍ୱ ହେ ଚୌର ହରେ ଚିରାୟ ସ୍ୱଚୌର୍ଯ୍ୟଦୋଷୋଚିତମେବ ଦଣ୍ଡମ୍ ॥୭
କାରାଗୃହେ ବସ ସଦା ହୃଦୟେ ମଦୀୟେ ମଦ୍ଭକ୍ତିପାଶଦୃଢବନ୍ଧନନିଶ୍ଚଳଃ ସନ୍
ତ୍ୱାଂ କୃଷ୍ଣ ହେ ପ୍ରଳୟକୋଟିଶତାନ୍ତରେଽପି ସର୍ବସ୍ୱଚୌର ହୃଦୟାନ୍ନ ହି
ମୋଚୟାମି ॥୮॥

---

## ମଧୁରାଷ୍ଟକଂ

ଅଧରଂ ମଧୁରଂ ବଦନଂ ମଧୁରଂ ନୟନଂ ମଧୁରଂ ହସିତଂ ମଧୁରମ୍ ।
ହୃଦୟଂ ମଧୁରଂ ଗମନଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୧॥
ବଚନଂ ମଧୁରଂ ଚରିତଂ ମଧୁରଂ ବସନଂ ମଧୁରଂ ବଳିତଂ ମଧୁରମ୍ ।
ଚଳିତଂ ମଧୁରଂ ଭ୍ରମିତଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୨॥
ବେଣୁର୍ମଧୁରୋ ରେଣୁର୍ମଧୁରଃ ପାଣିର୍ମଧୁରଃ ପାଦୌ ମଧୁରୌ ।
ନୃତ୍ୟଂ ମଧୁରଂ ସଖ୍ୟଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୩॥

---

ସମସ୍ତଙ୍କର ସବୁ ବନ୍ଧନ ତୁମେ ଛିନ୍ନ କରିଥାଅ । ମାତ୍ର ଭକ୍ତିକୃତ ନିଜ ବନ୍ଧନକୁ ତୁମେ ଛିଣ୍ଡାଇ ପାର ନାହିଁ ।। ୬ ।।

ହେ ହରଣକାରୀ ହରି; ଚୋର ! ମୋର ଦୁଃଖପୂର୍ଣ୍ଣ ଘୋର ଅନ୍ଧକାରମୟ ମନରୂପକ କାରାଗାରରେ ବନ୍ଦୀ ତୁମେ ଚୋରି କରିଥିବା ଯୋଗୁଁ ତୁମର ଉଚିତ ଦଣ୍ଡ ପାଅ ।। ୭ ।।

ମୋର ଭକ୍ତିପାଶରେ ବାନ୍ଧି ହୋଇ ତୁମେ ଆଉ କୁଆଡେ ଯିବାକୁ ହଲଚଲ ନହୋଇ ମୋର ହୃଦୟ ରୂପକ କାରାଗାରରେ ସବୁବେଳେ ରହ । ହେ କୃଷ୍ଣ ! ହେ ସର୍ବସ୍ୱ ଚୋର ! ତୁମକୁ ଶହେ କୋଟି ପ୍ରଳୟ ହୋଇଗଲେ ମଧ ହୃଦୟରୁ କେବେହେଲେ ଛାଡ଼ିବି ନାହିଁ ।। ୮ ।।

---

ସକଳ ମଧୁର ରସର ଅଧୀଶ୍ୱର ଶ୍ରୀକୃଷ୍ଣଙ୍କର ଅଧର, ବଦନ, ନୟନ, ହାସ, ହୃଦୟ, ଗମନ ସବୁକିଛି ମଧୁର । ୧ ।

ମଧୁର ମୂର୍ତ୍ତି ଶ୍ରୀକୃଷ୍ଣ ହେଉଛନ୍ତି ମଧୁରାଧିପତି । ତାଙ୍କର ବଚନ, ଚରିତ, ବସନ, ଅଙ୍ଗଭଙ୍ଗୀ, ଚଳନ, ଭ୍ରମଣ ସବୁ ମଧୁର । ୨ ।

ଶ୍ରୀକୃଷ୍ଣ ହେଉଛନ୍ତି ମଧୁର-ଈଶ୍ୱର । ତାଙ୍କର ବେଣୁ, ପାଦଧୂଳି, ହାତ, ପାଦ, ନୃତ୍ୟ, ବନ୍ଧୁତା –ସବୁକିଛି ମଧୁର । ୩ ।

ଗୀତଂ ମଧୁରଂ ପୀତଂ ମଧୁରଂ ଭୁକ୍ତଂ ମଧୁରଂ ସୁପ୍ତଂ ମଧୁରମ୍ ।
ରୂପଂ ମଧୁରଂ ତିଳକଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୪॥

କରଣଂ ମଧୁରଂ ତରଣଂ ମଧୁରଂ ହରଣଂ ମଧୁରଂ ରମଣଂ ମଧୁରମ୍ ।
ବମିତଂ ମଧୁରଂ ଶମିତଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୫॥

ଗୁଞ୍ଜା ମଧୁରା ମାଳା ମଧୁରା ଯମୁନା ମଧୁରା ବୀଚୀ ମଧୁରା ।
ସଲିଳଂ ମଧୁରଂ କମଳଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୬॥

ଗୋପୀ ମଧୁରା ଲୀଳା ମଧୁରା ଯୁକ୍ତଂ ମଧୁରଂ ମୁକ୍ତଂ ମଧୁରମ୍ ।
ଦୃଷ୍ଟଂ ମଧୁରଂ ଶିଷ୍ଟଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୭॥

ଗୋପା ମଧୁରା ଗାବୋ ମଧୁରା ଯଷ୍ଟିର୍ମଧୁରା ସୃଷ୍ଟିର୍ମଧୁରା ।
ଦଳିତଂ ମଧୁରଂ ଫଳିତଂ ମଧୁରଂ ମଧୁରାଧିପତେରଖିଳଂ ମଧୁରମ୍ ॥୮॥

---

ଶ୍ରୀକୃଷ୍ଣ ହେଉଛନ୍ତି ମଧୁର ନାୟକ । ତାଙ୍କର ଗାନ, ପାନ, ଭୋଜନ, ଶୟନ, ରୂପ, ତିଳକ— ସବୁକିଛି ମଧୁର । ୪ ।

ସେ ମଧୁରାଧିପତି । ତାଙ୍କର କାର୍ଯ୍ୟ, ତରିବା ବା ପହଁରିବା, ହରଣ ବା ଚୋରୀ କରିବା, ରମଣ ବା ରତିକ୍ରିୟା, ବମିତ ବା ବାନ୍ତ କରିବା, ଶମିତ ବା ଶାନ୍ତ ହେବା ସବୁକିଛି ମଧୁର । ୫ ।

ତାଙ୍କର ମାଳା ଓ ତହିଁରେ ଥିବା କାଇଁଚ, ଯମୁନା ଓ ତା'ର ତରଙ୍ଗ ତଥା ଜଳ ଓ ତହିଁରେ ପ୍ରସ୍ଫୁଟିତ ପଦ୍ମ ସବୁ ମଧୁର । ମଧୁରାଧିପତିଙ୍କ ସବୁ ମଧୁର । ୬ ।

ତାଙ୍କର ଗୋପୀ, ତାଙ୍କ ଲୀଳା, ସେମାନଙ୍କ ସଂଯୋଗ ତଥା ତାଙ୍କର ଦୃଷ୍ଟି ଓ ଶିଷ୍ଟାଚାର ସବୁ ମଧୁର । କାରଣ ସେ ମଧୁରାଧିପତି । ୭ ।

ମଧୁରାଧିପତିଙ୍କର ଗୋପାଳ ବନ୍ଧୁ, ତାଙ୍କର ଗାଈ, ତାଙ୍କର ବାଡ଼ି, ତାଙ୍କ ସୃଷ୍ଟିଲୀଳା, ତାଙ୍କର ସଂହାର ଲୀଳା ଓ ତା'ର ପରିଣାମ ସବୁ ମଧୁର । ୮ ।

# ମୁକୁନ୍ଦମାଳାସ୍ତୋତ୍ରମ୍

ବନ୍ଦେ ମୁକୁନ୍ଦମରବିନ୍ଦଦଳାୟତାକ୍ଷଂ
କୁନ୍ଦେନ୍ଦୁଶଙ୍ଖଦଶନଂ ଶିଶୁଗୋପବେଶମ୍ ।
ଇନ୍ଦ୍ରାଦିଦେବଗଣବନ୍ଦିତ ପାଦପୀଠଂ
ବୃନ୍ଦାବନାଳୟମହଂ ବସୁଦେବ ସୂନୁମ୍ ॥ ୧ ॥
ଶ୍ରୀବଲ୍ଲଭେତି ବରଦେତି ଦୟାପରେତି
ଭକ୍ତପ୍ରିୟେତି ଭବଲୁଣ୍ଠନକୋବିଦେତି ।
ନାଥେତି ନାଗଶୟନେତି ଜଗନ୍ନିବାସେ-
ତ୍ୟାଲାପିନଂ ପ୍ରତିଦିନଂ କୁରୁ ମାଂ ମୁକୁନ୍ଦ ॥ ୨ ॥
ଜୟତୁ ଜୟତୁ ଦେବୋ ଦେବକୀନନ୍ଦନୋଽୟଂ
ଜୟତୁ ଜୟତୁ କୃଷ୍ଣୋ ବୃଷ୍ଣିବଂଶପ୍ରଦୀପଃ ।
ଜୟତୁ ଜୟତୁ ମେଘଶ୍ୟାମଳଃ କୋମଳାଙ୍ଗୋ
ଜୟତୁ ଜୟତୁ ପୃଥ୍ୱୀଭାରନାଶୋ ମୁକୁନ୍ଦଃ ॥ ୩ ॥
ମୁକୁନ୍ଦ ମୂର୍ଦ୍ଧ୍ନା ପ୍ରଣିପତ୍ୟ ଯାଚେ
ଭବନ୍ତମେକାନ୍ତମିୟନ୍ତମର୍ଥମ୍ ।
ଅବିସ୍ମୃତିସ୍ତ୍ୱଚ୍ଚରଣାରବିନ୍ଦେ
ଭବେ ଭବେ ମେଽସ୍ତୁ ତବ ପ୍ରସାଦାତ୍ ॥ ୪ ॥

---

ପଦ୍ମପଲାଶ ପତ୍ର ସଦୃଶ ନୟନ, କୁନ୍ଦ-ପୁଷ୍ପ, ଚନ୍ଦ୍ର ଓ ଶଙ୍ଖ ସଦୃଶ ଧବଳ ଦଶନ, ସେହି ଗୋପବାଳକ ବେଶଧାରୀ ଇନ୍ଦ୍ରାଦି ଦେବତାମାନଙ୍କ ଦ୍ୱାରା ପୂଜିତ ବୃନ୍ଦାବନବାସୀ ବସୁଦେବ ସୁତ ମୁକୁନ୍ଦଙ୍କୁ ମୁଁ ବନ୍ଦନା କରୁଛି । ୧ ।

ହେ ମୁକୁନ୍ଦ ! "ଶ୍ରୀବଲ୍ଲଭ, ବରଦ, ଦୟାପର, ଭକ୍ତପ୍ରିୟ, ସଂସାର (ବାସନା) ନାଶ କରିବାରେ ଦକ୍ଷ, ନାଥ, ଶେଷଶାୟୀ, ଜଗନ୍ନିବାସ" ବୋଲି ପ୍ରତିଦିନ ଆଳାପ କଲାପରି ତୁମେ ମୋତେ କର । ୨ ।

ଏହି ଦେବକୀପୁତ୍ର ଦେବଙ୍କର ଜୟ ହେଉ । ବୃଷ୍ଣିବଂଶ ପ୍ରଦୀପ ଶ୍ରୀକୃଷ୍ଣଙ୍କର ଜୟ ହେଉ, ମେଘଭଳି ଶ୍ୟାମବର୍ଣ୍ଣ ଏବଂ କୋମଳ ଶରୀରଧାରୀଙ୍କର ଜୟ ହେଉ । ଭୂଭାରହାରୀ ମୁକୁନ୍ଦଙ୍କର ଜୟ ହେଉ । ୩ ।

ହେ ମୁକୁନ୍ଦ, ନତମସ୍ତକରେ ମୁଁ ତୁମକୁ ଏକାନ୍ତ ଭାବରେ ଏତିକମାତ୍ର

ଶ୍ରୀଗୋବିନ୍ଦପଦାମ୍ଭୋଜମଧୁ ମହଦଦ୍ଭୁତଂ ଗୁଣମ୍ ।
ଯତ୍ ପାୟିନୋ ନ ମୁହ୍ୟନ୍ତି ମୁହ୍ୟନ୍ତି ଯଦପାୟିନଃ ॥ ୫ ॥

ନାହଂ ବନ୍ଦେ ତବ ଚରଣୟୋର୍ଦ୍ୱନ୍ଦ୍ୱମଦ୍ୱନ୍ଦ୍ୱହେତୋଃ
କୁମ୍ଭୀପାକଂ ଗୁରୁମପି ହରେ ନାରକଂ ନାପନେତୁମ୍ ।
ରମ୍ୟାରାମାମୃଦୁତନୁଲତାନନ୍ଦନେ ନାପି ରନ୍ତୁଂ
ଭାବେ ଭାବେ ହୃଦୟଭବନେ ଭାବୟେୟଂ ଭବନ୍ତମ୍ ॥ ୬ ॥

ନାସ୍ଥା ଧର୍ମେ ନ ବସୁନିଚୟେ ନୈବ କାମୋପଭୋଗେ
ଯଦ୍ଭାବ୍ୟଂ ତଦ୍ଭବତୁ ଭଗବନ୍ ପୂର୍ବକର୍ମାନୁରୂପମ୍ ।
ଏତତ୍ ପ୍ରାର୍ଥ୍ୟଂ ମମ ବହୁମତଂ ଜନ୍ମଜନ୍ମାନ୍ତରେଽପି
ତ୍ୱତ୍ପାଦାମ୍ଭୋରୁହଯୁଗଗତା ନିଶ୍ଚଳା ଭକ୍ତିରସ୍ତୁ ॥ ୭ ॥

---

ଭିକ୍ଷା କରୁଛି—ତୁମ୍ଭର ପ୍ରସାଦରୁ ପ୍ରତି ଜନ୍ମରେ ତୁମ ଚରଣାରବିନ୍ଦରେ ମୋର ମନ ଅବସ୍ଥିତ ଭାବରେ ରହୁ ॥ ୪ ॥

ସାଧାରଣତଃ ମଧୁ ବା ମଦ୍ୟପାନ କରୁଥିବା ଲୋକ ମୋହଗ୍ରସ୍ତ ହୁଏ । ମାତ୍ର ଶ୍ରୀଗୋବିନ୍ଦଙ୍କର ପଦାମ୍ବୁଜର ମଧୁ (ମଦ୍ୟ)ର ଗୁଣ ଅଦ୍ଭୁତ ଅଟେ । ତାକୁ ଯେଉଁମାନେ ପାନ କରନ୍ତି ସେମାନେ ମୋହଗ୍ରସ୍ତ ହୁଅନ୍ତି ନାହିଁ କିନ୍ତୁ ଯେଉଁମାନେ ସେହି ମଧୁ ପାନ ନ କରନ୍ତି ସେମାନେ ହିଁ ମୋହଗ୍ରସ୍ତ ହୁଅନ୍ତି ॥ ୫ ॥

ହେ ହରି, ସୁଖଦୁଃଖାଦି ଦ୍ୱନ୍ଦ୍ୱର ନିବୃତ୍ତି ସକାଶେ, କିମ୍ବା ଭୟାନକ କୁମ୍ଭୀପାକ ନରକରୁ ଉଦ୍ଧାର ପାଇବା ସକାଶେ କିମ୍ବା ସୁନ୍ଦରୀ ରମଣୀର ଶରୀର ରୂପକ ଲତାକୁଞ୍ଜରେ ଆନନ୍ଦରେ ରମଣ କରିବା ସକାଶେ ମୁଁ ତୁମର ଚରଣ ଦ୍ୱନ୍ଦ୍ୱର ବନ୍ଦନା କରୁନାହିଁ । କିନ୍ତୁ ପ୍ରତି ଭାବନାରେ ବା ପ୍ରତି ଜନ୍ମରେ ହୃଦୟ-ମନ୍ଦିରରେ ତୁମକୁ ଭାବିବା ପାଇଁ ତୁମର ଅର୍ଚ୍ଚନା କରୁଛି ॥ ୬ ॥

ଧର୍ମାଚରଣରେ, ଅର୍ଥ ସଞ୍ଚୟରେ, କାମ-ଉପଭୋଗରେ ମୋର ବିଶ୍ୱାସ ନାହିଁ । ପ୍ରାରବ୍ଧ ବା ପୂର୍ବ କର୍ମାନୁସାରେ ଯାହା ହେବାର ଅଛି ତାହା ହେଉ । କେବଳ ଏତିକି ମାତ୍ରକ ପ୍ରାର୍ଥନା—ଜନ୍ମଜନ୍ମାନ୍ତରରେ ତୁମର ପାଦପଦ୍ମରେ ମୋର ଅଚଳା ଭକ୍ତି ରହିଥାଉ ॥ ୭ ॥

ଦିବି ବା ଭୁବି ବା ମମାସ୍ତୁ ବାସୋ
ନରକେ ବା ନରକାନ୍ତକ ପ୍ରକାମମ୍ ।
ଅବଧୀରିତ ଶାରଦାରବିନ୍ଦୌ
ଚରଣୌ ତେ ମରଣେଽପି ଚିନ୍ତୟାମି ॥ ୮ ॥
ସରସିଜନୟନେ ସଶଙ୍ଖଚକ୍ରେ
ମୁରଭିଦି ମା ବିରମେହ ଚିତ୍ତ ରନ୍ତୁମ୍ ।
ସୁଖତରମପରଂ ନ ଜାତୁ ଜାନେ
ହରିଚରଣସ୍ମରଣାମୃତେନ ତୁଲ୍ୟମ୍ ॥ ୯ ॥
ମାଭୈର୍ମନ୍ଦମନୋ ବିଚିନ୍ତ୍ୟ ବହୁଧା ଯାମୀଶ୍ଚିରଂ ଯାତନା
ନୈବାମୀ ପ୍ରଭବନ୍ତି ପାପରିପବଃ ସ୍ୱାମୀ ନନୁ ଶ୍ରୀଧରଃ ।
ଆଲସ୍ୟଂ ବ୍ୟପନୀୟ ଭକ୍ତିସୁଲଭଂ ଧ୍ୟାୟସ୍ୱ ନାରାୟଣଂ
ଲୋକସ୍ୟ ବ୍ୟସନାପନୋଦନକରୋ ଦାସସ୍ୟ କିଂ ନ କ୍ଷମଃ ॥୧୦॥
ଭବଜଲଧିଗତାନାଂ ଦ୍ୱନ୍ଦ୍ୱବାତାହତାନାଂ
ସୁତଦୁହିତୃକଳତ୍ର ତ୍ରାଣଭାରାର୍ଦ୍ଦିତାନାମ୍ ।
ବିଷମବିଷୟତୋୟେ ମଜ୍ଜତାମପ୍ଲବାନାଂ
ଭବତୁ ଶରଣମେକୋ ବିଷ୍ଣୁପୋତୋ ନରାଣାମ୍ ॥ ୧୧ ॥

---

ହେ ନରକାନ୍ତକ, ମୋର ନିବାସ ସ୍ୱର୍ଗରେ ହେଉ କି ମର୍ତ୍ତ୍ୟରେ ହେଉ କିମ୍ବା ନରକରେ ହେଉ । କିନ୍ତୁ ସୌନ୍ଦର୍ଯ୍ୟରେ ଶରତ୍‌କାଳୀନ ପଦ୍ମକୁ ତୁଚ୍ଛ ମନେକରୁଥିବା ତୁମର ପାଦପଦ୍ମ ଦ୍ୱୟକୁ ମରଣ ସମୟରେ ମଧ୍ୟ ମୁଁ ଯେପରି ଭଲଭାବରେ ଚିନ୍ତା କରିବି—ସେତିକି ହେଉ ॥ ୮ ॥

ରେ ମନ ! ଏହି ସଂସାରରେ ପଦ୍ମଲୋଚନ ଶଙ୍ଖଚକ୍ରଧାରୀ ମୁରାରିଙ୍କଠାରେ ରମଣ କରିବାରୁ ବିରତ ହୁଅନା । ହରିଚରଣ ସ୍ମରଣ ଅମୃତ ପରି । ତା'ଠାରୁ ଅଧିକ ସୁଖ ଥିବା ମୁଁ ଜାଣେନାହିଁ ॥ ୯ ॥

ରେ ମୂଢ଼ ମନ ! ଯେତେପ୍ରକାର କଷ୍ଟ ଦୀର୍ଘକାଳଧରି ପାଇଛୁ ସେ ସବୁ ଚିନ୍ତା କରି ଭୟ କରନା । ଏହି ସବୁ ପାପ ରୂପକ ଶତ୍ରୁ କଷ୍ଟସ୍ତ ପ୍ରଭାବଶାଳୀ ହେବେ ନାହିଁ କାରଣ ଆମର ପ୍ରଭୁ ଲକ୍ଷ୍ମୀପତି ଶ୍ରୀଧର । ଆଳସ୍ୟକୁ ତ୍ୟାଗ କରି ଭକ୍ତିସୁଲଭ ନାରାୟଣଙ୍କୁ ଧ୍ୟାନ କର । ସେ ସମସ୍ତ ଲୋକର ବିପଦ ବିନାଶ କରୁଛନ୍ତି । ସେ କ'ଣ ତାଙ୍କ ଦାସ ବା ଭୃତ୍ୟର ବିପଦ ବିନାଶରେ ସମର୍ଥ ନୁହନ୍ତି ? ॥ ୧୦ ॥

ସଂସାର ସାଗରରେ ପଡ଼ିତ, ସୁଖଦୁଃଖାଦି ଦ୍ୱନ୍ଦ୍ୱରୂପକ ବାତ୍ୟାରେ

ରଜସି ନିପତିତାନାଂ ମୋହଜାଲାବୃତାନାଂ
ଜନନମରଣଦୋଳାଦୁର୍ଗସଂସର୍ଗିତାନାମ୍ ।
ଶରଣମଶରଣାନାମେକ ଏବାତୁରାଣାଂ
କୁଶଳପଥନିଯୁକ୍ତଶ୍ଚକ୍ରପାଣିର୍ନରାଣାମ୍ ॥ ୧୨ ॥

ଅପରାଧ ସହସ୍ର ସଙ୍କୁଳେ ପତିତଂ ଭୀମଭବାର୍ଣ୍ଣବୋଦରେ ।
ଅଗତିଂ ଶରଣାଗତଂ ହରେ
କୃପୟା କେବଳମାତ୍ମସାତ୍ କୁରୁ ॥ ୧୩ ॥

ମା ମେ ସ୍ତ୍ରୀତ୍ୱଂ ମା ଚ ମେ ଷାଣ୍ଢଭାବୋ
ମା ମୂର୍ଖତ୍ୱଂ ମା କୁଦେଶେଷୁ ଜନ୍ମ ।
ମିଥ୍ୟାଦୃଷ୍ଟିର୍ମା ଚ ମେ ସ୍ୟାତ୍ କଦାଚିତ୍
ଜାତୌ ଜାତୌ ବିଷ୍ଣୁଭକ୍ତୋ ଭବେୟମ୍ ॥ ୧୪ ॥

କାୟେନ ବାଚା ମନସେନ୍ଦ୍ରିୟୈର୍ବା
ବୁଦ୍ଧ୍ୟାତ୍ମନା ବାନୁସୃତଃ ସ୍ୱଭାବାତ୍ ।
କରୋମି ଯଦ୍ ଯତ୍ ସକଳଂ ପରସ୍ମୈ
ନାରାୟଣାୟୈବ ସମର୍ପୟାମି ॥ ୧୫ ॥

---

ଆଧାରପାପ, ପୁତ୍ର, କନ୍ୟା ଓ ସ୍ତ୍ରୀର ରକ୍ଷଣ ଦାୟିତ୍ୱରେ ପୀଡ଼ିତ, ଭୟାନକ ବିଷୟ ରୂପକ ଜଳରେ ମଜ୍ଜମାନ- ଏଥିରୁ ପାରହେବା ପାଇଁ ଭେଳା ନଥିବା ଲୋକ ସକାଶେ ବିଷ୍ଣୁ ରୂପକ ପୋତ ହିଁ ଏକମାତ୍ର ଆଶ୍ରୟ ॥ ୧୧ ॥

ରୋଗରୂପକ ଧୂଳିରେ ପତିତ, ମୋହଜାଳରେ ଆବୃତ, ଜନ୍ମ ମରଣର ଦୁସ୍ତର ଦୋଳାରେ ଆନ୍ଦୋଳିତ, ଅତ୍ୟନ୍ତ ଆତୁର ମଣିଷର ମଙ୍ଗଳବିଧାନରେ ନିଯୁକ୍ତ ଚକ୍ରପାଣି ହିଁ ଏକମାତ୍ର ଶରଣ ॥ ୧୨ ॥

ହେ ହରି, ସହସ୍ର ଅପରାଧ ପରିପୂର୍ଣ୍ଣ ଭୟଙ୍କର ସଂସାର ସାଗରରେ ପତିତ ଗତିହୀନ ଶରଣାଗତଙ୍କୁ କୃପାକରି ନିଜର କର ॥ ୧୩ ॥

କେବେହେଲେ ମୋର ନେସର ସ୍ତ୍ରୀତ୍ୱ ବା ସ୍ତ୍ରୀଜନୋଚିତ ପରମ ପୁରୁଷଙ୍କୁ ଗ୍ରହଣ ଅନ୍ୟ ପୁରୁଷ ପ୍ରତି ଦୁର୍ବଳତା ନ ହେଉ, ଖରାପ ଭାବନା ନ ଆସେ, ମୂର୍ଖତା ନ ହେଉ ଖରାପ ଦେଶରେ ଜନ୍ମ ନ ହେଉ. କେବେ ଯେପରି ସତ୍ୟ ଛଡା ମିଥ୍ୟା ପ୍ରତି ମୋର ଦୃଷ୍ଟି ବା ଆଗ୍ରହ ନ ହେଉ । ମୁଁ ଯେପରି ଜନ୍ମେ ଜନ୍ମେ ବିଷ୍ଣୁଭକ୍ତ ହେବି—ଏତିକି କାମନା ॥ ୧୪ ॥

ଶରୀର, ବାକ୍ୟ, ମନ, ଇନ୍ଦ୍ରିୟ, ବୁଦ୍ଧି ବା ଆତ୍ମା (ଅହଂଭାବ) ଦ୍ୱାରା

ଯତ୍କୃତଂ ଯତ୍କରିଷ୍ୟାମି ତତ୍ ସର୍ବଂ ନ ମୟାକୃତମ୍ ।
ତ୍ୱୟା କୃତନ୍ତୁ ଫଳଭୁକ୍ ତ୍ୱମେବ ମଧୁସୂଦନ ॥ ୧୬ ॥
ଭବଜଳଧିମଗାଧଂ ଦୁସ୍ତରଂ ନିସ୍ତରେୟଂ
କଥମହମିତି ଚେତୋ ମାସ୍ମ ଗାଃ କାତରତ୍ୱମ୍ ।
ସରସିଜଦୃଶି ଦେବେ ତାବକୀ ଭକ୍ତିରେକା
ନରକଭିଦି ନିଷଣ୍ଣା ତାରୟିଷ୍ୟତ୍ୟବଶ୍ୟମ୍ ॥ ୧୭ ॥
ତୃଷ୍ଣାତୋୟେ ମଦନପବନୋଦ୍ଧୂତମୋହୋର୍ମିମାଳେ
ଦାରାବର୍ତ୍ତେ ତନୟସହଜଗ୍ରାହସଙ୍ଘାକୁଳେ ଚ ।
ସଂସାରାଖ୍ୟେ ମହତି ଜଳଧୌ ମଜ୍ଜତାଂ ନସ୍ତ୍ରିଧାମନ୍
ପାଦାମ୍ଭୋଜେ ବରଦ ଭବତୋ ଭକ୍ତିନାବଂ ପ୍ରଦେହି ॥୧୮॥
ପୃଥ୍ୱୀ ରେଣୁରଣୁଃ ପୟାଂସି କଣିକାଃ ଫଲ୍ଗୁଃ ସ୍ଫୁଲିଙ୍ଗୋ ଲଘୁ-
ସ୍ତେଜୋ ନିଃଶ୍ୱସନଂ ମରୁତ୍ତନୁତରଂ ରନ୍ଧ୍ରଂ ସୁସୂକ୍ଷ୍ମଂ ନଭଃ ।
କ୍ଷୁଦ୍ରା ରୁଦ୍ରପିତାମହ ପ୍ରଭୃତୟଃ କୀଟାଃ ସମସ୍ତାଃ ସୁରା
ଦୃଷ୍ଟା ଯତ୍ର ସ ତାରକୋ ବିଜୟତେ ଶ୍ରୀପାଦଧୂଳୀକଣଃ ॥୧୯॥

---

ସ୍ୱଭାବବଶତଃ ମୁଁ ଯାହା ସବୁ କରିବ, ସେ ସବୁ ପରମାତ୍ମା ନାରାୟଣଙ୍କୁ ସମର୍ପଣ କରିବି ॥ ୧୫ ॥

ଅତୀତରେ ଯାହା କରିଛି, ଭବିଷ୍ୟତରେ ଯାହା କରିବି — ସେ ସବୁ ମୋର କୃତ ନୁହେଁ । ସବୁ ତୁମ ଦ୍ୱାରା ହୋଇଛି । ତେଣୁ ତୁମେ ତା'ର ଫଳ ଭୋଗ କର ॥ ୧୬ ॥

ରେ ମନ ! ଅଗାଧ ଦୁସ୍ତର ସଂସାର ସାଗରକୁ ମୁଁ କିପରି ପାର ହେବି ବୋଲି କେବେହେଲେ କାତର ହୁଅନା । ପଦ୍ମଲୋଚନ ନରକାନ୍ତକ ଭଗବାନଙ୍କଠାରେ ତୋର ଐକାନ୍ତିକ ଭକ୍ତି ତୋତେ ଅବଶ୍ୟ ଉଦ୍ଧାର କରିବ ॥ ୧୭ ॥

ହେ ତ୍ରିଲୋକବ୍ୟାପୀ ବରଦାୟକ ! ବିଷୟତୃଷ୍ଣାରୂପକ ଜଳରେ ପୂର୍ଣ୍ଣ, କାମ-ବାୟୁର ତାଡନା ଦ୍ୱାରା ଉତ୍ଥିତ ମୋହ ତରଙ୍ଗ ଯୋଗୁଁ ବିକ୍ଷୁବ୍ଧ, ସ୍ତ୍ରୀରୂପକ ଭଉଁରୀ ଭିତରେ କୁମ୍ଭୀର ପରି ପୁଅ ଝିଅ ପ୍ରଭୃତି ହିଂସ୍ର ଜଳଜନ୍ତୁଙ୍କ ଦ୍ୱାରା ଆକୁଳ ଏହି ସଂସାର ମହାସାଗରରେ ବୁଡ଼ି ଯାଉଥିବା ମୋତେ ତୁମର ଭକ୍ତିନାବ ପ୍ରଦାନ କର ॥ ୧୮ ॥

ଯେଉଁ ପାଦରଜଃ ଆଗରେ ପୃଥିବୀ କ୍ଷୁଦ୍ର ଧୂଳିକଣା ପରି, ସମସ୍ତ ଜଳରାଶି ଜଳବିନ୍ଦୁ ସଦୃଶ, ଅଗ୍ନି ତୁଚ୍ଛ ସ୍ଫୁଲିଙ୍ଗ ପରି, ବାୟୁର ଗତି ମୃଦୁ ନିଃଶ୍ୱାସଭଳି,

ଆମ୍ନାୟାଭ୍ୟସନାନ୍ୟରଣ୍ୟରୁଦିତଂ କୃଚ୍ଛ୍ରବ୍ରତାନ୍ୟନ୍ୱହଂ
ମେଦଚ୍ଛେଦପଦାନି ପୂର୍ତ୍ତବିଧୟଃ ସର୍ବଂ ହୁତଂ ଭସ୍ମନି ।
ତୀର୍ଥାନାମବଗାହନାନି ଚ ଗଜସ୍ନାନଂ ବିନା ଯତ୍ପଦ-
ଦ୍ୱନ୍ଦ୍ୱାମ୍ଭୋରୁହସଂସ୍ମୃତିଂ ବିଜୟତେ ଦେବଃ ସ ନାରାୟଣଃ ।।୨୦।।

ଆନନ୍ଦ ଗୋବିନ୍ଦ ମୁକୁନ୍ଦ ରାମ, ନାରାୟଣାନନ୍ତ ନିରାମୟେତି ।
ବକ୍ତୁଂ ସମର୍ଥୋଽପି ନ ବକ୍ତି କଶ୍ଚିଦହୋ
ଜନାନାଂ ବ୍ୟସନାନି ମୋକ୍ଷେ ।।୨୧।।

କ୍ଷୀରସାଗରତରଙ୍ଗଶୀକରାସାରତାରକିତ ଚାରୁମୂର୍ତ୍ତୟେ ।
ଭୋଗିଭୋଗଶୟନୀୟଶାୟିନେ, ମାଧବାୟ ମଧୁବିଦ୍ୱିଷେ ନମଃ ।।୨୨।।

---

ଆକାଶ ଅତି କ୍ଷୁଦ୍ର ଛିଦ୍ରପ୍ରାୟ ଏବଂ ବ୍ରହ୍ମା ରୁଦ୍ର ପ୍ରଭୃତି ଦେବତାଗଣ କୀଟ ପରି ଅତି ନଗଣ୍ୟ, ସେହି ସର୍ବଶାସକାଙ୍କ ପାଦଧୂଳିର ଜୟ ହେଉ ।। ୧୯ ।।

ଯାହାଙ୍କର ଯୁଗଳ ପାଦପଦ୍ମର ସ୍ମରଣ ବିନା ବେଦାଧ୍ୟୟନ ଅରଣ୍ୟ-ରୋଦନ ମାତ୍ର, କଷ୍ଟସାଧ୍ୟ ପ୍ରାତ୍ୟହିକ ବ୍ରତାବଳି ଶରୀର ଶୋଷଣ ତୁଲ୍ୟ, କୂପଖନନାଦି ସକଳ ଧର୍ମକର୍ମ ଭସ୍ମରେ ଆହୁତି ପ୍ରଦାନ ଭଳି ନିରର୍ଥକ ଏବଂ ତୀର୍ଥ ବାରିରେ ଅବଗାହନ ଗଜସ୍ନାନ ପରି ମୂଲ୍ୟହୀନ—ସେହି ଭଗବାନ୍ ନାରାୟଣଙ୍କର ଜୟ ହେଉ ।। ୨୦ ।।

ଆନନ୍ଦ, ଗୋବିନ୍ଦ, ମୁକୁନ୍ଦ, ରାମ, ନାରାୟଣ, ଅନନ୍ତ, ନିରାମୟ— ଇତ୍ୟାଦି ନାମ-ଉଚ୍ଚାରଣ କରିବାରେ ସାମର୍ଥ୍ୟ ଥାଇ ସୁଦ୍ଧା କେହି ଉଚ୍ଚାରଣ କରନ୍ତି ନାହିଁ । ହାୟ ! ମୋକ୍ଷଲାଭରେ ଲୋକମାନଙ୍କର କି ବିଷମ ଅନ୍ତରାୟ ।। ୨୧ ।।

କ୍ଷୀର ସାଗରର ତରଙ୍ଗରୁ ଉତ୍ଥିତ ଜଳକଣା ସମୂହ ଯାହାଙ୍କ ଅଙ୍ଗରେ ତାରା ଭଳି ଦେଖାଯାଆନ୍ତି, ଅନନ୍ତ ନାଗର କୁଣ୍ଡଳିତ-ଶଯ୍ୟାରେ ଶୋଇଥିବା ସେହି ଲକ୍ଷ୍ମୀପତି ମଧୁସୂଦନଙ୍କୁ ନମସ୍କାର ।। ୨୨ ।।

# ପାଣ୍ଡବଗୀତା

ନାନ୍ୟଦ୍ ବଦାମି ଶୃଣୋମି ନ ଚିନ୍ତୟାମି
ନାନ୍ୟତ୍ ସ୍ମରାମି ନ ଭଜାମି ନ ଚାଶ୍ରୟାମି ।
ଭକ୍ତ୍ୟା ତ୍ୱଦୀୟଚରଣାମ୍ବୁଜମନ୍ତରେଣ
ଶ୍ରୀ ଶ୍ରୀନିବାସ ପୁରୁଷୋତ୍ତମ ଦେହି ଦାସ୍ୟମ୍ ॥ ୧ ॥
ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ,
ତ୍ୱମେବ ସର୍ବଂ ମମ ଦେବଦେବ ॥ ୨ ॥
ତତ୍ରୈବ ଗଙ୍ଗା ଯମୁନା ଚ ବେଣୀ,
ଗୋଦାବରୀ ସିନ୍ଧୁ ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର,
ଯତ୍ରାଚ୍ୟୁତୋଦାରକଥାପ୍ରସଙ୍ଗଃ ॥ ୩ ॥
ନିତ୍ୟୋତ୍ସବ ଭବେତ୍ତେଷାଂ ନିତ୍ୟଶ୍ରୀର୍ନିତ୍ୟମଙ୍ଗଳଂ ।
ଯେଷାଂ ହୃଦିସ୍ଥୋ ଭଗବାନ୍ ମଙ୍ଗଳାୟତନଂ ହରିଃ ॥ ୪ ॥

---

ଭକ୍ତିରେ ତୁମର ପାଦପଦ୍ମକୁ ଛାଡ଼ି ଆଉ କିଛି କହିବ ନାହିଁ, ଶୁଣିବ ନାହିଁ, ଚିନ୍ତା କରିବ ନାହିଁ, ସ୍ମରଣ କରିବ ନାହିଁ, ଭଜନ କରିବ ନାହିଁ, ଆଶ୍ରୟ କରିବ ନାହିଁ । ହେ ଲକ୍ଷ୍ମୀପତି ! ହେ ପୁରୁଷୋତ୍ତମ ! ମୋତେ ତୁମର ଦାସ ହେବାପାଇଁ ଯୋଗ୍ୟ କର ॥ ୧ ॥

ହେ ଦେବାଧିଦେବ ତୁମେ ହିଁ ମୋର ମା, ବାପା, ବନ୍ଧୁ, ସଖା, ବିଦ୍ୟା, ଧନ— ସବୁକିଛି ॥ ୨ ॥

ଯେଉଁଠାରେ ଭଗବାନ୍ ଅଚ୍ୟୁତଙ୍କ ଭବ୍ୟ କଥା ପଡ଼ିଥାଏ, ସେଠାରେ ହିଁ ଗଙ୍ଗା, ଯମୁନା, ତ୍ରିବେଣୀ, ଗୋଦାବରୀ, ସରସ୍ୱତୀ ପ୍ରଭୃତି ସକଳ ତୀର୍ଥ ନିବାସ କରନ୍ତି ॥ ୩ ॥

ଯାହାଙ୍କର ହୃଦୟରେ ମଙ୍ଗଳମୟ ଭଗବାନ୍ ଶ୍ରୀହରି ରହିଛନ୍ତି ସେଠାରେ ହିଁ ନିତ୍ୟ ଆନନ୍ଦୋତ୍ସବ ହୁଏ, ନିତ୍ୟ ଲକ୍ଷ୍ମୀ ଥାଆନ୍ତି ଓ ନିତ୍ୟ ମଙ୍ଗଳାନୁଷ୍ଠାନ ହୁଏ ॥ ୪ ॥

କୃଷ୍ଣ ତ୍ୱଦୀୟପଦପଙ୍କଜପିଞ୍ଜରାନ୍ତେ
ଅଦ୍ୟୈବ ମେ ବିଶତୁ ମାନସରାଜହଂସଃ ।
ପ୍ରାଣପ୍ରୟାଣ ସମୟେ କଫବାତପିତ୍ତୈଃ
କଣ୍ଠାବରୋଧନବିଧୌ ସ୍ମରଣଂ କୁତସ୍ତେ ।। ୫ ।।
ହରେର୍ନାମୈବ ନାମୈବ ନାମୈବ ମମ ଜୀବନମ୍ ।
କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।। ୬ ।।
ଯନ୍ତ୍ରସ୍ୟ ଗୁଣଦୋଷୌ ହି କ୍ଷମ୍ୟତାଂ ମଧୁସୂଦନ ।
ଅହଂ ଯନ୍ତ୍ରଂ ଭବାନ୍ ଯନ୍ତ୍ରୀ ମମ ଦୋଷୋ ନ ଦୀୟତେ ।। ୭।।
ଆକାଶାତ୍ ପତିତଂ ତୋୟଂ ଯଥାଗଚ୍ଛତି ସାଗରମ୍ ।
ସର୍ବଦେବନମସ୍କାରଃ କେଶବଂ ପ୍ରତି ଗଚ୍ଛତି ।। ୮ ।।

---

## ଅଚ୍ୟୁତାଷ୍ଟକମ୍

ଅଚ୍ୟୁତଂ କେଶବଂ ରାମନାରାୟଣଂ
କୃଷ୍ଣଦାମୋଦରଂ ବାସୁଦେବଂ ହରିମ୍ ।
ଶ୍ରୀଧରଂ ମାଧବଂ ଗୋପିକାବଲ୍ଲଭଂ
ଜାନକୀନାୟକଂ ରାମଚନ୍ଦ୍ରଂ ଭଜେ ।। ୧ ।।

---

ହେ କୃଷ୍ଣ ! ତୁମର ପାଦପଦ୍ମ ରୂପକ ପଞ୍ଜୁରୀରେ ମୋର ମନ ରୂପକ ରାଜହଂସ ଆଜ ହିଁ ପଶିଯାଉ । ନହେଲେ ମୃତ୍ୟୁବେଳେ କଫ ବାତ, ପିତ୍ତ ଯୋଗୁ ଯେତେବେଳେ କଣ୍ଠ ଅବରୁଦ୍ଧ ପ୍ରଭୃତିରୁ ପୀଡ଼ା ହେବ ସେତେବେଳେ ତୁମର ସ୍ମରଣ କିପରି ହୋଇପାରିବ ? (ତେଣୁ ମୋର ଜ୍ଞାନ ଥାଉ ଥାଉ ଏବଠାରୁ ଏ ମନ ତୁମ ପାଦପଦ୍ମରେ ନିବଦ୍ଧ ହେଉ) ।। ୫ ।।

ଶ୍ରୀହରିଙ୍କ ନାମ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଉଦ୍ଦେଶ୍ୟରେ ତିନିଥର ଉଚ୍ଚାରିତ) ହିଁ ମୋର ଜୀବନ । କଳିଯୁଗରେ ତାʼଛଡ଼ା ଅନ୍ୟ ଗତି ନାହିଁ ।। ୬ ।।

ହେ ମଧୁସୂଦନ ! ମୁଁ ଯନ୍ତ୍ର ହେଲେ ଆପଣ ତାʼର ଚାଳକ ଯନ୍ତ୍ରୀ । ଯନ୍ତ୍ରର ଯେପରି ଗୁଣ କି ଦୋଷ ନାହିଁ, ମୋର ସେପରି ଗୁଣ ନାହିଁ କି ଦୋଷ ନାହିଁ । ଯନ୍ତ୍ରକୁ ଚଳାଇବା ଦାୟିତ୍ୱ ଯନ୍ତ୍ରୀର । ମୋର ଗୁଣ ଦୋଷ କ୍ଷମାକର ।। ୭ ।।

ଆକାଶରୁ ପଡ଼ିବା ଜଳ ଯେପରି ସମୁଦ୍ର ଅଭିମୁଖରେ ଗତି କରେ ସବୁ ଦେବତାଙ୍କ ଉଦ୍ଦେଶ୍ୟରେ କରାଯିବା ନମସ୍କାର କେଶବଙ୍କ ନିକଟକୁ ଯାଏ ।। ୮ ।।

ଅଚ୍ୟୁତ, କେଶବ, ରାମନାରାୟଣ, କୃଷ୍ଣଦାମୋଦର, ବାସୁଦେବ, ହରି,

ଅଚ୍ୟୁତଂ କେଶବଂ ସତ୍ୟଭାମାଧବଂ
ମାଧବଂ ଶ୍ରୀଧରଂ ରାଧିକାରାଧିତମ୍ ।
ଇନ୍ଦିରାମନ୍ଦିରଂ ଚେତସା ସୁନ୍ଦରଂ
ଦେବକୀନନ୍ଦନଂ ନନ୍ଦଜଂ ସଂଦଧେ ॥ ୨ ॥
ବିଷ୍ଣବେ ଜିଷ୍ଣବେ ଶଙ୍ଖିନେ ଚକ୍ରିଣେ
ରୁକ୍ମିଣୀରାଗିଣେ ଜାନକୀଜାନୟେ ।
ବଲ୍ଲବୀବଲ୍ଲଭାୟାର୍ଚ୍ଚିତାୟାତ୍ମନେ
କଂସବିଧ୍ୱଂସିନେ ବଂଶିନେ ତେ ନମଃ ॥ ୩ ॥
କୃଷ୍ଣ ଗୋବିନ୍ଦ ହେ ରାମ ନାରାୟଣ
ଶ୍ରୀପତେ ବାସୁଦେବାଜିତ ଶ୍ରୀନିଧେ ।
ଅଚ୍ୟୁତାନନ୍ତ ହେ ମାଧବାଧୋକ୍ଷଜ
ଦ୍ୱାରକାନାୟକ ଦ୍ରୌପଦୀରକ୍ଷକ ॥ ୪ ॥
ରାକ୍ଷସକ୍ଷୋଭିତଃ ସୀତୟା ଶୋଭିତୋ
ଦଣ୍ଡକାରଣ୍ୟଭୂପୁଣ୍ୟତାକାରଣମ୍ ।
ଲକ୍ଷ୍ମଣେନାନ୍ୱିତୋ ବାନରୈଃ ସେବିତୋ-
ଽଗସ୍ତ୍ୟସଂପୂଜିତୋ ରାଘବଃ ପାତୁ ମାମ୍ ॥ ୫ ॥

---

ଶ୍ରୀଧର, ମାଧବ, ଗୋପିକାବଲ୍ଲଭ, ଜାନକୀନାୟକ ରାମଚନ୍ଦ୍ରଙ୍କୁ ଭଜନ କରୁଛି ॥ ୧ ॥

ଅଚ୍ୟୁତ, କେଶବ, ସତ୍ୟଭାମାଧବ, ମା (ଲକ୍ଷ୍ମୀ)ଧବ; ଶ୍ରୀଧର, ରାଧିକାଙ୍କ ଦ୍ୱାରା ଆରାଧିତ, ଇନ୍ଦିରା (ଲକ୍ଷ୍ମୀ)ଙ୍କ ମନ୍ଦିର (ନିବାସସ୍ଥାନ), ଚିତ୍ତରେ ଯେ ସୁନ୍ଦର, ଦେବକୀପୁତ୍ର, ନନ୍ଦନନ୍ଦନଙ୍କୁ ଧ୍ୟାନ କରୁଛି ॥ ୨ ॥

ବ୍ୟାପନଶୀଳ ବିଷ୍ଣୁ, ଜୟକାରୀ ବିଷ୍ଣୁ, ଶଙ୍ଖଧାରୀ, ଚକ୍ରଧାରୀ, ରୁକ୍ମିଣୀଙ୍କଠାରେ ଅନୁରାଗୀ, ଜାନକୀନାଥ, ଗୋପିକାବଲ୍ଲଭ, ପୂଜ୍ୟ ଆତ୍ମା, କଂସ ଧ୍ୱଂସୀ, ବଂଶୀଧାରୀ ତୁମକୁ ନମସ୍କାର ॥ ୩ ॥

ହେ କୃଷ୍ଣ, ଗୋବିନ୍ଦ, ରାମନାରାୟଣ, ଶ୍ରୀପତି, ବାସୁଦେବ, ଅଜିତ, ଶ୍ରୀନିଧି, ଅଚ୍ୟୁତ, ଆନନ୍ଦ, ମାଧବ, ଅଧୋକ୍ଷଜ, ଦ୍ୱାରକାଧୀଶ, ଦ୍ରୌପଦୀରକ୍ଷକ ॥ ୪ ॥

ରାକ୍ଷସମାନଙ୍କ (କାର୍ଯ୍ୟ) ଦ୍ୱାରା କ୍ଷୁବ୍ଧ, ସୀତାଙ୍କ ଦ୍ୱାରା ଶୋଭମାନ, ଦଣ୍ଡକାରଣ୍ୟ ଭୂମିର ପୁଣ୍ୟର-କାରଣ, ଲକ୍ଷ୍ମଣଙ୍କ ସହିତ ସଂଯୁକ୍ତ, ବାନରମାନଙ୍କ ଦ୍ୱାରା ସେବିତ, ଅଗସ୍ତିଙ୍କ ଦ୍ୱାରା ପୂଜିତ ରାଘବ ରାମଚନ୍ଦ୍ର ମତେ ରକ୍ଷା କରନ୍ତୁ ॥ ୫ ॥

ଧେନୁକାରିଷ୍ଟହାନିଷ୍ଟକୃଦ୍‌ଦ୍ୱେଷିଣାଂ
କେଶିହା କଂସହୃଦ୍‌ବଂଶିକାବାଦକଃ ।
ପୂତନାକୋପକଃ ସୂରଜାଖେଳନୋ
ବାଳଗୋପାଳକଃ ପାତୁ ମାଂ ସର୍ବଦା ॥ ୬ ॥
ବିଦ୍ୟୁଦୁଦ୍ୟୋତବତ୍ପ୍ରସ୍ଫୁରଦ୍‌ବାସସଂ
ପ୍ରାବୃଡମ୍ଭୋଦବତ୍‌ପ୍ରୋଲ୍ଲସଦ୍‌ବିଗ୍ରହମ୍ ।
ବନ୍ୟୟା ମାଳୟା ଶୋଭିତୋରଃସ୍ଥଳଂ
ଲୋହିତାଙ୍ଘ୍ରିଦ୍ୱୟଂ ବାରିଜାକ୍ଷଂ ଭଜେ ॥ ୭ ॥
କୁଞ୍ଚିତୈଃ କୁନ୍ତଳୈର୍ଭ୍ରାଜମାନାନନଂ
ରତ୍ନମୌଳିଂ ଲସତ୍‌କୁଣ୍ଡଳଂ ଗଣ୍ଡୟୋଃ ।
ହାରକେୟୂରକଂ କଙ୍କଣପ୍ରୋଜ୍ଜ୍ୱଳଂ
କିଂକିଣୀମଞ୍ଜୁଳଂ ଶ୍ୟାମଳଂ ତଂ ଭଜେ ॥ ୮ ॥
ଅଚ୍ୟୁତସ୍ୟାଷ୍ଟକଂ ଯଃ ପଠେଦିଷ୍ଟଦଂ
ପ୍ରେମତଃ ପ୍ରତ୍ୟହଂ ପୂରୁଷଃ ସସ୍ପୃହମ୍ ।
ବୃତ୍ତତଃ ସୁନ୍ଦରଂ ବେଦ୍ୟବିଶ୍ୱମ୍ଭରଂ
ତସ୍ୟ ବଶ୍ୟୋ ହରିର୍ଜାୟତେ ସତ୍ୱରମ୍ ॥ ୯ ॥

ଇତି ଶ୍ରୀମଚ୍ଛଙ୍କରଭଗବତଃ ଅଚ୍ୟୁତାଷ୍ଟକଂ ସଂପୂର୍ଣ୍ଣମ୍ ॥

---

ଧେନୁକ ରାକ୍ଷସ କୃତ ଅରିଷ୍ଟର ବିନାଶକ, ଶତ୍ରୁମାନଙ୍କର ଅନିଷ୍ଟକାରକ, କେଶି ମଥନ, କଂସାରି ବଂଶୀବାଦକ, ପୂତନା ଉପରେ କୋପକାରୀ, ଯମୁନା-ତଟବିହାରୀ, ବାଳଗୋପାଳ ଶ୍ରୀକୃଷ୍ଣ ରକ୍ଷା କରନ୍ତୁ ।। ୬ ।।

ବିଦ୍ୟୁତ୍ ପରି ପୀତବସନ ଯେ ପରିଧାନ କରିଛନ୍ତି, ବର୍ଷାକାଳୀନ ମେଘପରି ଯାହାଙ୍କ ଶରୀର ଶୋଭାପାଉଛି, ଯାହାଙ୍କ ବକ୍ଷସ୍ଥଳରେ ବନମାଳା ଶୋଭାପାଉଛି, ସେହି କମଳଲୋଚନ ରକ୍ତପଦ୍ମପାଦ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଭଜନ କରୁଛି ।। ୭ ।।

କୁଞ୍ଚିତକୁନ୍ତଳ ଦ୍ୱାରା ଯାହାଙ୍କ ମୁଖ ଶୋଭାପାଉଛି, ଯାହାଙ୍କ ମସ୍ତକରେ କିରୀଟ ଓ ଗଣ୍ଡଦେଶରେ ସୁବର୍ଣ୍ଣ କୁଣ୍ଡଳ, ବକ୍ଷ ଦେଶରେ ହାର, କେୟୂର, ହସ୍ତରେ କଙ୍କଣ ଝଟକୁଛି ଓ କଟୀରେ ସୁନ୍ଦର କିଙ୍କିଣୀ ଶୋଭାପାଉଛି, ସେହି ଶ୍ୟାମସୁନ୍ଦରଙ୍କୁ ମୁଁ ଭଜୁଛି ।। ୮ ।।

ବିଶ୍ୱମ୍ଭର ବା ଜଗତ୍ପାଳକଙ୍କ ବିଷୟରେ ସୁନ୍ଦର (ସ୍ରଗ୍ୱିଣୀ) ବୃତ୍ତିରେ ରଚିତ ଅଭୀଷ୍ଟ ପୂରଣକାରୀ ଅଚ୍ୟୁତଙ୍କର ଏହି ଅଷ୍ଟକ ଶ୍ଳୋକ ଯେଉଁଲୋକ ପ୍ରେମ ଓ ଶ୍ରଦ୍ଧାର ସହିତ ପ୍ରତିଦିନ ପଢ଼ିବ ଭଗବାନ୍ ଶ୍ରୀହରି ତା'ର ଶୀଘ୍ର ବଶ୍ୟତା ସ୍ୱୀକାର କରିବେ ।।୯।।

# ଶ୍ରୀଗୋବିନ୍ଦାଷ୍ଟକମ୍

ଚିଦାନନ୍ଦାକାରଂ ଶ୍ରୁତିସୁରସସାରଂ ସମରସଂ
ନିରାଧାରାଧାରଂ ଭବଜଳଧିପାରଂ ପରଗୁଣମ୍ ।
ରମାଗ୍ରୀବାହାରଂ ବ୍ରଜବନବିହାରଂ ହରନୁତଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୧ ॥

ମହାମ୍ଭୋଧିସ୍ଥାନଂ ସ୍ଥିରଚରନିଦାନଂ ଦିବିଜପଂ
ସୁଧାଧାରାପାନଂ ବିହଗପତିଯାନଂ ଯମରତମ୍ ।
ମନୋଜ୍ଞଂ ସୁଜ୍ଞାନଂ ମୁନିଜନନିଧାନଂ ଧ୍ରୁବପଦଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୨ ॥

ଧିୟା ଧୀରୈର୍ଧ୍ୟେୟଂ ଶ୍ରବଣପୁଟପେୟଂ ଯତିବରୈ-
ର୍ମହାବାକ୍ୟୈର୍ଜ୍ଞେୟଂ ତ୍ରିଭୁବନ-ବିଧେୟଂ ବିଧି-ପରମ୍ ।
ମନୋମାନାମେୟଂ ସପଦି ହୃଦି ନେୟଂ ନବତନୁଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୩ ॥

ମହାମାୟାଜାଲଂ ବିମଳବନମାଲଂ ମଳହରଂ
ସୁଭାଲଂ ଗୋପାଲଂ ନିହତ-ଶିଶୁପାଲଂ ଶଶିମୁଖମ୍ ।

---

ଚିଦାନନ୍ଦ ସ୍ୱରୂପ, ବେଦର ସାରରସ, ସମରସ, ନିରାଧାର ଓ ଆଧାର, ସଂସାର ସାଗରର ଶେଷସୀମା ଗୁଣାତୀତ ଲକ୍ଷ୍ମୀଙ୍କ ଗଳାମାଳ, ବ୍ରଜବନ ବିହାରୀ, ଶିବଙ୍କ ଦ୍ୱାରା ସ୍ତୁତ, ପରମ ସୁଖର ମୂଳ ସେହି ଗୋବିନ୍ଦଙ୍କୁ ସବୁବେଳେ ଭଜନ କର ॥ ୧ ॥

କ୍ଷୀର ସମୁଦ୍ର ଯାହାଙ୍କ ବାସସ୍ଥାନ, ଜଡ ଓ ଚେତନ ସୃଷ୍ଟିର କାରଣ, ଦେବତାମାନଙ୍କର ରକ୍ଷାକାରୀ, ଅମୃତ ପାନକାରୀ, ଗରୁଡ ବାହନ, ଯମନଶୀଳ, ସୁନ୍ଦର, ଉତ୍ତମ ଜ୍ଞାନୀ, ମୁନିମାନେ ଯାହାଙ୍କୁ ହୃଦୟରେ ଧାରଣ କରନ୍ତି, ସ୍ଥିରପଦ ପରମସୁଖର ମୂଳ ସେହି ଗୋବିନ୍ଦଙ୍କୁ ସବୁବେଳେ ଭଜନ କର ॥ ୨ ॥

ଜ୍ଞାନୀମାନେ ଯାହାଙ୍କୁ ବୁଦ୍ଧିରେ ଧ୍ୟାନ କରନ୍ତି, ଶ୍ରେଷ୍ଠ ଯତିମାନେ ଯାହାଙ୍କ କଥାମୃତ କାନରେ ପାନ କରନ୍ତି ବା ଶୁଣନ୍ତି, ବେଦର ମହାବାକ୍ୟ ଦ୍ୱାରା ଯାହାଙ୍କ ବିଷୟ ଜଣାଯାଏ, ତ୍ରିଭୁବନର ବିଧାତା, ନିୟମର ରକ୍ଷାକାରୀ, ମନର ଅଭିମାନ ବା ଗର୍ବ ଦ୍ୱାରା ଯାହାଙ୍କୁ କଳନା କରିହେବ ନାହିଁ, ଏକ ହୃଦୟରେ ଯାହାଙ୍କୁ ନେଇହେବ; ନବଯୁବା ପରମ ସୁଖକନ୍ଦ ସେହି ଗୋବିନ୍ଦଙ୍କୁ ସର୍ବଦା ଭଜନ କର ॥ ୩ ॥

ମହାମାୟାର ଜାଲ ବା ବିସ୍ତାରକାରୀ, ନିର୍ମଳ ବନମାଳ ଭୂଷଣ, ମଳ ବା ପାପର ଅପହରଣକାରୀ, ଉତ୍ତମ କପାଳଯୁକ୍ତ ଗୋପାଳ, ଯେ ଶିଶୁପାଳର

କଳାତୀତଂ କାଳଂ ଗତି ହତ-ମରାଳଂ ମୁରରିପୁଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୪ ॥

ନବେଦାମ୍ନାୟୀତଂ ନିଗମଗଣଗୀତଂ ସମଗତିଂ
ସୁରୌଘେ ସମ୍ପ୍ରୀତଂ ଦିତିଜ-ବିପରୀତଂ ପୁରିଶୟମ୍ ।
ଗିରାଂ ପନ୍ଥାତୀତଂ ସ୍ୱଦିତ-ନବନୀତଂ ନୟକରଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୫ ॥

ପରେଶଂ ପଦ୍ମେଶଂ ଶିବକମଳଜେଶଂ ଶିବକରଂ
ଦ୍ୱିଜେଶଂ ଦେବେଶଂ ତନୁକୁଟିଳକେଶଂ କଳିହରମ୍ ।
ଖଗେଶଂ ନାଗେଶଂ ଅଖିଳଭୁବନେଶଂ ନଗଧରଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତରେ ॥ ୬ ॥

ରମାକାନ୍ତଂ କାନ୍ତଂ ଭବ ଭବଭୟାନ୍ତଂ ଭବସୁଖଂ
ଦୁରାଶାନ୍ତଂ ଶାନ୍ତଂ ନିଖିଳ-ହୃଦି ଭାନ୍ତଂ ଭୁବନପମ୍ ।
ବିବାଦାନ୍ତଂ ଦାନ୍ତଂ ଦନୁଜନିଚୟାନ୍ତଂ ସୁଚରିତଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୭ ॥

---

ଆନନ୍ଦକାରୀ, ଚନ୍ଦ୍ରମୁଖ, ସକଳ କଳାର ଅତୀତ, ଯେ କାଳସ୍ୱରୂପ, ରାଜହଂସ ପରି ସୁନ୍ଦର ଗତିଶୀଳ ପରମ ସୁଖଦାୟକ ସେହି ମୁରାରି ଗୋବିନ୍ଦଙ୍କୁ ସର୍ବଦା ଭଜ ॥ ୪ ॥

ଆକାଶ ପରି ସ୍ଥିତ ବେଦମାନଙ୍କ ଦ୍ୱାରା ଗୀତ, ଯାହାଙ୍କ ଗତିରେ ସମତା ରହୁ, ଦେବତାମାନଙ୍କ ଉପରେ ଯେ ଅତି ପ୍ରୀତ, ଦୈତ୍ୟମାନଙ୍କଠାରେ ଯେ ବିପରୀତ ବା ଶତ୍ରୁତା କରନ୍ତି, ସକଳ ପୁରରେ ଯେ ଅଛନ୍ତି ବାକ୍ୟରେ ବର୍ଣ୍ଣନାର ଅତୀତ, ଯେ ନବନୀତ ଭକ୍ଷଣ କରନ୍ତି, ନ୍ୟାୟଶୀଳ, ପରମ ସୁଖର ମୂଳ ସେହି ଗୋବିନ୍ଦଙ୍କୁ ସବୁବେଳେ ଭଜନ କର ॥ ୫ ॥

ପରମେଶ୍ୱର, ଲକ୍ଷ୍ମୀକାନ୍ତ, ଶିବ ଓ ବ୍ରହ୍ମାଙ୍କର ପ୍ରଭୁ, ବ୍ରାହ୍ମଣାଦି ଦ୍ୱିଜାତି (ବା ଗରୁଡ଼)ଙ୍କ ଦେବତା, ସୂକ୍ଷ୍ମ କୁଞ୍ଚିତ କେଶଶାଳୀ କେଶବ, କଳିଯୁଗର ବାଧା ହରଣକାରୀ, ଗରୁଡ଼ ଓ ଅନନ୍ତ ନାଗର ଈଶ୍ୱର, ସମସ୍ତ ଭୂମଣ୍ଡଳର ଈଶ୍ୱର, ଗୋବର୍ଦ୍ଧନ-ପର୍ବତଧାରୀ, ପରମ ସୁଖର ମୂଳ ସେହି ଗୋବିନ୍ଦଙ୍କୁ ସବୁବେଳେ ଭଜନ କର ॥ ୬ ॥

ଲକ୍ଷ୍ମୀଙ୍କର ସ୍ୱାମୀ, କମନୀୟ, ଶିବ ଓ ସଂସାରର ଭୟ ହରଣକାରୀ, ସଂସାରର ସୁଖ, ଦୁରାଶା ବା କୁତ୍ସିତ ଅଭିଳାଷର ବିନାଶକ; ଶାନ୍ତ, ସକଳ ହୃଦୟରେ ସ୍ଫୁରିତ ହେଉଥିବା ଭୁବନର ଈଶ୍ୱର, ବିବାଦର ବା ଶତ୍ରୁତାର

ଜଗଜ୍ଜ୍ୟେଷ୍ଠଂ ଶ୍ରେଷ୍ଠଂ ସୁରପତିକନିଷ୍ଠଂ ଯଦୁପତିଂ
ବଲିଷ୍ଠଂ ଭୂୟିଷ୍ଠଂ ତ୍ରିଭୁବନ-ବଲିଷ୍ଠଂ ବରବହମ୍ ।
ସ୍ୱନିଷ୍ଠଂ ଧର୍ମ୍ମିଷ୍ଠଂ ଗୁରୁଗୁଣଗରିଷ୍ଠଂ ଗୁରୁବରଂ
ସଦା ତଂ ଗୋବିନ୍ଦଂ ପରମସୁଖକନ୍ଦଂ ଭଜତ ରେ ॥ ୮ ॥

ଗଦାପାଣେରେତଦ୍ଦୁରିତଦଳନଂ ଦୁଃଖଶମନଂ
ବିଶୁଦ୍ଧାତ୍ମା ସ୍ତୋତ୍ରଂ ପଠତି ମନୁଜୋ ଯସ୍ତୁ ସତତମ୍ ।
ସ ଭୁକ୍ତ୍ୱା ଭୋଗୌଘଂ ଚିରମିହ ତତୋଽପାସ୍ତବୃଜିନୋ
ବରଂ ବିଷ୍ଣୋଃ ସ୍ଥାନଂ ବ୍ରଜତି ଖଲୁ ବୈକୁଣ୍ଠଭବନମ୍ ॥

ଇତିଶ୍ରୀ ପରମହଂସ ସ୍ୱାମି-ବ୍ରହ୍ମାନନ୍ଦ ବିରଚିତଂ ଶ୍ରୀଗୋବିନ୍ଦାଷ୍ଟକମ୍ ।

---

## ଶ୍ରୀକୃଷ୍ଣକର୍ଣ୍ଣାମୃତ-ସ୍ତୋତ୍ରମ୍

ହେ ଦେବ ହେ ଦୟିତ ହେ ଜଗଦେକବନ୍ଧୋ
ହେ କୃଷ୍ଣ ହେ ଚପଲ ହେ କରୁଣୈକସିନ୍ଧୋ ।
ହେ ନାଥ ହେ ରମଣ ହେ ନୟନାଭିରାମ
ହା ହା କଦାନୁ ଭବିତାସି ପଦଂ ଦୃଶୋର୍ମେ ॥ ୧ ॥

---

ବିନାଶକ, ଦମନ ଶକ୍ତିଯୁକ୍ତ ଅସୁର ସମୂହଙ୍କ ସଂହାରକାରୀ, ଉତ୍ତମ ଚରିତ ସମ୍ପନ୍ନ ପରମସୁଖନିଧାନ ସେହି ଗୋବିନ୍ଦଙ୍କୁ ସବୁବେଳେ ଭଜନ କର ॥ ୭ ॥

ଜଗତ୍ତରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଉପେନ୍ଦ୍ର ଯଦୁଶ୍ରେଷ୍ଠ, ବଳବାନ୍, ଉନ୍ନତି-ଯୁକ୍ତ, ତ୍ରିଭୁବନରେ ଶ୍ରେଷ୍ଠ, ଶ୍ରେଷ୍ଠ ବାହନଯୁକ୍ତ, ଭକ୍ତପ୍ରିୟ, ଧର୍ମନିଷ୍ଠ, ଉତ୍ତମ ଗୁଣରେ ଗରିଷ୍ଠ, ଜଗଦ୍ ଗୁରୁ ପରମାନନ୍ଦ ସେହି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ସବୁବେଳେ ଭଜ ॥ ୮ ॥

ଯେଉଁ ପୁଣ୍ୟାତ୍ମା ମନୁଷ୍ୟ ଗଦାଧରଙ୍କର ଏହି ଦୁଃଖ ଓ ପାପନାଶକ ସ୍ତୋତ୍ର ସବୁବେଳେ ପଢ଼ିବ, ତା'ର ସବୁ ପାପ ନାଶ ହେବ ଓ ସେ ସକଳ ସୁଖ ଭୋଗ କରି ବିଷ୍ଣୁଙ୍କ ଶ୍ରେଷ୍ଠସ୍ଥାନ ବୈକୁଣ୍ଠକୁ ଗମନ କରିବ ॥

---

ହେ ଦେବ ! ପ୍ରିୟ ! ଜଗତର ଏକମାତ୍ର ବନ୍ଧୁ ! କୃଷ୍ଣ ! ଚଞ୍ଚଳ ! କରୁଣାସିନ୍ଧୁ ! ନାଥ ! ସ୍ୱାମୀ ! ହେ ନୟନର-ସୁନ୍ଦର-ମୂର୍ତ୍ତି ! କେବେ ମୋ ଆଖି ଆଗରେ ତୁମେ ଠିଆ ହେବ ? ୧ ॥

ଅଂସାଲମ୍ବିତ-ବାମକୁଣ୍ଡଳଭରଂ ମନ୍ଦୋନ୍ନତ-ଭ୍ରୂଲତଂ
କିଞ୍ଚିତ୍କୁଞ୍ଚିତ-କୋମଳାଧର-ପୁଟଂ ସାଚୀପ୍ରସାରେକ୍ଷଣମ୍ ।
ଆଲୋଲାଙ୍ଗୁଳିପଲ୍ଲବୈର୍ମୁରଳିକାମାପୂରୟନ୍ତଂ ମୁଦା
ମୂଲେ କଳ୍ପତରୋସ୍ତ୍ରିଭଙ୍ଗଲଳିତଂ ଜାନେ ଜଗନ୍ମୋହନମ୍ ॥ ୨ ॥
ହେ ଗୋପାଳକ ହେ କୃପାଜଲନିଧେ ହେ ସିନ୍ଧୁକନ୍ୟାପତେ
ହେ କଂସାନ୍ତକ ହେ ଗଜେନ୍ଦ୍ର କରୁଣାପାରୀଣ ହେ ମାଧବ ।
ହେ ରାମାନୁଜ ହେ ଜଗତ୍ତ୍ରୟଗୁରୋ ହେ ପୁଣ୍ଡରୀକାକ୍ଷ ମାଂ
ହେ ଗୋପୀଜନନାଥ ପାଲୟ ପରଂ ଜାନାମି ନ ତ୍ୱାଂ ବିନା ॥ ୩ ॥
କସ୍ତୂରୀତିଲକଂ ଲଲାଟଫଲକେ ବକ୍ଷଃସ୍ଥଲେ କୌସ୍ତୁଭଂ
ନାସାଗ୍ରେ ନବମୌକ୍ତିକଂ କରତଲେ ବେଣୁଃ କରେ କଙ୍କଣମ୍ ।
ସର୍ବାଙ୍ଗେ ହରିଚନ୍ଦନଞ୍ଚ କଲୟନ୍ କଣ୍ଠେ ଚ ମୁକ୍ତାବଳି-
ର୍ଗୋପସ୍ତ୍ରୀ ପରିବେଷ୍ଟିତୋ ବିଜୟତେ ଗୋପାଳ-ଚୂଡ଼ାମଣିଃ ॥ ୪ ॥
ଲୋକାନୁନ୍ମଦୟନ୍ ଶ୍ରୁତୀଂ ମୁଖରୟନ୍ କ୍ଷୌଣୀରୁହାନ୍ ହର୍ଷୟନ୍
ଶୈଳାନ୍ ବିଦ୍ରାବୟନ୍ ମୃଗାନ୍ ବିବଶୟନ୍ ଗୋବୃନ୍ଦମାନନ୍ଦୟନ୍ ।
ଗୋପାନ୍ ସମ୍ଭ୍ରମୟନ୍ ମୁନୀନ୍ ମୁକୁଲୟନ୍ ସପ୍ତସ୍ୱରାନ୍ ଜୃମ୍ଭୟନ୍
ଓଙ୍କାରାର୍ଥମୁଦୀରୟନ୍ ବିଜୟତେ ବଂଶୀନିନାଦଃ ଶିଶୋଃ ॥ ୫ ॥

---

ଯାହାଙ୍କର ସୁନ୍ଦର କେଶପାଶ କାନ୍ଧପର୍ଯ୍ୟନ୍ତ ପଡ଼ିଛି, ଭ୍ରୂଲତା ଅଳ୍ପ ଉନ୍ନତ ବା ଟେକ ହୋଇ ରହିଛି, କୋମଳ ଅଧର ପଲ୍ଲବକୁ ଅଳ୍ପ ଆକୁଞ୍ଚନ କରି ଆନନ୍ଦରେ ବଂଶୀ ବଜାଉଛନ୍ତି, ଜଗତ୍ର ମୋହକାରକ ସେହି କୃଷ୍ଣଚନ୍ଦ୍ର ତ୍ରିଭଙ୍ଗୀଠାଣିରେ କଳ୍ପବୃକ୍ଷମୂଳରେ ଠିଆ ହୋଇଥିବା ଜାଣେ । ୨ ।

ହେ ଗୋପାଳ, କୃପାସାଗର, ଲକ୍ଷ୍ମୀପତି, କଂସାନ୍ତକ ଗଜରାଜଙ୍କୁ ଦୟା ଦେଖାଇବାରେ ବିଜ୍ଞ, ମାଧବ, ବଳରାମଙ୍କ କନିଷ୍ଠଭ୍ରାତା ତ୍ରିଜଗତର ଗୁରୁ, ପଦ୍ମଲୋଚନ, ଗୋପୀଜନନାଥ ! ତୁମ ଛଡ଼ା ଆଉ କାହାକୁ ଜାଣେ ନାହିଁ । ମୋତେ ରକ୍ଷାକର । ୩ ।

ଲଲାଟପଟରେ କସ୍ତୁରୀର ଚିତା, ବକ୍ଷୋଦେଶରେ କୌସ୍ତୁଭମଣି ନାକ ଅଗରେ ନୂଆ ମୁକ୍ତା, ହାତରେ ବଂଶୀ, କରରେ କଙ୍କଣ, ଦେହର ସବୁଆଡ଼େ ହରିଚନ୍ଦନ, କଣ୍ଠରେ ମୁକ୍ତାମାଳା ଧାରଣ କରି ଗୋପୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଗୋପାଳଶ୍ରେଷ୍ଠ ଶ୍ରୀକୃଷ୍ଣ ଶୋଭାପାଉଛନ୍ତି । ୪ ।

ସକଳ ଲୋକଙ୍କୁ ଉନ୍ମାଦିତ କରି, କାନକୁ ମୁଖରିତ କରି, ବୃକ୍ଷମାନଙ୍କୁ

ସନ୍ଧ୍ୟାବନ୍ଦନ ଭଦ୍ରମସ୍ତୁ ଭବତୋ ଭୋ ସ୍ନାନ ତୁଭ୍ୟଂନମୋ
ଭୋ ଦେବାଃ ପିତରଶ୍ଚ ତର୍ପଣବିଧୌ ନାହଂ କ୍ଷମଃ କ୍ଷମ୍ୟତାମ୍ ।
ଯତ୍ର କ୍ୱାପି ନିଷଦ୍ୟ ଯାଦବକୁଳୋତ୍ତଂସସ୍ୟ କଂସଦ୍ୱିଷଃ
ସ୍ମାରଂସ୍ମାରମଘଂ ହରାମି ତଦଲଂ ମନ୍ୟେ କିମନ୍ୟେନ ମେ ॥ ୭ ॥

ଇତି ଶ୍ରୀ ବିଲ୍ୱମଙ୍ଗଳକୃତଂ ଶ୍ରୀକୃଷ୍ଣକର୍ଣ୍ଣାମୃତ-ସ୍ତୋତ୍ରଂ ସମାପ୍ତମ୍ ॥

---

## ଷଟ୍ପଦୀସ୍ତୋତ୍ରମ୍

ଅବିନୟମପନୟ ବିଷ୍ଣୋ ଦମୟ ମନଃ ଶମୟ ବିଷୟମୃଗତୃଷ୍ଣାମ୍ ।
ଭୂତଦୟାଂ ବିସ୍ତାରୟ ତାରୟ ସଂସାର ସାଗରତଃ ॥ ୧ ॥
ଦିବ୍ୟଧୁନୀମକରନ୍ଦେ ପରିମଳପରିଭୋଗ ସଚ୍ଚିଦାନନ୍ଦେ ।
ଶ୍ରୀପତି ପଦାରବିନ୍ଦେ ଭବଭୟଖେଦଚ୍ଛିଦେ ବନ୍ଦେ ॥ ୨ ॥

---

ଆନନ୍ଦିତ କରି, ପର୍ବତମାନଙ୍କୁ ଦ୍ରବୀଭୂତ କରି, ମୃଗମାନଙ୍କୁ ବିବଶ କରି, ଗୋସମୂହଙ୍କୁ ଆନନ୍ଦିତ କରି, ଗୋପ ବାଳକଙ୍କୁ ଭ୍ରମରେ ପକାଇ, ମୁନିମାନଙ୍କୁ (ଯୋଗନିଦ୍ରାରେ) ନେତ୍ର ମୁଦ୍ରିତ କରାଇ, ସାରିଗାମାଦି ସପ୍ତ ସ୍ୱରରେ ଝଙ୍କୃତ ଶିଶୁ କୃଷ୍ଣଙ୍କ ବଂଶୀନାଦ ସଂସାରରେ ଓଁକାର ଅର୍ଥକୁ ପ୍ରକଟିତ କରି ବିଜୟ ଲାଭ କରୁଛି । ୬ ।

ହେ ସନ୍ଧ୍ୟାବନ୍ଦନାଦି ! ତୁମର ମଙ୍ଗଳ ହେଉ । ହେ ସ୍ନାନ ! ତୁମକୁ ନମସ୍କାର । ହେ ଦେବତା ପିତୃଗଣ ମୁଁ ତୁମମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାରେ ଅସମର୍ଥ । ତେଣୁ କ୍ଷମାକର । ମୁଁ ଯେଉଁଠି ରହିଲେ ହେଁ ଯାଦବକୁଳର ଭୂଷଣ କଂସାରି ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି କରି ପାପ କ୍ଷୟ କରୁଛି । ଅନ୍ୟ କିଛି କରିବାରେ ମୋର ପ୍ରୟୋଜନ ନାହିଁ ବୋଲି ଭାବୁଛି । ୭ ।

ହେ ବିଷ୍ଣୁ ! ମୋର ବିନୟହୀନତାକୁ ଦୂର କର । ଚଞ୍ଚଳ ମନକୁ ଦମନ କର, ବିଷୟବାସନାରୂପକ ମୃଗତୃଷ୍ଣା ବା ଆଶାକୁ ଉପଶମ କର, ପ୍ରାଣୀମାନଙ୍କଠାରେ ଦୟାକୁ ବଢ଼ାଅ, ସଂସାର ସାଗରରୁ ପାରି କର । ୧ ।

ଶ୍ରୀପତି ବିଷ୍ଣୁଙ୍କର ପାଦପଦ୍ମ ହେଉଛି ଗଙ୍ଗାର ମଧୁ ଏବଂ ତା'ର ସୌରଭ ଭୋଗ ଦ୍ୱାରା ଜାତ ହେଲେ ସଚ୍ଚିଦାନନ୍ଦ । ସେହି ପାଦପଦ୍ମକୁ ସଂସାରଭୟଦୁଃଖନାଶ ନିମିତ୍ତ ବନ୍ଦନା କରୁଛି । ୨ ।

ସତ୍ୟପି ଭେଦାପଗମେ ନାଥ ନାଥ ତବାହଂ ନ ମାମକୀନସ୍ତ୍ୱମ୍ ।
ସାମୁଦ୍ରୋ ହି ତରଙ୍ଗଃ କ୍ୱଚନ ସମୁଦ୍ରୋ ନ ତାରଙ୍ଗଃ ॥ ୩ ॥
ଉଦ୍ଧୃତନଗ ନଗଭିଦନୁଜ ଦନୁଜକୁଳାମିତ୍ର ମିତ୍ରଶଶିଦୃଷ୍ଟେ ।
ଦୃଷ୍ଟେ ଭବତି ପ୍ରଭବତି ନ ଭବତି କିଂ ଭବ-ତିରସ୍କାରଃ ॥ ୪ ॥
ମତ୍ସ୍ୟାଦିଭିରବତାରୈରବତାରବତାଽବତା ସଦା ବସୁଧାମ୍ ।
ପରମେଶ୍ୱର ପରିପାଲ୍ୟୋ ଭବତା ଭବତାପ-ଭୀତୋଽହମ୍ ॥ ୫ ॥
ଦାମୋଦର ଗୁଣମନ୍ଦିର ସୁନ୍ଦରବଦନାରବିନ୍ଦ ଗୋବିନ୍ଦ ।
ଭବଜଳଧିମଥନମନ୍ଦର ପରମଂ ଦରମପନୟ ତ୍ୱଂ ମେ ॥ ୬ ॥
ନାରାୟଣ କରୁଣାମୟ ଶରଣଂ କରବାଣି ତାବକୌ ଚରଣୌ ।
ଇତି ଷଟ୍ପଦୀ ମଦୀୟେ ବଦନସରୋଜେ ସଦା ବସତୁ ॥ ୭ ॥
ଇତିଶ୍ରୀମଦ୍ ପରମହଂସପରିବ୍ରାଜକାଚାର୍ଯ୍ୟ ଶ୍ରୀମଚ୍ଛଙ୍କରାଚାର୍ଯ୍ୟବିରଚିତଂ
ଷଟ୍ପଦୀ-ସ୍ତୋତ୍ରଂ ସଂପୂର୍ଣ୍ଣମ୍ ।

— —

ହେ ପ୍ରଭୁ ! ତୁମର ଓ ମୋର ମଧ୍ୟରେ ଭେଦ ନାହିଁ । ମାତ୍ର ଭେଦ ଭାବନା ଚାଲି ଯାଇଥିଲେ ମଧ୍ୟ 'ତୁମର ମୁଁ ଅଟେ' ମାତ୍ର 'ମୋର ତୁମେ ନୁହ' । କାରଣ ତରଙ୍ଗ ହେଉଛି ସମୁଦ୍ରର କିନ୍ତୁ କେଉଁଠି ହେଲେ ତରଙ୍ଗର ସମୁଦ୍ର ହୋଇନାହିଁ । ତୁମେ ସମୁଦ୍ର ହେଲେ ମୁଁ ତରଙ୍ଗପରି ତୁମର ଅଂଶବିଶେଷ । ୩ ।

ହେ ଗିରିଧାରୀ ! ହେ ଉପେନ୍ଦ୍ର (ଇନ୍ଦ୍ରଙ୍କର ସାନଭାଇ) ! ରାକ୍ଷସକୁଳର ଶତ୍ରୁ ! ତୁମର ଆଖି ଦ୍ୱୟ ହେଉଛନ୍ତି ସୂର୍ଯ୍ୟ ଓ ଚନ୍ଦ୍ର । ତୁମର ଦର୍ଶନ ପରେ କ'ଣ ଏ ସଂସାର ତୁଚ୍ଛ କରି ହେବନାହିଁ । ୪ ।

ତୁମେ ଅବତାରୀ ହେଉ ସବୁବେଳେ ମତ୍ସ୍ୟାଦି ଅବତାର ଗ୍ରହଣ କରି ପୃଥିବୀକୁ ରକ୍ଷା କରୁଛ । ହେ ପରମେଶ୍ୱର ! ମୁଁ ସଂସାର ଦୁଃଖରେ ଭୟାକୁଳ । ମତେ ଉଦ୍ଧାର କର । ୫ ।

ହେ ଦାମୋଦର, ଗୁଣ ନିଳୟ, ସୁନ୍ଦର ମୁଖପଦ୍ମ; ଗୋବିନ୍ଦ, ସଂସାର ସାଗର ମନ୍ଥନ କରିବାରେ ମନ୍ଦର ପର୍ବତ ସଦୃଶ ତୁମେ ମୋର ବିଷମ (ସଂସାର) ଭୟକୁ ଦୂର କର । ୬ ।

ହେ 'କରୁଣାମୟ ନାରାୟଣ : ତୁମର ଚରଣଦ୍ୱୟରେ ମୋର ଶରଣ'— ଏହି ଛ'ପଦ ମୋର ମୁଖପଦ୍ମରେ ସର୍ବଦା ବାସ କରୁ । ୭ ।

— —

# ଶ୍ରୀରାଧାକୃପାକଟାକ୍ଷସ୍ତୋତ୍ରମ୍

ମୁନୀନ୍ଦ୍ରବୃନ୍ଦବନ୍ଦିତେ ତ୍ରିଲୋକଶୋକହାରିଣି
ପ୍ରସନ୍ନବକ୍ତ୍ରପଙ୍କଜେ ନିକୁଞ୍ଜଭୂବିଳାସିନି ।
ବ୍ରଜେନ୍ଦ୍ରଭାନୁନନ୍ଦିନି ବ୍ରଜେନ୍ଦ୍ରସୂନୁସଙ୍ଗତେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୧ ॥

ଅଶୋକବୃକ୍ଷବଲ୍ଲରୀବିତାନମଣ୍ଡପସ୍ଥିତେ
ପ୍ରବାଳବାଳପଲ୍ଲବପ୍ରଭାରୁଣାଂଘ୍ରିକୋମଳେ ।
ବରାଭୟସ୍ଫୁରତ୍କରେ ପ୍ରଭୂତସମ୍ପଦାଳୟେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୨ ॥

ଅନଙ୍ଗରଙ୍ଗମଙ୍ଗଳପ୍ରସଙ୍ଗଭଙ୍ଗୁରଭ୍ରୁବାଂ
ସୁବିଭ୍ରମୈଃ ସସମ୍ଭ୍ରମୈର୍ଦୃଗନ୍ତବାଣପାତନୈଃ ।
ନିରନ୍ତରଂ ବଶୀକୃତପ୍ରତୀତନନ୍ଦନନ୍ଦନେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୩ ॥

ତଡ଼ିତ୍ସୁବର୍ଣ୍ଣଚମ୍ପକପ୍ରଦୀପ୍ତଗୌରବିଗ୍ରହେ
ମୁଖପ୍ରଭାପରାସ୍ତକୋଟିଶାରଦେନ୍ଦୁମଣ୍ଡଳେ ।
ବିଚିତ୍ରଚିତ୍ରସଞ୍ଚରଚ୍ଚକୋରଶାବଲୋଚନେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୪ ॥

---

ହେ ଶ୍ରେଷ୍ଠ ମୁନିସମୂହଙ୍କ ବନ୍ଦନୀୟା, ତ୍ରିଲୋକର ଶୋକ ହରଣକାରିଣୀ ! ପ୍ରସନ୍ନ ମୁଖ ପଙ୍କଜ, କୁଞ୍ଜଭବନ ବିଳାସିନୀ, ବୃଷଭାନୁସୁତା, ନନ୍ଦନନ୍ଦନଙ୍କ ସଙ୍ଗିନୀ ରାଧା ! ତୁମେ ମତେ ତୁମର କରୁଣାକଟାକ୍ଷର ପାତ୍ର କେବେ କରିବ ? । ୧ ।

ଅଶୋକ ବୃକ୍ଷଲତା-ଆଚ୍ଛାଦିତ ମଣ୍ଡପରେ ତୁମେ ଥାଅ । ପୋହଳା ଓ କଅଁଳ ପତ୍ର ପରି ଅରୁଣକାନ୍ତି ଯୁକ୍ତ ତୁମର କୋମଳ ପାଦ । ତୁମର ହାତରେ ବର ଓ ଅଭୟର ମୁଦ୍ରା ଥାଏ । ତୁମେ ପ୍ରଭୂତ ସମ୍ପଦର ଆଳୟ । ମତେ ତୁମର କୃପାକଟାକ୍ଷର ଯୋଗ୍ୟ କେବେ କରିବ ? । ୨ ।

ରତିକ୍ରୀଡ଼ା ରୂପକ ମଙ୍ଗଳ ପ୍ରସଙ୍ଗରେ କୁଟିଳ ଭ୍ରୂଲତାର ମୋହନ ବିଳାସ ଯୁକ୍ତ କଟାକ୍ଷ ପାତ ଦ୍ୱାରା ସବୁବେଳେ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କୁ ବଶକଳ୍ପ-ଭଳି ଦେଖାଯାଉଥିବା ହେ ରାଧା ! ମତେ କେବେ ତୁମେ ତୁମର କୃପାକଟାକ୍ଷର ପାତ୍ର କରିବ ? । ୩ ।

ତୁମର ଦେହର ବର୍ଣ୍ଣ ବିଜୁଳି, ସୁନା ଓ ଚମ୍ପାର କାନ୍ତି ଭଳି

ମଦୋନ୍ମଦାତ୍ତଯୌବନେ ପ୍ରମୋଦମାନମଣ୍ଡିତେ
ପ୍ରିୟାନୁରାଗରଞ୍ଜିତେ କଳାବିଳାସପଣ୍ଡିତେ ।
ଅନନ୍ୟଧନ୍ୟକୁଞ୍ଜରାଜକାମକେଳିକୋବିଦେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୫ ॥

ଅଶେଷହାବଭାବଧୀରହୀରହାରଭୂଷିତେ
ପ୍ରଭୂତଶାତକୁମ୍ଭକୁମ୍ଭକୁମ୍ଭିକୁମ୍ଭସୁସ୍ତନି ।
ପ୍ରଶସ୍ତମନ୍ଦହାସ୍ୟଚୂର୍ଣ୍ଣପୂର୍ଣ୍ଣସୌଖ୍ୟସାଗରେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୬ ॥

---

ଗୌରବର୍ଣ୍ଣ । ତୁମର ମୁଖ କୋଟିସଂଖ୍ୟକ ଶରତ୍‌କାଳୀନ ଚନ୍ଦ୍ରମଣ୍ଡଳର କାନ୍ତିକୁ ପରାସ୍ତ କରୁଛି । ତୁମର ନେତ୍ର ଚଞ୍ଚଳ ଶିଶୁ ଚକୋର ପରି ବଙ୍କିମ ଭାବଭଙ୍ଗୀରେ ସଞ୍ଚାର କରୁଛି । ହେ ରାଧା ! କେବେ ତୁମର କୃପାକଟାକ୍ଷ ମୋ ଉପରେ ପଡ଼ିବ ? । ୪ ।

ତୁମେ ରୂପ ବା ସୌନ୍ଦର୍ଯ୍ୟ ମଦରେ ଉନ୍ମତ୍ତ ଓ ଅତ୍ୟନ୍ତ ଯୌବନବତୀ । ତୁମେ ଆନନ୍ଦ ଓ ଅଭିମାନଯୁକ୍ତା । ତୁମେ ପ୍ରିୟତମ ଶ୍ରୀକୃଷ୍ଣଙ୍କ ଅନୁରାଗରେ ରଞ୍ଜିତା । ତୁମେ କାମକଳାର ବିଳାସରେ ଅତି ନିପୁଣା । ତୁମେ ଅତୁଳନୀୟ ମହିମାଶାଳୀ କୁଞ୍ଜରାଜ ଶ୍ରୀକୃଷ୍ଣଙ୍କ ପ୍ରେମକ୍ରୀଡାକୁ ଭଲ ରୂପେ ଜାଣ । ହେ ରାଧା ! ମତେ ତୁମର କୃପାକଟାକ୍ଷର ଯୋଗ୍ୟ କେବେ କରିବ ? । ୫ ।

ତୁମେ ଅନେକ ପ୍ରକାରେ ଭାବ * ଅର୍ଥାତ୍ ଭ୍ରୂ, ନେତ୍ର ପ୍ରଭୃତିର ବିକାର ବା ଇଙ୍ଗିତ ଦ୍ୱାରା ସ୍ପଷ୍ଟ ସମ୍ଭୋଗ ଇଚ୍ଛା ପ୍ରକାଶ କରି ତଥା ହାବ * ଅର୍ଥାତ୍ ଅଳ୍ପ କେତେ ପ୍ରକାରେ ଅଳ୍ପ ଲକ୍ଷ୍ୟ କରାଯାଉଥିବା ଭଳି ମନୋବିକାର ବା ଶୃଙ୍ଗାର ଚେଷ୍ଟା ଦେଖାଇ ଧୈର୍ଯ୍ୟ ରୂପକ (କଠିନ) ହୀରାର ହାର ଦ୍ୱାରା ଭୂଷିତ, ତୁମର ସ୍ତନ ପ୍ରଚୁର ସୁବର୍ଣ୍ଣ କୁମ୍ଭ ଓ ହସ୍ତୀର କୁମ୍ଭ ପରି ପୃଥୁଳତା ଓ ଉଚ୍ଚତାରେ ଶୋଭା ପାଉଛି । ତୁମେ ଦେଉଛ ଈଷତ୍ ସ୍ମିତହାସ ରୂପକ ତରଙ୍ଗରେ ପରିପୂର୍ଣ୍ଣ ସୁଖର ସାଗର । ହେ ରାଧା । ତୁମର କୃପାକଟାକ୍ଷର ଯୋଗ୍ୟ ମତେ କେବେ କରିବ ? । ୬ ।

---

* ଭ୍ରୂନେତ୍ରାଦିବିକାରୈସ୍ତୁ ସଂଭୋଗେଚ୍ଛାପ୍ରକାଶକଃ ।
ଭାବ ଏବାଳ୍ପ ସଂଲକ୍ଷ୍ୟବିକାରୋ ହାବ ଉଚ୍ୟତେ ॥
(ସାହିତ୍ୟଦର୍ପଣ ୩।୧୫)

ମୃଣାଳବାଳବଲ୍ଲରୀତରଙ୍ଗରଙ୍ଗଦୋର୍ଲତେ
ଲତାଗ୍ରଚଞ୍ଚଳସ୍ୟଲୋଳନୀଳଲୋଚନାବଲୋକନେ ।
ଲଲଲ୍ଲୁଲନ୍ମିଳନ୍ମନୋଜ୍ଞମୁଗ୍ଧମୋହନାଶ୍ରିତେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୭ ॥

ସୁବର୍ଣ୍ଣମାଳିକାଞ୍ଚିତେ ତ୍ରିରେଖକମ୍ବୁକଣ୍ଠଗେ
ତ୍ରିସୂତ୍ରମଙ୍ଗଳୀଗୁଣତ୍ରିରତ୍ନଦୀପ୍ତିଦୀଧିତେ ।
ସଲୋଳନୀଳକୁନ୍ତଳେ ପ୍ରସୂନଗୁଚ୍ଛଗୁମ୍ଫିତେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୮ ॥

ନିତମ୍ବବିମ୍ବଲମ୍ବମାନପୁଷ୍ପମେଖଳାଗୁଣ—
ପ୍ରଶସ୍ତରତ୍ନକିଙ୍କିଣୀକଳାପମଧ୍ୟମଞ୍ଜୁଳେ ।
କରୀନ୍ଦ୍ରଶୁଣ୍ଡଦଣ୍ଡିକାବରୋହସୌଭଗୋରୁକେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୯ ॥

---

ଜଳ ତରଙ୍ଗରେ ନବକମଳ ନାଳ ଦୋଳାୟିତ ହେଲପରି ଓ ବାୟୁ-ତରଙ୍ଗରେ ନବଲତା ସଂଚାଳିତ ହେଲପରି ତୁମ ଦେହର ରୂପତରଙ୍ଗରେ ତୁମର ଦୁଇ ବାହୁଲତା ସୁନ୍ଦର ଦୋଳାୟିତ ହେଉଛନ୍ତି । ଲତାର ଅଗ୍ରଭାଗର ନୃତ୍ୟ ଓ ଚଞ୍ଚଳତା ପରି ତୁମର ମୃଦୁ ସ୍ମିତହାସ୍ୟଯୁକ୍ତ ଚଞ୍ଚଳ ନେତ୍ର ବିଳାସ । ଲାସ୍ୟଯୁକ୍ତ ଚଞ୍ଚଳ ମିଳନାକାଂକ୍ଷୀ ସୁନ୍ଦର ମୁଗ୍ଧ ମୋହନାଶ୍ରିତ ଶ୍ରୀକୃଷ୍ଣଙ୍କର ତୁମେ ଆଶ୍ରୟ ଅଛ । ହେ ରାଧା ! କେବେ ତୁମର କୃପାକଟାକ୍ଷର ଯୋଗ୍ୟ ମତେ କେବେ କରିବ ? । ୭ ।

ତୁମର କଣ୍ଠ ଶଙ୍ଖରେ ତିନୋଟି ରେଖା ପଡ଼ିଥିଲା ପରି ସୁନ୍ଦର ଓ ସ୍ୱର୍ଣ୍ଣହାରରେ ମଣ୍ଡିତ ହୋଇଛି । କଣ୍ଠରେ ତିନିଖିଅ ଥିବା ମଙ୍ଗଳ ସୂତ୍ର ପଡ଼ିଛି ଏବଂ ତାହା ହୀରା ନୀଳା ଓ ମୋତି (ତ୍ରିରତ୍ନ)ର ଦୀପ୍ତିରେ ଶୋଭା ପାଉଛି । ତୁମର ଚଞ୍ଚଳ କୃଷ୍ଣ କେଶପାଶରେ ପୁଷ୍ପଗୁଚ୍ଛ ଗୁମ୍ଫିତ ହୋଇଛି । ହେ ରାଧା ! ତୁମେ କେବେ ମତେ ତୁମର କୃପାକଟାକ୍ଷର ଭାଜନ କରିବ ? । ୮ ।

ତୁମର ନିତମ୍ବ ପର୍ଯ୍ୟନ୍ତ ଲମ୍ବିଥିବା ସୁବର୍ଣ୍ଣ ପୁଷ୍ପର ମେଖଳା ଯୋଗୁଁ ଗୁଣଯୁକ୍ତ ବା ଶବ୍ଦାୟିତ ହୋଇ ରତ୍ନକିଙ୍କିଣୀ ସମୂହ କଟିଦେଶରେ ଅଧିକ ସୁନ୍ଦର ହୋଇଛି । ତୁମର ଊରୁ ଅର୍ଥାତ୍ କଟିପ୍ରଦେଶରୁ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବମାନ (ଜଂଘର ଊର୍ଦ୍ଧ୍ୱଭାଗ) ଅଂଶ ହାତୀର ଶୁଣ୍ଢ ଭଳି କ୍ରମଶଃ ସ୍ଥୂଳରୁ ସୂକ୍ଷ୍ମ ହୋଇ ସୁନ୍ଦର ଦେଖାଯାଉଛି । ହେ ରାଧା ! ତୁମେ ମତେ କେବେ ତୁମର କୃପା-କଟାକ୍ଷର ଯୋଗ୍ୟଜନ କରିବ ? । ୯ ।

ଅନେକମନ୍ତ୍ରନାଦମଞ୍ଜୁନୂପୁରରବସ୍ଖଳତ୍—
ସମାଜରାଜହଂସବଂଶନିକ୍ୱଣାତିଗୌରବେ ।
ବିଲୋଲହେମବଲ୍ଲରୀବିଡ଼ମ୍ବିଚାରୁଚଂକ୍ରମେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୧୦ ॥

ଅନନ୍ତ କୋଟି ବିଷ୍ଣୁଲୋକନମ୍ର ପଦ୍ମଜାର୍ଚ୍ଚିତେ
ହିମାଦ୍ରିଜାପୁଲୋମଜାବିରିଞ୍ଚିଜାବରପ୍ରଦେ
ଅପାରସିଦ୍ଧିବୃଦ୍ଧିଦିଗ୍ଧସତ୍ପଦାଙ୍ଗୁଲୀନଖେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥୧୧॥

ମଖେଶ୍ୱରୀ କ୍ରିୟେଶ୍ୱରୀ ସ୍ୱଧେଶ୍ୱରୀ ସୁରେଶ୍ୱରୀ
ତ୍ରିବେଦଭାରତୀଶ୍ୱରୀ ପ୍ରମାଣଶାସନେଶ୍ୱରୀ
ରମେଶ୍ୱରୀ କ୍ଷମେଶ୍ୱରୀ ପ୍ରମୋଦକାନନେଶ୍ୱରୀ
ବ୍ରଜେଶ୍ୱରୀ ବ୍ରଜାଧିପେ ଶ୍ରୀରାଧିକେ ନମୋଽସ୍ତୁତେ ॥୧୨॥

---

ନିଗମାଗମର ଅନେକ ମନ୍ତ୍ରନାଦ କଳଭାଷ ତୁମର ପାଦର ନୂପୁର ରାଜହଂସ ସମୂହର ରବ ରୂପକ ନିକ୍ୱଣ ବା ଅନୁରଣନରେ ଗୌରବ ମଣ୍ଡିତ ହୋଇଛି । ତୁମର ଗମନ ଚଳନଶୀଳ ସୁନାର ଲତାଟିଏ ଭଳି ପ୍ରତୀତ ହେଉଛି । ହେ ରାଧା ! ତୁମ କୃପାକଟାକ୍ଷ ପାଇବା ପାଇଁ ମତେ କେବେ ଯୋଗ୍ୟ କରିବ ? । ୧୦ ।

ଅନନ୍ତ କୋଟି ବିଷ୍ଣୁଲୋକଙ୍କ ନମସ୍ୟ ଲକ୍ଷ୍ମୀଦେବୀଙ୍କ ଦ୍ୱାରା ତୁମେ ପୂଜିତ । ପାର୍ବତୀ, ଇନ୍ଦ୍ରାଣୀ ଓ ସରସ୍ୱତୀଙ୍କୁ ତୁମେ ବର ପ୍ରଦାନ କରିଥାଅ । ତୁମର ସାଧୁ ପାଦାଙ୍ଗୁଳିର ନଖ ଅନେକ ସିଦ୍ଧି ଓ ବୃଦ୍ଧି ସହ ଜଡ଼ିତ । ହେ ରାଧା ! ତୁମେ କେବେ ମତେ ତୁମ କୃପାକଟାକ୍ଷଭାଜନ କରିବ ? ୧୧।

ସକଳ ଯଜ୍ଞ, କ୍ରିୟା, ସ୍ୱଧା (ପିତୃତର୍ପଣ ବା ଆତ୍ମୋନ୍ନତି), ଦେବତା, ଋକ-ସାମ-ଯଜୁର୍ବେଦର ମନ୍ତ୍ରାବଳୀ ତଥା ନିଜ ଆପ୍ତ ପ୍ରତ୍ୟକ୍ଷ-ଅନୁମାନାଦି ପ୍ରମାଣ ଓ ସଦାଚାରନିଷ୍ଠ ଅନୁଶାସନର ତୁମେ ହେଉଛ ଅଧୀଶ୍ୱରୀ । ତୁମେ ରମା, କ୍ଷମା ଓ ପ୍ରମୋଦକାନନର ଈଶ୍ୱରୀ । ହେ ବ୍ରଜର ପାଳନକର୍ତ୍ତ୍ରୀ ହେ ବ୍ରଜେଶ୍ୱରୀ ଶ୍ରୀରାଧା ! ତୁମକୁ ମୋର ନମସ୍କାର ।।୧୨।।

## * ଫଳଶ୍ରୁତିଃ *

ରକାସ୍ୟାଂ ଚ ସିତାଷ୍ଟମ୍ୟାଂ ଦଶମ୍ୟାଂ ଚ ବିଶୁଦ୍ଧୟା ।
ଏକାଦଶ୍ୟାଂ ତ୍ରୟୋଦଶ୍ୟାଂ ଯଃ ପଠେତ୍ ସାଧକଃ ସୁଧୀଃ ॥୧୪॥

ଯଂ ଯଂ କାମୟତେ କାମଂ ତଂ ତଂ ପ୍ରାପ୍ନୋତି ସାଧକଃ ।
ରାଧାକୃପାକଟାକ୍ଷେଣ ଭକ୍ତିଃ ସ୍ୟାତ୍ ପ୍ରେମଲକ୍ଷଣା ॥୧୫॥
ଊରୁମାତ୍ରେ ନାଭିମାତ୍ରେ ହୃନ୍ମାତ୍ରେ କଣ୍ଠମାତ୍ରକେ
ରାଧାକୁଣ୍ଡଜଳେ ସ୍ଥିତ୍ୱା ଯଃ ପଠେତ୍ ସାଧକଃ ଶତମ୍ ।
ତସ୍ୟ ସର୍ବାର୍ଥସିଦ୍ଧିଃସ୍ୟାଦ୍ ବାଞ୍ଛିତାର୍ଥଫଳଂ ଲଭେତ୍
ଐଶ୍ୱର୍ଯ୍ୟଂ ଚ ଲଭେତ୍ ସାକ୍ଷାଦ୍ ଦୃଶା ପଶ୍ୟତି ରାଧିକାମ୍ ॥୧୬ ୧୭॥

ତେନ ସା ତତ୍କ୍ଷଣାଦେବ ତୁଷ୍ଟା ଦତ୍ତେ ମହାବରମ୍ ।
ଯେନ ପଶ୍ୟତି ନେତ୍ରାଭ୍ୟାଂ ତତ୍ପ୍ରିୟଂ ଶ୍ୟାମସୁନ୍ଦରମ୍ ॥୧୮॥

ନିତ୍ୟଲୀଳା ପ୍ରବେଶଂ ଚ ଦଦାତି ଶ୍ରୀବ୍ରଜାଧିପଃ ।
ଅତଃ ପରତରଂ ପ୍ରାପ୍ୟଂ ବୈଷ୍ଣବାନାଂ ନ ବିଦ୍ୟତେ ॥୧୯॥

---

ଯେଉଁ ବିଦ୍ୱାନ୍ ସାଧକ ଶୁକ୍ଳପକ୍ଷରେ ପୂର୍ଣ୍ଣିମା, ଶୁକ୍ଳପକ୍ଷ ଅଷ୍ଟମୀ, ଦଶମୀ, ଏକାଦଶୀ ଓ ତ୍ରୟୋଦଶୀରେ, ଏହି ସ୍ତୋତ୍ର ପାଠକରେ, ସେହି ସାଧକ ଯେଉଁ ଯେଉଁ ଇଷ୍ଟ ବସ୍ତୁ କାମନା କରେ, ସେ ସବୁ ଲାଭକରେ । ଶ୍ରୀରାଧାଙ୍କ କୃପାକଟାକ୍ଷ ବଶତଃ ପ୍ରେମ ଲକ୍ଷଣ ସଂପନ୍ନ ଭକ୍ତି ଲାଭହୁଏ ॥୧୪,୧୫॥

ଯେଉଁ ସାଧକ ଊରୁ (ଅଣ୍ଟାର ତଳ ଓ ଆଣ୍ଠୁର ଉପର), ନାଭି, ବକ୍ଷ, କଣ୍ଠ ପର୍ଯ୍ୟନ୍ତ ବୃନ୍ଦାବନର ରାଧାକୁଣ୍ଡ ଜଳରେ ଠିଆହୋଇ ଏହି ସ୍ତୋତ୍ର ଶତେ ଥର ପଢେ ତା'ର ସକଳ ଅଭୀଷ୍ଟ ସିଦ୍ଧ ହୁଏ ଏବଂ ସେ ଯାହା ବାଞ୍ଛାକରେ ତାହା ପାଏ । ସେ ଐଶ୍ୱର୍ଯ୍ୟ ଲାଭକରେ । ଆଖିରେ ସାକ୍ଷାତ୍ ରାଧାଙ୍କୁ ଦର୍ଶନକରେ ॥୧୬, ୧୭॥

ସେଥିରେ ସେହି ରାଧା ସଂତୁଷ୍ଟା ହୋଇ ମହାନ୍ ବର ପ୍ରଦାନ କରନ୍ତି । ଯାହାଫଳରେ ଶ୍ରୀରାଧାଙ୍କ ପ୍ରିୟ ଶ୍ୟାମସୁନ୍ଦରଙ୍କୁ ମଧ୍ୟ ସାଧକ ଆଖିରେ ଦେଖିବାକୁ ପାଏ ॥୧୮॥

ବ୍ରଜର ଅଧୀଶ୍ୱର ଶ୍ରୀକୃଷ୍ଣ ଏହି ସ୍ତୋତ୍ର ପାଠକ ସାଧକଙ୍କୁ ନିତ୍ୟଲୀଳାରେ ପ୍ରବେଶ କରିବାପାଇଁ ଅଧିକାର ପ୍ରଦାନ କରନ୍ତି । ବିଷ୍ଣୁଭକ୍ତ ବୈଷ୍ଣବର ଏହାଠାରୁ ଅଧିକ ପ୍ରାପ୍ୟ ଆଉ କିଛି ନାହିଁ ॥୧୯॥

# ଜୟ ଦେବ ପଦଂ ❁

ଜୟ ଶଙ୍ଖଗଦାଧର ନୀଳକଳେବର ପୀତପଟାମ୍ବର ଦେହି ପଦମ୍ ।
ଜୟ ଚନ୍ଦନଚର୍ଚ୍ଚିତ କୁଣ୍ଡଳମଣ୍ଡିତ କୌସ୍ତୁଭଶୋଭିତ ଦେହି ପଦମ୍ । ୧ ।

ଜୟ ପଙ୍କଜଲୋଚନ ମାରବିମୋଚନ ପାପବିଖଣ୍ଡନ ଦେହି ପଦମ୍ ।
ଜୟ ବେଣୁନିନାଦକ ରାସବିହାରକ ବଙ୍କିମସୁନ୍ଦର ଦେହି ପଦମ୍ । ୨ ।

ଜୟ ଧୀର ଧୁରନ୍ଧର ଅଦ୍ଭୁତସୁନ୍ଦର ଦୈବତସୁନ୍ଦର ଦେହି ପଦମ୍ ।
ଜୟ ବିଶ୍ୱବିମୋହନ ମାନସମୋହନ ସଂସ୍ଥିତିକାରଣ ଦେହି ପଦମ୍ । ୩ ।

ଜୟ ଭକ୍ତଜନାଶ୍ରୟ ନିତ୍ୟସୁଖାଲୟ ଅନ୍ତିମବାନ୍ଧବ ଦେହି ପଦମ୍ ।
ଜୟ ଦୁର୍ଜ୍ଜନଶାସନ କେଳିପରାୟଣ କାଳିୟମର୍ଦ୍ଦନ ଦେହି ପଦମ୍ । ୪ ।

ଜୟ ନିତ୍ୟନିରାମୟ ଦୀନଦୟାମୟ ଚିନ୍ମୟ ମାଧବ ଦେହି ପଦମ୍ ।
ଜୟ ପାମରପାବନ ଧର୍ମପରାୟଣ ଦାନବସୂଦନ ଦେହି ପଦମ୍ । ୫ ।

ଜୟ ବେଦବିଦାଂବର ଗୋପବଧୂପ୍ରିୟ ବୃନ୍ଦାବନଧନ ଦେହି ପଦମ୍ ।
ଜୟ ସତ୍ୟସନାତନ ଦୁର୍ଗତିଭଞ୍ଜନ ସଜ୍ଜନରଞ୍ଜନ ଦେହି ପଦମ୍ । ୬ ।

ଜୟ ସେବକ-ବତ୍ସଳ କରୁଣାସାଗର ବାଞ୍ଛିତପୂରକ ଦେହି ପଦମ୍ ।
ଜୟ ପୂତଧରାତଳ ଦେବପରାତ୍ପର ସତ୍ତ୍ୱଗୁଣାକର ଦେହି ପଦମ୍ । ୭ ।

ଜୟ ଗୋକୁଳଭୂଷଣ କଂସନିଷୂଦନ ଶାଶ୍ୱତଜୀବନ ଦେହି ପଦମ୍ ।
ଜୟ ଯୋଗପରାୟଣ ସଂସୃତିବାରଣ ବ୍ରହ୍ମନିରଞ୍ଜନ ଦେହି ପଦମ୍ । ୮ ।

ଜୟ ଜୟ ବଂଶୀବାଦ୍ୟବିଶାରଦ, ଶାରଦସରସୀରୁହପରିଖର୍ବ୍ବକ, ଖଞ୍ଜନଜିତଲୋଚନସଞ୍ଚାରଣ, ସ୍ମରଣୀୟବଧୂଧୃତିହାରକ, ହାରକଳାପରୁଚ୍ୟଞ୍ଚିତକାନନ କାନନକୁନ୍ତଗନ୍ଧସୁଷ୍ଠୁସଗର, ସଙ୍ଗରସୋଢ଼ବାହୁଭୁଜଙ୍ଗମ, ଜଙ୍ଗମନବତାପିଞ୍ଛନଗୋପମ, ଗୋପମନୀଷିତସିଦ୍ଧି ସୁଦକ୍ଷିଣ, ଦକ୍ଷିଣପାଣିଗଦଙ୍କସଖଙ୍କିତ, ଖଚିତତୋଟିଶଶାଙ୍କବିରୋଚନ, ରୋଚନସ୍ୱାକୃତବକ୍ଷବିଶେଷକ, ଶେଷଭମଲଭବଯନକସନନ୍ଦନ, ନନ୍ଦନଗୁଣ ମାଂ ନନ୍ଦୟ ସୁନ୍ଦର ଧୀର । (ଇତି ରୂପଗୋସ୍ୱାମୀକୃତ ଦଣ୍ଡକମ୍)

---

❁ ଉପର୍ଯ୍ୟୁକ୍ତ 'ଜୟ ଦେହି ପଦଂ' ସ୍ତୋତ୍ରରେ ଶ୍ରୀକୃଷ୍ଣଙ୍କ ସମ୍ବୋଧନରେ ବ୍ୟବହୃତ ନାମାବଳୀର ଅର୍ଥ ସୁସ୍ପଷ୍ଟ । (ମହାମେଧାନନ୍ଦନାଥ)

## ଶ୍ରୀରାମ :

ଶ୍ରୀରାମ ମର୍ଯ୍ୟାଦା ପୁରୁଷୋତ୍ତମ । ଜୀବନରେ ସେ ମର୍ଯ୍ୟାଦାବନ୍ତ ଭାବରେ ସ୍ୱ-ଧର୍ମ ପାଳନ କରି ନିଜର ମହାନୀୟତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସଂସାରରେ ସମୁଚ୍ଚ ଆଦର୍ଶର ପ୍ରତିଷ୍ଠା କରି ଯାଇଛନ୍ତି । ପିତୃବାକ୍ୟ ପାଳନ କରି ଆଦର୍ଶ ପୁତ୍ର ଭାବରେ, ଏକପତ୍ନୀବ୍ରତ ପାଳନ କରି ଆଦର୍ଶ ପତି ଭାବରେ, ଭାଇମାନଙ୍କ ପ୍ରତି ଅସୀମ ସ୍ନେହ ମମତା ପ୍ରଦର୍ଶନ କରି ଆଦର୍ଶ ଭ୍ରାତା ଭାବରେ, ରାଜ୍ୟରେ ପ୍ରତ୍ୟେକ ନାଗରିକର ମତକୁ ସମ୍ମାନ ଦେଖାଇ ଆଦର୍ଶ ରାଜା ଭାବରେ, ବାଳିବଧ ଦ୍ୱାରା ସୁଗ୍ରୀବକୁ ସାହାଯ୍ୟ କରି ଆଦର୍ଶ ବନ୍ଧୁ ଭାବରେ, ଅସୁର ବିନାଶ କରି ଆଦର୍ଶ ଦେବକାର୍ଯ୍ୟ ସାଧକ ଭାବରେ ବିଭୀଷଣର ଶରଣ ରକ୍ଷା କରି ଅନନ୍ୟ-ସାଧାରଣ ଅଭୟ ଦାତା ଭାବରେ ରଘୁକୁଳ ତିଳକ ସତ୍ୟସନ୍ଧ ରାମଚନ୍ଦ୍ର ଅକ୍ଷୟ ଯଶଃ ଓ ଅନନ୍ତକୀର୍ତ୍ତିର ଅଧିକାରୀ ହୋଇପାରିଛନ୍ତି । 'ରାମୋ ଦ୍ୱିର୍ନ ସନ୍ଧତ୍ତେ, ରାମୋ ଦ୍ୱିର୍ନ ଭାଷତେ' – ରାମ ଦୁଇଟା କଥା କହନ୍ତି ନାହିଁ କି ଦୁଇଥର ଶର ସନ୍ଧାନ କରନ୍ତି ନାହିଁ । ତାଙ୍କର ବାକ୍ୟ ଓ ଲକ୍ଷ୍ୟ ଉଭୟ ଅବ୍ୟର୍ଥ । ସେ ଥିଲେ 'ସତ୍ୟ'ର ମୂର୍ତ୍ତିମନ୍ତ ବିଗ୍ରହ । ସତ୍ୟଲାଗି ସେ ସକଳ ତ୍ୟାଗ ସ୍ୱୀକାର କରିଯାଇଛନ୍ତି । ଶ୍ରୀରାମଙ୍କ ପବିତ୍ର ଗୁଣାବଳୀ ଓ ଚରିତର ପାବନ ମନ୍ଦାକିନୀ ହେଉଛି ବାଲ୍ମୀକିଙ୍କ 'ରାମାୟଣ' । ଏହାର ଆରମ୍ଭରେ ଦେବର୍ଷି ନାରଦଙ୍କୁ ମହର୍ଷି ବାଲ୍ମୀକି ପଚାରିଛନ୍ତି—'ବର୍ତ୍ତମାନ ଏ ସଂସାରରେ କିଏ ଗୁଣବାନ୍, ବୀର୍ଯ୍ୟବାନ୍, ଧର୍ମଜ୍ଞ, କୃତଜ୍ଞ, ସତ୍ୟବାକ୍ୟ, ଦୃଢ଼ବ୍ରତ, ଚରିତ୍ରବାନ୍, ସର୍ବଭୂତ-ହିତକାରୀ, ବିଦ୍ୱାନ୍, ପ୍ରିୟଦର୍ଶନ, ଆତ୍ମବାନ୍, ଜିତକ୍ରୋଧ, ଦ୍ୟୁତିମାନ୍, ଅସୂୟାହୀନ ଏବଂ କାହାକୁ ଦେବତାମାନେ ଯୁଦ୍ଧବେଳେ ଭୟ କରନ୍ତି ?

ଏହି ପ୍ରଶ୍ନର ଉତ୍ତରରେ ଦେବର୍ଷି ନାରଦ କହିଛନ୍ତି— ଇକ୍ଷ୍ୱାକୁବଂଶରେ ଜନ୍ମ ନେଇଥିବା ଦଶରଥାତ୍ମଜ ରାମ ହେଉଛନ୍ତି— 'ନିୟତାତ୍ମା, ମହାବୀର, ଶ୍ରୁତିମାନ୍, ଧୃତିମାନ୍, ବୁଦ୍ଧିମାନ୍, ନୀତିମାନ୍, ଶ୍ରୀମାନ୍, ବାଗ୍ମୀ, ଧର୍ମଜ୍ଞ, ସତ୍ୟସନ୍ଧ, ପ୍ରଜାମାନଙ୍କ ହିତକାରୀ, ଯଶସ୍ୱୀ, ଜ୍ଞାନୀ, ଶୁଦ୍ଧ, ସମାଧିମାନ୍, ଶ୍ରୀମାନ୍, ବିଧାତା, ରିପୁସୂଦନ, ଜୀବଗଣର

ରକ୍ଷକ, ଧର୍ମର ପରିରକ୍ଷକ, ସ୍ୱଧର୍ମ ତଥା ସ୍ୱଜନଙ୍କ ରକ୍ଷାକର୍ତ୍ତା, ବେଦ-ବେଦାଙ୍ଗ ତତ୍ତ୍ୱଜ୍ଞ, ଧନୁର୍ବେଦରେ ପରିନିଷ୍ଠିତ, ସର୍ବଶାସ୍ତ୍ରାର୍ଥତତ୍ତ୍ୱଜ୍ଞ, ସ୍ମୃତିମାନ, ପ୍ରତିଭାବାନ୍, ସର୍ବଲୋକପ୍ରିୟ, ସାଧୁ, ପ୍ରଶସ୍ତ ହୃଦୟ, ବିଚକ୍ଷଣ, ସର୍ବସମ, ପ୍ରିୟଦର୍ଶନ, ସର୍ବଗୁଣଯୁକ୍ତ ଅଟନ୍ତି । ଦେଖିବାକୁ ତାଙ୍କର କାନ୍ଧ ପ୍ରଶସ୍ତ, ବାହୁ ଜାନୁ ପର୍ଯ୍ୟନ୍ତ ଦୀର୍ଘ, ଗ୍ରୀବା ଶଙ୍ଖ ସଦୃଶ, ଆଖି ଦୀର୍ଘ, ହନୁ ବଡ଼, ବକ୍ଷ ପ୍ରଶସ୍ତ; ସୁବିଭକ୍ତାଙ୍ଗ ଏବଂ ବର୍ଣ୍ଣ ସ୍ନିଗ୍ଧ ବା ଚିକ୍କଣ—ସବୁ ପ୍ରକାରେ ମହାପୁରୁଷ ଲକ୍ଷଣଯୁକ୍ତ । ଶ୍ରୀରାମ ଗାମ୍ଭୀର୍ଯ୍ୟରେ ସମୁଦ୍ର ପରି, ଧୈର୍ଯ୍ୟରେ ହିମାଳୟ ଭଳି, ବୀର୍ଯ୍ୟରେ ବିଷ୍ଣୁଙ୍କ ପରି ଓ ସୌନ୍ଦର୍ଯ୍ୟରେ ଦେଖିବାକୁ ଚନ୍ଦ୍ରଙ୍କ ଭଳି । ସେ କ୍ରୋଧ କଲେ କାଳାଗ୍ନି ପରି ସବୁ ପୋଡ଼ିଜାଳି ଦେଇପାରନ୍ତି ସତ କିନ୍ତୁ କ୍ଷମା ଆଚରଣରେ ସେ ପୃଥିବୀ ପରି ସହନଶୀଳ ଅଟନ୍ତି । ସେ କୁବେର ପରି ତ୍ୟାଗୀ ଅଟନ୍ତି । 'ସତ୍ୟ' ବିଷୟରେ ସେ ଅଟନ୍ତି ମୂର୍ତ୍ତିମାନ୍ 'ଧର୍ମ' ।

ଉପର୍ଯ୍ୟୁକ୍ତ ଗୁଣାବଳୀରୁ ବାଲ୍ମୀକିଙ୍କ ଆଖିରେ ଶ୍ରୀରାମ କିପରି ନିଷ୍କଳଙ୍କ ନିରୂପମ ଚରିତ୍ର ଥିଲେ ତାହା ସହଜେ ଅନୁମେୟ । ଭାରତ-ବର୍ଷର ପ୍ରତ୍ୟେକ ପୁରୁଷଙ୍କୁ ଶ୍ରୀରାମଙ୍କ ଆଦର୍ଶରେ ଅନୁପ୍ରାଣିତ କରି ଏ ସମାଜକୁ ଦିବ୍ୟ ସୁନ୍ଦର କରି ଗଢ଼ିବା ଥିଲା ସେହି କ୍ରାନ୍ତଦର୍ଶୀ ମହର୍ଷିଙ୍କର ଉଦ୍ଦେଶ୍ୟ । ତେଣୁ ରାମଙ୍କର ଆଦର୍ଶର ପୂଜା ହିଁ ଯଥାର୍ଥ ରାମ-ପୂଜା । 'ରାମ' ଶବ୍ଦର ଅର୍ଥ ରମଣୀୟ ବା ସୁନ୍ଦର । ଗୋଟିଏ ପରିବାରରେ ପିତା ପୁତ୍ର ମଧ୍ୟରେ, ଭାଇ ଭାଇ ଭିତରେ, ପତିପତ୍ନୀ ମଧ୍ୟରେ କିପରି ସୁନ୍ଦର ସମ୍ପର୍କ ରହିଲେ ସେହି ପରିବାରଟି ଏକ ଆଦର୍ଶ ଅନୁକରଣୀୟ ପରିବାର ହୋଇପାରିବ, ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛି 'ରାମାୟଣ' ।

ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ଲୀଳାବଳି ସବୁ ଅସୀମ ଓ ଅଲୌକିକ ହେଲବେଳେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କର ଲୀଳାବଳି ସବୁ ଲୌକିକ ସୀମା ବା ଅବଧି ଭିତରେ ହିଁ ସଙ୍ଘଟିତ ହୋଇଛି ।

ରାମଚନ୍ଦ୍ର କେଉଁଠି ନିଜର ଅବଧି ସୀମା ବା ମର୍ଯ୍ୟାଦା ଲଂଘନ କରି ନାହାନ୍ତି । ପିତାଙ୍କ ସତ୍ୟରକ୍ଷା ଲାଗି ଚଉଦ ବର୍ଷ ବନବାସ କରିଛନ୍ତି, ରାବଣକର୍ତ୍ତୃକ ସୀତା ହରଣ ହେବା ପରେ ସେ କାନ୍ଦି କାନ୍ଦି ଗଛଲତା ପକ୍ଷୀ ଜଟାୟୁଠାରୁ ଆରମ୍ଭ କରି ସମୁଠି କାନ୍ଦି ପଚାରି ବୁଲିଛନ୍ତି ତାଙ୍କର ପ୍ରାଣପ୍ରିୟା ସୀତାଙ୍କ ଖବର ଏବଂ ବାନରମାନଙ୍କ ଆଶ୍ରୟ ଗ୍ରହଣ କରି ଲଙ୍କାକୁ କରିଛନ୍ତି ଯୁଦ୍ଧଯାତ୍ରା । ରାବଣ କର୍ତ୍ତୃକ ଲକ୍ଷ୍ମଣ-ଶକ୍ତିଭେଦ ହେବାରୁ ସେ ଧୈର୍ଯ୍ୟ ହରାଇ ବିକଳ ହୋଇ କାନ୍ଦି ଭ୍ରାତୃପ୍ରେମର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ତାଙ୍କର ଏସବୁ ଅବଧି ବା ସୀମାର ଉଲ୍ଲେଖ କରି କୁହାଯାଇଛି—

**ବାଲକ୍ରୀଡନମିନ୍ଦୁଶେଖରଧନୁର୍ଭଙ୍ଗାବଧି ପ୍ରହ୍ୱତା**
**ତାତେ କାନନସେବନାବଧି କୃପା ସୁଗ୍ରୀବସଖ୍ୟାବଧି ।**
**ଆଜ୍ଞା ତାରଧିବନ୍ଧନାବଧି ଯଶୋ ଲଙ୍କେଶନାଶାବଧି**
**ଶ୍ରୀରାମସ୍ୟ ପ୍ରଜାନୁ ରଞ୍ଜକବଶତା ଜାନକ୍ୟପେକ୍ଷାବଧି ॥**

ଶ୍ରୀରାମଙ୍କ ବାଲକ୍ରୀଡ଼ା ଯାହାର ଶେଷ ସୀମା ହୋଇଛି ଶିବଧନୁ ଭଙ୍ଗାରେ, ତାଙ୍କର ପିତାଙ୍କଠାରେ ନମ୍ରତା ବା ଭକ୍ତି ଯାହାର ଚରମ କ୍ରାନ୍ତି ହୋଇଛି ପିତୃସତ୍ୟ ରକ୍ଷାପାଇଁ ବଣକୁ ଯିବା, ତାଙ୍କର କୃପା ଯାହାର ସୀମାସ୍ପର୍ଶ କରିଛି ସୁଗ୍ରୀବ ସହିତ ବନ୍ଧୁତା ସ୍ଥାପନରେ, ତାଙ୍କର ଆଜ୍ଞା ଯାହାର ପ୍ରବଳତା ଉପଲବ୍ଧି ହୋଇଛି ସେତୁବନ୍ଧ ବାନ୍ଧିବାରେ, ତାଙ୍କର ଯଶଃ ଯାହାର ଚୂଡ଼ା ସ୍ପର୍ଶ କରିଛି ରାବଣବଧରେ ଏବଂ ତାଙ୍କର ପ୍ରଜାନୁରଞ୍ଜନ ଯାହାର ଅବଧି ହୋଇଛି ପ୍ରାଣପ୍ରିୟା ଜାନକୀଙ୍କ ବିସର୍ଜନରେ— ଶ୍ରୀରାମଙ୍କ ସେହି ଲୋକୋତ୍ତର ଗୁଣ ଆମକୁ ପବିତ୍ର କରୁ ଏବଂ ଆମର ଆଦର୍ଶ ହେଉ ।

ରାମଚନ୍ଦ୍ରଙ୍କ ଲୌକିକ ଆଦର୍ଶପୂତ ଜୀବନକୁ ଅଲୌକିକ ଭାବରେ ଲୋକୋତ୍ତର କରିବା ପାଇଁ ଅଧ୍ୟାତ୍ମରାମାୟଣରେ ଚେଷ୍ଟା ହୋଇଛି । ରାବଣ ଦ୍ୱାରା ପ୍ରପୀଡ଼ିତ ଦେବତାମାନେ ବିଷ୍ଣୁଙ୍କୁ ପ୍ରାର୍ଥନା କରିଛନ୍ତି ପୃଥିବୀରୁ ପାପ-ଉପଦ୍ରବର ଭାର ଲାଘବ କରିବା ସକାଶେ ଏବଂ

ପରିଣାମରେ ଅବତାରୀ ଭଗବାନ୍ ବିଷ୍ଣୁ ଜନ୍ମଗ୍ରହଣ କରି ହୋଇଛନ୍ତି ଶ୍ରୀରାମ-ଅବତାର । ଅଧ୍ୟାତ୍ମରାମାୟଣ ପ୍ରାରମ୍ଭରେ ରାମ ହୃଦୟର ଆଦ୍ୟରେ ତେଣୁ କୁହାଯାଇଛି—

ଯଃ ପୃଥ୍ୱୀଭରବାରଣାୟ ଦିବିଜୈଃ ସଂପ୍ରାର୍ଥିତଶ୍ଚିନ୍ମୟଃ
ସଂଜାତଃ ପୃଥିବୀତଲେ ରବିକୁଲେ ମାୟାମନୁଷ୍ୟୋଽବ୍ୟୟଃ ।
ନିଶ୍ଚକ୍ରଂ ହତରାକ୍ଷସଃ ପୁନରଗାଦ୍ ବ୍ରହ୍ମତ୍ୱମାଦ୍ୟଂ ସ୍ଥିରଂ
କୀର୍ତ୍ତିଂ ପାପହରାଂ ବିଧାୟ ଜଗତାଂ ତଂ ଜାନକୀଶଂ ଭଜେ ॥

ଅର୍ଥାତ୍, ଯେଉଁ ଚିନ୍ମୟ ଅବିନାଶୀ ପ୍ରଭୁ ପୃଥିବୀର ଭାର ଲାଘବ କରିବା ସକାଶେ ଦେବତାମାନଙ୍କ ଦ୍ୱାରା ପ୍ରାର୍ଥିତ ବା ଅନୁରୁଦ୍ଧ ହୋଇ ପୃଥିବୀରେ ସୂର୍ଯ୍ୟବଂଶରେ ମାୟାମାନବ ରୂପରେ ଜନ୍ମଗ୍ରହଣ କରିଥିଲେ, ଯେ ରାକ୍ଷସମାନଙ୍କୁ ଧ୍ୱଂସ କରି ସଂସାରରେ ନିଜ ପାପବିନାଶିନୀ କୀର୍ତ୍ତି ସ୍ଥାପନ ପରେ ପୁନଶ୍ଚ ସେହି ଆଦ୍ୟ ବ୍ରହ୍ମ ରୂପରେ ଲୀନ ହୋଇଥିଲେ, ସେହି ଜାନକୀନାଥ ରାମଚନ୍ଦ୍ରଙ୍କୁ ମୁଁ ଭଜନ କରୁଛି ।

ଏଠାରେ ବ୍ରହ୍ମଙ୍କ ରାମାବତାର ଗ୍ରହଣ ଓ ରାମଙ୍କର ପୁନଃ ବ୍ରହ୍ମରେ ଅନ୍ତର୍ଲୀନ ହେବା କଥା ଲୌକିକ ରାମଙ୍କୁ ଅଲୌକିକ ବା ଦିବ୍ୟ କରାଇବା ପାଇଁ ମାନସ ପ୍ରକ୍ରିୟା ରହିଛି । ପ୍ରକୃତରେ ସବୁଠାରେ ଦିବ୍ୟସତ୍ତା-ଅନୁଭବ କରିବା ହିଁ ଆଧ୍ୟାତ୍ମିକତା । ସଂସାରର ଅଣୁ ପରମାଣୁ ମଧ୍ୟରେ ଈଶ୍ୱରଙ୍କ ସତ୍ତା ରହିଛି । ଲୌକିକ ଜୀବନରେ ରାମଙ୍କ ଆଦର୍ଶ ଗ୍ରହଣ କରି ବାହାର ପରିବେଶକୁ ଆଧ୍ୟାତ୍ମିକ ସାଧନା ତଥା ଶାଶ୍ୱତ ଶାନ୍ତି ପାଇଁ ଅନୁକୂଳ କରାଇ ଅନ୍ତର୍ଯାଗରେ ଅନ୍ତରକୁ ଦିବ୍ୟଭାବର ଆନନ୍ଦାନୁଭୂତି ଧାରାରେ ପ୍ଲାବିତ କଲେ ଜୀବନରେ ସୁଖ, ଶାନ୍ତି ଓ ପବିତ୍ରତା ଆସିବ । ତ୍ରେତା ଯୁଗରେ ରାମ ଥିଲେ; ସେତେବେଳର ପରି-ବେଶରେ ସେ ରାବଣକୁ ଶରରେ ମାରିଥିଲେ ଆଜିର ଆଣବିକ ଯୁଗରେ ତାଙ୍କର ଶର କାମ କରିବ ନାହିଁ ବୋଲି ଭାବିବା ଅନୁଚିତ । ର-ଦାନେ, ମ-ମନନେ ଅର୍ଥରେ ବିଚାର କଲେ ଯେଉଁଠାରେ ମନ ଦାନ କରାଯାଏ ବା ଯେ ଧ୍ୟାନଯୋଗ୍ୟ ସେ ହେଉଛନ୍ତି 'ରାମ' ।

'ସୀତା' ମଧ୍ୟ ତ୍ୟାଗ, ସହିଷ୍ଣୁତା ଓ ପବିତ୍ରତାର ପ୍ରତୀକ । ଜୀବନରେ ସ୍ୱାମୀଙ୍କର ସୁଖର ସଙ୍ଗିନୀ ହେବା ପୂର୍ବରୁ ସେ ସାଥୀରେ ରହି ଚାହିଁଲେ ସ୍ୱାମୀଙ୍କ ଦୁଃଖମୟ ଜୀବନର ଗୁରୁ ଭାରକୁ ଲାଘବ କରିବା ପାଇଁ । ରାବଣ ଦ୍ୱାରା ହୃତ ହୋଇ ଲଙ୍କାକୁ ଗଲେ ମଧ୍ୟ କେବଳ ରାମଙ୍କୁ ଧ୍ୟାନ କରି ସେ ତାଙ୍କର ପରିବେଶକୁ 'ଅଶୋକ' କରି ପାରିଥିଲେ । ଋଦ୍ଧି,ସମୃଦ୍ଧିପୂର୍ଣ୍ଣ ରାବଣର ଶତ ପ୍ରଲୋଭନ ମଧ୍ୟ ତାଙ୍କୁ ବଶ କରିପାରି ନ ଥିଲା । ତାଙ୍କ ଦୃଷ୍ଟିରେ—

**ପତିର୍ହି ଦେବତା ନାର୍ଯ୍ୟାଃ ପତିର୍ବନ୍ଧୁଃ ପତିର୍ଗୁରୁଃ ।**
**ପ୍ରାଣୈରପି ପ୍ରିୟଂ ତସ୍ମାଦ୍ ଭର୍ତ୍ତୁଃ କାର୍ଯ୍ୟଂ ବିଶେଷତଃ ॥**

ଅର୍ଥାତ୍ ନାରୀର ପତି ହିଁ ସର୍ବସ୍ୱ ଦେବତା, ବନ୍ଧୁ, ଗୁରୁ । ତେଣୁ ପ୍ରାଣର ବିନିମୟରେ ସ୍ୱାମୀର ବିଶେଷ ଭାବରେ ପ୍ରିୟ କରିବା ହେଉଛି ସ୍ତ୍ରୀର ଧର୍ମ । ସୀତା ହେଉଛନ୍ତି ଭାରତୀୟ ନାରୀର ଆଦର୍ଶ ଓ ଭୂଷଣ ।

ଶ୍ରୀରାମଙ୍କ ସର୍ବତଶଂକର ଶକ୍ତି ହେଉଛି **'ଐଶ୍ୱର୍ଯ୍ୟ'**, କର୍ତ୍ତବ୍ୟ ପାଳନ ହେଉଛି '**ଧର୍ମ**', ରାବଣବଧାଦି ଅନନ୍ତ କୀର୍ତ୍ତି ହେଉଛି ତାଙ୍କର **'ଯଶଃ'**, ତାଙ୍କର ସୌନ୍ଦର୍ଯ୍ୟ ଓ ସୀତା ହେଉଛନ୍ତି ତାଙ୍କର **'ଶ୍ରୀଃ'**, ବିଷୟ ବିତୃଷ୍ଣା ଓ ଅନାସକ୍ତି ହେଉଛି ତାଙ୍କ **'ବୈରାଗ୍ୟ'** ଏବଂ ନିତ୍ୟବ୍ରହ୍ମ ସ୍ୱରୂପତା ହେଉଛି ତାଙ୍କର '**ମୋକ୍ଷ**ବା ଜ୍ଞାନ' । ଏହି ଛ' ଭଗର ଅଧିକାରୀ ହୋଇଥିବାରୁ ସେ ଭଗବାନ୍ । କାରଣ ବିଷ୍ଣୁପୁରାଣରେ କୁହାଯାଇଛି—

**ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ଧର୍ମସ୍ୟ ଯଶସଃ ଶ୍ରିୟଃ ।**
**ବୈରାଗ୍ୟସ୍ୟାଥ ମୋକ୍ଷସ୍ୟ ଷଣ୍ଣାଂ ଭଗ ଇତୀଙ୍ଗନା ॥**

ସୀତା ରାମଙ୍କ ଉପାସକ ହେବାକୁ ହେଲେ ପୁରୁଷ ଭକ୍ତର ପ୍ରଥମ କର୍ତ୍ତବ୍ୟ 'ସତ୍ୟବାଦୀ ହେବା, ଏକପତ୍ନୀବ୍ରତ–ଆଚରଣ କରିବା ଓ କର୍ତ୍ତବ୍ୟ ପରାୟଣ ହେବା' ଏବଂ ପ୍ରତ୍ୟେକ ସ୍ତ୍ରୀଭକ୍ତର ଯୋଗ୍ୟତା

ହେଉଛି—'ନିଜ ସ୍ୱାମୀଙ୍କଠାରେ ଏକନିଷ୍ଠ ଅନୁରାଗିଣୀ ହୋଇ ସ୍ୱାମୀ ସେବାରେ ନିଜକୁ ବିନିଯୋଗ କରି ତାଙ୍କଠାରେ ପ୍ରେମ, ସ୍ନେହ ; ଭକ୍ତି ଓ ଅନୁରାଗ ସବୁ ନିବେଦନ କରିବା' । ନିଜ ଜୀବନରେ ସୀତା ରାମଙ୍କ ଗୁଣଗ୍ରାମକୁ ପ୍ରତିଫଳିତ କରାଇ ସେମାନଙ୍କ ଗୁଣକର୍ମର ସତତ ସ୍ମରଣ ଓ ଓ ମନନ ସକାଶେ ପୂଜା ଓ ରାମାୟଣ ପାଠ ସନ୍ଧିଧ କଲେ ଜୀବନ ମହିମାମୟ ହେବ ।

ରାମ ନାମର ଅନନ୍ତ ଗୁଣ । ହନୁମାନ୍ କେବଳ ରାମ ନାମ ବଳରେ ସମୁଦ୍ର ଲଂଘନ କରିପାରିଥିଲେ । ଦେବ ଦେବ ମହାଦେବ ମଧ୍ୟ ସବୁବେଳେ ରାମ ନାମ ଜପ କରୁଥାନ୍ତି । ତେଣୁ କଳିଯୁଗରେ 'ରାମ' ନାମ ମୂଳକ ତାରକ ମନ୍ତ୍ର ଗୁରୁ କୃପାରୁ ପାଇ ସାଧନାମଗ୍ନ ହେଲେ ଜୀବନରେ ଦିବ୍ୟ ସୁଖ ଆସ୍ୱାଦନ କରିହେବ । କିନ୍ତୁ ନ ହେଲେ—

**'ଶ୍ରୀରାମ ଜୟ ରାମ ଜୟ ଜୟ ରାମ'**---

ଏତିକ ଅନବରତ ଜପ କଲେ ଅନେକ କଷ୍ଟରୁ ମଣିଷ ଉଦ୍ଧାର ପାଇ ପାରିବ । କାରଣ ସେ ଏପରି ଏକ ଦେବତାଙ୍କୁ ବରଣ କରୁଛି, ଯେ କି ନିଜେ ଦୁଃଖ କ'ଣ ଅନୁଭବରେ ଆଣିଛନ୍ତି । ଅନୁଭବରେ ଆଣି ଅନୁଭବୀ ନ ହେଲେ ଅନ୍ୟକୁ ବୁଝି ହେବ ନାହିଁ । ତେଣୁ ପ୍ରଣାମ କଲାବେଳେ କହନ୍ତୁ—

ଆପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାମ୍ ।
ଲୋକାଭିରାମଂ ଶ୍ରୀରାମଂ ଭୂୟୋ ଭୂୟୋ ନମାମ୍ୟହମ୍ ॥

ଏହି ବହୁ ପରୀକ୍ଷିତ ମନ୍ତ୍ର ଦ୍ୱାରା ସଂପୁଟିତ ରାମାୟଣ ଭକ୍ତିର ସହିତ ପାଠ କଲେ ଭକ୍ତର କାମନା ଯେ ନିଶ୍ଚୟ ସିଦ୍ଧ ହେବ—ଏଥିରେ ସନ୍ଦେହ ନାହିଁ ।

# ଶ୍ରୀରାମ ମଙ୍ଗଳତୁଳସୀ

ଯନ୍ମାୟାବଶବର୍ତ୍ତି ବିଶ୍ୱମଖିଳଂ ବ୍ରହ୍ମାଦିଦେବାସୁରା
ଯତ୍ସତ୍ତ୍ୱାଦମୃଷୈବ ଭାତି ସକଳଂ ରଜ୍ଜୌ ଯଥାହେର୍ଭ୍ରମଃ ।
ଯତ୍ପାଦଃ ପ୍ଲବମେକ ଏବ ହି ଭବା-ମ୍ଭୋଧେସ୍ତିତୀର୍ଷାବତାଂ
ବନ୍ଦେଽହଂ ତମଶେଷକାରଣପରଂ ରାମାଖ୍ୟମୀଶଂ ହରିମ୍ ॥ ୧ ॥
(—ବାଳକାଣ୍ଡତଃ)

ପ୍ରସନ୍ନତାଂ ଯା ନ ଗତାଭିଷେକତସ୍ତଥା ନ ମମ୍ଲୌ ବନବାସଦୁଃଖତଃ ।
ମୁଖାମ୍ବୁଜଶ୍ରୀ ରଘୁନନ୍ଦନସ୍ୟ ମେ ସଦାସ୍ତୁ ସା ମଞ୍ଜୁଲମଙ୍ଗଳପ୍ରଦା ॥୨॥
ନୀଳାମ୍ବୁଜଂ ଶ୍ୟାମଳକୋମଳାଙ୍ଗଂ ସୀତାସମାରୋପିତବାମଭାଗମ୍ ।
ପାଣୌ ମହାଶାୟକଚାରୁଚାପଂ ନମାମି ରାମଂ ରଘୁବଂଶନାଥମ୍ ॥୩॥
(—ଅଯୋଧ୍ୟାକାଣ୍ଡତଃ)

ମୂଳଂ ଧର୍ମତରୋର୍ବିବେକଜଳଧେଃ ପୂର୍ଣ୍ଣେନ୍ଦୁମାନନ୍ଦଦଂ
ବୈରାଗ୍ୟାମ୍ବୁଜଭାସ୍କରଂ ହ୍ୟଘଘନଧ୍ୱାନ୍ତାପହଂ ତାପହମ୍ ।
ମୋହାମ୍ଭୋଧରପୁଞ୍ଜପାଟନବିଧୌ ଖେସମ୍ଭବଂ ଶଙ୍କରଂ
ବନ୍ଦେ ବ୍ରହ୍ମକୁଳଂ କଳଙ୍କଶମନଂ ଶ୍ରୀରାମଭୂପପ୍ରିୟମ୍ ॥ ୪ ॥

---

ଅଖିଳ ବ୍ରହ୍ମାଣ୍ଡ, ବ୍ରହ୍ମାଦି ଦେବତା ଓ ଅସୁରଗଣ ଯାହାଙ୍କ ମାୟାର ଅଧୀନ, ରଜ୍ଜୁରେ ସର୍ପ ଭ୍ରାନ୍ତିପରି ସକଳ (ସ୍ଥାବର ଜଙ୍ଗମାତ୍ମକ) ଜଗତ୍ ମିଥ୍ୟା ହେଲେ ହେଁ ଯାହାଙ୍କ (ପାରମାର୍ଥିକ) ସତ୍ତା ଯୋଗୁଁ ସତ୍ୟ ପରି ପ୍ରତୀୟମାନ ହୁଅନ୍ତି, ସଂସାର ସାଗରରୁ ଉଦ୍ଧାର ପାଇବା ପାଇଁ ଯାହାଙ୍କର ପାଦ ହେଉଛି ଭେଳା, ସେହି ସର୍ବକାରଣାତୀତ ରାମ ନାମକ ଈଶ୍ୱରଙ୍କୁ ମୁଁ ବନ୍ଦନା କରୁଛି । ୧ ।

ଶ୍ରୀ ରଘୁନନ୍ଦନ ରାମଚନ୍ଦ୍ରଙ୍କ ମୁଖପଦ୍ମ, ଯାହା ଅଭିଷେକ ହେବ ବୋଲି ଆନନ୍ଦରେ ପ୍ରସନ୍ନ ହୋଇ ନ ଥିଲା କି ବନବାସ ଦୁଃଖରେ ମଉଳି ଯାଇ ନ ଥିଲା, ସେହି ମୁଖ ସବୁବେଳେ ସୁନ୍ଦର ଓ ମଙ୍ଗଳପ୍ରଦ ହେଉ । ୨ ।

ଯାହାଙ୍କ ଅଙ୍ଗ ନୀଳ ପଦ୍ମ ଭଳି ଶ୍ୟାମଳ ଓ କୋମଳ, ଯାହାଙ୍କ ବାମଭାଗରେ ସୀତା ଅବସ୍ଥିତା, ଯାହାଙ୍କ ହାତରେ ବଡଶରଯୁକ୍ତ ସୁନ୍ଦର ଧନୁ, ସେହି ରଘୁବଂଶରନାଥ ରାମଚନ୍ଦ୍ରଙ୍କୁ ନମସ୍କାର କରୁଛି । ୩ ।

ଧର୍ମ ରୂପକ ବୃକ୍ଷର ମୂଳ ବିବେକ ରୂପକ ସାଗରର ଆନନ୍ଦପ୍ରଦ ପୂର୍ଣ୍ଣଚନ୍ଦ୍ର,

ସାନ୍ଦ୍ରାନନ୍ଦପୟୋଦସୌଭଗତନୁଂ ପୀତାମ୍ବରଂ ସୁନ୍ଦରଂ
ପାଣୌ ବାଣଶରାସନଂ କଟିଲସତ୍ତୂଣୀରଭାରଂ ବରମ୍ ।
ରାଜୀବାୟତଲୋଚନଂ ଧୃତଜଟାଜୂଟେନ ସଂଶୋଭିତଂ
ସୀତାଲକ୍ଷ୍ମଣସଂଯୁତଂ ପଥିଗତଂ ରାମାଭିରାମଂ ଭଜେ ॥ ୫ ॥
(—ଅରଣ୍ୟକାଣ୍ଡତଃ)

କୁନ୍ଦେନ୍ଦୀବରସୁନ୍ଦରାବତିବଲୌ ବିଜ୍ଞାନଧାମାବୁଭୌ
ଶୋଭାଢ୍ୟୌ ବରଧନ୍ୱିନୌ ଶ୍ରୁତିନୁତୌ ଗୋବିପ୍ରବୃନ୍ଦପ୍ରିୟୌ ।
ମାୟାମାନୁଷରୂପିଣୌ ରଘୁବରୌ ସଦ୍ଧର୍ମବର୍ମୌ ହିତୌ
ସୀତାନ୍ୱେଷଣତତ୍ପରୌ ପଥିଗତୌ ଭକ୍ତିପ୍ରଦୌ ତୌ ହି ନଃ ॥ ୬ ॥

---

ବୈରାଗ୍ୟ ରୂପକ ପଦ୍ମର ବିକାଶକାରକ ସୂର୍ଯ୍ୟ, ପାପନାଶକ, ଦୁଃଖାନ୍ଧକାର-ନାଶକ, (ତ୍ରି)ତାପ ହରଣକାରୀ, ମୋହରୂପକ ମେଘମାଳାକୁ ଉଡାଇ ନେବାରେ ପବନ ଭଳି ମଙ୍ଗଳକାରକ, ପୃଥ୍ୱୀକୁ ଆଗତ ବ୍ରହ୍ମଙ୍କ ଅବତାରରୂପ, କଳଙ୍କ ନାଶକ, ପ୍ରିୟ ରାଜା ରାମଚନ୍ଦ୍ରଙ୍କୁ ବନ୍ଦନା କରୁଛୁ । 'ପକ୍ଷାନ୍ତରେ :- ବ୍ରହ୍ମକୁଳେ କଳଙ୍କ ଶମନଂ—ବ୍ରହ୍ମକୁଳରେ କଳଙ୍କ ପରି ଯେଉଁ ଦକ୍ଷ ତା'ର ବିନାଶକ, ଶ୍ରୀରାମରାଜାଙ୍କର ପ୍ରିୟ ଶଙ୍କର ବା ଶିବଙ୍କୁ ବନ୍ଦନା କରୁଛୁ ଅର୍ଥ ମଧ୍ୟ ହେବ) । ୪ ।

ଯାହାଙ୍କ ଅଙ୍ଗ ଆନନ୍ଦବାରିବର୍ଷଣକାରୀ ଘନମେଘ ପରି ସୁନ୍ଦର, ଯେ ପୀତାମ୍ବର ପରିହିତ ଓ ଦେଖିବାକୁ ସୁନ୍ଦର, ଯାହାଙ୍କ ହାତରେ ଧନୁର୍ବାଣ ଓ କଟିଦେଶରେ ତୂଣୀରଭାର, ଯାହାଙ୍କ ନେତ୍ର ପଦ୍ମପାଖୁଡା ପରି ଦୀର୍ଘ, ଯେ ଜଟାଜୂଟ ଦ୍ୱାରା ଶୋଭାପାଉଛନ୍ତି ସେହି ସୀତା ଓ ଲକ୍ଷ୍ମଣଙ୍କ ସମେତ ପଥଗାମୀ ସୁନ୍ଦର ରାମଚନ୍ଦ୍ରଙ୍କୁ ଭଜନା କରୁଛୁ । ୫ ।

କୁନ୍ଦପୁଷ୍ପ ପରି ଧବଳ ଶରୀର ଲକ୍ଷ୍ମଣ ଓ ନୀଳକମଳ ପରି ଶ୍ୟାମଳଶରୀର ରାମ—ଉଭୟେ ଅତି ବଳବାନ୍, ଉଭୟେ ବିଜ୍ଞାନୀ, ସୁନ୍ଦର, ଧନୁର୍ଦ୍ଧାରୀ, ବେଦ ଦ୍ୱାରା ବନ୍ଦିତ, ଗୋ ବ୍ରାହ୍ମଣମାନଙ୍କର ପ୍ରିୟ, ମାୟାରେ ମନୁଷ୍ୟରୂପଧାରୀ, ରଘୁବଂଶର ଶ୍ରେଷ୍ଠ ସନ୍ତାନ, ଧର୍ମରକ୍ଷା କରିବାରେ ରକ୍ଷାକବଚ, ମଙ୍ଗଳକାରୀ, ସୀତାନ୍ୱେଷଣ ତତ୍ପର, ପଥଗାମୀ ଭକ୍ତିପ୍ରଦାନକାରୀ—ସେ ଦୁଇଜଣ ଆମର ହୁଅନ୍ତୁ । ୬ ।

ବ୍ରହ୍ମାମ୍ଭୋଧିସମୁଦ୍ଭବଂ କଲିମଲପ୍ରଧ୍ୱଂସନଂ ଚାବ୍ୟୟଂ
ଶ୍ରୀମଚ୍ଛମ୍ଭୁମୁଖେନ୍ଦୁସୁନ୍ଦରବରେ ସଂଶୋଭିତଂ ସର୍ବଦା ।
ସଂସାରାମୟଭେଷଜଂ ସୁଖକରଂ ଶ୍ରୀଜାନକୀଜୀବନଂ
ଧନ୍ୟାସ୍ତେ କୃତିନଃ ପିବନ୍ତି ସତତଂ ଶ୍ରୀରାମନାମାମୃତମ୍ ॥ ୭ ॥
(—କିଷ୍କିନ୍ଧ୍ୟାକାଣ୍ଡତଃ)

ଶାନ୍ତଂ ଶାଶ୍ୱତମପ୍ରମେୟମନଘଂ ନିର୍ବାଣଶାନ୍ତିପ୍ରଦଂ
ବ୍ରହ୍ମାଶମ୍ଭୁଫଣୀନ୍ଦ୍ରସେବ୍ୟମନିଶଂ ବେଦାନ୍ତବେଦ୍ୟଂ ବିଭୁମ୍ ।
ରାମାଖ୍ୟଂ ଜଗଦୀଶ୍ୱରଂ ସୁରଗୁରୁଂ ମାୟାମନୁଷ୍ୟଂ ହରିଂ
ବନ୍ଦେଽହଂ କରୁଣାକରଂ ରଘୁବରଂ ଭୂପାଳଚୂଡ଼ାମଣିମ୍ ॥ ୮ ॥

ନାନ୍ୟା ସ୍ପୃହା ରଘୁପତେ ହୃଦୟେଽସ୍ମଦୀୟେ
ସତ୍ୟଂ ବଦାମି ଚ ଭବାନଖିଳାନ୍ତରାତ୍ମା ।
ଭକ୍ତିଂ ପ୍ରୟଚ୍ଛ ରଘୁପୁଙ୍ଗବ ନିର୍ଭରାଂ ମେ
କାମାଦିଦୋଷରହିତଂ କୁରୁ ମାନସଂ ଚ ॥ ୯ ॥
(—ସୁନ୍ଦରକାଣ୍ଡତଃ)

---

ବ୍ରହ୍ମ-ସାଗରରୁ ସମୁତ୍ପନ୍ନ, କଳିମଳନାଶକ, ଅବିନଶ୍ୱର, ଶିବଙ୍କ ସୁନ୍ଦର ମୁଖଚନ୍ଦ୍ରରେ ସର୍ବଦା ବିରାଜିତ, ଭବବ୍ୟାଧିର ଔଷଧସ୍ୱରୂପ ସୁଖକର ଏବଂ ଜାନକୀଙ୍କ ଜୀବନସଦୃଶ ଶ୍ରୀରାମଙ୍କ ନାମାମୃତ ଯେଉଁ ପୁଣ୍ୟଶୀଳ ଲୋକେ ସବୁବେଳେ ପାନକରନ୍ତି ସେମାନେ ଧନ୍ୟ ଅଟନ୍ତି । ୭ ।

ଶାନ୍ତ, ସନାତନ, ସର୍ବପ୍ରମାଣାତୀତ, ନିଷ୍ପାପ, ନିର୍ବାଣରୂପକ ଶାନ୍ତିଦାତା, ବ୍ରହ୍ମା-ଶିବ ଶେଷନାଗଙ୍କ ଦ୍ୱାରା ସର୍ବଦା ସେବିତ, ବେଦାନ୍ତବେଦ୍ୟ, ପ୍ରଭୁ, ରାମନାମଧାରୀ, ଜଗତର ଈଶ୍ୱର, ଦେବତାମାନଙ୍କର ପୂଜ୍ୟ, ନିଜ ମାୟାରେ ମନୁଷ୍ୟରୂପଧାରୀ, ଦୁଃଖ ହରଣକାରୀ, କୃପାକର, ନୃପତିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ରଘୁବରଙ୍କୁ ମୁଁ ବନ୍ଦନା କରୁଛି । ୮ ।

ହେ ରଘୁପତି ! ଆପଣ ସମସ୍ତଙ୍କ ଅନ୍ତର-ଆତ୍ମା ଅନ୍ତର୍ଯାମୀ ଅଟନ୍ତି । ମୁଁ ସତ କହୁଛି—ମୋର ହୃଦୟରେ ଅନ୍ୟ କୌଣସି ବାସନା ନାହିଁ । ହେ ରଘୁବଂଶ ଶ୍ରେଷ୍ଠ ! ମୋତେ ତୁମ ପ୍ରତି ଐକାନ୍ତିକ ଭକ୍ତି ପ୍ରଦାନ କର ଏବଂ ମୋର ମନକୁ କାମକ୍ରୋଧାଦି ଦୋଷ ମୁକ୍ତକର । ୯ ।

ରାମଂ କାମାରିସେବ୍ୟଂ ଭବଭୟହରଣଂ କାଳମତ୍ତେଭସିଂହଂ
ଯୋଗୀନ୍ଦ୍ରଂ ଜ୍ଞାନଗମ୍ୟଂ ଗୁଣନିଧିମଜିତଂ ନିର୍ଗୁଣଂ ନିର୍ବିକାରମ୍ ।
ମାୟାତୀତଂ ସୁରେଶଂ ଖଳବଧନିରତଂ ବ୍ରହ୍ମବୃନ୍ଦୈକଦେବଂ
ବନ୍ଦେ କୁନ୍ଦାବଦାତଂ ସରସିଜନୟନଂ ଦେବମୁର୍ବୀଶରୂପମ୍ ॥ ୧୦ ॥
(—ଲଙ୍କାକାଣ୍ଡତଃ)

କେକୀକଣ୍ଠାଭନୀଳଂ ସୁରବରବିଲସଦ୍ ବିପ୍ରପାଦାବ୍ଜଚିହ୍ନଂ
ଶୋଭାଢ୍ୟଂ ପୀତବସ୍ତ୍ରଂ ସରସିଜନୟନଂ ସର୍ବଦାସୁପ୍ରସନ୍ନମ୍ ।
ପାଣୌ ନାରାଚଚାପଂ କପିନିକରଯୁତଂ ବନ୍ଧୁନା ସେବ୍ୟମାନଂ
ନୌମୀଡ୍ୟଂ ଜାନକୀଶଂ ରଘୁବରମନିଶଂ ପୁଷ୍ପକାରୂଢ଼ରାମମ୍ ॥ ୧୧ ॥

କୋଶଲେନ୍ଦ୍ରପଦକଞ୍ଜମଞ୍ଜୁଲୌ କୋମଳାବଜମହେଶବନ୍ଦିତୌ ।
ଜାନକୀକରସରୋଜଲାଳିତୌ ଚିନ୍ତକସ୍ୟ ମନଭୃଙ୍ଗସଙ୍ଗିନୌ ॥ ୧୨ ॥

---

ଯେ ମହାଦେବ ଶିବଙ୍କ ଦ୍ୱାରା ପୂଜିତ, ସଂସାର-ଭୟ-ବିନାଶକାରୀ, କାଳ ରୂପକ ମତ୍ତହସ୍ତୀକୁ ବିନାଶ କରିବାରେ ସିଂହ ସଦୃଶ, ଶ୍ରେଷ୍ଠ ଯୋଗୀମାନଙ୍କ ଜ୍ଞାନଗମ୍ୟ, ଗୁଣନିଧି, ଅପରାଜେୟ, ନିର୍ଗୁଣ, ବିକାରରହିତ, ମାୟାତୀତ, ଦେବଗୁରୁ, ପାପୀମାନଙ୍କୁ ନିଧନ କରିବାରେ ତତ୍ପର, ବ୍ରହ୍ମଙ୍କ, ବ୍ରାହ୍ମଣମାନଙ୍କ ଏକମାତ୍ର ଦେବତା, କୁନ୍ଦପୁଷ୍ପ ପରି ପବିତ୍ର, କମଳଲୋଚନ, ପାର୍ଥିବ ରୂପଧାରୀ— ସେହି ଶ୍ରୀରାମଚନ୍ଦ୍ରଙ୍କୁ ବନ୍ଦନା କରୁଛି । ୧୦ ।

ଯାହାଙ୍କ ଅଙ୍ଗର କାନ୍ତି ମୟୂରର କଣ୍ଠପରି ନୀଳ, ଯେ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଯାହାଙ୍କ ବକ୍ଷଃସ୍ଥଳ ବ୍ରାହ୍ମଣ (ଭୃଗୁ)ଙ୍କ ପଦଚିହ୍ନ ଦ୍ୱାରା ଶୋଭିତ, ସୌନ୍ଦର୍ଯ୍ୟଶାଳୀ, ପୀତବାସ, କମଳନେତ୍ର ସର୍ବଦା ସୁପ୍ରସନ୍ନ ଯାହାଙ୍କ ହାତରେ ଧନୁର୍ବାଣ, ଯେ ମର୍କଟମାନଙ୍କ ଦ୍ୱାରା ବେଷ୍ଟିତ, ବନ୍ଧୁସେବିତ ଏବଂ ପୁଷ୍ପକ ରଥରେ ଆରୂଢ଼, ପରମପୂଜ୍ୟ ରଘୁକୁଳ ଶ୍ରେଷ୍ଠ ସୀତାପତି ଶ୍ରୀରାମଚନ୍ଦ୍ରଙ୍କୁ ସର୍ବଦା ନମସ୍କାର କରୁଛି । ୧୧ ।

ଯେଉଁ କୋମଳ ଚରଣ ବ୍ରହ୍ମା ଓ ମହେଶଙ୍କ ଦ୍ୱାରା ପୂଜିତ, ସୀତାଙ୍କ କରକମଳ ଦ୍ୱାରା ସେବିତ, କୋଶଳାଧିପତି ଶ୍ରୀରାମଚନ୍ଦ୍ରଙ୍କ ରମଣୀୟ ପଦ-କମଳଦ୍ୱୟର ଚିନ୍ତକ ବ୍ୟକ୍ତିମାନଙ୍କ ମନୋଭ୍ରମରର ଚିର ସଙ୍ଗୀ ହେଉ । ୧୨ ।

## ଶ୍ରୀରାମଚନ୍ଦ୍ରାଷ୍ଟକମ୍ (ବ୍ୟାସକୃତମ୍)

ଭଜେ ବିଶେଷସୁନ୍ଦରଂ ସମସ୍ତପାପଖଣ୍ଡନମ୍ ।
ସ୍ୱଭକ୍ତଚିତ୍ତରଞ୍ଜନଂ ସଦୈବ ରାମମଦ୍ୱୟମ୍ ॥ ୧ ॥
ଜଟାକଲାପଶୋଭିତଂ ସମସ୍ତପାପନାଶକମ୍ ।
ସ୍ୱଭକ୍ତଭୀତିଭଞ୍ଜନଂ ଭଜେ ହ ରାମମଦ୍ୱୟମ୍ ॥ ୨ ॥
ନିଜସ୍ୱରୂପବୋଧକଂ କୃପାକରଂ ଭବାପହମ୍ ।
ସମଂ ଶିବଂ ନିରଞ୍ଜନଂ ଭଜେ ହ ରାମମଦ୍ୱୟମ୍ ॥ ୩ ॥
ସଦା ପ୍ରପଞ୍ଚକଳ୍ପିତଂ ହ୍ୟନାମରୂପବାସ୍ତବମ୍ ।
ନିରାକୃତିଂ ନିରାମୟଂ ଭଜେ ହ ରାମମଦ୍ୱୟମ୍ ॥ ୪ ॥
ପ୍ରପଞ୍ଚଧାନନିର୍ମଳଂ ବିକଳ୍ପହଂ ନିରାମୟମ୍ ।
ଚିଦେକରୂପସନ୍ତତଂ ଭଜେ ହ ରାମମଦ୍ୱୟମ୍ ॥ ୫ ॥
ଭବାବ୍ଧି ପୋତରୂପକଂ ହ୍ୟଶେଷଦେହକଳ୍ପିତମ୍ ।
ଗୁଣାକରଂ କୃପାକରଂ ଭଜେ ହ ରାମମଦ୍ୱୟମ୍ ॥ ୬ ॥
ମହର୍ଷିବାକ୍ୟବୋଧକୈର୍ବିରାଜମାନବାକ୍ପଦୈଃ ।
ସରୋଜ ଜନ୍ମସେବିତଂ ଭଜେ ହ ରାମମଦ୍ୱୟମ୍ ॥ ୭ ॥

---

ଅତି ସୁନ୍ଦର, ସର୍ବପାପ ଖଣ୍ଡନକାରୀ, ନିଜ ଭକ୍ତର ଚିତ୍ତରଞ୍ଜକ ଏକମାତ୍ର ରାମଙ୍କୁ ଭଜୁଛି ॥ ୧ ॥

କପାଳ ଉପରେ ଜଟାଭାର ଦ୍ୱାରା ଶୋଭା ପାଉଥିବା ସମସ୍ତ ପାପବିନାଶକ ଓ ନିଜ ଭକ୍ତମାନଙ୍କର ଭୟ ଭଞ୍ଜନକାରୀ ଏକମାତ୍ର ରାମଚନ୍ଦ୍ରଙ୍କୁ ଭଜୁଛି ॥ ୨ ॥

ନିଜର ସ୍ୱରୂପବୋଧ ବା ଆତ୍ମବୋଧକାରକ, କୃପାଳୁ, ସଂସାର (ଜନ୍ମ ମୃତ୍ୟୁ) ନାଶକ, ତୁଲ୍ୟ ଦୃଷ୍ଟିସମ୍ପନ୍ନ, ନିରଞ୍ଜନ ଏକମାତ୍ର ଶ୍ରୀରାମଙ୍କୁ ଭଜୁଛି ॥ ୩ ॥

ମାୟା ଦ୍ୱାରା ଭିନ୍ନ ଭିନ୍ନ ଭାବରେ କଳ୍ପିତ, କିନ୍ତୁ ବସ୍ତୁତଃ ନାମ ଓ ରୂପଶୂନ୍ୟ, ଦେହହୀନ, ରୋଗାଦହୀନ, ଅଦ୍ୱିତୀୟ ଶ୍ରୀରାମଙ୍କୁ ଭଜୁଛି ॥ ୪ ॥

ମାୟାରହିତ, ନିର୍ମଳ, ଭେଦବୃତ୍ତିହୀନ, ନିର୍ବିକାର, ସର୍ବଦା ଅଦ୍ୱିତୀୟ ଚିନ୍ମୟ ସ୍ୱରୂପ ଏକମାତ୍ର ରାମଙ୍କୁ ଭଜୁଛି ॥ ୫ ॥

ସଂସାର ସାଗରରେ ନୌକା ସଦୃଶ, ଅନେକ ରୂପରେ କଳ୍ପିତ, ଗୁଣର ଖଣି କୃପାର ଖଣି—ଅଦ୍ୱିତୀୟ ରାମଙ୍କୁ ଏଠାରେ ଭଜନ କର ॥ ୬ ॥

ମହର୍ଷିମାନଙ୍କ ବାକ୍ୟର ଅର୍ଥବୋଧକ ବାଣୀ ଓ ପଦଦ୍ୱାରା ବ୍ରହ୍ମାଙ୍କ ଦ୍ୱାରା ପୂଜିତ ଅଦ୍ୱିତୀୟ ରାମଚନ୍ଦ୍ରଙ୍କୁ ଏଠାରେ ଭଜନ କର ॥ ୭ ॥

ଶିବପ୍ରଦଂ ସୁଖପ୍ରଦଂ ଭବଚ୍ଛିଦଂ ଭ୍ରମାପହମ୍ ।
ବିରାଜମାନ ଦୈଶିକଂ ଭଜେ ହ ରାମମଦ୍ୱୟମ୍ ॥ ୮ ॥
ରମାଷ୍ଟକଂ ପଠନ୍ତି ଯଃ ସୁକରଂ ସୁପୁଣ୍ୟଂ
ବ୍ୟାସେନ ଭାଷିତମିଦଂ ଶୃଣୁତେ ମନୁଷ୍ୟଃ ॥
ବିଦ୍ୟାଂ ଶ୍ରିୟଂ ବିପୁଳସୌଖ୍ୟମନନ୍ତକୀର୍ତ୍ତିଂ ।
ସଂପ୍ରାପ୍ୟ ଦେହବିଲୟେ ଲଭତେ ଚ ମୋକ୍ଷମ୍ ॥

ଇତି ବ୍ୟାସବିରଚିତଂ ଶ୍ରୀମଦ୍ରାମଚନ୍ଦ୍ରାଷ୍ଟକଂ ସଂପୂର୍ଣ୍ଣମ୍ ।

---

## ଶ୍ରୀରାମସ୍ତୋତ୍ରମ୍ (ତୁଳସୀଦାସକୃତମ୍)

ନମାମି ଭକ୍ତବତ୍ସଳଂ କୃପାଳୁଶୀଳ-କୋମଳମ୍ ।
ଭଜାମି ତେ ପଦାମ୍ବୁଜଂ ହ୍ୟକାମିନାଂ ସ୍ୱଧାମଦମ୍ ॥ ୧ ॥
ନିକାମଶ୍ୟାମସୁନ୍ଦରଂ ଭବାମ୍ବୁନାଥମନ୍ଦରମ୍ ।
ପ୍ରଫୁଲ୍ଲ କଞ୍ଜଲୋଚନଂ ମଦାଦି ଦୋଷମୋଚନମ୍ ॥ ୨ ॥
ପ୍ରଲମ୍ବ ବାହୁବିକ୍ରମ ପ୍ରଭୋପ୍ରମେୟ ବୈଭବମ୍ ।
ନିଷଙ୍ଗଚାପଶାୟକଂ ଭଜେ ତ୍ରିଲୋକ-ନାୟକମ୍ ॥ ୩ ॥

---

ମଙ୍ଗଳପ୍ରଦ, ସୁଖପ୍ରଦ, ସଂସାରର ଜନ୍ମାଦି ବନ୍ଧନର ଖଣ୍ଡନ, ଭ୍ରମର ଉଚ୍ଛେଦକ, ଗୁରୁଶ୍ରେଷ୍ଠ ଦ୍ୟୋତକ— ଅଦ୍ୱିତୀୟ ରାମଚନ୍ଦ୍ରଙ୍କୁ ଭଜନ କର ।।୮।।

ଯେଉଁ ଲୋକ ବ୍ୟାସ କଥିତ ଏହି ସୁନ୍ଦର ପୁଣ୍ୟକର ରାମାଷ୍ଟକ ପାଠକରେ ସେ ବିଦ୍ୟା, ଲକ୍ଷ୍ମୀ, ବିପୁଳ ସୁଖ ଓ ଅନନ୍ତକୀର୍ତ୍ତି ଲାଭକରି ଶେଷରେ ମୋକ୍ଷ ପାଏ ।।

କୃପାଳୁ କୋମଳସ୍ୱଭାବଯୁକ୍ତ ଭକ୍ତବତ୍ସଳ ରାମଚନ୍ଦ୍ରଙ୍କୁ ନମସ୍କାର କରୁଛୁ । କାମନାହୀନ ଲୋକଙ୍କୁ ଉତ୍ତମ ସ୍ଥାନ ପ୍ରଦାନକାରୀ ତୁମର ପାଦପଦ୍ମକୁ ଭଜନ କରୁଛୁ । ୧ ।

ନୂଆମେଘଭଳି ସୁନ୍ଦର, ଭବସାଗରରେ ମନ୍ଦର ସଦୃଶ, ପ୍ରସ୍ଫୁଟିତ ପଦ୍ମପରି ନୟନ, ଗର୍ବାଦି ଦୋଷନାଶକ ରାମଚନ୍ଦ୍ରଙ୍କୁ ଭଜନ କରୁଛୁ । ୨ ।

ବିକ୍ରମର ପ୍ରଭା ବିଭବକୁ ଧାରଣ କରିଥିବା ଲମ୍ବ ବାହୁ, ତୂଣୀର ଓ ଧନୁଶର ଧରିଥିବା ତ୍ରିଲୋକର ନାୟକ ରାମଚନ୍ଦ୍ରଙ୍କୁ ଭଜନ କରୁଛୁ । ୩ ।

ଦିନେଶବଂଶମଣ୍ଡନଂ ମହେଶ ଚାପଖଣ୍ଡନମ୍ ।
ମୁନୀନ୍ଦ୍ର ବୃନ୍ଦରଞ୍ଜନଂ ସୁରାରିବୃନ୍ଦଗଞ୍ଜନମ୍ ॥ ୪ ॥
ମନୋଜ-ବୈରିବନ୍ଦିତଂ ଭବାବ୍ଧିପାରକାରଣମ୍ ।
ବିଶୁଦ୍ଧବୋଧବିଗ୍ରହଂ ସମସ୍ତଦୂଷଣାପହମ୍ ॥ ୫ ॥
ନତୋଽହମିନ୍ଦିରାପତିଂ ସୁଖାକରଂ ସତାଂ ଗତିମ୍ ।
ଭଜେ ସଶକ୍ତିସାନୁଜଂ ଶଚୀପତିପ୍ରିୟାନୁଜମ୍ ॥ ୬ ॥
ତ୍ୱଦଙ୍ଘ୍ରିପଙ୍କଜଂ ନରା ଭଜନ୍ତି ଯେ ବିମତ୍ସରାଃ ।
ପତନ୍ତି ନୋ ଭବାର୍ଣ୍ଣବେ ବିତର୍କବୀଚିସଙ୍କୁଲେ ॥ ୭ ॥
ବିବିକ୍ତ ବାସନାଃ ସଦା ଭଜନ୍ତି ମୁକ୍ତୟେ ମୁଦା ।
ନିରସ୍ୟ ଚେନ୍ଦ୍ରିୟାଦିକଂ ପ୍ରୟାନ୍ତି ତେ ଗତିଂ ସ୍ୱକମ୍ ॥ ୮ ॥
ତମେକମଦ୍ଭୁତଂ ପ୍ରଭୁଂ ନିରୀହମୀଶ୍ୱରଂ ବିଭୁମ୍ ।
ଜଗଦ୍‌ଗୁରୁଞ୍ଚ ଶାଶ୍ୱତଂ ତୁରୀୟମେକକେବଲମ୍ ॥ ୯ ॥
ଭଜାମି ଭାବବଲ୍ଲଭଂ କୁଯୋଗିନାଂ ସୁଦୁର୍ଲଭମ୍ ।
ସ୍ୱଭକ୍ତ କଳ୍ପପାଦପଂ ସମସ୍ତସେବ୍ୟମନ୍ୱହମ୍ ॥ ୧୦ ॥

---

ସୂର୍ଯ୍ୟବଂଶର ଭୂଷଣ, ଶିବଧନୁଭଞ୍ଜକ, ଶ୍ରେଷ୍ଠ ମୁନିମାନଙ୍କ ସନ୍ତୋଷବିଧାନକାରୀ, ଅସୁରମାନଙ୍କ ଗର୍ବଗଞ୍ଜକ ଶ୍ରୀରାମଙ୍କୁ ଭଜନ କରୁଛି । ୪ ।

ମନ୍ମଥାରି ଶିବଙ୍କଦ୍ୱାରା ପୂଜିତ, ସଂସାର ସାଗର ପାରହେବା ପାଇଁ କାରଣସ୍ୱରୂପ, ବିଶୁଦ୍ଧ ବୋଧମୟ ବିଗ୍ରହ, ସମସ୍ତ ଦୋଷ ନାଶକ —ରାମଚନ୍ଦ୍ରଙ୍କୁ ଭଜନ କରୁଛି । ୫ ।

ଲକ୍ଷ୍ମୀପତି, ସୁଖର ଖଣି, ସାଧୁମାନଙ୍କର ପତି—ଶ୍ରୀରାମଙ୍କୁ ନମସ୍କାର । ନିଜ ଶକ୍ତି ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହିତ ବିଦ୍ୟମାନ, ଶଚୀପତି ଇନ୍ଦ୍ରଙ୍କର ପ୍ରିୟ ଭାଇ ଉପେନ୍ଦ୍ର ରାମଚନ୍ଦ୍ରଙ୍କୁ ଭଜନ କରୁଛି । ୬ ।

ଅନ୍ୟର ଉନ୍ନତିରେ ଦ୍ୱେଷଶୀଳ ଯେଉଁ ଲୋକମାନେ ତୁମର ପାଦପଦ୍ମ ପୂଜା କରନ୍ତି ସେମାନେ ବିତର୍କ ରୂପକ ଲହରୀପୂର୍ଣ୍ଣ ସଂସାର ସାଗରରେ ପତିତ ହୁଅନ୍ତି ନାହିଁ । ୭ ।

ସେମାନେ ବାସନାସବୁ ତ୍ୟାଗକରି ଆନନ୍ଦରେ ମୁକ୍ତିଦାୟକ ରାମଚନ୍ଦ୍ରଙ୍କୁ ଭଜନ କରନ୍ତି । ଇନ୍ଦ୍ରିୟ ସୁଖ ତ୍ୟାଗକରି ସେମାନେ ନିଜର ମୋକ୍ଷ ଗତିକୁ ପାଆନ୍ତି । ୮ ।

ସେହି ଏକ ଅଦ୍ଭୁତ ପ୍ରଭୁ ଅଭିଳାଷଶୂନ୍ୟ ଈଶ୍ୱର ବିଭୁ ଜଗଦ୍‌ଗୁରୁ ଶାଶ୍ୱତ ଏକ କେବଳ ଭାବପ୍ରିୟ କୁ-ଯୋଗୀମାନଙ୍କର ଦୁର୍ଲଭ୍ୟ ନିଜ ଭକ୍ତମାନଙ୍କର

ଅନୁରୂପ ଭୂପଙ୍କଂ ନତୋଽହମୂର୍ବୀଜାପତିମ୍ ।
ପ୍ରସୀଦ ଦେହି ମେ ବରେ ପଦାବ୍ଜଭକ୍ତିମାଶୁ ତେ ॥ ୧୧ ॥
ପଠନ୍ତି ଯେ ସ୍ତବଂ ଶୁଭଂ ନରା ଅନନ୍ୟଚେତସଃ ।
ବ୍ରଜନ୍ତି ନାବ ସଂଶୟସ୍ତଦୀୟଭକ୍ତି-ସଂଯୁତାଃ ॥ ୧୨ ॥
ଇତି ଶ୍ରୀତୁଳସୀଦାସକୃତଂ ରାମସ୍ତୋତ୍ରଂ ସମାପ୍ତମ୍ ॥

—

## ଶ୍ରୀରାମ ଭୁଜଙ୍ଗପ୍ରୟାତସ୍ତୋତ୍ରମ୍

ବିଶୁଦ୍ଧଂ ପରଂ ସଚ୍ଚିଦାନନ୍ଦରୂପଂ
ଗୁଣାଧାରମାଧାରହୀନଂ ବରେଣ୍ୟମ୍ ।
ମହାନ୍ତଂ ବିଭାନ୍ତଂ ଗୁହାନ୍ତଂ ଗୁଣାନ୍ତଂ
ସୁଖାନ୍ତଂ ସ୍ୱୟଂ ଧାମ ରାମଂ ପ୍ରପଦ୍ୟେ ॥ ୧ ॥
ଶିବଂ ନିତ୍ୟମେକଂ ବିଭୁଂ ତାରକାଖ୍ୟଂ
ସୁଖାକାରମାକାରଶୂନ୍ୟଂ ସୁମାନ୍ୟମ୍ ।
ମହେଶଂ କଳେଶଂ ସୁରେଶଂ ପରେଶଂ
ନରେଶଂ ନିରୀଶଂ ମହୀଶଂ ପ୍ରପଦ୍ୟେ ॥ ୨ ॥

---

କାମନା ପୂରଣକାରୀ କଳ୍ପବୃକ୍ଷ ସଦା ସମସ୍ତଙ୍କ ଦ୍ୱାରା ସେବ୍ୟ ରାମଚନ୍ଦ୍ରଙ୍କୁ ଭଜନ କରୁଛି । ୯-୧୦ ।

ଅନୁରୂପ ରାଜା, ସୀତାଙ୍କର ସ୍ୱାମୀ ରାମଚନ୍ଦ୍ରଙ୍କଠାରେ ମୋର ପ୍ରଣାମ । ହେ ପ୍ରଭୁ ! ତୁମେ ପ୍ରସନ୍ନ ହୁଅ ଏବଂ ମତେ ତୁମ ପାଦପଦ୍ମରେ ଭକ୍ତି ପ୍ରଦାନ କର । ୧୧ ।

ଯେଉଁ ଲୋକମାନେ ଏକମନରେ ଏହି ଶୁଭ ସ୍ତବ ପାଠ କରିବେ ସେମାନେ ଶ୍ରୀରାମଙ୍କ ଭକ୍ତିଲାଭ କରି ଚାଲିବେ । ୧୨ ।

ସକଳ ଗୁଣର ଆଧାର କିନ୍ତୁ ଗୁଣାତୀତ, ହୃଦୟ ଗୁହାରେ ଅବସ୍ଥିତ ଅଥଚ ନିରାଧାର, ବିଶ୍ୱସ୍ତ ସୁଖର ପରପାରରେ ସ୍ଥିତ, ସଚ୍ଚିଦାନନ୍ଦ ସ୍ୱରୂପ ସ୍ୱୟଂ ପ୍ରକାଶ, ସର୍ବକାରଣ ବିଶୁଦ୍ଧ ଜ୍ୟୋତିରୂପ ଶ୍ରୀରାମଙ୍କଠାରେ ଶରଣ ପଶୁଛି । ୧ ।

ଯେ ମଙ୍ଗଳମୟ, ଅଦ୍ୱିତୀୟ ପ୍ରଭୁ ଯାହାଙ୍କ ନାମ ତାରକବ୍ରହ୍ମ, ଯେ

ଯଦାବର୍ଣ୍ଣୟତ୍କ କର୍ଣ୍ଣମୂଳେଽନ୍ତକାଳେ
ଶିବୋ ରାମ ରାମେତି ରାମେତି କାଶ୍ୟାମ୍ ।
ତଦେକଂ ପରଂ ତାରକବ୍ରହ୍ମରୂପଂ
ଭଜେଽହଂ ଭଜେଽହଂ ଭଜେଽହଂ ଭଜେଽହମ୍ ॥ ୩ ॥

ମହାରତ୍ନପୀଠେ ଶୁଭେ କଲ୍ପମୂଳେ
ସୁଖାସୀନମାଦିତ୍ୟକୋଟିପ୍ରକାଶମ୍ ।
ସଦା ଜାନକୀ ଲକ୍ଷ୍ମଣୋପେତମେକଂ
ସଦା ରାମଚନ୍ଦ୍ରଂ ଭଜେଽହଂ ଭଜେଽହମ୍ ॥ ୪ ॥

କ୍ୱଣଦ୍ରତ୍ନମଞ୍ଜୀର ପାଦାରବିନ୍ଦଂ
ଲସନ୍ମେଖଳାଚାରୁପୀତାମ୍ବରାଢ୍ୟମ୍ ।
ମହାରତ୍ନହାରୋଲ୍ଲସତ୍ କୌସ୍ତୁଭାଙ୍ଗଂ
ନଦଚ୍ଚଞ୍ଚରୀମଞ୍ଜରୀଲୋଲମାଲମ୍ ॥ ୫ ॥

ଲସଚ୍ଚନ୍ଦ୍ରିକାସ୍ମେରଶୋଣାଧରାଭଂ
ସମୁଦ୍ୟତ୍ପତଙ୍ଗେନ୍ଦୁକୋଟିପ୍ରକାଶମ୍ ।
ନମଦ୍‌ବ୍ରହ୍ମରୁଦ୍ରାଦିକୋଟୀରରତ୍ନ-
ସ୍ଫୁରତ୍‌କାନ୍ତିନୀରାଜନାରାଧିତାଙ୍ଘ୍ରିମ୍ ॥ ୬ ॥

---

ନିର୍ବିକାର, ନିତ୍ୟ ସୁଖସ୍ୱରୂପ, ସର୍ବକାଳର ଅଧୀଶ୍ୱର ଓ ଜଗତର ବନ୍ଦନୀୟ, ଯାହାଙ୍କର ପ୍ରଭୁ କେହି ନାହିଁ, ଯେ ମହେଶ୍ୱର, ସୁରେଶ୍ୱର ଓ ପରମେଶ୍ୱର ସେହି ନରନାଥ, ରାମରାଜାଙ୍କଠାରେ ମୁଁ ଶରଣ ପଶୁଛି । ୨ ।

କାଶୀରେ ଯେ ମରେ ମହାଦେବ ତାର କର୍ଣ୍ଣରେ ରାମ-ରାମ-ରାମ— ଏହି ମନ୍ତ୍ର ଦିଅନ୍ତି । ତାରକ ବ୍ରହ୍ମସ୍ୱରୂପ ସେହି ସର୍ବପ୍ରଧାନ ପଦାର୍ଥଙ୍କୁ ମୁଁ ବାରମ୍ବାର ବନ୍ଦନା କରୁଅଛି । ୩ ।

ଶୁଭ କଳ୍ପବୃକ୍ଷ ମୂଳରେ, ମହାରତ୍ନ ପୀଠରେ ସୁଖାସୀନ, କୋଟିସୂର୍ଯ୍ୟ-ତେଜସମ୍ପନ୍ନ, ସତତ ଜାନକୀ ଓ ଲକ୍ଷ୍ମଣ ସମନ୍ୱିତ ଅଦ୍ୱିତୀୟ ରାମଚନ୍ଦ୍ରଙ୍କୁ ମୁଁ ସର୍ବଦା ଭଜନା କରୁଅଛି । ୪ ।

ପଦାରବିନ୍ଦରେ ରତ୍ନନୂପୁରଧ୍ୱନିତ, ସୁଶୋଭିତ କଟିହାର ତଥା ଦିବ୍ୟ ପୀତାମ୍ବର ପରିଧାନକାରୀ, ବକ୍ଷସ୍ଥଳରେ ମହାରତ୍ନହାର ଶୋଭିତ, କୌସ୍ତୁଭମଣି ବିରାଜିତ, ଦୋଳାୟମାନ କୁସୁମମାଳାରେ ଭ୍ରମରମାନେ ଗୁଞ୍ଜନରତ । ୫ ।

ଅରୁଣ ଅଧରରେ ଜ୍ୟୋତ୍ସ୍ନାସଦୃଶ ଈଷତ୍ ହାସ୍ୟ ଶୋଭିତ, ଯାହାଙ୍କର

ପୁରଃ ପ୍ରାଞ୍ଜଲୀନାଞ୍ଜନେୟାଦିଭକ୍ତାନ୍
ସ୍ୱଚିନ୍ମୁଦ୍ରୟା ଭଦ୍ରୟା ବୋଧୟନ୍ତମ୍ ।
ଭଜେଽହଂ ଭଜେଽହଂ ସଦା ରାମଚନ୍ଦ୍ରଂ
ତ୍ୱଦନ୍ୟଂ ନ ମନ୍ୟେ ନ ମନ୍ୟେ ନ ମନ୍ୟେ ॥ ୭ ॥
ଯଦା ମତ୍ସମୀପଂ କୃତାନ୍ତଃ ସମେତ୍ୟ
ପ୍ରଚଣ୍ଡପ୍ରକୋପୈର୍ଭଟୈର୍ଭୀଷୟେନ୍ମାମ୍ ।
ତଦାବିଷ୍କରୋଷି ତ୍ୱଦୀୟଂ ସ୍ୱରୂପଂ
ସଦାପତ୍ପ୍ରଣାଶଂ ସକୋଦଣ୍ଡବାଣମ୍ ॥ ୮ ॥
ନିଜେ ମାନସେ ମନ୍ଦିରେ ସନ୍ନିଧେହି
ପ୍ରସୀଦ ପ୍ରସୀଦ ପ୍ରଭୋ ରାମଚନ୍ଦ୍ର ।
ସସୌମିତ୍ରିଣା କୈକେୟୀନନ୍ଦନେନ
ସ୍ୱଶକ୍ତ୍ୟାନୁଭକ୍ତ୍ୟା ଚ ସଂସେବ୍ୟମାନ ॥ ୯ ॥
ସ୍ୱଭକ୍ତାଗ୍ରଗଣ୍ୟୈଃ କପୀଶୈର୍ମହୀଶୈ
ରନୀକୈରନେକୈଶ୍ଚ ରାମ ପ୍ରସୀଦ ।
ନମସ୍ତେ ନମୋଽସ୍ତ୍ୱୀଶ ରାମ ପ୍ରସୀଦ
ପ୍ରଶାଧି ପ୍ରଶାଧି ପ୍ରକାଶଂ ପ୍ରଭୋ ମାମ୍ ॥ ୧୦ ॥

---

କେଉଁଠି ଉଦୀୟମାନ କୋଟିସୂର୍ଯ୍ୟ ଓ ଚନ୍ଦ୍ରତୁଲ୍ୟ, ଚରଣରେ ବ୍ରହ୍ମରୁଦ୍ରାଦି ଦେବତାଗଣ ପ୍ରଣତ । ୬ ।

ସମ୍ମୁଖରେ କୃତାଞ୍ଜଳିପୂର୍ବକ ଅବସ୍ଥିତ ହନୁମାନ ଆଦି ଭକ୍ତମାନଙ୍କୁ କଲ୍ୟାଣପ୍ରଦ ଜ୍ଞାନମୁଦ୍ରା ଦ୍ୱାରା ଜ୍ଞାନୋପଦେଶ ପ୍ରଦାନରେ ତତ୍ପର ସେହି ରାମଚନ୍ଦ୍ରଙ୍କୁ ସର୍ବଦା ଭଜନ କରୁଅଛି । ତାଙ୍କ ଛଡ଼ା ମୁଁ କାହାକୁ ମନରେ ଆଣୁନାହିଁ । ୭ ।

ଯେତେବେଳେ ମୋ ନିକଟକୁ ଯମ ଆସି ସ୍ୱୀୟ ଯୋଦ୍ଧାମାନଙ୍କ ସହିତ ଭୀଷଣ କ୍ରୋଧ ପ୍ରକାଶ କରି ଭୟ ଦେଖାଇବେ, ସେତେବେଳେ ସକଳ କାଳରେ ବିପଦନାଶନକାରୀ ଧନୁର୍ବାଣଧାରୀ ଆପଣଙ୍କର ମୂର୍ତ୍ତି ମୋ ଆଗରେ ଅବଶ୍ୟ ପ୍ରାଦୁର୍ଭୂତ କରିବେ । ୮ ।

ହେ ପ୍ରଭୁ ରାମଚନ୍ଦ୍ର, ପ୍ରସନ୍ନ ହୁଅନ୍ତୁ, ଲକ୍ଷ୍ମଣଙ୍କ ସହିତ କୈକେୟୀନନ୍ଦନ (ଭରତ) ନିଜ ଶକ୍ତି ସହିତ ଅନୁଗତ ଭାବେ ଆପଣଙ୍କର ସେବା କରୁଛନ୍ତି, ସେହି ରୂପରେ ମୋର ମନମନ୍ଦିରରେ ଉପସ୍ଥିତ ହୁଅନ୍ତୁ । ୯ ।

ନିଜର ଭକ୍ତାଗ୍ରଗଣ୍ୟ କପିରାଜ ସକଳ, ଭୂପାଳ ସମସ୍ତ ଏବଂ ବହୁସୈନ୍ୟ

ତ୍ୱମେବାସି ଦୈବଂ ପରଂ ମେ ଯଦେକଂ
ସୁଚୈତନ୍ୟମେତତ୍ତ୍ୱଦନ୍ୟଂ ନ ମନ୍ୟେ ।
ଯତୋଽଭୂଦମେୟଂ ବିୟଦ୍‌ବାୟୁତେଜୋ
ଜଲୋର୍ବ୍ୟାଦିକାର୍ଯ୍ୟଂ ଚରଂ ଚାଚରଂ ଚ ॥ ୧୧ ॥

ନମଃ ସଚ୍ଚିଦାନନ୍ଦରୂପାୟ ତସ୍ମୈ
ନମୋ ଦେବଦେବାୟ ରାମାୟ ତୁଭ୍ୟମ୍ ।
ନମୋ ଜାନକୀଜୀବିତେଶାୟ ତୁଭ୍ୟଂ
ନମଃ ପୁଣ୍ଡରୀକାୟତାକ୍ଷାୟ ତୁଭ୍ୟମ୍ ॥ ୧୨ ॥

ନମୋ ଭକ୍ତିଯୁକ୍ତାନୁରକ୍ତାୟ ତୁଭ୍ୟଂ
ନମଃ ପୁଣ୍ୟପୁଞ୍ଜୈକଲଭ୍ୟାୟ ତୁଭ୍ୟମ୍ ।
ନମୋ ବେଦବେଦ୍ୟାୟ ଚାଦ୍ୟାୟ ପୁଂସେ
ନମଃ ସୁନ୍ଦରାୟେନ୍ଦିରାବଲ୍ଲଭାୟ ॥ ୧୩ ॥

ନମୋ ବିଶ୍ୱକର୍ତ୍ରେ ନମୋ ବିଶ୍ୱହର୍ତ୍ରେ
ନମୋ ବିଶ୍ୱଭୋକ୍ତ୍ରେ ନମୋ ବିଶ୍ୱମାତ୍ରେ ।
ନମୋ ବିଶ୍ୱନେତ୍ରେ ନମୋ ବିଶ୍ୱଜେତ୍ରେ
ନମୋ ବିଶ୍ୱପିତ୍ରେ ନମୋ ବିଶ୍ୱମାତ୍ରେ ॥ ୧୪ ॥

---

ସମନ୍ୱିତ ପ୍ରଭୁ ରାମଚନ୍ଦ୍ର ମୋଠାରେ ପ୍ରସନ୍ନ ହୁଅନ୍ତୁ, ହେ ପ୍ରଭୁ, ମୋତେ ଉତ୍ତମଭାବେ ଉପଦେଶ ଦିଅନ୍ତୁ । ୧୦ ।

ଆପଣଙ୍କଠାରୁ ଆକାଶ, ବାୟୁ ତେଜ, ଜଳ, ପୃଥିବୀ ପ୍ରଭୃତି ଅପରିମିତ ଚରାଚର ଉତ୍ପନ୍ନ ହୋଇଅଛି । ଏହା ନିତ୍ୟ ଚୈତନ୍ୟସ୍ୱରୂପ ଆପଣ ହିଁ ମୋର ପରମ ଦେବତା ଅଟନ୍ତି । ବିଶ୍ୱବ୍ରହ୍ମାଣ୍ଡ ଆପଣଠାରୁ ଭିନ୍ନ ନୁହେ । ୧୧ ।

ସଚ୍ଚିଦାନନ୍ଦରୂପ ରାମଙ୍କୁ ନମସ୍କାର । ହେ ଦେବ ଦେବ ରାମ ଆପଣଙ୍କୁ ନମସ୍କାର; ଜାନକୀ ଜୀବନ ଆପଣଙ୍କୁ ନମସ୍କାର; ପୁଣ୍ଡରୀକ ବିଶାଳନେତ୍ର ଆପଣଙ୍କୁ ନମସ୍କାର । ୧୨ ।

ଭକ୍ତମାନଙ୍କ ପ୍ରତି ଅନୁରକ୍ତ ଆପଣଙ୍କୁ ନମସ୍କାର । ଏକମାତ୍ର ପୁଣ୍ୟପୁଞ୍ଜ-ଲଭ୍ୟ ଆପଣଙ୍କୁ ନମସ୍କାର । ବେଦପ୍ରତିପାଦିତ ଆଦ୍ୟପୁରୁଷ ଆପଣଙ୍କୁ ନମସ୍କାର । ସୁନ୍ଦର ମୂର୍ତ୍ତି ଆପଣଙ୍କୁ ନମସ୍କାର । ୧୩ ।

ବିଶ୍ୱକର୍ତ୍ତାଙ୍କୁ ନମସ୍କାର, ବିଶ୍ୱହର୍ତ୍ତାଙ୍କୁ ନମସ୍କାର, ବିଶ୍ୱଭୋକ୍ତାଙ୍କୁ ନମସ୍କାର, ବିଶ୍ୱଜ୍ଞାତାଙ୍କୁ ନମସ୍କାର, ବିଶ୍ୱନେତାଙ୍କୁ ନମସ୍କାର, ବିଶ୍ୱଦେବଙ୍କୁ ନମସ୍କାର, ବିଶ୍ୱପିତା ଓ ବିଶ୍ୱଧାତାଙ୍କୁ ନମସ୍କାର । ୧୪ ।

ନମସ୍ତେ ନମସ୍ତେ ସମସ୍ତ ପ୍ରପଞ୍ଚ
ପ୍ରଭୋଗ ପ୍ରୟୋଗ ପ୍ରମାଣ ପ୍ରବୀଣ ।
ମଦୀୟଂ ମନସ୍ତ୍ୱତ୍ ପଦଦ୍ୱନ୍ଦ୍ୱସେବାଂ
ବିଧାତୁଂ ପ୍ରବୃତ୍ତଂ ସୁଚୈତନ୍ୟସିଦ୍ଧ୍ୟୈ ॥ ୧୫ ॥
ଶିଳାପି ତ୍ୱଦଙ୍ଘ୍ରିକ୍ଷମାସଙ୍ଗିରେଣୁ
ପ୍ରସାଦାଦ୍ଧି ଚୈତନ୍ୟମାଧତ୍ତ ରାମ ।
ନରସ୍ତ୍ୱତ୍ପଦଦ୍ୱନ୍ଦ୍ୱସେବାବିଧାନା
ତ୍ସୁଚୈତନ୍ୟମେତୀତି କିଂ ଚିତ୍ରମତ୍ର ॥ ୧୬ ॥
ପବିତ୍ରଂ ଚରିତ୍ରଂ ବିଚିତ୍ରଂ ତ୍ୱଦୀୟଂ
ନରା ଯେ ସ୍ମରନ୍ତ୍ୟନ୍ୱହଂ ରାମଚନ୍ଦ୍ର ।
ଭବନ୍ତଂ ଭବାନ୍ତଂ ଭରନ୍ତଂ ଭଜନ୍ତୋ
ଲଭନ୍ତେ କୃତାନ୍ତଂ ନ ପଶ୍ୟନ୍ତ୍ୟତୋଽନ୍ତେ ॥ ୧୭ ॥
ସପୁଣ୍ୟଃ ସଗଣ୍ୟଃ ଶରଣ୍ୟୋ ମମାୟଂ
ନରୋ ବେଦ ଯୋ ଦେବଚୂଡାମଣିଂ ତ୍ୱାମ୍ ।
ସଦାକାରମେକଂ ଚିଦାନନ୍ଦରୂପଂ
ମନୋବାଗଗମ୍ୟଂ ପରଂ ଧାମ ରାମ ॥ ୧୮ ॥

---

ସମସ୍ତ-ପ୍ରପଞ୍ଚର-ଭୋଗ-ପ୍ରୟୋଗ-ପ୍ରମାଣ-ପ୍ରବୀଣ ଆପଣଙ୍କୁ ନମସ୍କାର । ମୋର ମନ ତତ୍ତ୍ୱଜ୍ଞାନ ଲାଭ ନିମନ୍ତେ ଆପଣଙ୍କର ଚରଣଯୁଗଳ ସେବାକରିବା ପାଇଁ ପ୍ରବୃତ୍ତ ହୋଇଅଛି । ୧୫ ।

ହେ ରାମଚନ୍ଦ୍ର ! ଆପଣଙ୍କ ଚରଣର ଧୂଳିକଣାର ପ୍ରସାଦରୁ ପଥର ମଧ୍ୟ ଚେତନାଯୁକ୍ତ ହୋଇ ( ଅହଲ୍ୟାଙ୍କ ଉଦ୍ଧାର ଘଟି ) ଅଛି । ସେପରସ୍ଥଳେ ମନୁଷ୍ୟ ଆପଣଙ୍କ ଚରଣ ସେବାକଲେ ଯେ ତତ୍ତ୍ୱଜ୍ଞାନ ଲାଭ କରିବ, ଏଥିରେ ବା ଆଶ୍ଚର୍ଯ୍ୟ କ'ଣ ଅଛି ? । ୧୬ ।

ହେ ରାମଚନ୍ଦ୍ର, ଯେ ଜଗତର ପରିପାଳକ ଆପଣଙ୍କ ଭଜନା କରି ପବିତ୍ର ବିଚିତ୍ର ଚରିତ୍ର ସ୍ମରଣ କରେ ସେ ସଂସାର ତାପରୁ ଉଦ୍ଧାର ଲାଭ କରେ ଓ ଅନ୍ତ କାଳରେ କୃତାନ୍ତ ଦର୍ଶନ କରେ ନାହିଁ । ୧୭ ।

ହେ ରାମଚନ୍ଦ୍ର. ଆପଣ ଦେବଚୂଡ଼ାମଣି, ନିତ୍ୟମୂର୍ତ୍ତି, ବାକ୍ୟ ତଥା ମନର ଅତୀତ; ଚିଦାନନ୍ଦସ୍ୱରୂପ, ପରମଜ୍ୟୋତିଃସ୍ୱରୂପ ଅଟନ୍ତି । ଯେ ବ୍ୟକ୍ତି ଆପଣଙ୍କୁ ଏ ମୋର ଶରଣ ବୋଲି ବୁଝିଥାଏ ସେହି ହିଁ ପୁଣ୍ୟବାନ୍ ଏବଂ ଗଣନୀୟ । ୧୮ ।

ପ୍ରଚଣ୍ଡପ୍ରତାପପ୍ରଭାବାଭିଭୂତ
ପ୍ରଭୂତାରିବୀର ପ୍ରଭୋ ରାମଚନ୍ଦ୍ର ।
ବଲଂ ତେ କଥଂ ବର୍ଣ୍ଣ୍ୟତେଽତୀବ ବାଲ୍ୟେ
ଯତୋଽଖଣ୍ଡି ଚଣ୍ଡୀଶକୋଦଣ୍ଡଦଣ୍ଡମ୍ ॥ ୧୯ ॥
ଦଶଗ୍ରୀବମୁଗ୍ରଂ ସପୁତ୍ରଂ ସମିତ୍ରଂ,
ସରିଦ୍ଦୁର୍ଗମଧ୍ୟସ୍ଥରକ୍ଷୋ ଗଣେଶମ୍ ।
ଭବନ୍ତଂ ବିନା ରାମବୀରୋ ନରୋ ବା
ସୁରୋ ବାମରୋ ବା ଜୟେତ୍କସ୍ତ୍ରିଲୋକ୍ୟାମ୍ ॥ ୨୦ ॥
ସଦା ରାମରାମେତି ରାମାମୃତଂ ତେ,
ସଦାରାମମାନନ୍ଦନିଷ୍ୟନ୍ଦକନ୍ଦମ୍ ।
ପିବନ୍ତଂ ନମନ୍ତଂ ସୁଦନ୍ତଂ ହସନ୍ତଂ
ହନୂମନ୍ତମନ୍ତର୍ଭଜେ ତଂ ନିତାନ୍ତମ୍ ॥ ୨୧ ॥
ସଦା ରାମରାମେତି ରାମାମୃତଂ ତେ
ସଦାରାମମାନନ୍ଦନିଷ୍ୟନ୍ଦକନ୍ଦମ୍ ।
ପିବନ୍ନନ୍ୱହଂ ନନ୍ୱହଂ ନୈବ ମୃତ୍ୟୋ
ର୍ବିଭେମି ପ୍ରସାଦାଦସାଦାତ୍ତବୈବ ॥ ୨୨ ॥

---

ହେ ପ୍ରଭୁ ରାମଚନ୍ଦ୍ର ! ଆପଣ ପ୍ରଚଣ୍ଡ ପ୍ରତାପ ପ୍ରଭାବରେ ଅଗଣିତ ଶତ୍ରୁ ବୀରମାନଙ୍କୁ ଅଭିଭୂତ କରି ଅଛନ୍ତି ଓ ଅଳ୍ପ ବୟସରେ ହରଧନୁ ଭାଙ୍ଗି ଛନ୍ତି, ଏହି ଅପାର ବଳର ବର୍ଣ୍ଣନା ବା କି ପ୍ରକାରେ କରିବ ? ।୧୯।

ହେ ରାମ, ସାଗର ଦୁର୍ଗ ମଧ୍ୟସ୍ଥ, ରାକ୍ଷସବୃନ୍ଦର ଅଧିପତି ଉଗ୍ର ରାବଣକୁ ସପୁତ୍ର ଓ ସମିତ୍ର ଜୟ କରିବା ଆପଣଙ୍କ ବ୍ୟତୀତ ତୈଲୋକ୍ୟ ମଣ୍ଡଳରେ ସୁରାସୁର ମାନବ ବୀର କିଏ ସମର୍ଥ ହୋଇଥାନ୍ତା ? ।୨୦।

ହେ ରାମ, ସଜ୍ଜନମାନଙ୍କର ଆରାମପ୍ରଦ ଆନନ୍ଦ ପ୍ରସ୍ରବଣର ମୂଳ ଉତ୍ସ ଆପଣଙ୍କ 'ରାମ' ନାମାମୃତ ଯେ ସତତ ପାନକରେ, ଆପଣଙ୍କୁ ପ୍ରଣାମ କରେ, ଯାହାଙ୍କର ଦଶନ ପଂକ୍ତି ଓ ହାସ୍ୟ ରମଣୀୟ, ସେହି ହନୁମାନଙ୍କୁ ମୁଁ ଅନ୍ତରରେ ଏକାନ୍ତ ଭଜନା କରୁଅଛି ।୨୧।

ହେ ରାମ, ସଜ୍ଜନଗଣଙ୍କର ସତତ ଆରାମଦାୟକ ଆନନ୍ଦ ନିର୍ଝରର ମୂଳସ୍ଥାନ 'ରାମ' ଏହି ନାମ ରୂପକ ଅମୃତ ମୁଁ ପ୍ରତିଦିନ ପାନକରିବି ଓ ଆପଣଙ୍କ ପ୍ରସାଦରୁ ମୃତ୍ୟୁକୁ ମୁଁ ଭୟ କରିବି ନାହିଁ ।୨୨।

ଅସୀତାସମେତୈରକୋଦଣ୍ଡ ଭୂଷୈ,
　　　ରସୌମିତ୍ରିବନ୍ଦ୍ୟୈରଚଣ୍ଡପ୍ରତାପୈଃ ।
ଅଲଙ୍କେଶକାଳୈରସୁଗ୍ରୀବମିତ୍ରୈ
　　　ରରାମାଭିଧେୟୈରଲଂ ଦୈବତୈର୍ନଃ ॥ ୨୩ ॥
ଅବୀରାସନସ୍ଥୈରଚିନ୍ମୁଦ୍ରିକାଢ୍ୟୈ
　　　ରଭକ୍ତାଞ୍ଜନେୟାଦିତତ୍ତ୍ୱପ୍ରକାଶୈଃ ।
ଅମନ୍ଦାରମୂଳୈରମନ୍ଦାରମାଳୈ
　　　ରରାମାଭିଧେୟୈରଲଂ ଦୈବତୈର୍ନଃ ॥ ୨୪ ॥
ଅସିନ୍ଧୁପ୍ରକୋପୈରବନ୍ଦ୍ୟ ପ୍ରତାପୈ
　　　ରବନ୍ଧୁପ୍ରୟାଣୈରମନ୍ଦସ୍ମିତାଢ୍ୟୈଃ ।
ଅଦଣ୍ଡପ୍ରବାସୈରଖଣ୍ଡପ୍ରବୋଧୈ
　　　ରରାମାଭିଧେୟୈରଲଂ ଦୈବତୈର୍ନଃ ॥୨୫॥
ହରେରାମ ସୀତାପତେ ରାବଣାରେ
　　　ଖରାରେ ମୁରାରେଽସୁରାରେ ପରେତି ।
ଲପନ୍ତଂ ନୟନ୍ତଂ ସଦାକାଲମେବଂ
　　　ସମାଲୋକୟାଲୋକୟା ଶେଷବନ୍ଧୋ ॥ ୨୬ ॥

---

ଯେ ସୀତାସମନ୍ୱିତ ନୁହନ୍ତି, ଯେ କୋଦଣ୍ଡ ଭୂଷଣ ନୁହନ୍ତି, ଯେ ସୌମିତ୍ରିଙ୍କର ବନ୍ଦନୀୟ ନୁହନ୍ତି ଯେ ପ୍ରଚଣ୍ଡ ପ୍ରତାପଶାଳୀ ନୁହନ୍ତି, ଯେ ରାବଣଙ୍କୁ ମାରି ନାହାନ୍ତି, ଯେ ସୁଗ୍ରୀବର ମିତ୍ର ନୁହନ୍ତି ଯାହାଙ୍କର ନାମ 'ରାମ' ନୁହେଁ— ଏପରି ଦେବତାଙ୍କଠାରେ ମୋର ପ୍ରୟୋଜନ ନାହିଁ ।୨୩।

ଯେ ବୀରାସନରେ ଆସୀନ ନୁହନ୍ତି ଜ୍ଞାନମୟୀ ମୁଦ୍ରା ଯାହାର ହାତରେ ନାହିଁ, ହନୁମାନ ଆଦି ଭକ୍ତମାନଙ୍କଠାରେ ଯେ ତତ୍ତ୍ୱ ପ୍ରକାଶ କରନ୍ତି ନାହିଁ, ଯେ ମନ୍ଦାର ମୂଳରେ ବସିନଥାନ୍ତି, ମନ୍ଦାର ମାଳା ଶୋଭିତ ନୁହନ୍ତି ରାମ ଯାହାଙ୍କର ନାମ ନୁହେଁ ଏହିପରି ଦେବତାଙ୍କଠାରେ ମୋର ପ୍ରୟୋଜନ ନାହିଁ ।୨୪।

ସମୁଦ୍ର ପ୍ରତି ଯେ କୋପ କରିନାହାନ୍ତି ଯା'ର ପ୍ରତାପ ବନ୍ଦନୀୟ ନୁହେ, ଯାହାର ବନ୍ଧୁବିଚ୍ଛେଦ ଘଟିନାହିଁ, ଯାହାର ମୁଖରେ ମୃଦୁମନ୍ଦ ଈଷତ୍ ହାସ୍ୟ ନାହିଁ, ଦଣ୍ଡକାରଣ୍ୟରେ ଯେ ପ୍ରବାସ କରିନାହାନ୍ତି, ଯେ ଆତ୍ମବସ୍ତୁଜ୍ଞ ନୁହନ୍ତି, ଯାହାର ନାମ ରାମ ନୁହେ—ସେଭଳି ଦେବତାଙ୍କଠାରେ ମୋର ପ୍ରୟୋଜନ ନାହିଁ ।୨୫।

ହେ ହରି, ହେ ରାମ, ହେ ସୀତାପତି ହେ ରାବଣାରି

ନମସ୍ତେ ସୁମିତ୍ରାସୁପୁତ୍ରାଭିବନ୍ଦ୍ୟ
ନମସ୍ତେ ସଦା କୈକୟୀନନ୍ଦନେଡ୍ୟ ।
ନମସ୍ତେ ସଦା ବାନରାଧୀଶବନ୍ଦ୍ୟ
ନମସ୍ତେ ନମସ୍ତେ ସଦା ରାମଚନ୍ଦ୍ର ॥ ୨୭ ॥

ପ୍ରସୀଦ ପ୍ରସୀଦ ପ୍ରଚଣ୍ଡପ୍ରତାପ
ପ୍ରସୀଦ ପ୍ରସୀଦ ପ୍ରଚଣ୍ଡାରିକାଳ ।
ପ୍ରସୀଦ ପ୍ରସୀଦ ପ୍ରପନ୍ନାନୁକମ୍ପିନ୍
ପ୍ରସୀଦ ପ୍ରସୀଦ ପ୍ରଭୋ ରାମଚନ୍ଦ୍ର ॥ ୨୮ ॥

ଭୁଜଙ୍ଗପ୍ରୟାତଂ ପରଂ ବେଦସାରଂ
ସଦା ରାମଚନ୍ଦ୍ରସ୍ୟ ଭକ୍ତ୍ୟା ଚ ନିତ୍ୟମ୍ ।
ପଠନ୍ ସନ୍ତତଂ ଚିନ୍ତୟନ୍ ସ୍ୱାନ୍ତରଙ୍ଗେ
ସ ଏବ ସ୍ୱୟଂ ରାମଚନ୍ଦ୍ରଃ ସ ଧନ୍ୟଃ ॥ ୨୯ ॥

ଇତି ଶ୍ରୀମତ୍ପରମହଂସ ପରିବ୍ରାଜକାଚାର୍ଯ୍ୟସ୍ୟ ଶ୍ରୀଗୋବିନ୍ଦଭଗବତ୍ପୂଜ୍ୟପାଦ-ଶିଷ୍ୟସ୍ୟଶ୍ରୀମଚ୍ଛଙ୍କରଭଗବତଃକୃତୌ ଶ୍ରୀରାମଭୁଜଙ୍ଗପ୍ରୟାତସ୍ତୋତ୍ରଂ ସଂପୂର୍ଣ୍ଣମ୍ ॥

—

---

ହେ ଖରାରି, ହେ ମୁରାରି, ହେ ଅସୁରାରି, ହେ ବୋଲି ବାଲ ଯାଚନ କରୁଥିବା ବ୍ୟକ୍ତିଙ୍କୁ ଆପଣ ଦେଖନ୍ତୁ। ଭଲଦୃଷ୍ଟି ଦିଅନ୍ତୁ ।୨୬।

ହେ ସୁମିତ୍ରାନନ୍ଦନଙ୍କ ପୂଜ୍ୟ ଆପଣଙ୍କୁ ନମସ୍କାର, ହେ କୈକେୟୀ ନନ୍ଦନଙ୍କ ପୂଜ୍ୟ ଆପଣଙ୍କୁ ନମସ୍କାର, ହେ ବାନରପତି ସୁଗ୍ରୀବଙ୍କ ପୂଜ୍ୟ ଆପଣଙ୍କୁ ନମସ୍କାର ।୨୭।

ହେ ପ୍ରଚଣ୍ଡ ପ୍ରତାପ ପ୍ରସନ୍ନ ହୁଅନ୍ତୁ । ହେ ପ୍ରଚଣ୍ଡ ଶତ୍ରୁକାଳରୂପୀ ପ୍ରସନ୍ନ ହୁଅନ୍ତୁ, ଶରଣାଗତରେ ଅନୁକମ୍ପା କାରକ ପ୍ରଭୁ ରାମଚନ୍ଦ୍ର ପ୍ରସନ୍ନ ହୁଅନ୍ତୁ ।୨୮।

ଯେଉଁ ବ୍ୟକ୍ତି ଭୁଜଙ୍ଗପ୍ରୟାତଛନ୍ଦ ରଚିତ ଶ୍ରୀରାମଙ୍କ ବେଦସାର ପରମସ୍ତବ ଆନନ୍ଦରେ ଭକ୍ତିସହ ପାଠକରିବ ଏବଂ ଅନ୍ତଃକରଣରେ ସତତ ଚିନ୍ତା କରିବ ସେ ଧନ୍ୟ ଓ ସେ ଶ୍ରୀରାମଚନ୍ଦ୍ରଙ୍କ ସାନ୍ନିଧ୍ୟ ଲାଭକରିବ ।୨୯।

—

# ଶ୍ରୀରାମସହାୟସ୍ତୋତ୍ର

ଶ୍ୟାମାମ୍ବୁଦ.ଭମରବିନ୍ଦବିଶାଳନେତ୍ରଂ
ବନ୍ଧୂକପୁଷ୍ପସଦୃଶାଧରପାଣିପାଦମ୍ ।
ସୀତାସହାୟମୁଦିତଂ ଧୃତଚାପବାଣଂ
ରାମଂ ନମାମି ଶିରସା ରମଣୀୟବେଶମ୍ ॥ ୧ ॥

ପଟୁଜଳଧରଧୀରଧ୍ୱାନମାଦାୟ ଚାପଂ
ପବନଦମନମେକଂ ବାଣମାକୃଷ୍ୟ ତୂଣାତ୍ ।
ଅଭୟବଚନଦାୟୀ ସାନୁଜଃ ସର୍ବତୋ ମେ
ରଣହତଦନୁଜେନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୨ ॥

ଦଶରଥକୁଳଦୀପୋଽମେୟବାହୁପ୍ରତାପୋ
ଦଶବଦନସକୋପଃ କ୍ଷାଳିତାଶେଷପାପଃ ।
କୃତସୁରରିପୁଘାତୋ ନନ୍ଦିତାନେକଭୂପୋ
ବିଗତତିମିରପଙ୍କୋ ରାମଚନ୍ଦ୍ରଃ ସହାୟଃ ॥ ୩ ॥

---

ଯେ ଜଳମେଘତୁଲ୍ୟ ଶ୍ୟାମଳବର୍ଣ୍ଣ, ବିଶାଳ କମଳ ନେତ୍ର, ବନ୍ଧୂକ ପୁଷ୍ପତୁଲ୍ୟ ଆରକ୍ତ ଓଷ୍ଠ, ଓ ହସ୍ତ ତଥା ପଦଯୁକ୍ତ, ସୀତାଙ୍କ ସହ ବିରାଜମାନ, ଅଭ୍ୟୁଦୟଶୀଳ, ଧନୁର୍ବାଣଧାରୀ, ସୁନ୍ଦରବେଶ ସେହି ଶ୍ରୀରାମଙ୍କୁ ମସ୍ତକଦ୍ୱାରା ପ୍ରଣାମ କରୁଅଛୁ । ୧ ।

ଯେ ପ୍ରୌଢ଼ ମେଘସମାନ ଧୀର ତଥା ଗମ୍ଭୀର, ଟଙ୍କାର ଧ୍ୱନିକାରକ ଧନୁର୍ଧାରୀ, ବାୟୁଠାରୁ ବେଗଶୀଳ ଗୋଟିଏ ବାଣ ତୂଣୀରରୁ ବାହାର କରି, ଭୟ କରନାହିଁ କହି ନିଜ ଆଶ୍ରିତଙ୍କୁ ଅଭୟ ଦେଉଛନ୍ତି, ଦାନବରାଜ ରାବଣକୁ ଯୁଦ୍ଧରେ ମାରିଛନ୍ତି ସେହି ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ମୋର ସହାୟ ହୁଅନ୍ତୁ । ୨ ।

ଯେ ଦଶରଥଙ୍କ କୁଳଦୀପ, ଯାହାର ବାହୁବଳ ଅସୀମବଳ, ରାବଣଠାରେ କ୍ରୋଧ ପ୍ରକାଶକାରୀ, ସକଳପାପ ଦୂରକାରୀ, ଅସୁରମାନଙ୍କ ସନ୍ତାପଦାତା, ବହୁ ରାଜାଙ୍କ ଆନନ୍ଦକାରୀ, ଅଜ୍ଞାନ ତଥା ପାପରହିତ ଶ୍ରୀରାମ ମୋର ସହାୟକ ହୁଅନ୍ତୁ । ୩ ।

କୁବଳୟଦଳନୀଳଃ କାମିତାର୍ଥପ୍ରଦୋ ମେ
କୃତମୁନିଜନରକ୍ଷୋ ରକ୍ଷସାମେକହନ୍ତା ।
ଅପହୃତଦୁରିତୋଽସୌ ନାମମାତ୍ରେଣପୁଂସା -
ମଖିଲସୁରନୃପେନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୪ ॥

ଅସୁରକୁଲକୃଶାନୁର୍ମାନସାମ୍ଭୋଜଭାନୁଃ
ସୁରନରନିକରାଣାମଗ୍ରଣୀର୍ମେ ରଘୂଣାମ୍ ।
ଅଗଣିତଗୁଣସୀମା ନୀଳମେଘୌଘଧାମା
ଶମଦମିତମୁନୀନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୫ ॥

କୁଶିକତନୟଯାଗଂ ରକ୍ଷିତା ଲକ୍ଷ୍ମଣାଢ୍ୟଃ
ପବନଶରନିକାୟକ୍ଷିପ୍ତମାରୀଚମାୟଃ ।
ବିଦଳିତହରଚାପୋ ମେଦିନୀ ନନ୍ଦନାୟା
ନୟନକୁମୁଦଚନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୬ ॥

ପବନତନୟହସ୍ତନ୍ୟସ୍ତପାଦାମ୍ବୁଜାତ୍ମା
କଳଶଭବବଚୋଭିଃ ପ୍ରାପ୍ତମାହେନ୍ଦ୍ରଧନ୍ୱା ।
ଅପରିମିତଶରୌଘୈଃ ପୂର୍ଣ୍ଣତୂଣୀରଧୀରୋ
ଲଘୁନିହତକପୀନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୭ ॥

---

କମଳପତ୍ରତୁଲ୍ୟ ଶ୍ୟାମବର୍ଣ୍ଣ, ମୋର ଇଷ୍ଟ ପଦାର୍ଥ ଦାତା, ମୁନିମାନଙ୍କ ରକ୍ଷାକାରୀ, ରାକ୍ଷସ ନିଧନକାରୀ, ଯେ ରାମନାମ ଉଚ୍ଚାରଣକାରୀ ବ୍ୟକ୍ତିଙ୍କ ପାପ-ନାଶକାରୀ, ସମସ୍ତ ଦେବତା ତଥା ରାଜାଙ୍କ ପ୍ରଭୁ ଶ୍ରୀରାମଚନ୍ଦ୍ର ମୋର ସହାୟ ହୁଅନ୍ତୁ । ୪ ।

ଯେ ଅସୁରକୁଳ ଭସ୍ମକାରୀ ଅଗ୍ନି, ଦେବତା ତଥା ମନୁଷ୍ୟଙ୍କ ହୃଦୟ-କମଳ ବିକାଶକାରୀ ସୂର୍ଯ୍ୟ, ଅସଂଖ୍ୟ ଗୁଣର ଆଧାର, ନୀଳ ମେଘମଣ୍ଡଳତୁଲ୍ୟ ଶ୍ୟାମଶରୀର, ଶାନ୍ତଗୁଣରେ ମୁନିଙ୍କଠାରୁ ଶ୍ରେଷ୍ଠ, ସେହି ରଘୁକୁଳାଗ୍ରଣୀ ଶ୍ରୀରାମ ମୋର ସହାୟ ହୁଅନ୍ତୁ । ୫ ।

ଯେ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା କରିଥିଲେ, ବାୟୁବେଗଶାଳୀ ବାଣଦ୍ୱାରା ମାରୀଚ ରାକ୍ଷସର ମାୟା ନାଶ କରିଥିଲେ, ଶିବ-ଧନୁ ଭାଙ୍ଗି ସୀତାଙ୍କର (କୁମୁଦକୁ ଚନ୍ଦ୍ରମା ଭଳି) ଆନନ୍ଦବର୍ଦ୍ଧନ କରିଥିଲେ ସେହି ଶ୍ରୀରାମ ମୋର ସହାୟକ ହୁଅନ୍ତୁ । ୬ ।

ହନୁମାନଙ୍କ କରଦ୍ୱାରା ଯାହାଙ୍କ ପାଦପଦ୍ମ ସେବିତ, ଅଗସ୍ତ୍ୟଙ୍କ ଉପଦେଶରେ ଯେ ଇନ୍ଦ୍ରଙ୍କର ଧନୁ ଗ୍ରହଣ କରିଥିଲେ, ଯାହାଙ୍କ ତୂଣୀର ଅସଂଖ୍ୟ

କନକବିମଲକାନ୍ତ୍ୟା ସୀତୟାଲିଙ୍ଗିତାଙ୍ଗୋ
ମୁନିମନୁଜବରେଣ୍ୟଃ ସର୍ବବାଗୀଶବନ୍ଦ୍ୟଃ ।
ସ୍ୱଜନନିକରବନ୍ଧୁର୍ଲୀଲୟାବଦ୍ଧସେତୁଃ
ସୁରମନୁଜକପୀନ୍ଦ୍ରୋ ରାମଚନ୍ଦ୍ରଃ ସହାୟଃ ॥ ୮ ॥
ଯାମୁନାର୍ଯ୍ୟକୃତଂ ସ୍ତବ୍ୟଂ ରାମାଷ୍ଟକମିଦଂ ଶୁଭମ୍ ।
ଯଃ ପଠେତ୍ ପ୍ରୟତୋ ଭୂତ୍ୱା ସ ଶ୍ରୀରାମାନ୍ତିକଂ ବ୍ରଜେତ୍ ॥
ଇତି ଶ୍ରୀ ଯାମୁନାର୍ଯ୍ୟକୃତଂ ଶ୍ରୀରାମାଷ୍ଟକମ୍ ।

—

## * ଶ୍ରୀରାମବିରୁଦମ୍ *

ଜୟ ଜୟ ରଘୁବର ନିରୁପମସୁନ୍ଦର, ସୁନ୍ଦର ସୁଙ୍କର ରକ୍ଷକସକ୍ଷମ, ସକ୍ଷମପାଳକ ଦନୁଜବିନାଶକ, ନାଶକରାବଣ ଦୁର୍ଜନ ଧ୍ୱଂସକ, ଧ୍ୱଂସକଜନକଜଳ ସୁରକୁଳରକ୍ଷକ. ରକ୍ଷକନିଜଜନ ଶରଣବିଭୀଷଣ, ଭୀଷଣକର୍ତ୍ତୀନ ବନ୍ଧନଖଣ୍ଡକ, ଖଣ୍ଡକଳାଧର ଦେବସୁପୂଜିତ, ପୂଜିତ ଶଙ୍କର ମନ୍ତ୍ରକମେଚକ, ମେଚକରବିକର ଶାୟକଧାରକ, ଧାରକ ଭୂତଳ ଦୁଷ୍ଟବିମର୍ଦ୍ଦକ, ମର୍ଦ୍ଦକଦୂଷଣ କୋମଳବିଗ୍ରହ, ନିଗ୍ରହକଣ୍ଟକ ହତଖଳାସୁର, ଅସୁରକ୍ଷୟଜିତ ନତମୁନିସେବିତ, ସେବିତସେବକ ବାନରମିତ୍ରକ, ମିତ୍ରକୁଳାକୁଳବଂଶବିଭୂଷଣ, ଭୂଷଣଭୂଷିତ ଦଶରଥନନ୍ଦନ. ନନ୍ଦନ ହେ ତ୍ୱଂ ନନ୍ଦୟ ସୁନ୍ଦର ବାର । (ମହାମେଧାନନ୍ଦନାଥ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ ବିରଚିତମ୍) !

---

ବାଣରେ ପରପୂର୍ଣ୍ଣ ଯେ ଗୁଣଧୀର, ଅତିଶୀଘ୍ର ଯେ ବାଳିର ପ୍ରାଣ ନେଲେ-- ସେହି ଶ୍ରୀରାମଚନ୍ଦ୍ର ମୋର ସହାୟ ହୁଅନ୍ତୁ । ୭ ।

ଉତ୍ତମ ସୁବର୍ଣ୍ଣକାନ୍ତି ସୀତାଙ୍କ ସହ ଯୁକ୍ତ ଋଷି ଓ ମନୁଷ୍ୟମାନେ ଯାହାଙ୍କୁ ଶ୍ରେଷ୍ଠ ତଥା ଆଦରଣୀୟ ମନେକରନ୍ତି, ବାଗୀଶ୍ୱରଙ୍କ ଦ୍ୱାରା ବନ୍ଦନୀୟ, ନିଜ ଭକ୍ତଙ୍କୁ ବନ୍ଧୁତୁଲ୍ୟ ରକ୍ଷା କରନ୍ତି ଯେ ଲୀଳାକ୍ରମରେ ସମୁଦ୍ର ସେତୁ ବାନ୍ଧିଲେ, ଦେବତା, ମନୁଷ୍ୟ ତଥା ବାନରମାନଙ୍କ ପ୍ରଭୁ ଶ୍ରୀରାମଚନ୍ଦ୍ର ମୋର ସହାୟ ହୁଅନ୍ତୁ । ୮ ।

ଯେ ବ୍ୟକ୍ତି ଯାମୁନାର୍ଯ୍ୟଙ୍କ ରଚିତ ଏହି ସ୍ତବ୍ୟ ତଥା କଲ୍ୟାଣପ୍ରଦ ରାମପ୍ରେମାଷ୍ଟକ ସ୍ତୋତ୍ର ଶୁଦ୍ଧଚିତ୍ତରେ ପାଠ କରେ ସେ ଶ୍ରୀରାମଙ୍କ ନିକଟରେ ନିବାସ କରେ ।

——

# ଶ୍ରୀସୀତା କୃପାକଟାକ୍ଷାଷ୍ଟକଂ

ବିହାୟ ଧାମବୈଭବଂ ସୁଖଂ ଚିଦାତ୍ମକଂ ପରଂ
ପ୍ରଦିତ୍ସୟା ଶରୀରିଣାଂ ଯୟା ନିଜାନୁକମ୍ପୟା ।
ନୃଲୋକମାପ୍ତବତ୍ୟହୋ ତ୍ୟୋବଲମ୍ବବର୍ଜିତଂ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୧ ॥

ଉପାସିତାଂଘ୍ରିପଙ୍କଜେ ଜିତେନ୍ଦ୍ରିୟାତ୍ମସତ୍ତମୈ-
ର୍ବିଦେହରାଜବଲ୍ଲଭାପରାନୁରାଗଲାଳିତେ ।
ନିରସ୍ତସର୍ବସାଧନଂ ତ୍ୱଦଂଘ୍ରିମୂଲମାଗତଂ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୨ ॥

ଚରାଚରାତ୍ମକଂ ଜଗଦ୍ ଯଦୀୟସ୍ୱଳ୍ପଲୀଳୟା
ସଦୈବ ସୃଜ୍ୟତେ ତଥାନୁପାଲ୍ୟତେ ବିଲୀୟତେ ।
ଜଗନ୍ମୃଷାସୁଖେ ରତଂ ପରାତ୍ମନଃ ପରାଙ୍ମୁଖଂ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୩ ॥

---

ଅହୋ ! ଯେ ଅନୁକମ୍ପାବଶତଃ (ଦ୍ରବୀଭୂତ ହୋଇ) ସଂପୂର୍ଣ୍ଣ ଶରୀର-ଧାରୀଙ୍କୁ ଚିଦାତ୍ମକ ପରମସୁଖ ପ୍ରଦାନ କରିବା ସକାଶେ ନିଜର ଧାମବୈଭବକୁ ପରିତ୍ୟାଗ କରି ମନୁଷ୍ୟ ଲୋକରେ ଅବତୀର୍ଣ୍ଣ ହୋଇଛନ୍ତି, ସେହି ସୀତାମାତା ମତେ କେବେ ତାଙ୍କର କୃପାକଟାକ୍ଷର ଭାଜନ କରିବେ ? । ୧ ।

ଜିତେନ୍ଦ୍ରିୟ ଆତ୍ମଜ୍ଞ ମହାପୁରୁଷଙ୍କ ଦ୍ୱାରା ଯାହାଙ୍କ ପାଦପଦ୍ମ ପୂଜିତ ହେଉଛି, ଯେ ବିଦେହରାଜଜନକଙ୍କ ଧର୍ମପତ୍ନୀ ସୁନୟନାଙ୍କ ଦ୍ୱାରା ଅତ୍ୟନ୍ତ ସ୍ନେହର ସହିତ ପାଳିତ, ସେହି ଶ୍ରୀସୀତାଦେବୀ ତାଙ୍କ ପାଦପଦ୍ମରେ ଶରଣାଗତ ସମ୍ପୂର୍ଣ୍ଣ ଉପକରଣହୀନ ମୋ ଉପରେ କେବେ କୃପାକଟାକ୍ଷପାତ କରିବେ ? । ୨ ।

ଯାହାଙ୍କ ସ୍ୱଳ୍ପଲୀଳାଦ୍ୱାରା ସର୍ବଦା ଚରାଚରାତ୍ମକ ଜଗତର ସର୍ଜନ, ପାଳନ ଓ ବିଲୟ ହୋଇଥାଏ, ସେହି (ଶ୍ରୀସୀତାମାତା) ଜଗତର ମିଥ୍ୟା ସୁଖର ବଶୀଭୂତ ହୋଇ ପରମାତ୍ମାଙ୍କ ପ୍ରତି ବିମୁଖ ମୋ ପ୍ରତି କେବେ କୃପାକଟାକ୍ଷପାତ କରିବେ ? । ୩ ।

ଅଖଣ୍ଡଭୂତିସୌଭଗପ୍ରଭୁତ୍ୱବୋଧସାଗରେ
ଯଶୋନିଧିଃ ସୁଖାମ୍ବୁଧିସ୍ତ୍ୱମେବ ଯାନକସ୍ତ୍ରଳେ ।
ଗତୋପମା ନିରୁତ୍ତମା ଗତିଃ ସମସ୍ତଦେହିନାଂ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୪ ॥

ଅନନ୍ତକାଳତାଂ ଗତା ସ୍ମୃତିସ୍ତବାମୃତୋପମା
ଜୟୋଚିତୈଃ ସୁଧା ବିଷଂ ବିଷଂ ସୁଧା ପ୍ରଜାୟତେ ।
ତ୍ୱମେବ ସର୍ବଦେହିନାଂ ପରାମ୍ବିକେତି କଥ୍ୟସେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୫ ॥

ତ୍ୱଦଂଶସମ୍ଭବାଷ୍ଟଭୁମୁଖାବ୍ଜଲୋଚନାଦୟୋ
ଜଗତ୍ପ୍ରଧାନନାୟକାଃ ସଦା ନିଦେଶପାଳକାଃ ।
ଅମୁଷ୍ୟ ତ୍ୱମେବ ତତ୍ପ୍ରିୟସ୍ୟ ପଙ୍କଜେକ୍ଷଣେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୬ ॥

ଦୟାବତୀ କ୍ଷମାବତୀ ଭବାଦୃଶୀ ଧରାସୁତେ
ନ କାପ୍ୟଭୂଜ୍ଜଗତ୍ତ୍ରୟେ ନ କର୍ହିଚିଦ୍ଭବିଷ୍ୟସି ।
ବିନିଷ୍ଟୟସ୍ୟ ସିଦ୍ଧୟେ ତ୍ୱଦଙ୍ଘ୍ରିତସ୍ୟ ସନ୍ନତେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷଭାଜନମ୍ ॥ ୭ ॥

---

ହେ ଅଖଣ୍ଡ ଐଶ୍ୱର୍ଯ୍ୟ, ସୌଭାଗ୍ୟ, ପ୍ରଭୁତ୍ୱ ଓ ବୋଧର ସାଗର ଜାନକୀ! ତୁମେ ହିଁ ଯଶର ନିଧି, ସୁଖର ସମୁଦ୍ର. ସମସ୍ତ ପ୍ରାଣୀଙ୍କର ଆଶ୍ରୟ, ଅନୁପମ ଓ ସର୍ବଶ୍ରେଷ୍ଠ ଅଟ । ତୁମେ କେବେ ମତେ ତୁମର କୃପାକଟାକ୍ଷର ଭାଜନ କରିବ ? । ୪ ।

ଅନନ୍ତକାଳରୁ (ଯାହାଙ୍କର ହୃଦୟରେ) ତୁମର ଅମୃତୋପମ ସ୍ମୃତି ରହିଯାଇଛି, ସେହି ସ୍ମୃତିଯୁକ୍ତ ପ୍ରାଣୀମାନଙ୍କ ଅମୃତ (ପାରମାର୍ଥିକ ସୁଖ) ବିଷ ଓ ବିଷ (ସାଂସାରିକ ସୁଖ) ଅମୃତ ପରି ପ୍ରତୀତ ହୋଇଥାଏ । ତୁମେ ସମସ୍ତ ପ୍ରାଣୀମାନଙ୍କର ପରମ୍ବା ବା ଶ୍ରେଷ୍ଠ ମା ବୋଲି କଥିତ । ତୁମେ କେବେ ମୋ ଉପରେ ତୁମର କୃପାକଟାକ୍ଷପାତ କରିବ ? । ୫ ।

ହେ ପଦ୍ମଲୋଚନା ମା ସୀତା ! ବ୍ରହ୍ମା ଓ ଶିବ ପ୍ରଭୃତି ଜଗତର ପ୍ରଧାନ ନାୟକଗଣ ତୁମର ଅଂଶରୁ ଉତ୍ପନ୍ନ ଏବଂ ସବୁବେଳେ ତୁମର ଆଜ୍ଞା ପାଳନ କରିଥାନ୍ତି । ସେହି ଦେବତାମାନଙ୍କର ପ୍ରିୟ ଶ୍ରୀରାମଚନ୍ଦ୍ରଙ୍କ ତୁମେ ହେଉଛ ପ୍ରାଣପ୍ରିୟା । ତୁମେ ମତେ ତୁମର କୃପାକଟାକ୍ଷର ପାତ୍ର କେବେ କରିବ ? । ୬ ।

ହେ ଧରଣୀସୁତା ! ତିନିଲୋକରେ ତୁମପରି ଦୟାମୟୀ ଓ କ୍ଷମାଶୀଳା

ନ ମତ୍ସମାଘସାଗରେ ଭବାଦୃଶୀ କ୍ଷମାନିଧି-
ର୍ନ ନାସ୍ତିକୋ ମମୋପମୋ ନ ପାପମସ୍ତି ଧିକ୍କୃତେଃ ।
ଅନନ୍ତଦୋଷବଦ୍ଭବୋ ନ ସାମ୍ୟମେତି ଜାତୁ ମେ
କଦା କରିଷ୍ୟସି ହ ମାଂ କୃପାକଟାକ୍ଷଭାଜନମ୍ ॥ ୮ ॥

---

କେବେ କେଉଁଠି ହୋଇନାହିଁ କି ହେବନାହିଁ । ହେ ଭଗବତୀ ସୀତା ! ସତ୍ପୁରୁଷଙ୍କ ହୃଦୟରେ ସ୍ଥିତ ବାନନ୍ଦପୁର ସିଦ୍ଧି ପାଇଁ ତୁମର ସ୍ତୁତି କରାଯାଏ । ତୁମେ ମତେ କେବେ ତୁମର କୃପାକଟାକ୍ଷର ଭାଜନ କରିବ ? । ୭ ।

ଏହି ସଂସାରରେ ମୋ ପରି ପାପର ସମୁଦ୍ର ନାହିଁ କି, ମୋ ଭଳି ନାସ୍ତିକ ନାହିଁ କି, ତିରସ୍କାରର ପାତ୍ର ଆଉ କେହି ନାହିଁ । ମୁଁ ଅନନ୍ତ ଦୋଷର ମୂର୍ତ୍ତିମାନ୍ କଳେବର, ଏ ବିଷୟରେ କେହି ମୋ ସହିତ ସମାନ ହେବନାହିଁ । କିନ୍ତୁ କ୍ଷମା କରିବାରେ ତୁମ ପରି ମଧ୍ୟ ଆଉ କେହି ନାହିଁ । ତୁମେ ମତେ କେବେ ତୁମର କୃପାକଟାକ୍ଷର ଯୋଗ୍ୟ ପାତ୍ର କରିବ ? ୮ ।

—

---

ରାମଂ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁତ୍ସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକମ୍ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଲଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିମ୍ ॥୧॥
ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ,
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ ॥୨॥
ଲୋକାଭିରାମଂ ରଣରଙ୍ଗଧୀରଂ ରାଜୀବନେତ୍ରଂ ରଘୁବଂଶନାଥମ୍ ।
କାରୁଣ୍ୟରୂପଂ କରୁଣାକରଂ ତଂ ଶ୍ରୀରାମଚନ୍ଦ୍ରଂ ଶରଣଂ ପ୍ରପଦ୍ୟେ ॥୩॥
ଆପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାମ୍
ଲୋକାଭିରାମଂ ଶ୍ରୀରାମଂ ଭୂୟୋ ଭୂୟୋ ନମାମ୍ୟହମ୍ ।
ଭର୍ଜନଂ ଭବବୀଜାନାମର୍ଜନଂ ସୁଖସମ୍ପଦାମ୍,
ତର୍ଜନଂ ଯମଦୂତାନାଂ ରାମରାମେତି ଗର୍ଜନମ୍ ॥୪, ୫॥
କଲ୍ୟାଣାନାଂ ନିଧାନଂ କଳିମଳମଥନଂ ପାବନଂ ପାବନାନାଂ
ପାଥେୟଂ ଯନ୍ମୁମୁକ୍ଷୋଃ ସପଦି ପରପଦପ୍ରାପ୍ତୟେ ପ୍ରସ୍ଥିତସ୍ୟ ।
ବିଶ୍ରାମସ୍ଥାନମେକଂ କବିବରବଚସାଂ ଜୀବନଂ ସଜ୍ଜନାନାଂ
ବୀଜଂ ଧର୍ମଦ୍ରୁମସ୍ୟ ପ୍ରଭବତୁ ଭବତାଂ ଭୂତୟେ ରାମ ନାମ ॥୬॥
ଶ୍ରୀରାମ ଜୟରାମ ଜୟଜୟ ରାମ । ଶ୍ରୀରାମ ଜୟରାମ ଜୟଜୟ ରାମ ॥୭॥

# ହନୁମାନ୍—

ଭାରତବର୍ଷର ସଂସ୍କୃତି ଓ ଧର୍ମ ପୁରାତନ ହୋଇମଧ୍ୟ ନିତ୍ୟ ନୂତନ ବୋଲି-'ସନାତନ' ଗିରିବନ ସମାଚ୍ଛାଦିତ ଏ ଦେଶରେ ପ୍ରାକୃତିକ ପରିବେଶରେ ଏକ ଆଦିମ ବନ୍ୟ ବା ବାନର ସଂସ୍କୃତି ଥିଲା । 'ବନେ ଭବଂ ବାନଂ-ତଦ୍ ରାତି ଇତି ବାନରଃ' । ବଣରୁଜାତ-ବାନ-ତାହାକୁ ଯେ ଗ୍ରହଣ କରେ ସେ ବାନର । ଏମାନେ ଆମେ ଦେଖୁଥିବା ମାଙ୍କଡ଼ ନଥିଲେ । ଏମାନେ ନର ସଦୃଶ ଆଦିମ ପ୍ରାଣୀ ହୋଇଥିବାରୁ ବିକଳ୍ପ ନର ବା 'ବା-ନର' ନାମରେ କଥିତ ହେଉଥିଲେ । ଏଠାରେ 'ଇବାର୍ଥେ ବା-ପ୍ରୟୋଗ' ବୋଲି ବୁଝିବାକୁ ହେବ । ଏପରି ପ୍ରୟୋଗ ଉତ୍ତରମେଘର 'ପଦ୍ମଂ ବାନ୍ୟରୂପାମ୍'ରେ କାଳିଦାସ କରିଥିବା କଥା ମଲ୍ଲିନାଥ ଉଲ୍ଲେଖ କରିଛନ୍ତି । ରାମାୟଣ ଆମର ସେଇ ଆଦିମ ପ୍ରତ୍ନ ସଂସ୍କୃତିର ବାହକ । ମହାବଳୀ ବାଳି-ଇନ୍ଦ୍ରପୁତ୍ର; ସୁଗ୍ରୀବ-ସୂର୍ଯ୍ୟପୁତ୍ର; ହନୁମାନ୍-ପବନସୁତ; ଏମାନେ କେହିହେଲେ ଆଜିର ଉପୁକାତର କ୍ଷୁଦ୍ରକାୟ ମର୍କଟ ନ ଥିଲେ । ଏମାନଙ୍କର ଏକ ସଂସ୍କୃତି ଥିଲା । ସେ ସଂସ୍କୃତିରେ ହୁଏତ ବଡଭାଇ ବାଳିର ଅନୁପସ୍ଥିତିରେ ବାଳିସ୍ତ୍ରୀକୁ ସାନଭାଇ ସୁଗ୍ରୀବ ଗ୍ରହଣ କରି ପାରୁଥିଲା, କିମ୍ବା ସାନଭାଇ ସୁଗ୍ରୀବକୁ ବିତାଡ଼ିତ କରି ସୁଗ୍ରୀବ ସ୍ତ୍ରୀକୁ ବଡ଼ଭାଇ ବାଳି ଗ୍ରହଣ କରିପାରୁଥିଲା ଏବଂ ଏମାନଙ୍କର ଅନିର୍ଦ୍ଦିଷ୍ଟ ପିତୃଭିକ୍ତି ପୁରାଣକାରମାନେ ହୁଏତ ସୂର୍ଯ୍ୟ, ଇନ୍ଦ୍ର, ପବନ ପ୍ରଭୃତିଙ୍କ ସହ ସମ୍ବନ୍ଧିତ କରିଥିଲେ । ନରୋତ୍ତମ ଆର୍ଯ୍ୟ ରାମ ଏହି ବାନରୋତ୍ତମଙ୍କ ସଂସ୍କୃତିର ଆର୍ଯ୍ୟୀକରଣ କରିଥିଲେ ଏବଂ ସେମାନଙ୍କୁ ନେଇ ଅନାର୍ଯ୍ୟ ଅସୁରମାନଙ୍କ ସହ ଯୁଦ୍ଧ କରିଥିଲେ । ଅନାର୍ଯ୍ୟ ବାନର-ବଳ ଗଛ ପଥରରେ ପ୍ରତ୍ୟକ୍ଷ ଯୁଦ୍ଧ କରୁଥିଲେ । ଆର୍ଯ୍ୟସୁର ରାମଚନ୍ଦ୍ରଙ୍କ ଅସୁର ରାବଣସହ ଯୁଦ୍ଧର ବିବରଣୀ ହିଁ ରାମାୟଣ କଥା ।

ଭାରତୀୟ ଆର୍ଯ୍ୟମାନେ ନିଜକୁ ସୁର (ସୁଷ୍ଠୁ ଶୋଭନଂ ରାଜତେ) ବା ଧାର୍ମିମାନ୍ ମନେକରୁଥିଲେ ଏବଂ ନିଜଠାରୁ ଅଲଗା ସଂସ୍କୃତିରଲୋକଙ୍କୁ 'ସୁରଦ୍ୱିଷ୍ ବା ଅସୁର' ବୋଲି କହୁଥିଲେ । ଭାରତେତର ଲରାମୀସ୍ମାନଙ୍କ ସହିତ ମଧ୍ୟ ଏମାନଙ୍କର ସଂସ୍କୃତିଗତ ବିରୋଧ ଥିଲା । ତେଣୁ ଆମର ଭାରତୀୟ

ଆର୍ଯ୍ୟଗଣ ସେମାନଙ୍କୁ 'ଅସୁର' (ବା 'ଅହୁର') ବୋଲି କହୁଥିଲେ । ସେମାନେ କିନ୍ତୁ ନିଜକୁ 'ଅହୁର' କହିଲେ ଦେବତା ବୋଲି ବୁଝୁଥିଲେ ଏବଂ ସେମାନଙ୍କ ଧର୍ମଗ୍ରନ୍ଥ 'ଅହୁର ମଜ୍‌ଦା'ରେ ଅହୁର ଶବ୍ଦ 'ଦେବତା' ଅର୍ଥରେ ହିଁ ବ୍ୟବହୃତ । ସେହିପରି ଇଣ୍ଡୋ-ଇରାନୀୟ ଯୁଗ ବା ୧୫୦୦ ଖ୍ରୀଷ୍ଟପୂର୍ବ ଭରେ 'ଦୈବ' ଶବ୍ଦଟିର ଅର୍ଥଥିଲା 'ଦେବତା' । ସଂସ୍କୃତରେ ଏହି ଅର୍ଥ ଏବେ ବି ଅପରିବର୍ତ୍ତିତ ରହିଛି । କିନ୍ତୁ ଇରାନ୍‌ରେ ଜରଥୁଷ୍ଟ୍ର ଦେବୋପାସନା ବିରୁଦ୍ଧରେ ନିଜ ଧର୍ମମତର ପ୍ରଚାର କଲାବେଳେ 'ଦୈବ' ଶବ୍ଦଟି ବର୍ତ୍ତମାନ 'ଦୈତ୍ୟ' ବା ରାକ୍ଷସ ଅର୍ଥରେ ପ୍ରଚଳିତ । ସେହିପରି ଗ୍ରୀକ୍ ଭାଷାରେ 'ଡେମନ୍' ଶବ୍ଦର ଅର୍ଥ ଦେବତା, କିନ୍ତୁ ଖ୍ରୀଷ୍ଟଧର୍ମର ପ୍ରଚାରକଙ୍କ ନିକଟରେ ଗ୍ରୀକ୍‌ଙ୍କ ଦେବତା-'ଡେମନ୍' ଶୈତାନ ହୋଇ-ଯିବାରୁ ଇଂରାଜୀଭାଷାରେ ଏହି ଡେମନ୍ ବା demon ଦୈତ୍ୟ ଅର୍ଥରେ ବ୍ୟବହୃତ । ତେଣୁ ଦେବତା ଅସୁର; ଅଦିତିଜ ଆଦିତେୟ-ଦିତିଜ ଦୈତ୍ୟ-ସବୁ ଆପେକ୍ଷିକ-ସବୁ ମାନସିକ ବିଭାବ ବା ବିଭାଗ-ଗୀତାର ଷୋଡଶ ଅଧ୍ୟାୟ ଦୈବାସୁର ସମ୍ପଦ ବିଭାଗ ଯୋଗରେ ଏହାର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ ।

ବୈଦିକ ତତ୍ତ୍ୱଦର୍ଶୀ ଋଷିଗଣ ଦିନରେ ସୂର୍ଯ୍ୟକିରଣରୁ ଆଲୋକ ଓ ଉତ୍ତାପ ରାତିରେ ଚନ୍ଦ୍ରକିରଣରୁ ଆଲୋକ ଓ ଆହ୍ଲାଦ, ଶୀତଦିନେ ଅଗ୍ନିଠାରୁ ଉତ୍ତାପ ପାଇ ତଥା ଦାବାଗ୍ନିର ବିଭୀଷିକା ଦେଖି ସେମାନଙ୍କୁ ତଥା ବୃଷ୍ଟିର ଦେବତା ଇନ୍ଦ୍ର ଓ ବାୟୁର ଦେବତା ମରୁତ୍ ପ୍ରଭୃତିଙ୍କୁ ଦେବତା ଭାବରେ ସ୍ୱୀକାର କଲେ ଓ ସେମାନଙ୍କର କାର୍ଯ୍ୟାକାର୍ଯ୍ୟର ସ୍ତବ କଲେ । ବହୁ ପରେ 'ଗଣେଶ ନାରାୟଣେ ରୁଦ୍ରେ ଭାସ୍କରେ ଅମ୍ବିକେ ତଥା, ଭିନ୍ନାଭିନ୍ନ ନକର୍ତ୍ତବ୍ୟମନ୍ୟଥା ପାପଭାକ୍ ଭବେତ୍', କହି ପଞ୍ଚ ଦେବତାଙ୍କ ଉପାସନା ଓ ମାହାତ୍ମ୍ୟ ପ୍ରତିଷ୍ଠା ହେଲା । କିନ୍ତୁ ଜନମନର ଭିନ୍ନତାନେଇ ଦେବତା-ଧାରଣାମଧ୍ୟ ବିଭିନ୍ନ ରୂପ ନେଲା । ବହୁ ଦେବତାଙ୍କ ଅବତାରଣା ହେଲା । ବହୁ ଲୋକଦେବତା ମନୁଷ୍ୟମନର ଦୁର୍ବଳ ସ୍ଥିତିରେ ପ୍ରବଳ ପ୍ରଭାବ ପକାଇ ପ୍ରତିଷ୍ଠ ହେଲେ-ପୂଜା ପାଇଲେ । ଆଦିମାନବ ଦେବତା ଭାବରେ କାଠଖଣ୍ଡେ ବା ପଥର ଖଣ୍ଡେ ପୂଜା

କରୁଥିଲି କାରଣ ବଶରେ ଅସହାୟ ପରିବେଶରେ କାଠ ଓ ପଥର ହିଁ ତାର ଥିଲେ ସହାୟକ ଦେବତା । ପରେ ମଣିଷ ନିଜରୂପକୁ ଗୁରୁତ୍ୱ ଦେଇ ବହୁ ମୁଣ୍ଡ ଓ ବହୁ ହାତର କଳ୍ପନା କରି ନିଜର ଲୋକୋତ୍ତର ରୂପକୁ ପୂଜା କରିଛି । —ଅରୂପରୁ ରୂପ କଳ୍ପନା କରି ଉଭୟରେ ତାଦାତ୍ମ୍ୟ ଦେଖି ବ୍ରହ୍ମର କଳ୍ପନା କରିଛି । ଅରୂପ କାଠ ପଥର ଓ ରୂପବନ୍ତ ଦେବତା ବିବର୍ତ୍ତ ଭିତରେ ମଣିଷ ଜଳଚର ମତ୍ସ୍ୟ, ଉଭୟଚର କଚ୍ଛପ, ବନଜୀବ ବରାହ ତଥା ବନ୍ୟସିଂହ ଓ ଗ୍ରାମ୍ୟ ନରଙ୍କ ମିଳିତ ବିଗ୍ରହ ନରସିଂହ, ଅନୁନ୍ନତ ନର ବାମନ, ଦୁର୍ଦ୍ଧର୍ଷ ଶସ୍ତ୍ରଧାରୀ ପର୍ଶୁରାମ, ଅସ୍ତ୍ରକୁଶଳ ରାମ, କୃଷିର ପ୍ରତୀକ ହଳଧାରୀ ବଳରାମ, ବୁଦ୍ଧିଜୀବୀ ବୁଦ୍ଧ ବା କୃଷ୍ଣ ଏବଂ ଆଧୁନିକ ଆଣବିକ ଶକ୍ତିଘୋଟକ ଆରୋହଣରେ ନିଜର ଧ୍ୱଂସ ସାଧନକାରୀ କଳ୍କି—ଆମର ଅବତାର ହୋଇଛନ୍ତି । ଡାରଉଇନ୍‌ଙ୍କ କ୍ରମବିକାଶ ତତ୍ତ୍ୱର ଅବତାରଣା ଆମର ଅବତାର ଭିତରେ ସୁସ୍ପଷ୍ଟ; କିନ୍ତୁ ମଣିଷର ପୂର୍ବାବସ୍ଥା ମର୍କଟ ଏଥିରେ ସ୍ଥାନ ପାଇ ନାହାନ୍ତି । ମାନ ମଣିଷ ମର୍କଟର ଚପଳତା, ପ୍ଲବଂଗମତା ବା ପ୍ଲବନ-ଗମ୍ୟତା, ଶାଖାରୁ ଶାଖା ଡେଇଁବା ବା ଶାଖାମୃଗତ୍ୱ ଲକ୍ଷ୍ୟ କରିଛି । ବଣର ସାଥୀ ସେହି ବାନରଟିକୁ ନର ସାଥୀ କରିଛି—ନିଜର କରିନେଇଛି । ତା'ର ହିଁ ସ୍ମୃତି ଆଜି 'ହନୁମାନ୍'ଙ୍କୁ ଭକ୍ତଭାବରେ, ଦେବତା ଭାବରେ ଦେଖୁଛି—ପୂଜା କରୁଛି । ଅନ୍ୟାନ୍ୟ ଦେବତାଙ୍କ ପରି ହନୁମାନଙ୍କ ପୂଜା ହେଉଛି— ତାଙ୍କର ବି ପୂଜକ ଭକ୍ତର ବି ଭକ୍ତ ଅଛନ୍ତି— ପୂଜ୍ୟ ପୂଜାଦ୍ୱାରା କୃତଜ୍ଞତା ଜ୍ଞାପନ ହିଁ ମାନବିକତା । 'ଗୁଣାଃ ପୂଜାସ୍ଥାନଂ ଗୁଣିଷୁ ନ ଚ ଲିଙ୍ଗଂ ନ ଚ ବୟଃ'—ଗୁଣର ପୂଜା ମଣିଷ ହିଁ କରିଥାଏ, ତେଣୁ ମଣିଷ ପାଖରେ ଗୁଣର ପୂଜା ହିଁ ଦେବତା ପୂଜା ।

ପରମ ରାମଭକ୍ତ ହନୁମାନ୍ ଆମ ନିକଟରେ ଅନନ୍ୟ ନିଷ୍ଠା, ଅପୂର୍ବ ତ୍ୟାଗ, ଅକୁଣ୍ଠ ଆତ୍ମୋତ୍ସର୍ଗ, ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଓ ଅମିତ ପରାକ୍ରମର ପ୍ରତୀକ ଭାବରେ ତଥା ଦାସ୍ୟ ଭକ୍ତିର ଅନୁପମ ବିଗ୍ରହ ଭାବରେ ଦଣ୍ଡାୟମାନ । ତେଣୁ ବାଲ୍ମୀକି ରାମାୟଣ (୭।୩୫।୩)ରେ କୁହାଯାଇଛି— "ଶୌର୍ଯ୍ୟଂ ଦାକ୍ଷ୍ୟଂ ବଳଂ ଧୈର୍ଯ୍ୟଂ ପ୍ରାଜ୍ଞତା ନୟସାଧନଂ, ବିକ୍ରମଶ୍ଚ ପ୍ରଭାବଶ୍ଚ ହନୂମତି କୃତାଳୟାଃ" ଏବଂ ଆନନ୍ଦ ରାମାୟଣ (୮।୧୩।୬)ରେ

ଅଛି —'ବୁଦ୍ଧିର୍ବଳଂ ଯଶୋ ଧୈର୍ଯ୍ୟଂ ନିର୍ଭୟତ୍ୱମରୋଗତା, ସୁଦାର୍ଢ୍ୟଂ ବାକ୍ସ୍ଫୁରତ୍ୱଂ ଚ ହନୁମତ୍ସ୍ମରଣାଦ୍ଭବେତ୍' ।

ହନୁମାନ୍ ଶବ୍ଦଟି ବ୍ୟାକରଣଗତ ବ୍ୟୁତ୍ପତ୍ତିରୁ ଦେଖିଲେ ହିଂସା ଓ ଗତ୍ୟର୍ଥକ 'ହନ୍' ଧାତୁରୁ 'ଉନ୍' ବା 'ଊ' ପ୍ରତ୍ୟୟ ହେଲେ 'ହନୁ' ଏବଂ ସ୍ତ୍ରୀଲିଙ୍ଗରେ 'ଊଙ୍' ପ୍ରତ୍ୟୟ ହେଲେ 'ହନୂ' ଶବ୍ଦ ସିଦ୍ଧ ହୁଏ । ଏହି 'ହନୁ ବା ହନୂ' ଯାହାର ଅଛି ଅର୍ଥରେ 'ମତୁପ୍' ପ୍ରତ୍ୟୟ କଲେ ହନୁ (ନୂ) ମତ୍ ବା ହନୁ (ନୂ) ମାନ୍ ଶବ୍ଦ ନିଷ୍ପନ୍ନ ହୁଏ । ହନୁ ଶବ୍ଦଟିର ଅର୍ଥ ମେଦିନୀ କୋଷରେ—'ହନୁର୍ହଟ୍ଟବିଲାସିନ୍ୟାଂ ମୃତ୍ୟାବସ୍ତ୍ରେ ଗଦେ ସ୍ତ୍ରିୟାଂ, ଦ୍ୱୟୋଃ କପୋଲାବୟବେ' ବୋଲି କୁହାଯାଇଥିବା ଅର୍ଥମାନଙ୍କ ମଧ୍ୟରୁ ହଟ୍ଟବିଳାସିନୀ ଓ କପୋଳାବୟବରେ ଗତି ଏବଂ ମୃତ୍ୟୁ ଓ ଅସ୍ତ୍ରରେ ହିଂସା ଥିବାରୁ ଏମାନଙ୍କୁ ହନୁ କୁହାଯାଇଛି । ଆମର ହନୁମାନ୍ ମୃତ୍ୟୁ ବା ସଂହାରକର୍ତ୍ତା ଶିବସ୍ୱରୂପ ଏବଂ ଗତିଶୀଳତାର ପ୍ରତୀକ । ଏହାଛଡ଼ା ବ୍ୟାକରଣରେ 'ଗତି'ର ମଧ୍ୟ ତିନୋଟି ଅର୍ଥ — ଜ୍ଞାନ, ଗମନ ଓ ପ୍ରାପ୍ତି । ଶିବାବତାର ହନୁମାନ୍ ସର୍ବଜ୍ଞ ଓ ସର୍ବବିଦ୍ୟା ବିଦ୍ୱାନ୍, ସେ ବାୟୁଠାରୁ ଅଧିକ ଗମନଶୀଳ ଏବଂ 'ଅଷ୍ଟସିଦ୍ଧି ନବନିଧି କେ ଦାତା' ।

ହନୁମାନ୍‌ଙ୍କ ଜନ୍ମ ସମ୍ବନ୍ଧରେ ପୁରାଣମାନଙ୍କରେ ବିଭିନ୍ନ କୌତୂହଳୋଦ୍ଦୀପକ ବର୍ଣ୍ଣନା ଦେଖିବାକୁ ମିଳେ । ଶିବ ପୁରାଣ ଓ ଶତରୁଦ୍ରସଂହିତା ଅନୁସାରେ ବିଷ୍ଣୁଙ୍କ ମୋହିନୀ ରୂପରେ ଆକୃଷ୍ଟ ଶିବଙ୍କ ସ୍ଖଳିତ ବୀର୍ଯ୍ୟ ସପ୍ତର୍ଷିମାନେ ସଂଗ୍ରହ କରି ଅଞ୍ଜନାଙ୍କ ଗର୍ଭରେ ରଖିବାରୁ ହନୁମାନ୍ ଜନ୍ମ ହେଲେ । ଆନନ୍ଦ ରାମାୟଣ ଅନୁସାରେ ଦଶରଥଙ୍କ ପୁତ୍ରେଷ୍ଟି-ଚରୁରୁ କିଛି ଅଂଶ ଗୋଟିଏ ଚିଲ ଧରି ଉଡ଼ିଯାଉଥିବା ବେଳେ ତପସ୍ୟାରତା ଅଞ୍ଜନାଙ୍କ ଆଙ୍ଗୁଠିରେ ଲାଗିଲା ଏବଂ ସେ ତାହା ଖାଇ ଗର୍ଭଧାରଣ କରିବାରୁ ହନୂମାନ୍ ଜନ୍ମ ହେଲେ । ଭବିଷ୍ୟ ପୁରାଣର ପ୍ରତିସର୍ଗ ପର୍ବ ଅନୁସାରେ ଶିବଙ୍କ ରୁଦ୍ରରୂପ କେଶରୀ ବାନରଙ୍କ ଶରୀରରେ ପ୍ରବେଶ କରି ଅଞ୍ଜନାଙ୍କୁ ରମଣ କଲାପରେ ବାୟୁଦେବତା ପୁଣି ଅଞ୍ଜନାଙ୍କ ସହ ରମଣ କରିବାରୁ ଉଭୟଙ୍କ ଔରସରୁ ହନୂମାନ୍

ଜନ୍ମ ହେଲେ । କମ୍ବ ରାମାୟଣ ଅନୁସାରେ ଶିବଙ୍କ ଔରସଜ ସନ୍ତାନ ଅଞ୍ଜନାଙ୍କ ଗର୍ଭରେ ଥିବା କଥା ନାରଦଙ୍କଠାରୁ ଜାଣିବାକୁ ପାଇ ବାଳି ନିଜର ପ୍ରତିପତ୍ତି କ୍ଷୁଣ୍ଣ ସମ୍ଭାବନାରେ ପଞ୍ଚଧାତୁ (ସୁନା, ଲୁହା, ତମ୍ବା, ଜିଙ୍କ୍ ଓ ଟିଣ୍)ର ଦ୍ରବ୍ୟ ଗର୍ଭସ୍ରାବ ଉଦ୍ଦେଶ୍ୟରେ ଅଞ୍ଜନାଙ୍କୁ ପିଆଇ ଦେଲି । ତାହା କିନ୍ତୁ ହନୁମାନ୍‌ଙ୍କ କ୍ଷତିକାରକ ଦୂଷଣ ନ ହୋଇ କୁଣ୍ଡଳ ଆକାରରେ ଭୂଷଣ ହେଲି ।

ହନୁମାନଙ୍କର ଜନ୍ମ ବାୟୁପୁରାଣ ଅନୁସାରେ 'ଆଶ୍ୱିନସ୍ୟାସିତେ ପକ୍ଷେ ସ୍ୱାତ୍ୟାଂ ଭୌମେ ଚ ମାରୁତିଃ, ମେଷଲଗ୍ନେଽଞ୍ଜନାଗର୍ଭାତ୍ ସ୍ୱୟଂ ଜାତୋ ହରଃ ଶିବଃ'—ଆଶ୍ୱିନ କୃଷ୍ଣପକ୍ଷ ମଙ୍ଗଳବାର ସ୍ୱାତି ନକ୍ଷତ୍ରରେ ହୋଇଥିଲି ବୋଲି ମଧ୍ୟ ମତାନ୍ତର ଦେଖିବାକୁ ମିଳେ—'ଚୈତ୍ରେମାସି ସିତେ ପକ୍ଷେ ହରେର୍ଦିନେ ମଘାଭିଧେ ନକ୍ଷତ୍ରେ ଚ ସମୁତ୍ପନ୍ନୋ ହନୁମାନ୍ ରିପୁସୂଦନଃ' । ମାତ୍ର ମଦନମୋହନ ମାଳବ୍ୟଙ୍କ ପ୍ରବର୍ତ୍ତିତ ବିଶ୍ୱ-ପଞ୍ଚାଙ୍ଗରେ 'କାର୍ତ୍ତିକ କୃଷ୍ଣପକ୍ଷ' ନରକଚତୁର୍ଦ୍ଦଶୀ ମଙ୍ଗଳବାର ସନ୍ଧ୍ୟାରେ ମେଷ ଲଗ୍ନରେ ହନୁମାନଙ୍କର ଜନ୍ମ ବୋଲି ଉଲ୍ଲେଖ ଅଛି । ଏହାଛଡ଼ା ଅନ୍ୟ ମତରେ — 'ମହାଚୈତ୍ରୀପୂର୍ଣ୍ଣିମାୟାଂ ସମୁତ୍ପନ୍ନୋଽଞ୍ଜନାସୁତଃ, ବଦନ୍ତି କଳ୍ପଭେଦେନ ବୁଧା ଇତ୍ୟାହ କେଚନ'—ମହାଚୈତ୍ର ପୂର୍ଣ୍ଣିମା ଦିନ ହନୁମାନ୍ ଜନ୍ମ ହୋଇଥିଲେ । ଓଡ଼ିଶାରେ ଜଗନ୍ନାଥ ମନ୍ଦିରରେ କିନ୍ତୁ ହନୁମାନ୍ ଜନ୍ମ ମେଷ ସଂକ୍ରାନ୍ତି ଦିନ ପାଳନ କରାଯାଇଥାଏ । ବୋଧହୁଏ ରାଶିଚକ୍ରର ପ୍ରଥମ ରାଶିର ପ୍ରଥମ ଅଂଶରେ ଉଦିତ ସୂର୍ଯ୍ୟଙ୍କୁ ସଦ୍ୟଜାତ ହନୁମାନ୍ ଗ୍ରାସ କରିଥିଲେ ବୋଲି—ଏହି ଦିବସଟି ଆମ ମତରେ 'ହନୁମାନ୍ ଜୟନ୍ତୀ' ।

ହନୁମାନ୍ ଜନ୍ମ ହେଲା ପରେ ବାଳରବିଙ୍କୁ ପକ୍ୱ ବିମ୍ବ ଜ୍ଞାନରେ ଭକ୍ଷଣ କରିବାକୁ ଯିବାରୁ ଇନ୍ଦ୍ରଙ୍କ ବଜ୍ରାଘାତରେ ଆହତ ହୋଇଥିଲେ । ଏଥିରେ ପିତା ବାୟୁଦେବତା କ୍ଷୁବ୍ଧ ହେବାରୁ ହନୁମାନ୍ ସଂଜ୍ଞା ଫେରି ପାଇବା ସଙ୍ଗେ ସଙ୍ଗେ ସକଳ ଦେବତାଙ୍କଠାରୁ କଲ୍ୟାଣ ଓ ବର ପାଇଥିଲେ । ଶିବଶକ୍ତିରେ ବଳବାନ୍ ହନୁମାନ ସୂର୍ଯ୍ୟଙ୍କଠାରୁ ବିଦ୍ୟା ଶିକ୍ଷା କରିବା ସକାଶେ ପ୍ରାର୍ଥନା କରିଥିଲେ । ସୂର୍ଯ୍ୟ କିନ୍ତୁ ବାଳଖିଲ୍ୟ ଋଷିମାନଙ୍କ ସହ ଏକାଠି ରଥରେ ବସାଇ ହନୁମାନଙ୍କୁ ବିଦ୍ୟାଶିକ୍ଷା ଦେବା ସକାଶେ ଅସମ୍ମତ ହେବାରୁ ହନୁମାନ୍ ସୂର୍ଯ୍ୟଙ୍କ ସମ୍ମୁଖରେ

ଆକାଶମାର୍ଗରେ ଗତି କରି ଷାଠିଏ ଘଣ୍ଟାରେ ସକଳ ଶାସ୍ତ୍ର ଆୟତ୍ତ କରିଥିଲେ । ସୂର୍ଯ୍ୟଙ୍କୁ ଗୁରୁଦକ୍ଷିଣା ମାଗିବା ପାଇଁ ବହୁ ଅନୁରୋଧ କରିବାରୁ ସୂର୍ଯ୍ୟ ବାଳିକର୍ତ୍ତୃକ ଉତ୍ପୀଡ଼ିତ ତାଙ୍କ ପୁତ୍ର ସୁଗ୍ରୀବଙ୍କ ସହାୟକ ଭାବରେ ରହିବା ପାଇଁ କହିଥିଲେ ଏବଂ ତଦବଧି ହନୁମାନ୍ ସୁଗ୍ରୀବଙ୍କ ସହଚର ହୋଇ ଶ୍ରୀରାମଙ୍କ ଦ୍ୱାରା ବାଳିବଧ କରାଇ ପରେ ଶ୍ରୀରାମଙ୍କ ଅନୁଚର ହୋଇଥିଲେ ।

ହନୁମାନଙ୍କ କର୍ତ୍ତୃକ ସମୁଦ୍ରଲଙ୍ଘନ, ଅଶୋକବନରେ ସୀତାଠାବ, ରାବଣର ପୁତ୍ର ଅକ୍ଷୟକୁମାର ସହ ପଞ୍ଚସେନାପତିଙ୍କ ବଧ, ଲଙ୍କାପୋଡ଼, ରାମେଶ୍ୱରରେ ଶିବଲିଙ୍ଗ ପ୍ରତିଷ୍ଠା, ସେତୁବନ୍ଧ, ଲକ୍ଷ୍ମଣ ଶକ୍ତିଭେଦରେ ଗନ୍ଧମାଦନ ପର୍ବତ ଆନୟନ ପ୍ରଭୃତି କୃତିତ୍ୱ ସହ କରି ଯଶସ୍ୱୀ ହୋଇଥିଲେ । ସେ ଥିଲେ ରାମସର୍ବସ୍ୱ । ବାଲ୍ମୀକି ଆଶ୍ରମରେ ମା ସୀତାଙ୍କ ନିକଟରେ ବନ୍ଦୀ ରାମସୁତ ଲବକୁଶଙ୍କ ନିକଟରେ ହିଁ ସେ ପରାଜୟ ସ୍ୱୀକାର କରିଥିଲେ । ଦ୍ୱାପର ଯୁଗରେ ତାଙ୍କ ଭାଇ ପବନସୁତ ମହାବଳୀ ଭୀମ ତାଙ୍କର ଲାଙ୍ଗୁଳଟିକୁ ଟେକିବାରେ ମଧ୍ୟ ସମର୍ଥ ହୋଇ ନ ଥିଲେ । ସଖା ଅର୍ଜ୍ଜୁନର ମହତ୍ତ୍ୱ ରଖିବାକୁ ଭଗବାନ୍ ଶ୍ରୀକୃଷ୍ଣ ଶରସେତୁକୁ କୂର୍ମ ରୂପରେ ଧରି ରଖି ଅର୍ଜ୍ଜୁନଙ୍କ ରଥ ପତାକାରେ ମାରୁତିଙ୍କୁ ସ୍ଥାନ ଦେଇଥିଲେ । ପ୍ରଭୁ ରାମଚନ୍ଦ୍ରଙ୍କ ରୂପ ନ ଧରିଲେ ସେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଦେଶ ମଧ୍ୟ ମାନୁ ନଥିଲେ । ତାଙ୍କ ନିକଟରେ 'ରାମ ଏବ ପରଂବ୍ରହ୍ମ ରାମ ଏବ ପରଂ ତପଃ, ରାମ ଏବ ପରଂ ତତ୍ତ୍ୱଂ, ଶ୍ରୀରାମୋ ବ୍ରହ୍ମତାରକମ୍ (ଶ୍ରୀରାମ ରହସ୍ୟୋପନିଷଦ୍)' ଥିଲେ । ଅଟଳ ଏକନିଷ୍ଠ ଦାସ୍ୟଭକ୍ତି ବଳରେ ସେ ସର୍ବଜୟୀ ମହାବଳୀ ହୋଇପାରିଥିଲେ । 'ଅଶ୍ୱତ୍ଥାମା, ବଳିର୍ବ୍ୟାସୋ ହନୁମାଂଶ୍ଚ ବିଭୀଷଣଃ, କୃପଃ ପରଶୁରାମଶ୍ଚ—ସପ୍ତୈତେ ଚିର ଜୀବିନଃ' ମଧ୍ୟରେ ବର୍ତ୍ତମାନ ମଧ୍ୟ ରାମ-କଥା ଯେଉଁଠି ହନୁମାନ୍ ସେଇଠି । 'ଯତ୍ର ଯତ୍ର ରଘୁନାଥ କୀର୍ତ୍ତନଂ ତତ୍ର ତତ୍ର କୃତ ମସ୍ତକାଞ୍ଜଳିଂ ବାଷ୍ପବାରି ପରିପୂର୍ଣ୍ଣ ଲୋଚନଂ ମାରୁତିଂ ନମତ ରାକ୍ଷସାନ୍ତକଂ'—ବୋଲି ଲୋକ ବିଶ୍ୱାସ ରହିଛି । ଅନେକ ହନୁମାନ୍ ସାଧକ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ତାଙ୍କର ଅନୁଗ୍ରହ ଲାଭ କରୁଛନ୍ତି । ବିପତ୍ତିଖଣ୍ଡନରେ, ରୋଗ ନିବାରଣରେ, ଭୟନାଶରେ ଓ ଶନିଦ୍ରାବଣରେ ହନୁମାନ ସାଧନାର ତୁଳନା ନାହିଁ ।

ହନୁମାନ୍ ରାମାୟଣକାରମାନଙ୍କ ହାତରେ ଶ୍ରୀରାମଦୂତ ତଥା ଦାସ୍ୟଭକ୍ତିର ଅନୁପମ ଦୃଷ୍ଟାନ୍ତ ଭାବେ ଚିତ୍ରିତ ହୋଇଛନ୍ତି; ମାତ୍ର ଦେବତା କୋଠିରେ ଆସୀନ ହୋଇନାହାନ୍ତି । ବସ୍ତୁତଃ ନବଧା ଭକ୍ତିର ସ୍ମରଣୀୟ ଭକ୍ତମାନଙ୍କ ମଧ୍ୟରୁ ଶ୍ରବଣରେ ପରୀକ୍ଷିତ, କୀର୍ତ୍ତନରେ ଶୁକ, ସ୍ମରଣରେ ପ୍ରହ୍ଲାଦ, ପାଦସେବାରେ ଲକ୍ଷ୍ମୀ, ପୂଜାରେ ପୃଥୁ, ବନ୍ଦନାରେ ଅକ୍ରୂର, ଦାସ୍ୟରେ ହନୁମାନ୍, ସଖ୍ୟରେ ଅର୍ଜ୍ଜୁନ, ସର୍ବସ୍ୱାତ୍ମନିବେଦନରେ ବଳି ପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ ଲକ୍ଷ୍ମୀ କେବଳ ଦେବତା ଭାବରେ ସ୍ୱୀକୃତ । କିନ୍ତୁ ରାମାୟଣରେ ହନୁମାନ୍ ନିଜର ପରିଚୟ ଦେଇ ଭଗବାନ୍ ରାମଚନ୍ଦ୍ରଙ୍କୁ କହିଛନ୍ତି— 'ଦେହଦୃଷ୍ଟ୍ୟା ତୁ ଦାସୋଽହଂ ଜୀବଦୃଷ୍ଟ୍ୟା ତ୍ୱଦଂଶକଃ, ଆତ୍ମଦୃଷ୍ଟ୍ୟା ତ୍ୱମେବାହମିତି ମେ ନିଶ୍ଚିତା ମତିଃ ।' ଆତ୍ମଜ୍ଞାନୀ ନିକଟରେ ଭକ୍ତ ଓ ଭଗବାନ ମଧ୍ୟରେ ଭେଦ ନାହିଁ । ତନ୍ତ୍ର ତେଣୁ ବାୟୁ ପୁରାଣ ବଚନ 'ଅଞ୍ଜନାଗର୍ଭାତ୍ ସ୍ୱୟଂଜାତୋ ହରଃ ଶିବଃ' ଅନୁସାରେ ହନୁମାନଙ୍କୁ ଶିବରୂପ-ରୁଦ୍ରାବତାର ଭାବରେ ସ୍ୱୀକାର କରିଛି । ହନୁମାନ୍ ସାଧନା ତେଣୁ ଶିବଙ୍କ ମୁଖକୁ ନେଇ ଏକମୁଖ, ପଞ୍ଚମୁଖ ଓ ଏକାଦଶରୁଦ୍ର ଭେଦରେ ତିନି ପ୍ରକାର । ଶ୍ରୀବିଦ୍ୟାର୍ଣ୍ଣବ-ତନ୍ତ୍ର (୩୩।୮୯)ରେ ପଞ୍ଚମୁଖ ହନୁମାନଙ୍କ ଦଶ ଆୟୁଧର ବର୍ଣ୍ଣନା କରି କୁହାଯାଇଛି — 'ଖଡ୍ଗଂ ତ୍ରିଶୂଳଂ ଖଟ୍ୱାଙ୍ଗଂ ପାଶମଙ୍କୁଶପର୍ବତମ୍, ଧ୍ରୁବମୁଷ୍ଟିଗଦାମୁଣ୍ଡଂ ଦଶଭିର୍ମୁନିପୁଙ୍ଗବ; ଏତାନ୍ୟାୟୁଧଜାଲାନି ଧାରୟନ୍ତଂ ଯଜାମହେ' । ପଞ୍ଚମୁଖ ହନୁମାନ୍ଙ୍କର ପୂର୍ବଦିଗରେ କୋଟିସୂର୍ଯ୍ୟପ୍ରଭ ବାନର ମୁଖ, ଦକ୍ଷିଣରେ ନରସିଂହ ମୁଖ, ପଶ୍ଚିମରେ ଗରୁଡ଼ ମୁଖ, ଉତ୍ତରରେ ନୀଳାଭ ଶୂକର ମୁଖ, ଊର୍ଦ୍ଧ୍ୱରେ ଅଶ୍ୱ ମୁଖ ଥିବା କୁହାଯାଇଛି । ତନ୍ତ୍ରମାର୍ଗରେ ହନୁମତ୍ସାଧନା ଆଶୁ ଫଳପ୍ରଦ ବୋଲି ତତ୍ତ୍ୱବିଦ୍ମାନଙ୍କର ମତ । ଶତ୍ରୁସଂକଟ ନିବାରଣ ସକାଶେ 'ଓଁ ପୂର୍ବକପିମୁଖାୟ ପଞ୍ଚମୁଖହନୁମତେ ଠଂ ଠଂ ଠଂ ଠଂ ଠଂ ସକଳଶତ୍ରୁସଂହାରଣାୟ ସ୍ୱାହା' ୧୫୦୦ ଥର ଜପ କଲେ ଶତ୍ରୁବାଧା ନିଶ୍ଚୟ ନିବାରଣ ହେବ । ପ୍ରେତବାଧା ନିବାରଣ ସକାଶେ 'ଓଁ ଦକ୍ଷିଣମୁଖାୟ ପଞ୍ଚମୁଖହନୁମତେ କରାଳବଦନାୟ ନାରସିଂହାୟ ଓଁ ହ୍ରାଂ ହ୍ରୀଂ ହ୍ରୂଂ ହ୍ରୈଂ ହ୍ରଃ ସକଳଭୂତପ୍ରେତଦମନାୟ ସ୍ୱାହା' ଦଶ ହଜାର ଜପକରି ଅଷ୍ଟଗନ୍ଧରେ ହୋମ କଲେ ସିଦ୍ଧି ମିଳେ । ସେହିପରି ଧାପାବଳୀ ହନ

ଅର୍ଦ୍ଧରାତ୍ରରେ ଘିଅଦୀପ ଜାଳି ହନୁମାନଙ୍କ ଆଗରେ 'ଓଁ ପଶ୍ଚିମମୁଖାୟ ଗରୁଡ଼ାନନାୟ ପଞ୍ଚମୁଖହନୁମତେ ମଂ ମଂ ମଂ ମଂ ମଂ ସକଳବିଷହରାୟ ସ୍ୱାହା' ମନ୍ତ୍ର ଦଶହଜାର ଜପକଲେ ସିଦ୍ଧ ହୁଏ । କୌଣସି ବିଲ୍ୱବୃକ୍ଷ ମୂଳରେ 'ଓଁ ନମୋ ହନୁମତେ ରୁଦ୍ରାବତାରାୟ ପଞ୍ଚବଦନାୟ ଉତ୍ତର ମୁଖେ ଆଦିବରାହାୟ ସକଳସମ୍ପତ୍କରାୟ ରାମଦୂତାୟ ସ୍ୱାହା' ମନ୍ତ୍ର ଅର୍ଦ୍ଧଲକ୍ଷ ଜପକଲେ ସମ୍ପଦ୍‌ବୃଦ୍ଧି ହୁଏ । ସେହିପରି ବଶୀକରଣ ସକାଶେ 'ଓଁ ନମୋ ହନୁମତେ ରୁଦ୍ରାବତାରାୟ ଊର୍ଦ୍ଧ୍ୱମୁଖେ ହୟଗ୍ରୀବାୟ ସକଳଜନବଶୀକରଣାୟ ରାମଦୂତାୟ ସ୍ୱାହା' ମନ୍ତ୍ର ଅର୍ଦ୍ଧ ନିଶୀଥରେ ଏକ ଲକ୍ଷ ଜପ କରିବାକୁ ହୁଏ । ସାଧାରଣରେ 'ଓଁ ହଂ ରୁଦ୍ରାୟ ହନୁମତେ ନମଃ'—ମନ୍ତ୍ରର ବାରମ୍ବାର ଜପ ସକଳ କାର୍ଯ୍ୟ ସିଦ୍ଧି ନିଶ୍ଚିତ ଭାବରେ କରିଥାଏ । ବାୟୁବୀଜପୁଟିତ ଏହା ଏକ ପରୀକ୍ଷିତ ମନ୍ତ୍ର । ଅନ୍ୟ ଏକ ତନ୍ତ୍ରସିଦ୍ଧ ସକଳାଭୀଷ୍ଟପ୍ରଦ ସପ୍ତବିଂଶ୍ୟକ୍ଷରାତ୍ମକ ମନ୍ତ୍ର ହେଉଛି - ' ଓଁ ଐଂ ହ୍ରୀଂ ହନୁମତେ ରାମଦୂତାୟ ଲଙ୍କାବିଧ୍ୱଂସନାୟ ଅଞ୍ଜନୀଗର୍ଭସମ୍ଭୂତାୟ ଶାକିନୀଡ଼ାକିନୀବିଧ୍ୱଂସନାୟ କିଲି-କିଲି-ବୁ-ବୁ-କାରେଣ ବିଭୀଷଣାୟ ହନୁମଦ୍ଦେବାୟ ଓଁ ହ୍ରୀଂ ଶ୍ରୀଂ ହ୍ରୁଂ ହ୍ରୁାଂ ଫଟ୍ ସ୍ୱାହା ।'' ହନୁମାନ୍ ନିଜ ଭକ୍ତଙ୍କ ଉପରେ ଯେପରି ପ୍ରୀତ ରାମତାରକ ମନ୍ତ୍ରସାଧକ ଭକ୍ତଙ୍କ ଉପରେ ମଧ୍ୟ ସେପରି ପ୍ରୀତ । ସଙ୍କଟମୋଚନ ହନୁମତ୍ ସ୍ତୋତ୍ର, ହନୁମତ୍ ସହସ୍ରନାମ, ହନୁମାନ୍ ଚାଳିଶା ପ୍ରଭୃତିର ପାଠ ପ୍ରତ୍ୟକ୍ଷ ଫଳପ୍ରଦ ।

ହନୁମାନ୍ ନିଜେ ଥିଲେ ଲେଖକ । ରାମାୟଣ ଘଟଣାବଳୀର ପ୍ରତ୍ୟକ୍ଷଦ୍ରଷ୍ଟା ହନୁମାନ୍ ନିଜ ନଖରେ ପର୍ବତ ଗାତ୍ରରେ ରାମକଥା ଉଟ୍ଟଙ୍କିତ କରିଯାଇଥିଲେ । ଥରେ ତାଙ୍କ ସରସ ରଚନା ଶୁଣି ବାଲ୍ମୀକି ନିଜ ରାମାୟଣର ଲୋକପ୍ରିୟତା ହ୍ରାସ ଆଶଙ୍କାରେ ବିଷଣ୍ଣ ହେଲେ । ଭକ୍ତ ହନୁମାନ୍ ରାମକଥାର ଆଦିକବି ବାଲ୍ମୀକିଙ୍କ ମନରୁ ଦୁଃଖ ଅପନୋଦନ ସକାଶେ ନିଜ ରାମାୟଣ ଲେଖାକୁ ସମୁଦ୍ରକୁ ଫିଙ୍ଗି ଦେଲେ । ପରେ ତା'ର କିୟଦଂଶ ସଙ୍କଳିତ ହୋଇ 'ହନୁମନ୍ନାଟକ ବା ମହାନାଟକ' ନାମରେ ପ୍ରସିଦ୍ଧି ଲାଭ କରିଛି । ଜ୍ୟୋତିଷରେ ମଧ୍ୟ ପ୍ରଶ୍ନବିଚାରରେ 'ହନୁମାନ ପ୍ରଶ୍ନ'ର ଅବ୍ୟର୍ଥତା ଅନେକଙ୍କୁ ଚକିତ କରିଥାଏ ।

——

# ହନୁମତ୍ ସ୍ତବଃ

ଅତୁଳିତବଳଧାମଂ ସ୍ୱର୍ଣ୍ଣଶୈଳାଭଦେହଂ
ଦନୁଜବନକୃଶାନୁଂ ଜ୍ଞାନିନାମଗ୍ରଗଣ୍ୟମ୍ ।
ସକଳଗୁଣନିଧାନଂ ବାନରାଣାମଧୀଶଂ
ରଘୁପତିବରଦୂତଂ ବାତଜାତଂ ନମାମି ॥ ୧ ॥
ଗୋଷ୍ପଦୀକୃତବାରୀଶଂ ମଶକୀକୃତରାକ୍ଷସମ୍ ।
ରାମାୟଣମହାମାଲାରତ୍ନଂ ବନ୍ଦେଽନିଲାତ୍ମଜମ୍ ॥ ୨ ॥
ଅଞ୍ଜନାନନ୍ଦନଂ ବୀରଂ ଜାନକୀଶୋକନାଶନମ୍ ।
କପୀଶମକ୍ଷହନ୍ତାରଂ ବନ୍ଦେ ଲଙ୍କାଭୟଙ୍କରମ୍ ॥ ୩ ॥
ଉଲ୍ଲଙ୍ଘ୍ୟ ସିନ୍ଧୋଃ ସଳିଳଂ ସଲୀଳଂ ଯଃ ଶୋକବହ୍ନିଂ ଜନକାତ୍ମଜାୟାଃ ।
ଆଦାୟ ତେନୈବ ଦଦାହ ଲଙ୍କାଂ ନମାମି ତଂ ପ୍ରାଞ୍ଜଳିରାଞ୍ଜନେୟମ୍ ॥୪॥
ମନୋଜବଂ ମାରୁତତୁଲ୍ୟବେଗଂ ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍ ।
ବାତାତ୍ମଜଂ ବାନରଯୂଥମୁଖ୍ୟମ୍ ଶ୍ରୀରାମଦୂତଂ ଶିରସା ନମାମି ॥ ୫ ॥

---

ଅତୁଳ ବଳବାନ୍, ଦେହର କାନ୍ତି ସୁବର୍ଣ୍ଣ ପର୍ବତ ଭଳି. ଅସୁର ରୂପକ ବନକୁ ଦହନ କରିବାରେ ସେ ଅଗ୍ନି ଭଳି, ଜ୍ଞାନୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସକଳ ଗୁଣର ନିଧାନ, ମର୍କଟମାନଙ୍କର ଅଧିପତି. ରାମଚନ୍ଦ୍ରଙ୍କର ଶ୍ରେଷ୍ଠ ଦୂତ, ପବନ ପୁତ୍ର ହନୁମାନଙ୍କୁ ନମସ୍କାର କରୁଛି । ୧ ।

ଯେ ବିଶାଳ ସମୁଦ୍ରକୁ ଗାଈଖୁରା ଭଳି ସାମାନ୍ୟ ମନେକରି ଡେଇଁ ପାରହୋଇ ଯାଇଥିଲେ ଯେ ବିରାଟ ରାକ୍ଷସମାନଙ୍କୁ ମଶା ପରି ହେୟ ମନେକରି ବିନାଶ କରିଥିଲେ, ସେହି ରାମାୟଣ ରୂପକ ମହାମାଳାର ରତ୍ନସଦୃଶ ପବନସୁତ ହନୁମାନଙ୍କୁ ବନ୍ଦନା କରୁଛି । ୨ ।

ଅଞ୍ଜନାଙ୍କର ପୁତ୍ର, ବୀର, ସୀତାଙ୍କର ଶୋକନାଶକ. କପିଶ୍ରେଷ୍ଠ, ରାବଣପୁତ୍ର ଅକ୍ଷୟକୁମାରର ବିନାଶକ, ଲଙ୍କାରେ ଭୟଙ୍କର ହନୁମାନଙ୍କୁ ବନ୍ଦନା କରୁଛି । ୩ ।

ଯେ ଲୀଳାଖେଳାରେ ସମୁଦ୍ର ଜଳକୁ ପାର ହୋଇ ଜନକଦୁହିତା ସୀତାଙ୍କର ଶୋକବହ୍ନିକୁ ଆଣି, ସେଥିରେ ଲଙ୍କା ଦହନ କରିଥିଲେ, ମୁଁ ସେହି ଅଞ୍ଜନାପୁତ୍ର ହନୁମାନଙ୍କୁ କୃତାଞ୍ଜଳି ସହକାରେ ନମସ୍କାର କରୁଛି । ୪ ।

ମନ ପରି ଚଞ୍ଚଳ ଗତିଶୀଳ, ପବନ ପରି ବେଗବାନ୍, ଜିତେନ୍ଦ୍ରିୟ,

ଆଞ୍ଜନେୟମତିପାଟଳାନନଂ କାଞ୍ଚନାଦ୍ରିକମନୀୟବିଗ୍ରହମ୍ ।
ପାରିଜାତତରୁମୂଳବାସିନଂ ଭାବୟାମି ପବମାନନନ୍ଦନମ୍ ॥ ୨ ॥
ଯତ୍ର ଯତ୍ର ରଘୁନାଥକୀର୍ତ୍ତନଂ ତତ୍ର ତତ୍ର କୃତମସ୍ତକାଞ୍ଜଳିମ୍ ।
ବାଷ୍ପବାରି ପରିପୂର୍ଣ୍ଣଲୋଚନଂ ମାରୁତିଂ ନମତ ରାକ୍ଷସାନ୍ତକମ୍ ॥ ୩ ॥

—

## ଲାଙ୍ଗୂଲାସ୍ତ୍ର ଶତ୍ରୁଞ୍ଜୟ ସ୍ତୋତ୍ରମ୍

ଶ୍ରୀମନ୍ତଂ ହନୁମନ୍ତମାର୍ତ୍ତରିପୁଭିଦ୍-ଭୂଭୃତ୍ତରୁଭ୍ରାଜିତଂ
ଚଲ୍ଗଦ୍-ବାରିଧି-ବନ୍ଧବୈରିନିଚୟଂ ଗୃମୀକବଦ୍ୱିଭ୍ରମ,
ଅକ୍ଷ୍ଣୋ ରକ୍ତ-ପିଶଙ୍ଗ-ନେତ୍ର-ନଳିନଂ ଭ୍ରୂଭଙ୍ଗମଙ୍ଗ-ସ୍ଫୁରତ୍
ପ୍ରୋଦ୍ୟଚ୍ଚଣ୍ଡ-ମୟୂଖ-ମଣ୍ଡଳ-ମୁଖଂ ଦୁଃଖାପହଂ ଦୁଃଖିନାମ୍ ।
କୌପୀନଂ କଟିସୂତ୍ର-ମୌଞ୍ଜ୍ୟଜିନଯୁଗ୍ ଦେହଂ ବିଦେହାତ୍ମଜା-
ପ୍ରାଣାଧୀଶ-ପଦାରବିନ୍ଦ-ନିରତଂ ସ୍ୱାନ୍ତଂ କୃତାନ୍ତଂ ଦ୍ୱିଷାମ୍,
ଧ୍ୟାତ୍ୱୈବଂ ସମରାଙ୍ଗଣସ୍ଥିତମଥାନୀୟ ସ୍ୱ-ହୃତ୍ପଙ୍କଜେ
ସମ୍ପୂଜ୍ୟାଽଖିଳପୂଜନୋକ୍ତବିଧିନା ସମ୍ପ୍ରାର୍ଥୟେତ୍ ପ୍ରାର୍ଥିତମ୍ ॥ ୧ ॥

---

ଶ୍ରେଷ୍ଠବୁଦ୍ଧିମାନ୍, ପବନସୁତ ବାନରସେନାମୁଖ୍ୟ ଶ୍ରୀରାମଙ୍କ ଦୂତ ହନୁମାନଙ୍କୁ ପ୍ରଣାମ କରୁଛୁ । ୧ ।

ଅଞ୍ଜନାଙ୍କର ପୁତ୍ର, ପାଟଳମୁଖ, ସୁବର୍ଣ୍ଣାଦ୍ରି ମେରୁ ପରି ବିପୁଳ ଶରୀର, ପାରିଜାତ ବୃକ୍ଷମୂଳରେ ବାସ କରୁଥିବା ପବନସୁତ ହନୁମାନଙ୍କୁ ବନ୍ଦନ କରୁଛୁ । ୨ ।

ଯେଉଁଠି ଯେଉଁଠି ରଘୁନାଥଙ୍କ ରାମାୟଣ କଥା କୀର୍ତ୍ତନ ହେଉଥାଏ ସେଇଠି ସେଇଠି ପ୍ରେମଭକ୍ତିର ଅଶ୍ରୁଳନେତ୍ରରେ ମୁଣ୍ଡନୁଆଇଁ ପ୍ରଣାମ କରୁଥିବା ରାକ୍ଷସଶତ୍ରୁ ହନୁମାନଙ୍କୁ ନମସ୍କାର । ୩ ।

ଆର୍ତ୍ତି ଓ ରିପୁନାଶକ ରଜା ରାମ ରୂପକ ବୃକ୍ଷରେ ଶୋଭା ପାଉଥିବା, ସମୁଦ୍ରରେ ସେତୁବାନ୍ଧି ଶତ୍ରୁମାନଙ୍କୁ ତୁଚ୍ଛ କରିଥିବା, ସ୍ୱର୍ଣ୍ଣାଦ୍ରି ମେରୁପର୍ବତ ପରି କାନ୍ତିମାନ୍, ଶିବାବତାର ହେତୁ ଶିବଙ୍କ ଅଷ୍ଟମୂର୍ତ୍ତିର ପ୍ରତୀକ, ନୀଳ-ପିଙ୍ଗଳ ବର୍ଣ୍ଣର ନେତ୍ର ପଦ୍ମ ଯାହାଙ୍କର, ପ୍ରଚୁର ଯିବା ଝଳାରେ ଯାହାଙ୍କର ଅଙ୍ଗ ଶୋଭାପାଉଛି, ଯାହାଙ୍କ ମୁଖ ଉଦୟକାଳୀନ ସୂର୍ଯ୍ୟମଣ୍ଡଳ ପରି ନାଲି, ଯେ

ହନୁମନ୍ନଞ୍ଜନୀସୂନୋ ମହାବଳ ପରାକ୍ରମ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧ ॥
ମର୍କଟାଧିପ ମାର୍ତ୍ତଣ୍ଡ-ମଣ୍ଡଳ-ଗ୍ରାସକାରକ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୨ ॥
ଅକ୍ଷସୂନପି ପିଙ୍ଗାକ୍ଷ ଦିତିଜାସୁକ୍ଷୟଙ୍କର
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୩ ॥
ରୁଦ୍ରାବତାର ସଂସାର-ଦୁଃଖ-ଭାରାପହାରକ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୪ ॥
ଶ୍ରୀରାମ ଚରଣାମ୍ଭୋଜ-ମଧୁପାୟିତ-ମାନସ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୫ ॥
ବାଳିପ୍ରମଥନ-କ୍ରାନ୍ତ-ସୁଗ୍ରୀବୋନ୍ମୋଚନ ପ୍ରଭୋ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୬ ॥

---

ଦୁଃଖୀ ଲୋକଙ୍କର ଦୁଃଖ ହରଣ କରନ୍ତି, କୌପୀନ ପିନ୍ଧିଥିବା ଯାହାଙ୍କ ଦେହରେ ଅଣ୍ଟାମୂଳା ମୁଞ୍ଜ ମେଖଳା ଓ ମୃଗଚର୍ମ ରହିଛି, ଯେ ବୈଦେହୀଙ୍କ ପ୍ରାଣପତି ରାମଚନ୍ଦ୍ରଙ୍କ ପାଦପଦ୍ମକୁ ସବୁବେଳେ ଧ୍ୟାନ କରୁଛନ୍ତି ଏବଂ ଶତ୍ରୁମାନଙ୍କର ଅନ୍ଧକାରକୁ ଯମ ପରି—ସମରାଙ୍ଗଣରେ ଥିବା ମହାବୀର ହନୁମାନଙ୍କୁ ନିଜର ହୃଦୟ ପଦ୍ମରେ ଉପର୍ଯ୍ୟୁକ୍ତ ପ୍ରକାରରେ ଧ୍ୟାନ କରି ସମସ୍ତ ପୂଜାବିଧି ଅନୁସାରେ ପୂଜା କରି ଅଞ୍ଜଳିବନ୍ଧିତ ହୋଇ ନିମ୍ନୋକ୍ତ ପ୍ରାର୍ଥନା କରିବା ଉଚିତ୍ । ୦ ।

ହେ ହନୁମାନ୍, ଅଞ୍ଜନା ପୁତ୍ର, ମହାବଳ, ପରାକ୍ରମୀ ! ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁ ମାନଙ୍କୁ ନିପାତ କର । ୧ ।

ହେ ମର୍କଟରାଜ, ସୂର୍ଯ୍ୟମଣ୍ଡଳଭକ୍ଷକ ! ତୁମର ଚଞ୍ଚଳ ଲାଙ୍ଗୁଳ ଫିଙ୍ଗି ମୋର ଶତ୍ରୁମାନଙ୍କୁ ନାଶ କର । ୨ ।

ଅକ୍ଷୟକୁମାର ଓ ପିଙ୍ଗାକ୍ଷ ନାମକ ଦୈତ୍ୟସୁତ ଅସୁରଙ୍କ ନିକଟରେ ଭୟଙ୍କର ହେ ହନୁମାନ୍ ! ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୩ ।

ରୁଦ୍ରଙ୍କ ଅବତାର, ସଂସାରର ଦୁଃଖଭାର ହରଣକାରୀ ! ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୪ ।

ଶ୍ରୀରାମଙ୍କ ପାଦପଦ୍ମରେ ଭ୍ରମର ଭଳି ତୁମର ମନ । ତୁମେ ତୁମର ଲୋଲଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୫ ।

ବାଳିକର୍ତ୍ତୃକ ପୀଡା ପାଇ କ୍ଲାନ୍ତ ହୋଇଯାଇଥିବା ସୁଗ୍ରୀବର ଉଦ୍ଧାର-

ସୀତାବିରହବାରୀଶମଗ୍ନସୀତେଶତାରକ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୭ ॥
ରକ୍ଷୋରାଜପ୍ରତାପାଗ୍ନିଦହ୍ୟମାନଜଗଦ୍‌ଘନ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୮ ॥
ଗ୍ରସ୍ତାଽଶେଷଜଗତ୍ସ୍ୱାସ୍ଥ୍ୟରାକ୍ଷସାମ୍ଭୋଧିମନ୍ଦର
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୯ ॥
ପୁଚ୍ଛଗୁଚ୍ଛସ୍ଫୁରଦ୍‌ବୀର ଜଗଦ୍‌ଦଗ୍ଧାରିପତ୍ତନ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୦ ॥
ଜଗନ୍ମନୋଦୁରୁଲ୍ଲଂଘ୍ୟପାରାବାରବିଲଂଘନ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୧ ॥
ସ୍ମୃତମାତ୍ରସମସ୍ତେଷ୍ଟପୂରକ ପ୍ରଣତପ୍ରିୟ
ଲୋଲଲ୍ଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୨ ॥

---

କର୍ତ୍ତା । ହେ ପ୍ରଭୁ, ତୁମେ ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୬ ।

ସୀତାଙ୍କର ବିରହ ରୂପକ ସମୁଦ୍ରରେ ମଗ୍ନ ରାମଚନ୍ଦ୍ରଙ୍କର ଉଦ୍ଧାରକର୍ତ୍ତା । ତୁମେ ତୁମର ଲୋଳଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ଉଦ୍ଧାର କର । ୭ ।

ରାକ୍ଷସରାଜ ରାବଣର ପ୍ରତାପ ରୂପକ ଅଗ୍ନିରେ ଦହନ ହେଉଥିବା ଜଗତର ଜ୍ୱାଳା ପ୍ରଶମ କରାଏ ତୁମେ ହେଉଛ ଘନ ବା ମେଘପରି । ତୁମେ ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୮ ।

ସକଳ ଜଗତର ସୁସ୍ଥତାକୁ ଗ୍ରାସ କରିଥିବା ରାକ୍ଷସ ରୂପକ ସମୁଦ୍ର-ମନ୍ଥନ କରିବାରେ ତୁମେ ମନ୍ଦର ପରି । ତୁମେ ତୁମର ଲୋଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୯ ।

ହେ ଲାଙ୍ଗୁଳ ଶୋଭିତ ବୀର ! ଜଗତରେ ଶତ୍ରୁପୁର (ଲଙ୍କା) ଦହନ-କାରୀ ରୂପରେ ପ୍ରସିଦ୍ଧ ଅଟ । ତୁମେ ତୁମର ଚଞ୍ଚଳ ଲାଙ୍ଗୁଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୧୦ ।

ଜଗତରେ ମନରୂପକ ଦୁର୍ଲଂଘ୍ୟ ସମୁଦ୍ରକୁ ତୁମେ ଲଂଘନ କରିଅଛ । ହେ ହନୁମାନ୍ ! ତୁମର ଚଞ୍ଚଳ ଲାଙ୍ଗୁଳ ଦ୍ୱାରା ମୋର ଶତ୍ରୁମାନଙ୍କୁ ନିପାତ କର । ୧୧ ।

ସ୍ମରଣ କଲମାନେ ତୁମେ ସକଳ ଅଭିଲାଷ ପୂରଣ କରିଥାଅ । ହେ

ରକ୍ଷିଅଃରତମୋରାଶିକର୍ତ୍ତନୈକବିକର୍ତ୍ତନ
ଲୋଲଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୩ ॥
ଜାନକୀଜାନକୀଜାନିପ୍ରେମପାତ୍ରପରନ୍ତପ
ଲୋଲଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୪ ॥
ଭୀମାଦିକମହାଭୀମବୀରାବେଶାବତାରକ
ଲୋଲଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୫ ॥
ବୈଦେହୀବିରହକ୍ଲାନ୍ତରାମରୋଷୈକବିଗ୍ରହ
ଲୋଲଲାଙ୍ଗୂଲ ପାତେନ ମମାଽରାତୀନ୍ ନିପାତୟ ॥ ୧୬ ॥
ବଜ୍ରାଙ୍ଗନଖଦଂଷ୍ଟ୍ରେଶ ବଜ୍ରି ବଜ୍ରାବଗୁଣ୍ଠନ
ଲୋଲଲାଙ୍ଗୂଲପାତେନ ମମ ଽରାତୀନ୍ ନିପାତୟ ॥ ୧୭ ॥
ଅଖର୍ବଗର୍ବଗନ୍ଧର୍ବପର୍ବତଭେଦନକ୍ଷମ
ଲୋଲଲାଙ୍ଗୂଲପାତେନ ମମାଽରାତୀନ୍ ନିପାତୟ ॥ ୧୮ ॥

---

ଭକ୍ତପ୍ରିୟ ! ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନିପାତ କର । ୧୨ ।

ରାକ୍ଷସ ରୂପକ ଅନ୍ଧକାର ସମୂହକୁ ଖଣ୍ଡନ କରିବାରେ ତୁମେ ଅଟ୍ଟ ସୂର୍ଯ୍ୟ ସଦୃଶ । ହେ ହନୁମାନ୍ ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର । ୧୩ ।

ସୀତାରାମଙ୍କ ପ୍ରେମପାତ୍ର । ଶତ୍ରୁନାଶକାରୀ ! ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନାଶ କର । ୧୪ ।

ଭୀମ ପ୍ରଭୃତି ମହାଭଟ୍ଟଙ୍କର ବୀରମାନଙ୍କ ଅଭିଭୂତକାରୀ ଅବତାର ବା ଦେବାଂଶବିଶେଷ ହନୁମାନ୍ ! ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁ ନାଶ କର । ୧୫ ।

ସୀତାଙ୍କ ବିରହରେ ଅବସାଦଗ୍ରସ୍ତ ଶ୍ରୀରାମ କ୍ରୋଧର ମୂର୍ତ୍ତିମନ୍ତ ଶରୀର ହନୁମାନ୍ ! ମୋର ଶତ୍ରୁମାନଙ୍କୁ ତୁମେ ତୁମର ଲୋଲଲାଙ୍ଗୂଳ ପକାଇ ବିନାଶ କର । ୧୭ ।

ହେ ବଜ୍ର ପରି କଠିଣ ଶରୀର, ନଖ ଓ ଦନ୍ତର ଅଧୀଶ୍ୱର । ଇନ୍ଦ୍ରଙ୍କର ବଜ୍ରକୁ ମଧ୍ୟ ତୁମେ ଭୂଲୁଣ୍ଠିତ କରିପାରିଥିଲ । ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନାଶ କର । ୧୭ ।

ଅନେକ ଗର୍ବର ଆକର ଗନ୍ଧର୍ବ ସମୂହକୁ ନାଶ କରିବାକୁ ତୁମେ ସମର୍ଥ

ଲକ୍ଷ୍ମଣ ପ୍ରାଣସନ୍ତ୍ରାଣତ୍ରାତା ତୀକ୍ଷ୍ଣକରାନ୍ୱୟ
  ଲୋଳଲାଙ୍ଗୂଳ ପାତେନ ମମାରିଗଣାନ୍ ନିପାତୟ ॥ ୧୯ ॥
ରାମାଧିବପ୍ରୟୋଗାର୍ତ୍ତି ଭରତାଦ୍ୟାର୍ତ୍ତିନାଶନ
  ଲୋଳଲାଙ୍ଗୂଳ ପାତେନ ମମାରିଗଣାନ୍ ନିପାତୟ ॥ ୨୦ ॥
ଦ୍ରୋଣାଚଳସମୁତ୍କ୍ଷେପସମୁତ୍କ୍ଷିପ୍ତାରିବୈଭବ
  ଲୋଳଲାଙ୍ଗୂଳ ପାତେନ ମମାରିଗଣାନ୍ ନିପାତୟ ॥ ୨୧ ॥
ସୀତାଶୀର୍ବାଦସମ୍ପନ୍ନ ସମସ୍ତାବୟବାକ୍ଷତ
  ଲୋଳଲାଙ୍ଗୂଳପାତେନ ମମାରିଗଣାନ୍ ନିପାତୟ ॥ ୨୨ ॥

ଇତ୍ୟେବମଶ୍ୱତ୍ଥତଳୋପବିଷ୍ଟଃ ଶତ୍ରୁଞ୍ଜୟଂ ନାମ ପଠେତ୍ ସ୍ୱୟଂ ଯଃ ।
ସ ଶୀଘ୍ରମେବାସ୍ତସମସ୍ତଶତ୍ରୁଃ ପ୍ରମୋଦତେ ମାରୁତଜପ୍ରସାଦାତ୍ ॥୨୩॥

---

ହୋଇଥିଲ । ତୁମେ ତୁମର ଚଞ୍ଚଳ ପକାଇ ମୋର ଶତ୍ରୁମାନଙ୍କୁ ନାଶକର । ୧୮ ।

ଲକ୍ଷ୍ମଣଙ୍କ ପ୍ରାଣକୁ (ଗନ୍ଧମାଦନ ଆଣି) ସମ୍ୟକ୍ ତ୍ରାଣ କରିଥିବାରୁ ତୁମେ ତ୍ରାତା ବା ତ୍ରାଣକର୍ତ୍ତା ଅଟ । ହେ ତୀକ୍ଷ୍ଣ କର-ବାନର-ବଂଶୀୟ ହନୁମାନ୍ ! ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ବିନାଶ କର ।୧୯।

ଶ୍ରୀରାମଙ୍କ ମାନସିକ ବେଗ ସୀତା ବିରହ ଯୋଗୁଁ ତୁମେ ଆର୍ତ୍ତି ବା କରୁଣ ଅଟ । ତୁମେ ଭରତ ପ୍ରଭୃତିଙ୍କ ଦୁଃଖନାଶକାରୀ ଅଟ । ତୁମେ ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନାଶ କର । ୨୦ ।

ବାହୁରୂପକ ଉଣପର୍ବତକୁ ଟେକି ସମ୍ୟକ୍ ଭାବରେ ଉତ୍କ୍ଷିପ୍ତ ହୋଇଥାଏ ଶତ୍ରୁସମ୍ପଦ୍ ତୁମଦ୍ୱାରା । ହେ ହନୁମାନ୍, ତୁମର ଚଞ୍ଚଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନାଶ କର । ୨୧ ।

ସୀତାଙ୍କ ଆଶୀର୍ବାଦ ପାଇଥିବା ଏବଂ ସମସ୍ତ ଶରୀର ଯାହାଙ୍କର ଅକ୍ଷତ ଅବସ୍ଥାରେ ରହିଛି, ସେହି ହନୁମାନ୍ ତାଙ୍କର ଲୋଳ ଲାଙ୍ଗୂଳ ପକାଇ ମୋର ଶତ୍ରୁମାନଙ୍କୁ ନାଶ କରନ୍ତୁ ।

ଏହିପରି ଅଶ୍ୱତ୍ଥ ବୃକ୍ଷତଳେ ବସି ଯେ ଏହି 'ଶତ୍ରୁଞ୍ଜୟ ସ୍ତୋତ୍ର'କୁ ପାଠ କରିବ ତା'ର ସକଳ ଶତ୍ରୁ ଶୀଘ୍ର ନାଶ ହେବେ ଏବଂ ସେ ହନୁମାନଙ୍କ ପ୍ରସାଦରୁ ଆନନ୍ଦ ପାଇବ । ୨୩ ।

# ସଂକଷ୍ଟମୋଚନସ୍ତୋତ୍ରମ୍

ସିନ୍ଦୂର ପୂରରୁଚିରୋ ବଳଦର୍ପସିନ୍ଧୁ ବୃଦ୍ଧି ପ୍ରବାହନଧିରଦ୍ଭୁତବୈଭବ ଶ୍ରୀଃ
ଦୀନ ଗିଦାବଦହନୋ ବରଦୋବରେଣ୍ୟଃ
ସଂକଷ୍ଟମୋଚନବିଭୁସ୍ତନୁତାଂ ଶୁଭଂନଃ ।। ୧ ।।
ସୋତ୍ସାହଲଙ୍ଘିତମହାର୍ଣ୍ଣବପୌରୁଷଶ୍ରୀଲଙ୍କାପୁରୀପ୍ରଦହନପ୍ରଥିତପ୍ରଭାବଃ ।
ଘୋରାହବପ୍ରମଥିତାରିଚମୂପ୍ରବୀରଃ ପ୍ରାଭଞ୍ଜନର୍ଜୟତି ମର୍କଟସାର୍ବଭୌମଃ ।।
ଦ୍ରୋଣାଚଳାନୟନବର୍ଣ୍ଣିତଭବ୍ୟଭୂତିଃ ଶ୍ରୀରାମଲକ୍ଷ୍ମଣସହାୟକଚକ୍ରବର୍ତ୍ତୀ ।
କାଶୀସ୍ଥଦକ୍ଷିଣବିରାଜିତସୌଧମଲ୍ଲଃ
ଶ୍ରୀମାରୁତିର୍ବିଜୟତେ ଭଗବାନ୍ ମହେଶଃ ।। ୩ ।।
ନୂନଂ ସ୍ମୃତୋଽପି ଦଦୃତେ ଭକ୍ତତାଂ କପୀନ୍ଦ୍ରଃ,
ସଂପୂଜିତୋ ଦିଶତି ବାଞ୍ଛିତସିଦ୍ଧିବୃଦ୍ଧିମ୍ ।
ସମ୍ମୋଦକପ୍ରିୟ ଉପୈତୁ ପରଂ ପ୍ରହର୍ଷଂ
ରାମାୟଣଶ୍ରବଣତଃ ପଠତାଂ ଶରଣ୍ୟଃ ।। ୪ ।।

---

ସିନ୍ଦୂର ହୋଇଥିବା ସୁନ୍ଦରଦେଖାଯାଉଥିବା, ବଳଦର୍ପର ସାଗର, ବୃଦ୍ଧିପ୍ରବାହର ନିଧାନ, ଅଦ୍ଭୁତ ବିଭବ ଦ୍ୱାରା ଶୋଭିତ, ଦୁଃଖୀଲୋକର ଦୁଃଖରୂପକ ଅଗ୍ନିର ନିର୍ବାପକ, ବରଦାୟକ, ପୂଜ୍ୟ ଅତିକଷ୍ଟରୁ ଉଦ୍ଧାରକାରକ ପ୍ରଭୁ ହନୁମାନ୍ ଆମର ମଙ୍ଗଳ ବିସ୍ତାର କରନ୍ତୁ ।୧।

ଉତ୍ସାହର ସହିତ ମହାସମୁଦ୍ରକୁ ଲଙ୍ଘନ କରି ଯେ ବଳର ପରାକାଷ୍ଠା ପ୍ରଦର୍ଶନ କଲେ, ଲଙ୍କାପୁରୀକୁ ଦହନ କରିବାରେ ଯାହାଙ୍କର ପ୍ରଭାବ ପ୍ରତିଷ୍ଠା ଲାଭ କରିଛି ଘୋର ଯୁଦ୍ଧରେ ଶତ୍ରୁମାନଙ୍କୁ ମନ୍ଥନ କରି ଯେ ପ୍ରକୃଷ୍ଟ ବୀର ହୋଇଛନ୍ତି ସେହି ମର୍କଟଶ୍ରେଷ୍ଠ ପ୍ରଭଞ୍ଜନ ପୁତ୍ର ବା ବାତସୁତ ହନୁମାନ୍ ବିଜୟୀ ଅଟନ୍ତି ।୨।

ଦ୍ରୋଣାଚଳ ବା ଗନ୍ଧମାଦନ ପର୍ବତ ଆଣିବାରେ ଯାହାଙ୍କର ସୁନ୍ଦର ବା ଗୁଣବର୍ତ୍ତୀ ପ୍ରକାଶ ପାଇଛି, ଯେ ରାମଲକ୍ଷ୍ମଣଙ୍କୁ ସାହାଯ୍ୟ କରିବାରେ ସର୍ବଶ୍ରେଷ୍ଠ ଅଟନ୍ତି, କାଶୀର ଦକ୍ଷିଣରେ ଥିବା ଦିବ୍ୟ ଭବନରେ ଯେଉଁ ମଲ୍ଲବୀର ପୂଜା ପାଉଛନ୍ତି; ସେହି ରୁଦ୍ରାବତାର ଭଗବାନ୍ ହନୁମାନଙ୍କର ଜୟ ହେଉ ।୩।

ଯେଉଁ ବାନରରାଜ ସ୍ମରଣକଲାମାତ୍ରେ ଭକ୍ତମାନଙ୍କୁ ଦାସ୍ୟ କରିଥାନ୍ତି, ପୂଜାକଲେ ଅଭିଳଷିତ ସିଦ୍ଧି ଓ ବୃଦ୍ଧିକୁ ପ୍ରଦାନ କରିଥାନ୍ତି, ମୋଦିପ୍ରିୟରେ

ଶ୍ରୀଭାରତପ୍ରବରଯୁଦ୍ଧରଥୋଦ୍ଧତଶ୍ରୀଃ ପାର୍ଥୈକକେତନକରାଳବିଶାଳମୂର୍ତ୍ତିଃ ।
ଉଚ୍ଚୈର୍ଘନାଘନଘଟାବିକଟାଟ୍ଟହାସଃ ଶ୍ରୀକୃଷ୍ଣପକ୍ଷଭରଣଃ ଶରଣଂ
ମମାସ୍ତୁ ॥ ୫ ॥

ଜଙ୍ଘାଳଜଙ୍ଘ୍ ଉପମାତିବିଦୂରବେଗୋ ମୁଷ୍ଟିପ୍ରହାର ପରିମୂର୍ଚ୍ଛିତରାକ୍ଷସେନ୍ଦ୍ରଃ
ଶ୍ରୀରାମକୀର୍ତ୍ତିତପରାକ୍ରମଶୋଭିତଶ୍ରୀଃ ପ୍ରାକମ୍ପନିର୍ବିଭୁରୁଦଞ୍ଚତୁ ଭୂତୟେ ନଃ ॥୬॥
ସୀତାର୍ତ୍ତିଦାରୁଣପଟୁଃ ପ୍ରବଳଃ ପ୍ରତାପୀ ଶ୍ରୀରାଘବେନ୍ଦ୍ରପରିରମ୍ଭବରପ୍ରସାଦଃ ।
ବର୍ଣ୍ଣୀଶ୍ୱରଃ ସବିଧିଶିକ୍ଷିତ କାଳନେମିଃ
ପଞ୍ଚାନନୋଽପନୟତାଂ ବିପଦୋଽଧିଦେଶମ୍ ॥ ୭ ॥

ଉଦ୍ୟଦ୍ଭାନୁସହସ୍ରସନ୍ନିଭତନୁଃ ପୀତାମ୍ବରାଳଙ୍କୃତଃ
ପ୍ରୋଜ୍ଜ୍ୱାଳାନଳଦୀପ୍ୟମାନନୟନୋ ନିଷ୍ପିଷ୍ଟରକ୍ଷୋଗଣଃ ।
ସଂବର୍ତ୍ତୋଦ୍ୟତବାରିଦୋଦ୍ଧତରବଃ ପ୍ରୋଚ୍ଚୈର୍ଗଦାବିଭ୍ରମଃ
ଶ୍ରୀମାନ୍ ମାରୁତନନ୍ଦନଃ ପ୍ରତିଦିନଂ ଧ୍ୟେୟୋ ବିପଦ୍ଭଞ୍ଜନଃ ॥୮॥

---

ମୋଦକ ପିଠାପ୍ରିୟ ବା ଭକ୍ତଙ୍କ ବିଶେଷଭାବରେ ମୁଦିତ ବା ସଂତୁଷ୍ଟ କରୁଥିବା, ରାମାୟଣ ଶୁଣିଲେ ଯେ ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି ଏବଂ ରାମାୟଣ ପଢ଼ୁଥିବା ଲୋକଙ୍କୁ ପୂର୍ଣ୍ଣତଃ ରକ୍ଷା କରନ୍ତି — ସେ ହେଉଛନ୍ତି ହନୁମାନ୍ । ୪ ।

ମହାଭାରତ ମହାଯୁଦ୍ଧରେ ଅର୍ଜ୍ଜୁନଙ୍କ ରଥ ଉପରେ ଯାହାଙ୍କର ଉଦ୍ଧତ-ଶୋଭା ରହିଥିଲା, ପାର୍ଥ ଅର୍ଜ୍ଜୁନଙ୍କ ରଥର ପତାକାରେ ଯାହାଙ୍କ ବିକଟ ଭୟଙ୍କର ମୂର୍ତ୍ତି ଶୋଭା ପାଉଥିଲା, ଯାହାଙ୍କ ଅଟ୍ଟହାସ୍ୟ ଘନଘୋର ମେଘମାଳାର ଗର୍ଜ୍ଜନ ପରି ଶ୍ରୀକୃଷ୍ଣଙ୍କ ପାଣ୍ଡବ ସୈନ୍ୟଙ୍କ ପୋଷକ (ଅଭୂତଚନ୍ଦ୍ର ମୋର ଶରଣ ଦାତା ହୁଅନ୍ତୁ ।୫।

ବିଶାଳଜଙ୍ଘ ଥିବା ହନୁମାନ୍‌ଙ୍କର ବେଗ ଉପମାରହିତ ବା ଅନୁପମ ଅଟେ । ତାଙ୍କର ମୁଷ୍ଟିପ୍ରହାର ଦ୍ୱାରା ରାକ୍ଷସରାଜ ରାବଣ ମୂର୍ଚ୍ଛା ହୋଇଥିଲା । ଭଗବାନ ଶ୍ରୀରାମଙ୍କ ଦ୍ୱାରା ତାଙ୍କର ପରାକ୍ରମର ଅଦ୍ଭୁତ ଶୋଭାର ବର୍ଣ୍ଣନା ହୋଇଛି । ସେହି ପ୍ରତାପବାନ୍ ପ୍ରଭୁ ହନୁମାନ ଆମକୁ ବିଭୂତି ପ୍ରଦାନ କରନ୍ତୁ ।୬।

ସୀତାଙ୍କ ଶୋକ ସନ୍ତାପ ବିନାଶରେ ଦକ୍ଷ, ପ୍ରବଳ ପ୍ରତାପୀ, ଶ୍ରୀରାମଙ୍କ ଆଲିଙ୍ଗନରୂପକ ବର ପ୍ରାପ୍ତ, ବ୍ରହ୍ମଚାରୀ ଶ୍ରେଷ୍ଠ, କାଳନେମିକୁ ଉଚିତ ଶିକ୍ଷା ଦେଇଥିବା, ସେହି ପଞ୍ଚାନନ ସିଂହ ସ୍ୱରୂପ ହନୁମାନ୍ ଆମର ବିପତ୍ତିକୁ ଦୂର କରନ୍ତୁ ।୭।

ଉଦୟକାଳୀନ ସହସ୍ର ସୂର୍ଯ୍ୟଙ୍କ ଅରୁଣବର୍ଣ୍ଣ ପରି ଯାହାଙ୍କ ଶରୀର, ଯେ

ରକ୍ଷଃପିଶାଚଭୟନାଶନମାମୟାଧି-
ପ୍ରୋଚ୍ଚୈର୍ଜ୍ୱରାପହରଣଂ ଦମନଂ ରିପୂଣାମ୍ ।
ସମ୍ପତ୍ତିପୁତ୍ରକରଣଂ ବିଜୟପ୍ରଦାନଂ
ସଂକଷ୍ଟମୋଚନବିଭୋଃ ସ୍ତବନଂ ନରାଣାମ୍ ॥ ୯ ॥
ଦାରିଦ୍ର୍ୟଦୁଃଖଦହନଂ ବିଜୟଂ ବିବାଦେ
କଲ୍ୟାଣସାଧନମମଙ୍ଗଳବାରଣଂ ଚ ।
ଦାମ୍ପତ୍ୟଦୀର୍ଘସୁଖସର୍ବମନୋରଥାପ୍ତିଂ
ଶ୍ରୀମାରୁତେଃ ସ୍ତବଶତାବୃତିରାତନୋତି ॥ ୧୦ ॥
ସ୍ତୋତ୍ରଂ ଯ ଏତଦନୁବାସରମସ୍ତକାମଃ
ଶ୍ରୀମାରୁତିଂ ସମନୁଚିନ୍ତ୍ୟ ପଠେତ୍ ସୁଧୀରଃ ।
ତସ୍ମୈ ପ୍ରସାଦସୁମୁଖୋ ବରବାନରେନ୍ଦ୍ରଃ
ସାକ୍ଷାତ୍କୃତୋ ଭବତି ଶାଶ୍ୱତିକଃ ସହାୟଃ ॥ ୧୧ ॥
ସଂକଷ୍ଟମୋଚନସ୍ତୋତ୍ରଂ ଶଙ୍କରାର୍ଯ୍ୟଭିକ୍ଷୁଣା ।
ମହେଶ୍ୱରେଣ ରଚିତଂ ମାରୁତେଶ୍ୱରତୋଽର୍ପିତମ୍ ॥ ୧୨ ॥

---

ପୀତାମ୍ବର ପରିଧାନ କରିଛନ୍ତି; ଯାହାଙ୍କ ନେତ୍ର ଜଳୁଥିବା ନିଆଁପରି ଯେ ରାକ୍ଷସମାନଙ୍କୁ ଦେଖି ବିନାଶ କରନ୍ତି, ପ୍ରଳୟକାଳୀନ ମେଘ ଭଳି ଯାହାଙ୍କ ରବ, ଯେ ଗଦାକୁ ଶୂନ୍ୟ ଉପରେ ବୁଲାନ୍ତି, ସେହି ବିପଦଭଞ୍ଜନ ବାତସୁତ ହନୁମାନଙ୍କୁ ଆମେ ପ୍ରତିଦିନ ଧ୍ୟାନ କରିବା ଉଚିତ ।୮।

ସଙ୍କଟମୋଚନ ପ୍ରଭୁ ହନୁମାନ୍‌ଙ୍କ ସ୍ତବ ଲୋକମାନଙ୍କ ରାକ୍ଷସ, ପିଶାଚ (ବା ଭୂତପ୍ରେତ)ଙ୍କ ଭୟ ନାଶକରେ, ଆଧି-ବ୍ୟାଧି-ଶୋକ-ସଂତାପ- ଜ୍ୱର ଦାହାଦିର ଉପଶମ କରେ, ଶତ୍ରୁମାନଙ୍କ ଦମନ କରେ, ପୁତ୍ରସମ୍ପଦ୍ ଦାନକରେ ବିଜୟ ପ୍ରଦାନକରେ ।୯।

ମାରୁତିଙ୍କ ସ୍ତବ ଶହେ ଥର ପାଠକଲେ ଦରିଦ୍ରତା ଓ ଦୁଃଖର ଦହନ ହୋଇଯାଏ । ବାଦବିବାଦରେ ଜୟଲାଭ ହୁଏ, ସକଳ କଲ୍ୟାଣ ସାଧନ ହୁଏ । ଅମଙ୍ଗଳ ନିବାରଣ ହୁଏ । ଗୃହସ୍ଥ ଜୀବନରେ ଦୀର୍ଘ ଦାମ୍ପତ୍ୟ ସୁଖ ଲାଭହୁଏ ଏବଂ ସମସ୍ତ ମନୋରଥ ପୂର୍ଣ୍ଣ ହୁଏ ।୧୦।

ଯେଉଁ ଉତ୍ତମ ବୁଦ୍ଧିମାନ୍ ଲୋକ ହନୁମାନଙ୍କୁ ଧ୍ୟାନ କରି ପ୍ରତିଦିନ ନିଷ୍କାମଭାବରେ ଏହି ସ୍ତୋତ୍ର ପାଠ କରିବ ତାହା ପ୍ରତି ସନ୍ତୁଷ୍ଟ ବାନରରାଜ ହନୁମାନ୍ ତାହାକୁ ସାକ୍ଷାତ୍ ଦର୍ଶନଦେଇ ସବୁବେଳେ ସାହାଯ୍ୟ କରନ୍ତି ।୧୧।

କାଶୀପୀଠାଧୀଶ୍ୱର ଶଙ୍କର ଆଶ୍ରମର ମହେଶ୍ୱରାନନ୍ଦ ସରସ୍ୱତୀଙ୍କ ରଚିତ ଏହି ସଂକଷ୍ଟମୋଚନ ସ୍ତୋତ୍ର ଶ୍ରୀହନୁମାନଙ୍କ ଚରଣରେ ଅର୍ପିତ ହେଲା ।୧୨।

## ମନ୍ତ୍ରାତ୍ମକଂ ଶ୍ରୀମାରୁତିସ୍ତୋତ୍ରମ୍

ଓଁ ନମୋ ବାୟୁପୁତ୍ରାୟ ଭୀମରୂପାୟ ଧୀମତେ ।
ନମସ୍ତେ ରାମଦୂତାୟ କାମରୂପାୟ ଶ୍ରୀମତେ ॥ ୧ ॥

ମୋହ ଶୋକ ବିନାଶାୟ ସୀତାଶୋକବିନାଶିନେ ।
ଭଗ୍ନାଶୋକବନାୟାସ୍ତୁ ଦଗ୍ଧଲଙ୍କାୟ ବାଗ୍ମିନେ ॥ ୨ ॥

ଗତିନିର୍ଜିତ ବାତାୟଲକ୍ଷ୍ମଣପ୍ରାଣଦାୟ ଚ ।
ବନୌକସାଂ ବରିଷ୍ଠାୟ ବଶିନେ ବନବାସିନେ ॥ ୩ ॥

ତତ୍ତ୍ୱଜ୍ଞାନ ସୁଧାସିନ୍ଧୁ ନିମଗ୍ନାୟ ମହୀୟସେ ।
ଆଂଜନେୟାୟ ଶୂରାୟ ସୁଗ୍ରୀବସଚିବାୟ ତେ ॥୪॥
ଜନ୍ମମୃତ୍ୟୁଭୟଘ୍ନାୟ ସର୍ବକ୍ଲେଶହରାୟ ଚ ।
ନେଦିଷ୍ଠାୟ ପ୍ରେତଭୂତ ପିଶାଚଭୟହାରିଣେ ॥୫॥
ଯାତନା-ନାଶନାୟାସ୍ତୁ ନମୋ ମର୍କଟରୂପିଣେ ।
ଯକ୍ଷ ରାକ୍ଷସ ଶାର୍ଦ୍ଦୂଳ ସର୍ପ ବୃଶ୍ଚିକଭୀହୃତେ ॥୬॥

---

ଭୟଙ୍କର ରୂପଧାରୀ ବୁଦ୍ଧିମାନ୍ ବାୟୁପୁତ୍ର ହନୁମାନ୍‌ଙ୍କୁ ନମସ୍କାର । ନିଜ ଇଚ୍ଛାନୁସାରେ ରୂପ ଧାରଣ କରିପାରୁଥିବା ଶ୍ରୀରାମ ଦୂତଙ୍କୁ ନମସ୍କାର ।୧।

ମୋହ ଓ ଶୋକର ବିନାଶକ, ସୀତାଙ୍କ ଶୋକ ନାଶକ, ଅଶୋକ ବନ ଧ୍ୱଂସକ, ଲଙ୍କାଦଗ୍ଧ କାରକ, ନିପୁଣ ବକ୍ତା ହନୁମାନଙ୍କୁ ନମସ୍କାର ।୨।

ପବନଠାରୁ ଆହୁରି ଅଧିକ ବେଗବାନ୍, ଲକ୍ଷ୍ମଣଙ୍କ ପ୍ରାଣଦାତା, ବନବାସୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଜିତେନ୍ଦ୍ରିୟ, ବନବାସୀ ହନୁମାନଙ୍କୁ ନମସ୍କାର ।୩।

ତତ୍ତ୍ୱଜ୍ଞାନରୂପକ ସୁଧା ସମୁଦ୍ରରେ ନିମଗ୍ନ, ମହାନ୍ ଐଶ୍ୱର୍ଯ୍ୟଶାଳୀ ସୁଗ୍ରୀବଙ୍କ ମନ୍ତ୍ରୀ ବୀର ଅଞ୍ଜନାପୁତ୍ର ହନୁମାନଙ୍କୁ ନମସ୍କାର ।୪।

ଜନ୍ମ-ମୃତ୍ୟୁ ରୂପକ ଭୟର ବିନାଶକ ସକଳ କଷ୍ଟ ହରଣକାରୀ, (ଭଗବାନ ରାମଚନ୍ଦ୍ରଙ୍କ) ଅତି ନିକଟବର୍ତ୍ତୀ ଭୂତପ୍ରେତପିଶାଚ ଭୟ ହରଣକାରୀ ହନୁମାନଙ୍କୁ ନମସ୍କାର ।୫।

ପୀଡ଼ା ବିନାଶକ, ମର୍କଟରୂପୀ, ଯକ୍ଷ-ରାକ୍ଷସ-ବ୍ୟାଘ୍ର-ସର୍ପ-ବୃଶ୍ଚିକ-ଭୟ ହରଣକାରୀ ହନୁମାନଙ୍କୁ ନମସ୍କାର ।୬।

ମହାବଳାୟ ବୀରାୟ ଚିରଂଜୀବିନେ ଉଦ୍ଧତେ ।
ହାରିଣେ ବଜ୍ରଦେହାୟ ଚୋଲ୍ଲଙ୍ଘିତମହାବ୍ଧୟେ ॥୭॥
ବଲିନାମଗ୍ରଗଣ୍ୟାୟ ନମୋ ନଃ ପାହି ମାରୁତେ ।
ଲାଭଦୋଽସି ତ୍ୱମେବାଶୁ ହନୁମନ୍ ରାକ୍ଷସାନ୍ତକ ॥୮॥
ଯଶୋ ଜୟଂ ଚ ମେ ଦେହି ଶତ୍ରୂନ୍ ନାଶୟ ନାଶୟ ।
ସ୍ୱାଶ୍ରିତାନାମ ଭୟଦଂ ଯ ଏବଂ ସ୍ତୌତି ମାରୁତମ ।
ହାନିଃ କୁତୋ ଭବେତ୍ତସ୍ୟ ସର୍ବତ୍ର ବିଜୟୀ ଭବେତ୍ ॥୯॥
ଇତି ଶ୍ରୀ ହଂସ ପୁଣ୍ୟସ୍ଥାନାଧିଷ୍ଠିତ ଶ୍ରୀ ମତ୍ପରମହଂସ ପରିବ୍ରାଜକାଚାର୍ଯ୍ୟ ଶ୍ରୀ ବାସୁଦେବାନନ୍ଦ ସରସ୍ୱତୀ କୃତଂ ମାରୁତ ସ୍ତୋତ୍ରମ୍ ॥

---

ମହାବଳବାନ୍, ବୀର, ଚିରଞ୍ଜୀବୀ, ଶତ୍ରୁମାନଙ୍କ ନିକଟରେ ଅତି ଉଦ୍ଧତ ଓ ସେମାନଙ୍କ ଗର୍ବ ହରଣ କାରୀ, ବଜ୍ର କଠିନ ଶରୀର, ସମୁଦ୍ର ଲଙ୍ଘନକାରୀ ହନୁମାନଙ୍କୁ ନମସ୍କାର ।୭।

ବଳବାନ୍ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ହନୁମାନ୍‌ଙ୍କୁ ନମସ୍କାର । ହେ ମାରୁତ ହନୁମାନ୍, ଆମ୍ଭମାନଙ୍କୁ ରକ୍ଷାକର । ହେ ରାକ୍ଷସାନ୍ତକ ହନୁମାନ୍, ତୁମେ ଶୀଘ୍ର ଲାଭଦାୟକ ହୋଇ ଥାଅ ।୮।

ଯଶ, ଜୟ ମତେ ପ୍ରଦାନ କର । ମୋର ଶତ୍ରୁମାନଙ୍କୁ ସମୂଳେ ନାଶ କର । ତୁମର ଆଶ୍ରୟ ଗ୍ରହଣ କରିଥିବା ଭକ୍ତମାନଙ୍କୁ ତୁମେ ଅଭୟପ୍ରଦାନ କରିଥାଅ । ଏହିପରି ହନୁମାନଙ୍କୁ ଯେ ସ୍ତୁତିକରେ, ତାହାର କ୍ଷତି କେମିତି ହେବ ? ସେ ସର୍ବତ୍ର ବିଜୟୀ ହେବ ।୯।

---

## ହନୁମାନ୍ ଦ୍ୱାଦଶନାମ

ହନୁମାନଞ୍ଜନାସୂନୁ ର୍ବାୟୁପୁତ୍ରୋ ମହାବଳଃ ।
ରାମେଷ୍ଟଃ ଫାଲ୍‌ଗୁନସଖଃ ପିଙ୍ଗାକ୍ଷୋଽମିତବିକ୍ରମଃ ॥
ଉଦଧିକ୍ରମଣଶ୍ଚୈବ ସୀତାଶୋକବିନାଶନଃ ।
ଲକ୍ଷ୍ମଣ ପ୍ରାଣଦାତା ଚ ଦଶଗ୍ରୀବସ୍ୟ ଦର୍ପହା ॥
ଫଳଶ୍ରୁତିଃ : ଏବଂ ଦ୍ୱାଦଶ ନାମାନି କପୀନ୍ଦ୍ରସ୍ୟ ମହାତ୍ମନଃ ।
ସ୍ୱାପକାଳେ ପ୍ରବୋଧେ ଚ ଯାତ୍ରାକାଳେ ଚ ଯଃ ପଠେତ୍ ॥
ତସ୍ୟ ସର୍ବ ଭୟଂ ନାସ୍ତି ରଣେ ଚ ବିଜୟୀ ଭବେତ୍ ।
ରାଜଦ୍ୱାରେ ଗହ୍ୱରେ ଚ ଭୟଂ ନାସ୍ତି କଦାଚନ ॥
(ଆନନ୍ଦ ରାମାୟଣ ୮।୧୩।୮-୧୧)

## ଶିବ :

'ଶିବ' ଶବ୍ଦଟି 'ଶୀଙ୍ ସ୍ୱପ୍ନେ' ଧାତୁରୁ 'ଶେରତେ ପ୍ରାଣିନୋ ଯତ୍ର ସ ଶିବଃ'– ଅଶେଷ ପାପ ତାପକ୍ଲିଷ୍ଟ ମାନବ ଯେଉଁଠି ଅନ୍ତିମ ବିଶ୍ରାମ ଗ୍ରହଣ କରେ, ସେହି ସର୍ବାଶ୍ରୟ ବା ସର୍ବାଧାର ଦେବତା ହେଉଛନ୍ତି 'ଶିବ'। ତେଣୁ 'ଶାନ୍ତଂ ଶିବଂ ଚତୁର୍ଥମଦ୍ୱୈତଂ ମନ୍ୟନ୍ତେ' – ଏହି ଶ୍ରୁତିଅନୁସାରେ ଜାଗ୍ରତ୍, ସ୍ୱପ୍ନ, ସୁଷୁପ୍ତି ଅବସ୍ଥାତ୍ରୟ ରହିତ, ସର୍ବଦୃଶ୍ୟବିବର୍ଜିତ, ସ୍ୱପ୍ରକାଶ, ସଚ୍ଚିଦାନନ୍ଦଘନ ପରଂବ୍ରହ୍ମ ହିଁ ଶିବତତ୍ତ୍ୱ। ପୁଣି ସେହି ପରମତତ୍ତ୍ୱ ନିଜର ଦିବ୍ୟଶକ୍ତିକୁ ନେଇ ଅନନ୍ତବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ସଂହାର କ୍ରିୟା କଲାବେଳେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ଶିବ ନାମରେ ଅଭିହିତ ହୁଅନ୍ତି। ଏହାସହ ଆଉ ଦୁଇ କୃତ୍ୟ ତିରୋଭାବ ଓ ଅନୁଗ୍ରହ ବେଳେ ଏମାନେ ରୁଦ୍ର ଓ ସଦାଶିବ ବୋଲି କଥିତ ହୁଅନ୍ତି। ଏ ସବୁ ଏକ ସର୍ବନିୟନ୍ତା ଶକ୍ତିର ଭିନ୍ନ ଭିନ୍ନ କ୍ରିୟା ବା କୃତ୍ୟକୁ ନେଇ ବିଭିନ୍ନ ନାମକରଣ ହୋଇଛି। ପ୍ରକୃତରେ ଯେପରି ଆକାଶର ଏକ ସୂର୍ଯ୍ୟ ଅନେକ ଘଟସ୍ଥ ଜଳ ଓ ପୁଷ୍କରିଣୀର ଜଳରେ ପ୍ରତିବିମ୍ବିତ ହୁଅନ୍ତି, ସେହିପରି ଏକ ଅଖଣ୍ଡ, ଅନନ୍ତ, ନିର୍ବିକାର ଚିଦାନନ୍ଦ ପରମାତ୍ମା ଅନେକ ଅନ୍ତଃକରଣରେ ଓ ମାୟାଭେଦରେ ପ୍ରତିବିମ୍ବିତ ହୋଇଥାଆନ୍ତି। ସେଥିରୁ ଅନ୍ତଃକରଣଗତ ପ୍ରତିବିମ୍ବର ନାମ **ଜୀବ** ଏବଂ ମାୟାଗତ ପ୍ରତିବିମ୍ବର ନାମ **ଈଶ୍ୱର**। । ଯେପରି ଅନ୍ତଃକରଣର ସ୍ୱଚ୍ଛତାଦି ତାରତମ୍ୟକୁ ନେଇ ଜୀବର କାଳ୍ପନିକ ଭେଦ, ସେହିପରି ମାୟାର ଉତ୍ପାଦକତ୍ୱ, ପାଳକତ୍ୱ ଓ ସଂହାରକତ୍ୱ ଶକ୍ତିଭେଦରେ ବ୍ରହ୍ମା, ବିଷ୍ଣୁ, ରୁଦ୍ର ପ୍ରଭୃତି କାଳ୍ପନିକ ଭେଦ ହୋଇଥାଏ। ଅନନ୍ତବ୍ରହ୍ମାଣ୍ଡର କଳ୍ପନାରେ ଅନନ୍ତ ବ୍ରହ୍ମାଣ୍ଡର ଉତ୍ପାଦନାଶକ୍ତି ମଧ୍ୟ ଅନନ୍ତ ଅଟେ। ସେହି ଗୋଟିଏ ଗୋଟିଏ ଶକ୍ତି, ଅନନ୍ତ ଅନ୍ତଃକରଣ ଓ ଉତ୍ପାଦକତ୍ୱ, ପାଳକତ୍ୱ, ସଂହାରକତ୍ୱ ଶକ୍ତି ଯୁକ୍ତ ମାୟା ଅଟେ। ଏହିପରି ଗୋଟିଏ ଗୋଟିଏ ଶକ୍ତିରୁ ବ୍ରହ୍ମାଣ୍ଡ ଓ ତଦନ୍ତର୍ଗତ ଅନନ୍ତଜୀବ ଏବଂ ଉତ୍ପାଦକ, ପାଳକ, ସଂହାରକ ବ୍ରହ୍ମା-ବିଷ୍ଣୁ-ରୁଦ୍ର ବ୍ୟକ୍ତ ହୋଇଥାଆନ୍ତି। କିନ୍ତୁ ଏ ସବୁ ପ୍ରତିବିମ୍ବର ମୂଳଭୂତ ବିମ୍ବ – ସର୍ବଥା ଏକ ଓ ଅଦ୍ୱିତୀୟ ପରାଶକ୍ତି

ବ୍ରହ୍ମ ଅଟେ, ତାହାକୁ ବିଷ୍ଣୁଭକ୍ତମାନେ ବିଷ୍ଣୁ ଭାବରେ, ରାମଭକ୍ତମାନେ ରାମ ରୂପରେ, ଶିବଭକ୍ତମାନେ ଶିବଭାବରେ ଦେଖିଥାଆନ୍ତି । ବିଷ୍ଣୁ ଓ ଶିବ ଗୋଟିଏ ମୁଦ୍ରାର ଦୁଇ ପାଖ ପରି ଏକ ଓ ଅଭିନ୍ନ । ଏମାନଙ୍କ ମଧ୍ୟରେ ଭେଦ ଦୃଷ୍ଟି ଆଧ୍ୟାତ୍ମିକ ମାର୍ଗର ଅନ୍ତରାୟ । ପଦ୍ମପୁରାଣ (୪।୨୫୦)ରେ ଭଗବାନ୍ ରାମଚନ୍ଦ୍ର ତାଙ୍କ ଭାଇ ଲକ୍ଷ୍ମଣଙ୍କୁ ବ୍ରହ୍ମା, ବିଷ୍ଣୁ, ଓ ଶିବଙ୍କ ଅଭେଦତ୍ୱ ବିଷୟରେ କହୁଛନ୍ତି—

**ଶିବେ ବିଷ୍ଣୌ ନ ବା ଭେଦୋ ନ ଚ ବ୍ରହ୍ମମହେଶୟୋଃ ।**
**ତେଷାଂ ପଦରଜଃ ପୂତଂ ବହାମ୍ୟଘବିନାଶନମ୍ ॥**

ଏହି ପୁରାଣରେ ଭଗବାନ୍ ଶ୍ରୀକୃଷ୍ଣ ଶିବପୂଜାହୀନ ଲୋକ ପାପୀ ବୋଲି କହିଛନ୍ତି—'ଭୂତେଶ୍ୱରଂ ଯେ ନ ନମେତ୍ ନ ପୂଜୟେତ୍—ନ ବା ସ୍ମରେଦ୍ ଦୁଷ୍କୃତଚେତା ମନୁଷ୍ୟଃ' । ଶ୍ରୀରାମଚରିତମାନସରେ ଗୋସ୍ୱାମୀ ତୁଳସୀଦାସ ମଧ୍ୟ ଭଗବାନ୍ ଶ୍ରୀରାମଙ୍କ ଶିବଭକ୍ତି ବିଷୟ ଲେଖିଛନ୍ତି—

**ଲିଙ୍ଗ ଥାପି ବିଧିବତ କରି ପୂଜା, ଶିବ ସମାନ ପ୍ରିୟ ମୋହି ନ ଦୂଜା ।**
**ଶିବମନ୍ତ୍ରନ୍ତୁ କରି ରଘୁକୁଳ ନାଥା, ପୂଜି ପାରଥିବ ନାୟଉ ମାଥା ॥**

କୃଷ୍ଣ ଯଜୁର୍ବେଦୀୟ ସ୍କନ୍ଦୋପନିଷଦ୍ (୪-୫, ୮)ରେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଅଭେଦତ୍ୱ ପ୍ରତିପାଦନ କରି କୁହାଯାଇଛି—

**ସ ଏବ ହି ମହାଦେବଃ ସ ଏବ ହି ମହାହରିଃ ।**
**ସ ଏବ ଜ୍ୟୋତିଷାଂ ଜ୍ୟୋତିଃ, ସ ଏବ ପରମେଶ୍ୱରଃ ।**

× × ×

**ଶିବାୟ ବିଷ୍ଣୁରୂପାୟ ଶିବରୂପାୟ ବିଷ୍ଣବେ ।**
**ଶିବସ୍ୟ ହୃଦୟଂ ବିଷ୍ଣୁ ର୍ବିଷ୍ଣୋଶ୍ଚ ହୃଦୟଂ ଶିବଃ ॥**

ଶିବ ସବୁବେଳେ ରାମନାମ ଜପ କରୁଥାନ୍ତି ଏବଂ ରାମ ସର୍ବଦା ଶିବଲିଙ୍ଗ ପୂଜା କରୁଥାନ୍ତି । ତେଣୁ ସତ୍ତ୍ୱଗୁଣ ସମ୍ପନ୍ନ ବିଷ୍ଣୁ ବା ବିଷ୍ଣୁଙ୍କ ଅବତାର ରାମ, କୃଷ୍ଣ ପ୍ରଭୃତି ଶୁକ୍ଳବର୍ଣ୍ଣ ନ ହୋଇ କୃଷ୍ଣ ବା ଶ୍ୟାମଳବର୍ଣ୍ଣ

ହୋଇଛନ୍ତି ଏବଂ ଅନ୍ୟପକ୍ଷରେ ତମୋଗୁଣ ସମ୍ପନ୍ନ ଶିବ କୃଷ୍ଣବର୍ଣ୍ଣ ନ ହୋଇ ଶୁକ୍ଳ ବା ଶ୍ୱେତବର୍ଣ୍ଣ ହୋଇଛନ୍ତି । ଏହା ପରସ୍ପରର ଧ୍ୟାନମୂଳକ ତନ୍ମୟତା ଯୋଗୁଁ ହୋଇଛି । ଶିବ ରାଧାରୂପରେ କୃଷ୍ଣସଙ୍ଗ ଲାଭ କଲାବେଳେ, କୃଷ୍ଣ କାଳୀ ରୂପରେ ଶିବସଙ୍ଗ ଲାଭ କରୁଛନ୍ତି ।

ଅମରକୋଷ (୧।୩୦-୩୪)ରେ ଶିବଙ୍କର ନିମ୍ନଲିଖିତ ୪୮ଗୋଟି ନାମ ଥିବା ଜଣାଯାଏ—

ଶମ୍ଭୁରୀଶଃ ପଶୁପତିଃ ଶିବଃ ଶୂଳୀ ମହେଶ୍ୱରଃ ।
ଈଶ୍ୱରଃ ସର୍ବ ଈଶାନଃ ଶଙ୍କରଶ୍ଚନ୍ଦ୍ରଶେଖରଃ ।।
ଭୂତେଶଃ ଖଣ୍ଡପରଶୁର୍ଗିରୀଶୋ ଗିରିଶୋ ମୃଡଃ ।
ମୃତ୍ୟୁଞ୍ଜୟଃ କୃତ୍ତିବାସାଃ ପିନାକୀ ପ୍ରମଥାଧିପଃ ।।
ଉଗ୍ରଃ କପର୍ଦ୍ଦୀ ଶ୍ରୀକଣ୍ଠଃ ଶିତିକଣ୍ଠଃ କପାଳଭୃତ୍ ।
ବାମଦେବୋ ମହାଦେବୋ ବିରୂପାକ୍ଷସ୍ତ୍ରିଲୋଚନଃ ।।
କୃଶାନୁରେତାଃ ସର୍ବଜ୍ଞୋ ଧୂର୍ଜଟିର୍ନୀଲଲୋହିତଃ ।
ହରଃ ସ୍ମରହରୋ ଭର୍ଗସ୍ତ୍ର୍ୟମ୍ବକସ୍ତ୍ରିପୁରାନ୍ତକଃ ।।
ଗଙ୍ଗାଧରୋଽନ୍ଧକରିପୁଃ କ୍ରତୁଧ୍ୱଂସୀ ବୃଷଧ୍ୱଜଃ ।
ବ୍ୟୋମକେଶୋ ଭବୋ ଭୀମଃ ସ୍ଥାଣୁ ରୁଦ୍ର ଉମାପତିଃ ।।

ଏଥିରୁ ଶମ୍ଭୁ, ଶିବ, ଶଙ୍କର – ମଙ୍ଗଳବାଚକ; ଈଶ, ମହେଶ୍ୱର; ଈଶ୍ୱର, ଈଶାନ —ପ୍ରଭୁତ୍ୱବାଚକ; ଭୂତେଶ, ପ୍ରମଥାଧିପ, ପଶୁପତି— ପ୍ରାଣୀମାନଙ୍କର ଅଧିପତିତ୍ୱ ବାଚକ । ଗିରୀଶ ଓ ଗିରିଶ ନାମଦ୍ୱୟରୁ ତାଙ୍କର ହିମାଳୟ ସହ ସମ୍ପର୍କ ତାର ଅଧିପତିତ୍ୱ ଓ ତାହା ତାଙ୍କର ଶୟନ ସ୍ଥାନ ବୋଲି ବୁଝାଉଛି । କପର୍ଦ୍ଦୀ, ଧୂର୍ଜଟି, ବ୍ୟୋମକେଶ— ନାମତ୍ରୟରୁ ତାଙ୍କର ଜଟା ପିଙ୍ଗଳ, ସେଥିରେ ଗଙ୍ଗାଧାର ହୋଇଥିବା ଓ ତାହା ଆକାଶକୁ ସ୍ପର୍ଶ କରିଥିବା ଜଣାଯାଏ । ଚନ୍ଦ୍ରଶେଖର ଓ ଗଙ୍ଗାଧର ନାମଦ୍ୱୟରୁ ସେହି ଜଟାଜୂଟରେ ଚନ୍ଦ୍ର ଗଙ୍ଗା ଥିବା ପ୍ରକାଶ । ବିରୂପାକ୍ଷ, ତ୍ରିଲୋଚନ ଓ ତ୍ର୍ୟମ୍ବକ ନାମରୁ ତାଙ୍କର ତିନୋଟି ଆଖିଥିବା ଜଣାଯାଏ । ଶ୍ରୀକଣ୍ଠ ଓ ଶିତିକଣ୍ଠ ନାମରୁ ସେ ବିଷପାନ କରିଥିବାରୁ ତାଙ୍କର କଣ୍ଠ କଳା ପଡିଯାଇଥିବା ପ୍ରକାଶ । ଶୂଳୀ, ପିନାକୀ, କପାଳଭୃତ୍ ଓ

ଖଣ୍ଡପରଶୁ ନାମରୁ ସେ ତ୍ରିଶୂଳ, ପିନାକଧନୁ, କପାଳ ଓ ଖଣ୍ଡପରଶୁ ଆୟୁଧ ରୂପେ ଧାରଣ କରିଥିବା ଜଣାଯାଏ । ବୃଷଧ୍ୱଜ ନାମରୁ ତାଙ୍କର ବାହନ ବୃଷଭ ବୋଲି ପ୍ରକାଶ । କୃଶାନୁରେତା ନାମରୁ ଅଗ୍ନିରେ ତାଙ୍କର ବୀର୍ଯ୍ୟ ପଡ଼ିଥିବା ଜଣାଯାଏ । (ହସ୍ତୀ, ମୃଗ ବା ବ୍ୟାଘ୍ରର) ଚର୍ମ ପରିଧାନ କରିଥିବାରୁ ତାଙ୍କର ନାମ କୃତ୍ତିବାସ । ବ୍ରହ୍ମାଙ୍କର ଚାରି ମାନସ-ପୁତ୍ର ସନକ, ସନନ୍ଦନ, ସନାତନ ଓ ସନତ୍‌କୁମାର ପ୍ରଜା ସୃଷ୍ଟିରେ ବିମୁଖ ହେବାରୁ ବ୍ରହ୍ମା ରାଗି ଗଲେ, ଫଳରେ ତାଙ୍କର ଲଲାଟରୁ ସ୍ୱେଦବିନ୍ଦୁ କୁଣ୍ଡରେ ପଡ଼ିଲା । ସେଥିରୁ ଏକ ନୀଳଲୋହିତ ମୂର୍ତ୍ତି ବାହାରି ରୋଦନ କଲା । ତା'ର ନାମ ବ୍ରହ୍ମା ରୁଦ୍ର ଦେଲେ । ସେ ଯୋଗଦ୍ୱାରା ମୃତ୍ୟୁକୁ ଜୟ କରି ସବୁବେଳେ ସ୍ଥିର ରହିଥିବାରୁ ତାଙ୍କର ନାମ 'ମୃତ୍ୟୁଞ୍ଜୟ' ଓ 'ସ୍ଥାଣୁ' ହେଲା । ସମସ୍ତଙ୍କ ଦୁଃଖ ହରଣ କରିବାରୁ ତାଙ୍କର ନାମ 'ହର' । ସ୍ମର ବା କନ୍ଦର୍ପକୁ ବିନାଶ କରି 'ସ୍ମରହର', ତ୍ରିପୁରାସୁରକୁ ବଧ କରି 'ତ୍ରିପୁରାନ୍ତକ', ଅନ୍ଧକ ରାକ୍ଷସକୁ ହତ୍ୟାକରି 'ଅନ୍ଧକରିପୁ', ଦକ୍ଷଙ୍କ ଯଜ୍ଞ ଧ୍ୱଂସ କରି 'କ୍ରତୁଧ୍ୱଂସୀ' ନାମରେ ସେ ପରିଚିତ, ହିଂସାବାଚକ 'ଶୃ' ଧାତୁରୁ ଉତ୍ପନ୍ନ ଶର୍ବ, ଉଗ୍ର, କାମାଦିଙ୍କୁ ଭର୍ଜନ କରିଥିବାରୁ ଭର୍ଗ, ଭୀମ, ରୁଦ୍ର, 'ମୃଡ଼ ସୁଖନେ' ଧାତୁରୁ ସୁଖୀ ଅର୍ଥକ ମୃଡ଼—ଏ ସବୁ ନାମ ତାଙ୍କର ମହତ୍ତ୍ୱ ପ୍ରତିପାଦନ କରୁଛି । ଶ୍ମଶାନାଦି ଅବସ୍ଥାନ, ଦେହରେ ଭସ୍ମ ଧାରଣ, ଦିଗମ୍ବର—ଏ ସବୁ ଲୋକବିପରୀତ ବାମ ଆଚରଣରୁ ସେ ବାମଦେବ ହେଲେ ହେଁ ମହାଦେବ । ଅଥବା ବାମ ଅର୍ଥାତ୍ ସୁନ୍ଦର ହୋଇଛନ୍ତି, ଦେବୀଙ୍କୁ ଅର୍ଦ୍ଧନାରୀଶ୍ୱର ରୂପରେ ଧାରଣ କରିଛନ୍ତି ବୋଲି 'ଉମାପତି' ସେ 'ବାମଦେବ' । ସକଳ ଶାସ୍ତ୍ରର ସେ ଜ୍ଞାତା ହେତୁ 'ସର୍ବଜ୍ଞ' । ସେ ସର୍ବତ୍ର ଅବସ୍ଥିତ ବା ତାଙ୍କର ସତ୍ତା ସର୍ବତ୍ର ବିଦ୍ୟମାନ ବୋଲି ସେ 'ଭବ' ।

ଉପର୍ଯ୍ୟୁକ୍ତ ଅଠରଗୋଟି ନାମରୁ ଶିବଙ୍କ ଆକୃତି, ପ୍ରକୃତି ଓ ଗୁଣାଗୁଣ ସମ୍ପର୍କରେ ସାମାନ୍ୟ ସୂଚନା ମିଳୁଛି । ଇଂରାଜୀ ଭାଷାରେ Proper names are non-connotative, ମାତ୍ର ଆମ ସଂସ୍କୃତ ଭାଷାରେ connotative, ବାପମା ପୁଅକୁ ନାମ ଦେଲାବେଳେ ଅକ୍ଷରର

ସ୍ମୃତି ବା ବର୍ତ୍ତମାନର ସ୍ଥିତି ବା ଭବିଷ୍ୟତର ଆଶାକୁ ନେଇ ନାମକରଣ କରିଥାଆନ୍ତି । ତେଣୁ ଅନ୍ଧର ପଦ୍ମଲୋଚନ ନାମ ପଛରେ ହୁଏତ ପରେ ଅନ୍ଧ ହୋଇଯାଇଥିବା ସ୍ମୃତି କିମ୍ବା ଭବିଷ୍ୟତ ଜନ୍ମରେ ଭଲ ଚକ୍ଷୁ ପାଇବା ଆଶା କିମ୍ବା ହେ ଭଗବାନ୍ ! ତୁମକୁ ତ ଲୋକେ ପଦ୍ମ-ଲୋଚନ ବୋଲି କହନ୍ତି, ତେଣୁ ତୁମେ କ'ଣ ମୋ ପରି ଆଖିରେ ଦେଖୁନ କି ବୋଲି ପ୍ରଶ୍ନ, ଆକ୍ଷେପ ଓ ଅଭିମାନ ବ୍ୟଞ୍ଜିତ ଆଶୟ ଅନ୍ତର୍ନିହିତ । ତେଣୁ ଦେବତାଙ୍କ ସହସ୍ରନାମ, ଅଷ୍ଟୋତ୍ତରଶତନାମ ମଧ୍ୟରେ ଦିବ୍ୟଗୁଣର ଭବ୍ୟ ଇତିହାସ ରହିଛି । ସେଗୁଡ଼ିକର ବାରମ୍ବାର ଆମ୍ରେଡ଼ନ ଦେବତାଙ୍କ ବିଷୟରେ ଆମର ଧାରଣାକୁ ଦୃଢ଼ କରିଥାଏ । ଭଗବାନ୍ ଶିବଙ୍କର ପ୍ରସିଦ୍ଧ ଧ୍ୟାନ ହେଉଛି—

ଓଁ ଧ୍ୟାୟେ ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଲ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନମ୍ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ।।

ଅର୍ଥାତ୍, ରୂପାର ପର୍ବତ ପରି ଶୁଭ୍ରବର୍ଣ୍ଣ, ସୁନ୍ଦର ଚନ୍ଦ୍ର ବିଭୂଷଣ; ରତ୍ନଭୂଷଣରେ ଉଜ୍ଜ୍ୱଳ-ଅଙ୍ଗ; ଦକ୍ଷିଣ ଊର୍ଦ୍ଧ୍ୱହସ୍ତରେ ପରଶୁ, ବାମ ଊର୍ଦ୍ଧ୍ୱହସ୍ତରେ ମୃଗ (ମୁଦ୍ରା), ଦକ୍ଷିଣ ଅଧୋହସ୍ତରେ ଅଭୟମୁଦ୍ରା ଧାରଣ କରିଥିବା; ପ୍ରସନ୍ନ, ପଦ୍ମାସନରେ ସଂସ୍ଥିତ, ଚତୁର୍ଦ୍ଦିଗରେ ଦେବତାଗଣଙ୍କ ଦ୍ୱାରା ସଂସ୍ତୁତ, ବ୍ୟାଘ୍ରଚର୍ମ ପରିହିତ, ବିଶ୍ୱର ଆଦିକାରଣ, ବିଶ୍ୱରୂପ, ନିଖିଳଭୟହର, ପଞ୍ଚାନନ, ତ୍ରିନେତ୍ର ମହାଦେବଙ୍କୁ ସବୁବେଳେ ଧ୍ୟାନ କରୁଛି ।

ଏଠାରେ ପ୍ରତିବକ୍ତ୍ରରେ ତିନୋଟି ଲେଖାଏଁ ଆଖି ସାଧାରଣତଃ ଥିବାରୁ ପଞ୍ଚଦଶନେତ୍ର କୁହା ନ ଯାଇ 'ତ୍ରିନେତ୍ର' ଶବ୍ଦର ସାମାନ୍ୟ ପ୍ରୟୋଗ ହୋଇଛି । ଶିବ ପଞ୍ଚାନନ । ତାଙ୍କର ପୂର୍ବମୁଖର ନାମ ସଦ୍ୟୋଜାତ; ପଶ୍ଚିମମୁଖର ନାମ ବାମଦେବ, ଉତ୍ତରମୁଖର ନାମ ଅଘୋର, ଦକ୍ଷିଣମୁଖର ନାମ ତତ୍ପୁରୁଷ, ଊର୍ଦ୍ଧ୍ୱମୁଖର ନାମ

ଈଶାନ* । କିନ୍ତୁ ଶିବଙ୍କ ଏହି ପଞ୍ଚମୁଖ ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହୁଏ । ଶିବ ଭୂତପତି । ତାଙ୍କର ପାଞ୍ଚଟି ମୁଖ କ୍ଷିତ୍ୟାଦି ପଞ୍ଚଭୂତର ପ୍ରତୀକ । ଶିବଙ୍କ ପୌରାଣିକ ଅଷ୍ଟମୂର୍ତ୍ତି** ମଧ୍ୟରେ ମଧ୍ୟ କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ—ଏହି ପଞ୍ଚଭୂତ ବା ମୌଳିକ ପଞ୍ଚ ଉପାଦାନ ରହିଛି । ଋଗ୍ବେଦ କାଳରେ ପଞ୍ଚଜନ ବା ପାଞ୍ଚଟି ଜାତି ପ୍ରଧାନ ଥିଲେ । ଏହି ପାଞ୍ଚଜାତିର ଉପାସିତ ବୋଲି ବୋଧହୁଏ ରୁଦ୍ର ଶିବଙ୍କୁ କୁହାଯାଇଛି । ଉପନିଷଦ୍‌ର 'ଅଣୋରଣୀୟାନ୍ ମହତୋ ମହୀୟାନ୍'—ଅଣୁଠାରୁ ଆହୁରି କ୍ଷୁଦ୍ର ପରମାଣୁ ପରି ଅଥଚ ମହତ୍ତ୍ୱରୁ ଆହୁରି ମହାନ୍ ବିରାଟ ପୁରୁଷର ପଞ୍ଚମୁଖ ଚତୁର୍ଦ୍ଦିଗ ଓ ଊର୍ଦ୍ଧ୍ୱଦିଗ । ଶିବ ମହାଯୋଗୀ । ସବୁବେଳେ ଧ୍ୟାନସ୍ଥ । ସମୁଦ୍ର ମନ୍ଥନରୁ ଉଦ୍ଭୂତ ସକଳ ଉପଭୋଗ୍ୟ ଦ୍ରବ୍ୟ ଦେବତାମାନଙ୍କୁ ଦେଇ ଦେବଦେବ ମହାଦେବ ନିଜେ ବିଷକୁ କଣ୍ଠସ୍ଥ କରି ନୀଳକଣ୍ଠ ହୋଇଛନ୍ତି । ଯେ ସଂସାରର ବିଷପାନ କରି ମଧ୍ୟ

* ଶିବଙ୍କର ପଞ୍ଚବକ୍ତ୍ର, ଯଥା—

ସଦ୍ୟୋଜାତଂ ବାମଦେବମଘୋରଂ ଚ ତତଃ ପରମ୍ ।
ତତ୍ପୁରୁଷଂ ତଥେଶାନଂ ପଞ୍ଚବକ୍ତ୍ରଂ ପ୍ରକୀର୍ତ୍ତିତମ୍ ।।
ପୂର୍ବେ ସଦ୍ୟୋ ମୁଖଂ ପ୍ରୋକ୍ତଂ ପଶ୍ଚିମେ ବାମଦେବକଂ ।
ଅଘୋରମୁତ୍ତରେ ଦେବ ଦକ୍ଷେ ତତ୍ପୁରୁଷଂ ସ୍ମୃତମ୍ ।
ଊର୍ଦ୍ଧ୍ୱଦେଶେ ଚ ଈଶାନଂ ସର୍ବକାମ ଫଳପ୍ରଦମ୍ ।।

** ଶିବଙ୍କ ଅଷ୍ଟମୂର୍ତ୍ତି ବିଷୟରେ ପ୍ରମାଣ; ଯଥା —

ସୂର୍ଯ୍ୟୋ ଜଳଂ ମହୀ ବହ୍ନିର୍ବାୟୁରାକାଶମେବ ଚ ।
ଦୀକ୍ଷିତୋ ବ୍ରାହ୍ମଣଃ ସୋମ ଇତ୍ୟେତାସ୍ତନବଃ ସ୍ମୃତାଃ ।।
(ଇତି ବସ୍ତୁସ୍ମରଣମ୍)

ଶିବଙ୍କ ଏହି ଅଷ୍ଟମୂର୍ତ୍ତିର ହିଁ ସ୍ତବ କରି ମହାକବି କାଳିଦାସ ଅଭିଜ୍ଞାନ-ଶାକୁନ୍ତଳମ୍‌ର ଆରମ୍ଭରେ ଲେଖିଛନ୍ତି—

ଯା ସୃଷ୍ଟିଃ ସ୍ରଷ୍ଟୁରାଦ୍ୟା ବହତି ବିଧିହୁତଂ ଯା ହବିର୍ଯା ଚ ହୋତ୍ରୀ
ଯେ ଦ୍ୱେ କାଳଂ ବିଧତ୍ତଃ ଶ୍ରୁତିବିଷୟଗୁଣା ଯା ସ୍ଥିତା ବ୍ୟାପ୍ୟ ବିଶ୍ୱମ୍ ।
ଯାମାହୁଃ ସର୍ବବୀଜପ୍ରକୃତିରିତି ଯୟା ପ୍ରାଣିନଃ ପ୍ରାଣବନ୍ତଃ
ପ୍ରତ୍ୟକ୍ଷାଭିଃ ପ୍ରପନ୍ନସ୍ତନୁଭିରବତୁ ବସ୍ତାଭିରଷ୍ଟାଭିରୀଶଃ ।।

ସ୍ଥାଣୁ ପରି ନିଶ୍ଚଳ ରହିପାରନ୍ତି ସେ ହିଁ ଜଗତର ଈଶ୍ୱର ହେବା ପାଇଁ ଯୋଗ୍ୟ ଅଟନ୍ତି । କଣ୍ଠରେ ବିଶୁଦ୍ଧିଚକ୍ର ଅବସ୍ଥିତ । ତେଣୁ ସମାଜ ବା ରାଷ୍ଟ୍ରର ସକଳ କଟୁତା ବା ବିଷକୁ ବିଶୁଦ୍ଧ କରିବାକୁ ହେଲେ ନିଜେ ହୃଦୟକୁ ନେବାକୁ ହେବ ନାହିଁ କି ଆଜ୍ଞା ଦେଇ ମସ୍ତକର ସହସ୍ରାରକୁ ନେବାକୁ ହେବନାହିଁ । ସଂସାରର ବିଷଜ୍ୱାଳାରେ ହୃଦୟର ଅନାହତ ଚକ୍ର ଆହତ ହେଲେ ହୃଦ୍‌ରୋଗ (Heart Stroke)ରେ ମୃତ୍ୟୁ ହେବ ବା ଊର୍ଦ୍ଧ୍ୱ ସହସ୍ରାରକୁ ନେଲେ ମସ୍ତିଷ୍କ ଝିଲ୍ଲୀପ୍ରଦାହ (Cerebral Thrombosis) ରେ ମୃତ୍ୟୁ ହେବ । ତେଣୁ ମୃତ୍ୟୁଞ୍ଜୟୀ ହେବାକୁ ହେଲେ କୌଣସି ବିଷଦ୍ରବ୍ୟ କଣ୍ଠାଧଃକରଣ ବା କଣ୍ଠରୁ ତଳକୁ କରିବ ନାହିଁ କି କୌଣସି ବିଷମୂର୍ଚ୍ଛିତ ଭାବନାକୁ ମସ୍ତିଷ୍କରେ ସ୍ଥାନ ଦେବନାହିଁ । ତେବେ ଯାଇ ଆଧିବ୍ୟାଧି ବିନିର୍ମୁକ୍ତ ମଣିଷ ମୃତ୍ୟୁଞ୍ଜୟୀ ହୋଇପାରିବ । ଶିବଙ୍କ ମସ୍ତକରେ ଗଙ୍ଗା ପ୍ରବାହ ଓ ଚନ୍ଦ୍ର, ତାଙ୍କ ଶାନ୍ତ ଶୀତଳ ମସ୍ତିଷ୍କର ପ୍ରତୀକ । ଶିବ ଧ୍ୟାନନିମୀଳିତ ଚକ୍ଷୁରେ ସକଳ ଇନ୍ଦ୍ରିୟ ପ୍ରବୃତ୍ତିକୁ ନିରୁଦ୍ଧ କରି ସମାଧିସ୍ଥ । ଶିବଚେତନାରେ ଅଧିଷ୍ଠିତ ହୋଇ 'ମୃତ୍ୟୁଞ୍ଜୟ ମନ୍ତ୍ର' ଜପ କଲେ ମଣିଷ ସକଳ ରୋଗରୁ ମୁକ୍ତ ହୋଇ ଦୀର୍ଘାୟୁଷ ଲାଭ କରିବ ବୋଲି ଶାସ୍ତ୍ରରେ କୁହାଯାଇଛି ।

**ମୃତ୍ୟୁଞ୍ଜୟ ମନ୍ତ୍ର :—**

**ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ।**
**ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ।।**

(ତ୍ର୍ୟମ୍ବକଂ) ତ୍ରିନେତ୍ର ଶିବ (ସୁଗନ୍ଧିଂ] ସୁବାସଯୁକ୍ତ (ପୁଷ୍ଟିବର୍ଦ୍ଧନଂ) ପୁଷ୍ଟିବର୍ଦ୍ଧନକାରୀଙ୍କୁ (ଯଜାମହେ) ପୂଜା କରୁଛୁ । ସେ (ଉରୁ) ବିଶାଳ ବା ବ୍ୟାପକ (ଆରୁକଂ) ବିଭିନ୍ନ ରୋଗକୁ (ମୃତ୍ୟୋଃ) ମୃତ୍ୟୁର (ବନ୍ଧନାତ୍) ବନ୍ଧନରୁ (ଇବ) ମୁକ୍ତ କଲାଭଳି (ମୁକ୍ଷୀୟ) ମୁକ୍ତ କରନ୍ତୁ । ଅମୃତାତ୍ (ଅମୃତରୁ ବା ଅମୃତତ୍ୱ ଲାଭରୁ) ମା ମୁକ୍ଷୀୟ (ମୁକ୍ତ କରନ୍ତୁ ନାହିଁ) ।

ଏଠାରେ 'ଆରୁକଂ' ଶବ୍ଦଟି ଭର୍ତ୍ତୃହରିଙ୍କ ପ୍ରଯୁକ୍ତ 'ନମୋ ବାକଂ ଉପାସ୍ମହେ' ପରି ବୈଦିକ ପ୍ରୟୋଗ । ଏହାକୁ ନ ବୁଝି ସମସ୍ତେ

'ଉର୍ବାରୁ' ଶବ୍ଦଟିର ଅର୍ଥ ଅଭିଧାନରୁ 'କାକୁଡ଼' ବୋଲି ଦେଖି, 'କାକୁଡ଼ ବୃନ୍ତରୁ ଚ୍ୟୁତ ହେଲାପରି' ଅର୍ଥ କରନ୍ତି । ପୁଣି ଆଉ କେତେ କାକୁଡ଼ ବୃନ୍ତରୁ ସହଜରେ ଚ୍ୟୁତ ହୁଏ ନାହିଁ ବୋଲି ତାକୁ 'କଖାରୁ' ବୋଲି ଅର୍ଥ କଲାବେଳେ ଆଉ କିଏ କିଏ 'କାଙ୍କଡ଼' ବୋଲି ଅର୍ଥ କରନ୍ତି । ବରଂ 'ଆରୁକ' ଶବ୍ଦ ହିମାଳୟର ଔଷଧି-ବିଶେଷ ବୋଲି ଅର୍ଥକଲେ (ମୃତ୍ୟୋଃ ବନ୍ଧନାତ୍) ମୃତ୍ୟୁର ବନ୍ଧନରୁ (ଉରୁ-ଆରୁକଂ) ବିପୁଳ ଔଷଧିବିଶେଷ [ଇବ] ପରି ମୁକ୍ଷୀୟ [ମୁକ୍ତକର । ମାଽ ଅମୃତର ପ୍ରାପ୍ତିରୁ ବଞ୍ଚିତ କର ନାହିଁ ଅର୍ଥ ସଙ୍ଗତ ହେବ ।

ଉପର୍ଯ୍ୟୁକ୍ତ ତ୍ର୍ୟମ୍ବକ ମନ୍ତ୍ରରେ ତାର [ଓଁ], ପ୍ରସାଦ [ହୌଂ ମୃତହାରକ (ଜୁଁ ସଃ) ବୀଜ ପୁଟିତ କଲେ ତାହା ମହାମୃତ୍ୟୁଞ୍ଜୟ ମନ୍ତ୍ରରେ ପରିଣତ ହେବ ।

## ମହାମୃତ୍ୟୁଞ୍ଜୟ ଜପବିଧାନ—

ଗାୟତ୍ରୀ ମନ୍ତ୍ର ଜପ ସହ ଯଦି ଗୁରୁମୁଖପ୍ରାପ୍ତ ସବିଶେଷ ମାର୍ଗ ନିର୍ଦ୍ଦେଶ ସହ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ ପ୍ରତ୍ୟହ କରାଯାଏ, ତେବେ ଆଧି-ବ୍ୟାଧି-ନାଶ ହୋଇ ଆୟୁ ଓ ଆରୋଗ୍ୟର ବୃଦ୍ଧି ତଥା ପରମ କଲ୍ୟାଣ ସାଧନ ହେବ । ଏହାର ସଂକ୍ଷିପ୍ତ ବିଧାନ ନିମ୍ନରେ ପ୍ରଦତ୍ତ ହେଲା—

### ସଂକଳ୍ପ :

ଓଁ ଅଦ୍ୟ ବ୍ରହ୍ମଣଃ ଦ୍ୱିତୀୟେ ପରାର୍ଦ୍ଧେ ଶ୍ୱେତବାରାହକଳ୍ପେ ସପ୍ତମେ ବୈବସ୍ୱତମନ୍ୱନ୍ତରେ ଅଷ୍ଟାବିଂଶତିତମେ କଳିଯୁଗେ ପ୍ରଥମପାଦେ ଜମ୍ବୁଦ୍ୱୀପେ ଭାରତବର୍ଷେ ଭରତଖଣ୍ଡେ ମେରୋଃ ଦକ୍ଷିଣେ ପାର୍ଶ୍ୱେ ଅସ୍ମିନ୍ ପୁଣ୍ୟ (ଉତ୍କଳ) ପ୍ରଦେଶେ ପବିତ୍ରେ (ଏକାମ୍ର) କ୍ଷେତ୍ରେ ବର୍ତ୍ତମାନ (ଅମୁକ ନାମଧେୟ) ଶୁଭବର୍ଷେ (ଅମୁକନାମଧେୟ) ଶୁଭମାସେ ଶୁଭଦିନେ ଶୁଭନକ୍ଷତ୍ରେ ଶୁଭଯୋଗେ ଶୁଭ-କରଣେ ଶୁଭତିଥୌ ଅସ୍ୟ ଶ୍ରୀ ମହାମୃତ୍ୟୁଞ୍ଜୟ ଦେବତା ପ୍ରୀତ୍ୟର୍ଥଂ ମହାମୃତ୍ୟୁଞ୍ଜୟ ମନ୍ତ୍ରସ୍ୟ (ଅଷ୍ଟୋତ୍ତରଶତ/ଏକ ସହସ୍ର ସଂଖ୍ୟାକଂ) ଜପଂ କରିଷ୍ୟେ ।

## ବୀଜଯୋଗଃ—

ଓଁ ଅସ୍ୟ ଶ୍ରୀମନ୍ମୃତ୍ୟୁଞ୍ଜୟମନ୍ତ୍ରସ୍ୟ ବଶିଷ୍ଠ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀ ତ୍ର୍ୟମ୍ବକୋ ରୁଦ୍ରୋ ଦେବତା । ଶ୍ରୀଂ ବୀଜଂ । ହ୍ରୀଂ ଶକ୍ତିଃ । ସର୍ବାଭୀଷ୍ଟନିବୃତ୍ତି-ପୂର୍ବକ ସକଳମନୋରଥ ସିଦ୍ଧ୍ୟର୍ଥେ ଜପେ ବୀଜଯୋଗଃ ।

## ଅଥ ଋଷ୍ୟାଦିନ୍ୟାସଃ—

ଓଁ ବଶିଷ୍ଠ ଋଷୟେ ନମଃ—ଶିରସି । ଅନୁଷ୍ଟୁପ୍ ଛନ୍ଦସେ ନମଃ—ମୁଖେ । ଶ୍ରୀ ତ୍ର୍ୟମ୍ବକରୁଦ୍ରଦେବତାୟୈ ନମଃ—ହୃଦୟେ । ଶ୍ରୀଂ ବୀଜାୟ ନମଃ—ଗୁହ୍ୟେ । ହ୍ରୀଂ ଶକ୍ତୟେ ନମଃ ପାଦୟୋଃ ।

ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ତ୍ର୍ୟମ୍ବକଂ ଓଁ ନମୋ ଭଗବତେ ରୁଦ୍ରାୟ ଶୂଳପାଣୟେ ସ୍ୱାହା—ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ଯଜାମହେ ଓଁ ନମୋ ଭଗବତେ ରୁଦ୍ରାୟ ଅମୃତମୂର୍ତ୍ତୟେ ମାଂ ଜୀବୟ ଜୀବୟ—ତର୍ଜନୀଭ୍ୟାଂ ସ୍ୱାହା । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ ଓଁ ନମୋ ଭଗବତେ ରୁଦ୍ରାୟ ଚନ୍ଦ୍ରଶିରସେ ଜଟିନେ ସ୍ୱାହା—ମଧ୍ୟମାଭ୍ୟାଂ ବଷଟ୍ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ଉର୍ବାରୁକମିବ ବନ୍ଧନାତ୍ ଓଁ ନମୋ ଭଗବତେ ରୁଦ୍ରାୟ ତ୍ରିପୁରାନ୍ତକାୟ ହ୍ରାଂ ହ୍ରୀଂ—ଅନାମିକାଭ୍ୟାଂ ହୁଂ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ମୃତ୍ୟୋର୍ମୁକ୍ଷୀୟ ଓଁ ନମୋ ଭଗବତେ ରୁଦ୍ରାୟ ତ୍ରିଲୋଚନାୟ ଋଗ୍ୟଜୁଃସାମ-ମନ୍ତ୍ରାୟ କନିଷ୍ଠିକାଭ୍ୟାଂ ବୌଷଟ୍ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ମାମୃତାତ୍ ଓଁ ନମୋ ଭଗବତେ ରୁଦ୍ରାୟ ଅଗ୍ନିତ୍ରୟାୟ ଜ୍ୱଲ ଜ୍ୱଲ ମାଂ ରକ୍ଷ ରକ୍ଷ ଅଘୋରାସ୍ତ୍ରାୟ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

## ହୃଦୟାଦିନ୍ୟାସଃ—

ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ତ୍ର୍ୟମ୍ବକଂ ଓଁ ନମୋ ଭଗବତେ ରୁଦ୍ରାୟ ଶୂଳପାଣୟେ ସ୍ୱାହା—ହୃଦୟାୟ ନମଃ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ଯଜାମହେ ଓଁ ନମୋ ଭଗବତେ ରୁଦ୍ରାୟ ଅମୃତମୂର୍ତ୍ତୟେ ମାଂ ଜୀବୟ ଜୀବୟ ଶିରସେ ସ୍ୱାହା । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ଓଁ ନମୋ ଭଗବତେ ରୁଦ୍ରାୟ ଚନ୍ଦ୍ରଶିରସେ ଜଟିନେ ସ୍ୱାହା—ଶିଖାୟୈ ବଷଟ୍ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ

ଉର୍ବାରୁକମିବ ବନ୍ଧନାତ୍ ଓଁ ନମୋ ଭଗବତେ ରୁଦ୍ରାୟ ତ୍ରିପୁରାନ୍ତକାୟ ହ୍ରାଂ ହ୍ରୀଂ କବଚାୟ ହୁଂ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ମୃତ୍ୟୋର୍ମୁକ୍ଷୀୟ ଓଁ ନମୋ ଭଗବତେ ରୁଦ୍ରାୟ ତ୍ରିଲୋଚନାୟ ଋଗ୍ୟଜୁଃସାମମନ୍ତ୍ରାୟ ନେତ୍ରତ୍ରୟାୟ ବୌଷଟ୍ । ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ ମାମୃତାତ୍ ଓଁ ନମୋ ଭଗବତେ ରୁଦ୍ରାୟ ଅଗ୍ନିତ୍ରୟାୟ ଜ୍ୱଳ ଜ୍ୱଳ ମାଂ ରକ୍ଷ ରକ୍ଷ ଅଘୋରାସ୍ତ୍ରାୟ ଅସ୍ତ୍ରାୟ ଫଟ୍ ।

## ଅଥ ବର୍ଣ୍ଣନ୍ୟାସଃ—

ଓଁ ତ୍ର୍ୟଂ ନମଃ—ଦକ୍ଷିଣଚରଣାଗ୍ରେ । ବଂ ନମଃ କଂ ନମଃ ଯଂ ନମଃ ଜାଂ ନମଃ—ଦକ୍ଷିଣଚରଣସନ୍ଧିଚତୁଷ୍କେଷୁ । ମଂ ନମଃ—ବାମଚରଣାଗ୍ରେ । ହେଂ ନମଃ, ସୁଂ ନମଃ, ଗଂ ନମଃ, ଧିଂ ନମଃ—ବାମଚରଣସନ୍ଧିଚତୁଷ୍କେଷୁ । ପୁଂ ନମଃ—ଗୁହ୍ୟେ । ଷ୍ଟିଂ ନମଃ—ଆଧାରେ । ବଂ ନମଃ—ଜଠରେ । ର୍ଦ୍ଧଂ ନମଃ—ହୃଦୟେ । ନଂ ନମଃ—କଣ୍ଠେ । ଓଁ ଉଂ ନମଃ—ଦକ୍ଷିଣକରାଗ୍ରେ । ର୍ବାଂ ନମଃ, ରୁଂ ନମଃ, କଂ ନମଃ, ମିଂ ନମଃ—ଦକ୍ଷିଣକରସନ୍ଧିଚତୁଷ୍କେଷୁ । ବଂ ନମଃ—ବାମକରାଗ୍ରେ । ବଂ ନମଃ, ଧଂ ନମଃ, ନାଂ ନମଃ; ମୃଂ ନମଃ—ବାମକରସନ୍ଧିଚତୁଷ୍କେଷୁ । ତ୍ୟୋଂ ନମଃ—ବଦନେ । ର୍ମୁଂ ନମଃ—ଓଷ୍ଠୟୋଃ । କ୍ଷୀଂ ନମଃ—ଘ୍ରାଣୟୋଃ । ୟଂ ନମଃ—ଦୃଶୋଃ । ମାଂ ନମଃ—ଶ୍ରବଣୟୋଃ । ମୃଂ ନମଃ—ଭ୍ରୁବୋଃ । ତାଂ ନମଃ—ଶିରସି ।

## ଅଥ ପଦନ୍ୟାସଃ—

ତ୍ର୍ୟମ୍ବକଂ—ଶିରସି । ଯଜାମହେ—ଭ୍ରୁବୋଃ । ସୁଗନ୍ଧିଂ—ଦୃଶୋଃ । ପୁଷ୍ଟିବର୍ଦ୍ଧନଂ—ମୁଖେ । ଉର୍ବାରୁକଂ—କଣ୍ଠେ । ଇବ—ହୃଦୟେ । ବନ୍ଧନାତ୍—ଉଦରେ । ମୃତ୍ୟୋଃ—ଗୁହ୍ୟେ । ମୁକ୍ଷୀୟ ଉର୍ବୋଃ । ମାଂ—ଜାନ୍ୱୋଃ । ଅମୃତାତ୍—ପାଦୟୋଃ ॥

## ଧ୍ୟାନଂ—

ଓଁ ହସ୍ତାଭ୍ୟାଂ କଳଶଦ୍ୱୟାମୃତରସୈରାପ୍ଲାବୟନ୍ତଂ ଶିରୋ
ଦ୍ୱାଭ୍ୟାଂ ତୌ ଦଧତଂ ମୃଗାକ୍ଷବଲୟେ ଦ୍ୱାଭ୍ୟାଂ ବହନ୍ତଂ ପରମ ।
ଅଙ୍କନ୍ୟସ୍ତକରଦ୍ୱୟାମୃତଘଟଂ କୈଳାସକାନ୍ତଂ ଶିବଂ
ସ୍ୱଚ୍ଛାମ୍ଭୋଜଗତଂ ନବେନ୍ଦୁମୁକୁଟାକ୍ରାନ୍ତଂ ତ୍ରିନେତ୍ରଂ ଭଜେ ॥

ମୃତ୍ୟୁଞ୍ଜୟ ମହାରୁଦ୍ର ତ୍ରାହି ମାଂ ଶରଣାଗତମ୍ ।
ଜନ୍ମମୃତ୍ୟୁଜରାରୋଗୈଃ ପୀଡ଼ିତଂ କର୍ମବନ୍ଧନୈଃ ।।
ତାବକସ୍ତ୍ୱଦ୍‌ଗତପ୍ରାଣସ୍ତ୍ୱଚ୍ଚିତ୍ତୋଽହଂ ସଦା ମୃଡ ।
ଇତି ବିଜ୍ଞାପ୍ୟ ଦେବେଶଂ ଜପେନ୍ମନ୍ତ୍ରଂ ତ୍ର୍ୟମ୍ବକମ୍ ।।

ଏହାପରେ ଭଗବାନ୍ ଶିବଙ୍କ ମାନସୋପଚାରରେ ପୂଜା କରି ନିମ୍ନଲିଖିତ ମହାମୃତ୍ୟୁଞ୍ଜୟମନ୍ତ୍ର ଜପ କରିବ —

ଓଁ ହ୍ରୌଂ ଓଁ ଜୁଂ ସଃ ଭୂର୍ଭୁବଃ ସ୍ୱଃ
ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ।
ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟମାମୃତାତ୍ ।।
ଭୂର୍ଭୁବଃ ସ୍ୱରୋଂ ଜୁଂ ସଃ ହ୍ରୌଂ ଓଁ

## ଜପସମର୍ପଣ—

ନିର୍ଦ୍ଦିଷ୍ଟ ସଂଖ୍ୟକ ମନ୍ତ୍ର ଜପ ପରେ ନିମ୍ନମନ୍ତ୍ର ପାଠପୂର୍ବକ ଜପ ସମର୍ପଣ କରିବ —

ଓଁ ତତ୍ସଦଦ୍ୟ ମୟାକୃତଃ ମହାମୃତ୍ୟୁଞ୍ଜୟମନ୍ତ୍ରସ୍ୟ
(ଅମୁକ ସଂଖ୍ୟାକଜପଃ ଶ୍ରୀମହାମୃତ୍ୟୁଞ୍ଜୟାୟାର୍ପଣମସ୍ତୁ ।
ଗୁହ୍ୟାତିଗୁହ୍ୟଗୋପ୍ତା ତ୍ୱଂ ଗୃହାଣାସ୍ମତ୍କୃତଂ ଜପମ୍ ।
ସିଦ୍ଧିର୍ଭବତୁ ମେ ଦେବ ତ୍ୱତ୍ପ୍ରସାଦାନ୍ମହେଶ୍ୱର ।।
ଓଁ ଅସିତଗିରି ସମଂ ସ୍ୟାତ୍କଜ୍ଜ୍ୱଲଂ ସିନ୍ଧୁପାତ୍ରେ
ସୁରତରୁବରଶାଖା ଲେଖନୀପତ୍ରମୁର୍ବୀ ।
ଲିଖତି ଯଦି ଗୃହୀତ୍ୱା ଶାରଦା ସର୍ବକାଳଂ
ତଦପି ତବଗୁଣାନାମୀଶ ପାରଂ ନ ଯାତି ।।
ତ୍ୱମେବ ମାତା ଚ ପିତା ତ୍ୱମେବ, ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ, ତ୍ୱମେବ ସର୍ବଂ ମମ ଦେବଦେବ ।।

ଶିବଚେତନା ଏକ ତରଙ୍ଗହୀନ ପ୍ରଶାନ୍ତ ଅମୃତସାଗର । ଏଠାରେ ହିଁ ଅମୃତର ସନ୍ଧାନ କରାଯାଏ । ବିଷଭକ୍ଷଣ କଲେ ମଧ୍ୟ ଯାହାର ମୃତ୍ୟୁ ନାହିଁ ସେହି ମୃତ୍ୟୁଞ୍ଜୟ ଦେବତାଙ୍କୁ ଆଦର୍ଶ କରି ମୃତ୍ୟୁଞ୍ଜୟ ମନ୍ତ୍ର

ଉପର ବିଧାନ କରାଯାଇଛି । ଶିବଚେତନାରେ ଅଧିଷ୍ଠିତ ହୋଇ ସାଧନାରେ ପ୍ରବୃତ୍ତ ହେଲେ ଜୀବନରେ ନିଃଶ୍ରେୟସ ପ୍ରାପ୍ତି ଏକ ନିଶ୍ଚିତ ପ୍ରତିଶ୍ରୁତି—ଏହା ନିଃସନ୍ଦେହ ।

ସର୍ବାଧିଷ୍ଠାନ, ସର୍ବପ୍ରକାଶକ, ପରଂବ୍ରହ୍ମ ପରମାତ୍ମା ହିଁ 'ଶାନ୍ତଂ ଶିବଂ ଚତୁର୍ଥଂ ମନ୍ୟନ୍ତେ' ଇତ୍ୟାଦି ଶ୍ରୁତିପ୍ରତିପନ୍ନ ଶିବତତ୍ତ୍ୱ । ସେହି ଏକ ସଚ୍ଚିଦାନନ୍ଦ ପରମାତ୍ମା ହିଁ ନିଜକୁ ଅର୍ଦ୍ଧନାରୀଶ୍ୱର ବା ଉମା-ମହେଶ୍ୱର ବା ଶିବଶକ୍ତି ରୂପରେ ପ୍ରକଟ କରନ୍ତି । ପରମାର୍ଥତଃ ନିର୍ଗୁଣ ନିରାକାର ହେଲେ ହେଁ ଅଚିନ୍ତ୍ୟ ଦିବ୍ୟଲୀଳା ଶକ୍ତି ବଳରେ ସେ ସଗୁଣ ସାକାର ସଚ୍ଚିଦାନନ୍ଦଘନ ରୂପରେ ପ୍ରକଟିତ ହୁଅନ୍ତି । ସତ୍ତ୍ୱ ନ ଥିଲେ ଆନନ୍ଦ ରହିବ ନାହିଁ କି ଆନନ୍ଦ ନ ଥିଲେ ସତ୍ତ୍ୱ ରହିବ ନାହିଁ । 'ସ୍ୱପ୍ରକାଶ ସତ୍ତ୍ୱ ରୂପକ ଆନନ୍ଦ' ବୋଲି କହିବା ଦ୍ୱାରା ଆନନ୍ଦର ବୈଷୟିକ ସୁଖ-ରୂପତା ନିବାରଣ ହୁଏ ଏବଂ ସତ୍ତ୍ୱକୁ ଆନନ୍ଦ-ସ୍ୱରୂପ ବୋଲି କହିବା ଦ୍ୱାରା ତା'ର ଜଡ଼ତା ନିବାରିତ ହୁଏ । ତେଣୁ ନିର୍ଗୁଣ ବ୍ରହ୍ମଙ୍କ ରାଧାକୃଷ୍ଣ ବିଗ୍ରହ ବା ହର-ପାର୍ବତୀ ରୂପରେ ସଗୁଣ ପ୍ରକାଶ ଦ୍ୱାରା ସତ୍ତ୍ୱାନନ୍ଦ—ଅନୁଭୂତ ହୁଏ । ଅନ୍ୟ ଦୃଷ୍ଟିରୁ ବିଚାର କଲେ—

ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।
ତାସାଂ ବ୍ରହ୍ମ ମହଦ୍ୟୋନିରହଂ ବୀଜପ୍ରଦଃ ପିତା ॥ (ଗୀତା ୧୪।୪)

ଅର୍ଥାତ୍ ସକଳ ଯୋନିରେ ଯେଉଁ ସବୁ ମୂର୍ତ୍ତି ଉତ୍ପନ୍ନ ହୁଅନ୍ତି, ସେ ସବୁର ମହାମାତା ହେଉଛି ପ୍ରକୃତି ଏବଂ ବୀଜବପନକାରୀ ଶିବ (ଲିଙ୍ଗ) ପିତା ହେଉଛି ମୁଁ । ଅର୍ଥାତ୍ ମୂଳପ୍ରକୃତି ଓ ପରମାତ୍ମା ହିଁ ଲିଙ୍ଗଯୋନି ରୂପରେ ସକଳ ମୂର୍ତ୍ତି ଉତ୍ପାଦନ କରୁଛନ୍ତି । ତେଣୁ ଶିବ-ଶକ୍ତିଙ୍କ ଲିଙ୍ଗଯୋନି ରୂପରେ ପୂଜା ଆମେ କରିଥାଉଁ । ନିରାକାର, ନିର୍ବିକାର, ବ୍ୟାପକ-ଦୃକ୍ ବା ପୁରୁଷତତ୍ତ୍ୱର ପ୍ରତୀକ ହେଉଛି 'ଲିଙ୍ଗ' ଏବଂ ଅନନ୍ତବ୍ରହ୍ମାଣ୍ଡୋତ୍ପାଦିକା ମହାଶକ୍ତି ପ୍ରକୃତି ହେଉଛି 'ଯୋନି' । ସାଂଖ୍ୟର ଅନ୍ଧ ସଚେତନ ପୁରୁଷ ଉପରେ ପଙ୍ଗୁ ଜଡ଼ ପ୍ରକୃତି ଆରୋହଣ କଲା ପରି ବ୍ରହ୍ମାଣ୍ଡଲିଙ୍ଗଙ୍କୁ ବିଶ୍ୱପ୍ରକୃତି ଆବୃତ କରି ରହିଛି । ଲିଙ୍ଗର

ଊର୍ଦ୍ଧ୍ୱମୁଖତାରୁ ବିଚଶିତ ରତିର ସୂଚନା ମିଳୁଛି । ତେଣୁ ଶାସ୍ତ୍ରରେ ଲିଙ୍ଗଗଠନର ପ୍ରଣାଳୀ ବିଷୟରେ ଉଲ୍ଲେଖ ଅଛି—

ଲିଙ୍ଗସ୍ୟ ଯଦ୍ଭବେତ୍ ବିସ୍ତାରଃ ପରିମାଣୋଽପି ତାଦୃଶଃ ।
ଲିଙ୍ଗସ୍ୟ ଦ୍ୱିଗୁଣା ବେଦୀ ଯୋନିସ୍ତଦର୍ଦ୍ଧସଂମିତାଃ ॥
ସର୍ବତୋଽଙ୍ଗୁଷ୍ଠତୋ ହ୍ରସ୍ୱଂ ନ କଦାଚିଦପି କୃତମ୍ ।
ରତ୍ନାଦିଷୁ ଚ ନିର୍ମାଣେ ମାନମିଚ୍ଛାବଶାଦ୍ଭବେତ୍ ॥

ଲିଙ୍ଗର ପରିମାଣ ଅନୁସାରେ ତାହାର ବିସ୍ତୃତି ହେବ । ଲିଙ୍ଗ ପରିମାଣର ଦ୍ୱିଗୁଣ ହେବ ବେଦୀର ପରିମାଣ । ବେଦୀର ଅର୍ଦ୍ଧ ପରିମାଣ ହେବ ଯୋନିର ପରିମାଣ । କୌଣସି ପରିମାଣ ଅଙ୍ଗୁଷ୍ଠ ପରିମାଣରୁ କମିବ ନାହିଁ । କାରଣ କଠୋପନିଷଦ୍ (୨।୧।୧୨)ରେ 'ଅଙ୍ଗୁଷ୍ଠ ମାତ୍ରଃ ପୁରୁଷଃ' ବୋଲି ଉକ୍ତ ଅଛି । କିନ୍ତୁ ରତ୍ନାଦିଦ୍ୱାରା ଲିଙ୍ଗ ନିର୍ମାଣ କଲେ ନିଜ ଇଚ୍ଛା ଓ ସାମର୍ଥ୍ୟ ଅନୁସାରେ ପରିମାଣ ସ୍ଥିର କରିବେ ।

ଲିଙ୍ଗର ମୂଳରେ ବ୍ରହ୍ମା, ମଧ୍ୟରେ ବିଷ୍ଣୁ ଏବଂ ଉପରେ ପ୍ରଣବାଖ୍ୟ (ଓଁକାର ପ୍ରତିପାଦ୍ୟ) ସଦାଶିବ ଏବଂ ଲିଙ୍ଗବେଦୀରେ (ଗୌରୀପଟ୍ଟ ବା ଯୋନିପୀଠରେ) ମହାଦେବୀ ଆଦ୍ୟାଶକ୍ତି ଅବସ୍ଥିତ । ତେଣୁ କେବଳ ଲିଙ୍ଗପୂଜା ଦ୍ୱାରା ସକଳ ଦେବଦେବୀଙ୍କର ପୂଜା ସମ୍ପନ୍ନ ହୋଇଥାଏ ବୋଲି ଲିଙ୍ଗ ପୁରାଣରେ କୁହାଯାଇଛି—

ମୂଲେ ବ୍ରହ୍ମା ତଥା ମଧ୍ୟେ ବିଷ୍ଣୁସ୍ତ୍ରିଭୁବନେଶ୍ୱରଃ ।
ତଦୁପରି ମହାଦେବଃ ପ୍ରଣବାଖ୍ୟଃ ସଦାଶିବଃ ॥
ଲିଙ୍ଗବେଦୀ ମହାଦେବୀ ଲିଙ୍ଗଂ ସାକ୍ଷାନ୍ମହେଶ୍ୱରଃ ।
ତୟୋଃ ସଂପୂଜନାନ୍ନିତ୍ୟଂ ଦେବଦେବୀଶ୍ଚ ପୂଜିତୌ ॥

ଏଠାରେ ପ୍ରଣବ (ଓଁ)କୁ ସଦାଶିବ ବୋଲି କୁହାଯାଇଛି, ପ୍ରକୃତରେ ଏହି ପ୍ରଣବ ଅ-ଉ ମ-ନାଦ-ବିନ୍ଦୁ ପଞ୍ଚ-ଅକ୍ଷରର ସୂକ୍ଷ୍ମ ସମବାୟ ହେତୁ ସୂକ୍ଷ୍ମ ପଞ୍ଚାକ୍ଷର ଏବଂ ଶିବଙ୍କ ସ୍ଥୂଳ ପଞ୍ଚାକ୍ଷର ମନ୍ତ୍ର 'ନମଃ ଶିବାୟ' ହେଉଛି ସ୍ଥୂଳପ୍ରଣବ । ତେଣୁ 'ଓଁ (ପ୍ରଣବ) ହ୍ରୀଁ ନମଃ ଶିବାୟ' ବୋଲି 'ଓଁ ନମଃ ଶିବାୟ' ମନ୍ତ୍ରରେ ଶିବଙ୍କର ପୂଜା ହୁଏ । ତେଣୁ କୁହାଯାଇଛି—

"ତଦେବ ଲିଙ୍ଗଂ ପ୍ରଥମଂ ପ୍ରଣବଂ ସାର୍ବକାମିକମ୍ ।
ସୂକ୍ଷ୍ମ ପ୍ରଣବରୂପଂ ହି ସୂକ୍ଷ୍ମରୂପଂ ତୁ ନିଷ୍କଳମ୍ ।
ସ୍ଥୂଳଲିଙ୍ଗଂ ହି ସକଳଂ ତତ୍ପଞ୍ଚାକ୍ଷରମୁଚ୍ୟତେ ॥"

ଶିବଲିଙ୍ଗରେ ବିଲ୍ୱପତ୍ର ଦେଇ ଜଳରେ ଅଭିଷେକ କରାଯାଏ । ସାଧାରଣତଃ ଦେବତାମାନଙ୍କୁ ଫୁଲ ଦେଲାବେଳେ ପୁଷ୍ପର ଉଦ୍‌ଗମ ଅନୁସାରେ ଅର୍ଥାତ୍ ଫୁଲ ଯେପରି ଫୁଟିଥାଏ ସେପରି ଦିଆଯାଏ । ମାତ୍ର ବୁଢ଼ାଆଙ୍ଗୁଠି ଓ ତର୍ଜନୀ ଆଙ୍ଗୁଠିରେ ଡେମ୍ଫକୁ ଧରି ଲିଙ୍ଗ ଉପରେ ବେଲ ପତ୍ରକୁ ଅଧୋମୁଖରେ ଅର୍ପଣ କରାଯାଏ । ତେଣୁ କୁହାଯାଇଛି —

ଯଥୋତ୍ପନ୍ନଂ ତଥା ଦେୟଂ ପୁଷ୍ପଂ ବିଲ୍ୱଂ ତ୍ୱଧୋମୁଖମ୍ ।
ଅଙ୍ଗୁଷ୍ଠ ତର୍ଜନୀଭ୍ୟାଂ ଚ ବୃନ୍ତଂ ଧୃତ୍ୱା ସମର୍ପୟେତ୍ ।।

ବେଲଫଳକୁ 'ଶ୍ରୀଫଳ' ଏବଂ ବେଲଗଛକୁ 'ଶ୍ରୀବୃକ୍ଷ' କୁହାଯାଏ । ଶ୍ରୀସୂକ୍ତରେ ମଧ୍ୟ ବିଲ୍ୱବୃକ୍ଷ ଓ ବିଲ୍ୱ ଫଳର ଉଲ୍ଲେଖ ଅଛି । ବେଲପତ୍ରର ବାହାର କୋମଳାଂଶରେ ଲକ୍ଷ୍ମୀ ନିବାସ କରନ୍ତି ବୋଲି ବେଲପତ୍ରକୁ ଲିଙ୍ଗରେ ଚଢ଼ାଇଲାବେଳେ ତା'ର କଅଁଳ ପାଖଟିକୁ ଲିଙ୍ଗ ଦେହରେ ଲାଗାଇ ଅର୍ପଣ କରାଯାଏ । ଏହାଦ୍ୱାରା ପୂଜକ ଶ୍ରୀସମ୍ପନ୍ନ ବା ଲକ୍ଷ୍ମୀବାନ୍ ହୁଏ ।

ଶିବଙ୍କର ଅଭିଷେକ ଶଙ୍ଖଜଳରେ କରିବା ଓ ଶିବଲିଙ୍ଗରେ ତୁଳସୀ ଚଢ଼ାଇବା ନିଷିଦ୍ଧ । କିନ୍ତୁ ଶିବଶକ୍ତିଙ୍କ ମିଳନପୀଠିକା ଶ୍ରୀଯନ୍ତ୍ରରେ ବିଲ୍ୱ ଓ ତୁଳସୀ ଉଭୟ ଅର୍ପଣ କରାଯିବା ବିଧାନ ରହିଛି । ତେଣୁ ବିଲ୍ୱ ମାହାତ୍ମ୍ୟ ପ୍ରସଙ୍ଗରେ ସ୍କନ୍ଦପୁରାଣାନ୍ତର୍ଗତ ସନତ୍କୁମାର ସଂହିତାରେ କୁହାଯାଇଛି—

ଶ୍ରୀଯନ୍ତ୍ରେ ବିଲ୍ୱପତ୍ରୈସ୍ତୁ ଶିବଲିଙ୍ଗମଥାପି ବା ।
ଯୋଽର୍ଚ୍ଚୟେଦନ୍ୱହଂ ଭକ୍ତ୍ୟା ପୁରୁଷାର୍ଥାନ୍ ସମଶ୍ନୁତେ ।।

ଏଥିରେ ଶ୍ରୀମନ୍ତ୍ରରେ ବେଲପତ୍ର ଚଢ଼ାଇ ପୂଜାକଲେ ପୁରୁଷାର୍ଥ ଚତୁଷ୍ଟୟ ମିଳେ ବୋଲି ଉଲ୍ଲେଖ ଅଛି । ଶ୍ରୀ ଲଳିତା ସହସ୍ରନାମରେ (ଫଳଶ୍ରୁତି ୫୨-୫୪) ଅନ୍ୟାନ୍ୟ ପୁଷ୍ପ ସହ ତୁଳସୀ ଓ ବିଲ୍ୱପତ୍ର ଦ୍ୱାରା ଶ୍ରୀଚକ୍ର ପୂଜା କରିବା ପାଇଁ ନିର୍ଦ୍ଦେଶ ରହିଛି—

ଏତନ୍ନାମ ସହସ୍ରୈସ୍ତୁ ଶ୍ରୀଚକ୍ରଂ ଯୋଽର୍ଚ୍ଚୟେତ୍ସକୃତ୍ ।
ପଦ୍ମୈର୍ବା ତୁଳସୀପୁଷ୍ପୈଃ କହ୍ଲାରୈର୍ବା କଦମ୍ବକୈଃ ।।

ଚମ୍ପକୈର୍ଜାତି କୁସୁମୈର୍ମଲ୍ଲିକାକରବୀରକୈଃ ।
ଛତ୍ରପୂର୍ବୈର୍ବିଲ୍ୱପତ୍ରୈର୍ବା କୁନ୍ଦକେଶରପାଟଳୈ ॥
ଅନ୍ୟୈଃ ସୁଗନ୍ଧକୁସୁମୈଃ କେତକୀମାଧବୀମୁଖୈଃ ।
ତସ୍ୟ ପୁଣ୍ୟଫଳଂ ବକ୍ତୁଂ ନ ଶକ୍ନୋତି ମହେଶ୍ୱରଃ ॥

ଶତରୁଦ୍ରୀୟ ପାଠରେ ଗଙ୍ଗାଜଳ, କ୍ଷୀର ପ୍ରଭୃତିରେ ଶିବଲିଙ୍ଗଙ୍କୁ ଅଭିଷେକ କଲେ ଅନନ୍ତ ପୁଣ୍ୟ ଲାଭ ହୁଏ । ଶିବଲିଙ୍ଗ ମଧ୍ୟ ଅନେକ ପ୍ରକାର । କାମନାଭେଦରେ ଯବ, ଗହମ ଠାରୁ ଆରମ୍ଭ କରି ମୃତ୍ତିକା ପ୍ରଭୃତି ବିଭିନ୍ନ ପଦାର୍ଥରେ ଲିଙ୍ଗ ନିର୍ମାଣର ବିସ୍ତୃତ ବିଧାନ ରହିଛି । କେତେକ ସ୍ଥାନରେ ଜ୍ୟୋତିର୍ଲିଙ୍ଗ ଓ ଆଉ କେତେକ ସ୍ଥାନରେ ସ୍ୱୟମ୍ଭୂଲିଙ୍ଗ ପୂଜା ପାଉଛନ୍ତି । ଭୁବନେଶ୍ୱର ଲିଙ୍ଗରାଜ ସ୍ୱୟମ୍ଭୂଲିଙ୍ଗ ବୋଲି ମୋ ସମ୍ପାଦିତ 'ଶୈବ ଚିନ୍ତାମଣି'ରେ ଉଲ୍ଲେଖ ରହିଛି । ମୋର ଗୁରୁପୀଠ ତିରୁ-ଇଙ୍ଗୋଇମଲ୍ଲାଇର ବା ମକ୍ଷିକାଗିରି ଉପରେ ଥିବା ବିଶାଳ ଶିବଲିଙ୍ଗ ମରକତମଣିରେ ନିର୍ମିତ । ଏହାବ୍ୟତୀତ ବାଣଲିଂଗ ଓ ନାର୍ମଦ ଲିଂଗ ମଧ୍ୟ ଅତୀବ ଉପାଦେୟ । ବାଣ ଓ ନାର୍ମଦ ଲିଂଗର ପରୀକ୍ଷା ହେବାପାଇଁ ତାକୁ ତଣ୍ଡୁଳାଦିରେ ସାତଥର ତଉଲି ହୁଏ । ଯଦି ଦ୍ୱିତୀୟ ଥର ତଉଲିବା ବେଳେ ତଣ୍ଡୁଳ ଭାରି ହୁଏ ଏବଂ ଲିଂଗ ଉଣାପ ହୋଇଯାଏ, ତେବେ ତାହା ଗୃହୀ ଲୋକଙ୍କ ପୂଜ୍ୟ ହୁଏ । ଯଦି ତଣ୍ଡୁଳଠାରୁ ଲିଂଗ ଭାରି ହୁଏ, ତେବେ ତାହା ବିରକ୍ତ ସନ୍ନ୍ୟାସୀମାନଙ୍କ ପୂଜ୍ୟ ହୁଏ । ଯଦି ଏହିପରି ସାତଥର ତଉଲିଲେ ଲିଂଗ ବରାବର କ୍ରମଶଃ ଭାରି ବା ଓଜନଦାର ହୁଏ, ତେବେ ତାହା ସନ୍ନ୍ୟାସୀଜନପୂଜ୍ୟ 'ବାଣଲିଂଗ' ଏବଂ ଅନ୍ୟଥା ଗୃହୀଜନ ଅର୍ଚ୍ଚନୀୟ ନାର୍ମଦ ଲିଂଗ ନାମରେ କଥିତ ।

ଲିଂଗ ଶବ୍ଦର ଅର୍ଥ ଚିହ୍ନ । ତେଣୁ ସୃଷ୍ଟିତତ୍ତ୍ୱର ପୂଜା ହିଁ 'ଲିଂଟ-ଶକ୍ତି'ର ପ୍ରତୀକାତ୍ମକ ପୂଜା । ସେହି ପରମାତ୍ମଶକ୍ତିର ସାର୍ଥକ ସୃଷ୍ଟି ସବୁଲୋକରେ ଈଶ୍ୱରଭାବନା କରି ଜୀବଠାରେ ଦେବଭାବରେ ଉଦ୍‌ବୁଦ୍ଧ ହେଲେ ସବୁଠାରୁ ବଡପୂଜା । ତେଣୁ କୁହାଯାଇଛି—

ଲୋକଂ ଲିଙ୍ଗାତ୍ମକଂ ଜ୍ଞାତ୍ୱା ଲିଙ୍ଗେ ଯୋଽର୍ଚ୍ଚୟତେ ହି ମାମ୍ ।
ନ ମେ ତସ୍ମାତ୍ ପ୍ରିୟତରଃ ପ୍ରିୟୋ ବା ବିଦ୍ୟତେ କ୍ୱଚିତ୍ ॥

ଏହାଛଡ଼ା ସମଗ୍ର ବିଶ୍ୱରେ ମଧ୍ୟ ଶିବ ଦର୍ଶନ କରାଯାଇ ଘିବରାଜ୍ୟରେ ବିଧିବଦ୍ଧ ଲିଂଗ ପୂଜା ହୋଇପାରେ । 'ଲୀୟତେ ଯତ୍ର ତତ୍ ଲିଂଗଂ' ବ୍ୟୁତ୍ପତ୍ତିରେ ଯାହା ଲୀନ ହୋଇଯାଏ, ତାହା ଲିଂଗ ବୋଲି ବୁଝିଲେ କେବଳ ସ୍ଥୂଳ ଦେହ କାହିଁକି ସୂକ୍ଷ୍ମ ଆକାଶ ମଧ୍ୟ 'ଲିଂଗ' ହୋଇଯିବ । ତେଣୁ କୁହାଯାଇଛି—

ଆକାଶଂ ଲିଙ୍ଗମିତ୍ୟାହୁଃ ପୃଥିବୀ ତସ୍ୟ ପୀଠିକା ।
ଆଳୟଃ ସର୍ବଦେବାନାଂ ଲୟନାଲ୍ଲିଙ୍ଗମୁଚ୍ୟତେ ॥

ଆକାଶ ହେଉଛି ଲିଂଗ, ପୃଥିବୀ ତାହାର ପୀଠ ବା ବେଦୀ । ଏହି ଆକାଶ ସର୍ବ ଦେବଙ୍କ ଆଳୟ ବା ସକଳର ଲୟ ସ୍ଥାନ ବୋଲି ଏହାର ନାମ 'ଲିଂଗ' । ଶିବପୁରାଣରେ ମଧ୍ୟ ଅଛି—

ତଲ୍ଲିଙ୍ଗସଂଜ୍ଞିତଂ ସାକ୍ଷାତ୍ ତେଜୋ ମାହେଶ୍ୱରଂ ପରମ୍ ।
ତଦେବ ମୂଳ ପ୍ରକୃତିର୍ମାୟା ଚ ଗଗନାତ୍ମିକା ॥

ତେଣୁ ସମଗ୍ର ବିଶ୍ୱରେ ମଂଗଳମୟ ଶିବଙ୍କୁ ଦେଖି ଶିବ-ଶକ୍ତି ଆରାଧନାରେ ପ୍ରବୃତ୍ତ ହୋଇ ଶିବଚେତନାରେ ଅଧିଷ୍ଠିତ ହେଲେ ପ୍ରକୃତିର ଯଥାର୍ଥ ରହସ୍ୟ ଭେଦକରି ପାରିବ । ସେତେବେଳେ ହିଁ 'ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ'—ସାଧକ ପ୍ରଭାବଶାଳୀ ବା ଆତ୍ମତତ୍ତ୍ୱଜ୍ଞ 'ପ୍ରଭୁ' ହୋଇପାରିବ । ବିକାରହୀନ ପ୍ରାକୃତ ଅବସ୍ଥା ହିଁ ଲିଂଗ ଶକ୍ତିଙ୍କ ଉପାସନା । ଶକ୍ତିମାନ୍ ହୋଇ ସକଳ କାମନା ବାସନା ବନ୍ଧନମୁକ୍ତ ହୋଇ ପରମାତ୍ମତତ୍ତ୍ୱରେ ଲୀନ ହେବା ହେଉଛି ଲିଙ୍ଗପୂଜା । ଶିବ୍ ଚେତନାରେ ଥରେ ନିମଗ୍ନ ହେଲେ ସାଧକର ଆଉ କିଛି କାମନା ରହେ ନାହିଁ । ତା'ର ଦରିଦ୍ର ପଞ୍ଚାକ୍ଷର—'କଣ କରିବା ?', ହିମନ୍ତ ଷଡ଼କ୍ଷର—'ଆଚ୍ଛା, ଦେଖାଯିବ'ରେ ପରିଣତ ହୋଇ ସେ ଜପ କରେ 'ଓଁ ନମଃ ଶିବାୟ' ଓ ଲାଗିପାଏ ଫଳାକାଂକ୍ଷା ନ ରଖି କର୍ମ କରିବାରେ ଏବଂ ପ୍ରଣତି ଜଣାଇ କହେ—

ନମଃ ଶିବାୟ ରୁଦ୍ରାୟ ନମଃ ଶକ୍ତିଧରାୟ ଚ ।
ସର୍ବବିଦ୍ୟାଧିପତୟେ ଭୂତାନାଂ ପତୟେ ନମଃ ॥

## ରୁଦ୍ରାଷ୍ଟକଂ (ତୁଳସୀକୃତମ୍)

ନମାମୀଶମୀଶାନ ନିର୍ବାଣରୂପଂ
ବିଭୁଂ ବ୍ୟାପକଂ ବ୍ରହ୍ମ ବେଦସ୍ୱରୂପଂ ।
ନିଜଂ ନିର୍ଗୁଣଂ ନିର୍ବିକଳ୍ପଂ ନିରୀହଂ
ଚିଦାକାଶମାକାଶବାସଂ ଭଜେଽହଂ ॥୧॥
ନିରାକାରମୋଂକାରମୂଳଂ ତୁରୀୟଂ
ଗିରା ଜ୍ଞାନ ଗୋଽତୀତମୀଶଂ ଗିରୀଶଂ ।
କରାଳଂ ମହାକାଳ କାଳଂ କୃପାଳଂ
ଗୁଣାଗାର ସଂସାର ପାରଂ ନତୋଽହଂ ॥୨॥
ତୁଷାରାଦ୍ରି ସଂକାଶ ଗୌରଂ ଗଭୀରଂ
ମନୋଭୂତ କୋଟି ପ୍ରଭା ଶ୍ରୀଶରୀରଂ ।
ସ୍ଫୁରନ୍ମୌଳି କଲ୍ଲୋଳିନୀ ଚାରୁ ଗଙ୍ଗା
ଲସଦ୍ଭାଲବାଳେନ୍ଦୁ କଣ୍ଠେ ଭୁଜଂଗା ॥୩॥
ଚଳତ୍କୁଣ୍ଡଳଂ ଭ୍ରୂ ସୁନେତ୍ରଂ ବିଶାଳଂ
ପ୍ରସନ୍ନାନନଂ ନୀଳକଣ୍ଠଂ ଦୟାଳଂ ।
ମୃଗାଧୀଶଚର୍ମାମ୍ବରଂ ମୁଣ୍ଡମାଳଂ
ପ୍ରିୟଂ ଶଙ୍କରଂ ସର୍ବନାଥଂ ଭଜାମି ॥୪॥

---

ଈଶ, ଈଶାନ ଓ ମୋକ୍ଷ ସ୍ୱରୂପ, ବିଭୁ, ବ୍ୟାପକ, ବ୍ରହ୍ମ, ବେଦସ୍ୱରୂପ, ଆତ୍ମସ୍ୱରୂପ, ନିର୍ଗୁଣ, ନିର୍ବିକଳ୍ପ, ଇଚ୍ଛାଶୂନ୍ୟ, ଚିଦାକାଶ, ଆକାଶବାସୀ ଶିବଙ୍କୁ ନମସ୍କାର ଓ ଉପାସନା କରୁଛୁ । ୧ ।

ନିରାକାର, ଓଁକାର ମୂଳ ବେଦସ୍ୱରୂପ, ତ୍ରିଗୁଣାତୀତ ତୁରୀୟ, ବଚନରେ ଜାଣି ନ ହେବା, ଇନ୍ଦ୍ରିୟାତୀତ, ଈଶ, ଗିରୀଶ, କରାଳ, ମହାକାଳ, କାଳ, କୃପାଳୁ, ଗୁଣର ନିଳୟ, ସଂସାରାତୀତ ଶିବଙ୍କୁ ମୁଁ ନମସ୍କାର କରୁଛି । ୨ ।

ହିମାଳୟ ପର୍ବତ ପରି ଗୌରବର୍ଣ୍ଣ, ଗମ୍ଭୀର, କନ୍ଦର୍ପ କୋଟିଙ୍କ କାନ୍ତିର ଶୋଭା ନେଇ ଯାହାର ଶରୀର, ଯାହାଙ୍କ ମସ୍ତକରେ ସୁନ୍ଦର ଗଙ୍ଗାଙ୍କ ଲହରୀ ବିଦ୍ୟମାନ, ଭାଲଦେଶରେ ଦ୍ୱିତୀୟାଚନ୍ଦ୍ର ଶୋଭମାନ, କଣ୍ଠରେ ସର୍ପ ଅବସ୍ଥିତ ସେହି ଶିବଙ୍କୁ ପ୍ରଣାମ କରୁଛୁ । ୩ ।

ଦୋଳାୟମାନ କୁଣ୍ଡଳଯୁକ୍ତ, ଭ୍ରୂ ସ୍ଥାନରେ ତୃତୀୟ ନେତ୍ର ଯୁକ୍ତ, ବିରାଟ,

ପ୍ରଚଣ୍ଡଂ ପ୍ରକୃଷ୍ଟଂ ପ୍ରଗଲ୍ଭଂ ପରେଶଂ
ଅଖଣ୍ଡଂ ଅଜଂ ଭାନୁ କୋଟି ପ୍ରକାଶଂ ।
ତ୍ରୟଃ ଶୂଳ ନିର୍ମୂଳନଂ ଶୂଳପାଣିଂ
ଭଜେଽହଂ ଭବାନୀପତିଂ ଭାବଗମ୍ୟଂ ॥ ୫ ॥
କଳାତୀତ କଲ୍ୟାଣ କଲ୍ପାନ୍ତକାରୀ
ସଦା ସଜ୍ଜନାନନ୍ଦଦାତା ପୁରାରୀ ।
ଚିଦାନନ୍ଦ ସନ୍ଦୋହ ମୋହାପହାରୀ
ପ୍ରସୀଦ ପ୍ରସୀଦ ପ୍ରଭୋ ମନ୍ମଥାରୀ ॥ ୬ ॥
ନ ଯାବଦ୍ ଉମାନାଥ ପାଦାରବିନ୍ଦଂ
ଭଜନ୍ତୀହ ଲୋକେ ପରେ ବା ନରାଣାଂ ।
ନ ତାବତ୍ସୁଖଂ ଶାନ୍ତି ସନ୍ତାପନାଶଂ
ପ୍ରସୀଦ ପ୍ରଭୋ ସର୍ବଭୂତାଧିବାସଂ ॥ ୭ ॥
ନ ଜାନାମି ଯୋଗଂ ଜପଂ ନୈବ ପୂଜାଂ
ନତୋଽହଂ ସଦା ସର୍ବଦା ଶମ୍ଭୁ ତୁଭ୍ୟଂ ।
ଜରାଜନ୍ମ ଦୁଃଖୌଘ ତାତପ୍ୟମାନଂ
ପ୍ରଭୋ ପାହି ଆପନ୍ନମାମୀଶ ଶମ୍ଭୋ ॥ ୮ ॥

---

ପ୍ରସନ୍ନମୁଖ, ନୀଳକଣ୍ଠ, ଦୟାଳୁ, ମୃଗପତି, ଚର୍ମାମ୍ବର, ମୁଣ୍ଡମାଳଯୁକ୍ତ ସର୍ବେଶ୍ୱର ପ୍ରିୟ ଶଙ୍କରଙ୍କୁ ଭଜନ କରୁଛୁ ।୪।

ପ୍ରଚଣ୍ଡ, ଉତ୍କୃଷ୍ଟ, ପ୍ରଗଲ୍ଭ, ପରମେଶ, ପୂର୍ଣ୍ଣ, ଜନ୍ମହୀନ, କୋଟିସୂର୍ଯ୍ୟ ପରି ଦୀପ୍ତିମନ୍ତ ଆଧ୍ୟାତ୍ମିକ-ଆଧିଦୈବିକ-ଆଧିଭୌତିକ ପୀଡାର ନିର୍ମୂଳନକାରୀ, ତ୍ରିଶୂଳଧାରୀ, ଭାବଗମ୍ୟ, ପାର୍ବତୀପତି ଶିବଙ୍କୁ ଭଜନ କରୁଛୁ । ୫ ।

କଳାତୀତ, ମଙ୍ଗଳ ପାଇଁ କଳ୍ପର ସଂହାରକାରୀ, ସର୍ବଦା ସଜ୍ଜନମାନଙ୍କର ଆନନ୍ଦଦାତା, ତ୍ରିପୁରାରି, ଚିଦାନନ୍ଦସମୂହ ତଥା ମୋହରବନାଶକ, ମନ୍ମଥାରି—ହେ ପ୍ରଭୁ ମୋ ଉପରେ ପ୍ରସନ୍ନ ହୁଅ । ୬ ।

ଉମାପତି ଶିବଙ୍କର ପାଦପଦ୍ମକୁ ଯେଉଁ ପର୍ଯ୍ୟନ୍ତ ଭଜନ ନ କରନ୍ତି, ଲୋକମାନେ ଇହକାଳରେ ବା ପରକାଳରେ ସେ ପର୍ଯ୍ୟନ୍ତ ସୁଖ ଶାନ୍ତି ପାଇ ପାରିବେ ନାହିଁ କି ସନ୍ତାପନାଶ ହେବ ନାହିଁ । ହେ ଭୂତପତି ! ହେ ପ୍ରଭୁ ତୁମେ ପ୍ରସନ୍ନ ହୁଅ । ୭ ।

ମୁଁ ଯୋଗ, ଜପ କି ପୂଜା କିଛି ଜାଣିନାହିଁ । ହେ ଶମ୍ଭୁ ! ମୁଁ ତୁମକୁ

ରୁଦ୍ରାଷ୍ଟକମିଦଂ ପ୍ରୋକ୍ତଂ ବିପ୍ରେଣ ହରତୋଷୟେ ।
ଯେ ପଠନ୍ତି ନରା ଭକ୍ତ୍ୟା ତେଷାଂ ଶମ୍ଭୁଃ ପ୍ରସୀଦତି ॥

—

## ରାବଣକୃତ-ଶିବତାଣ୍ଡବ ସ୍ତୋତ୍ରମ୍

ଜଟକଟାହସମ୍ଭ୍ରମଭ୍ରମନ୍ନିଲିମ୍ପନିର୍ଝରୀ
ବିଲୋଲବୀଚିବଲ୍ଲରୀ ବିରାଜମାନ ମୂର୍ଦ୍ଧନି ।
ଧଗଦ୍ଧଗଦ୍ଧଗଜ୍ଜ୍ୱଲ ଲ୍ଲଲାଟପଟ୍ଟପାବକେ
କିଶୋରଚନ୍ଦ୍ରଶେଖରେ ରତିଃ ପ୍ରତିକ୍ଷଣଂ ମମ ॥ ୧ ॥

ଜଟାଟବୀଗଲଜ୍ଜଲପ୍ରବାହପାବିତସ୍ଥଲେ
ଗଲେଽବଲମ୍ବ୍ୟଲମ୍ବିତାଂ ଭୁଜଙ୍ଗତୁଙ୍ଗମାଳିକାମ୍ ।
ଡମଡ୍ ଡମଡ୍ ଡମଡ୍ ଡମାନ୍ନିନାଦବଡ୍ଡମର୍ବୟଂ
ଚକାର ଚଣ୍ଡତାଣ୍ଡବଂ ତନୋତୁ ନଃ ଶିବଃ ଶିବମ୍ ॥ ୨ ॥

---

ସର୍ବଦା ନମସ୍କାର କରୁଛି । ଜରାବସ୍ଥା ଓ ସଂସାରରେ ଜନ୍ମଗତ ଦୁଃଖ ସମୂହରେ ମୁଁ ଅତି ସନ୍ତପ୍ତ । ହେ ଶମ୍ଭୁ ପ୍ରଭୁ ! ଆପଦ୍‌ଗ୍ରସ୍ତ ମୋତେ ରକ୍ଷାକର । ୮ ।

ବିପ୍ର ତୁଳସୀଦାସଙ୍କ ଦ୍ୱାରା ଶିବଙ୍କ ସନ୍ତୋଷ ନିମିତ୍ତ ପ୍ରୋକ୍ତ ଏହି ରୁଦ୍ରାଷ୍ଟକକୁ ଯେଉଁ ଲୋକମାନେ ପାଠ କରନ୍ତି, ସେମାନଙ୍କ ଉପରେ ଶମ୍ଭୁ ଶିବ ପ୍ରସନ୍ନ ହୁଅନ୍ତି ।

—

ଯାହାଙ୍କର ଜଟାରୂପକ କଟାହ ମଧ୍ୟରେ ଭ୍ରାମ୍ୟମାଣ ଗଙ୍ଗା ସ୍ରୋତ ଚଞ୍ଚଳ ତରଙ୍ଗ ଲହରୀରେ ପରିଶୋଭିତ, ଯାହାଙ୍କର ଲଲାଟ ପଟ୍ଟରୁ ଧକ୍ ଧକ୍ ଶବ୍ଦରେ ଅଗ୍ନିଶିଖା ପ୍ରଜ୍ଜ୍ୱଳିତ, ନବୀନ ଚନ୍ଦ୍ର (ଦ୍ୱିତୀୟା ଚନ୍ଦ୍ର) ଯାହାଙ୍କର ମସ୍ତକର ଭୂଷଣ ସେହି ଶଙ୍କର ଭଗବାନଙ୍କଠାରେ ମୋର ମନ ପ୍ରତିକ୍ଷଣରେ ଆସକ୍ତ ହୋଇ ରହୁ । ୧ ।

ଯାହାଙ୍କର ଜଟାରୂପକ ଅରଣ୍ୟରୁ ପବିତ୍ର ଜଳପ୍ରବାହ (ଗଙ୍ଗା) ବହି ଆସୁଅଛି, କଣ୍ଠଦେଶରେ ବୃହତ୍ ସର୍ପମାଳା ପ୍ରଲମ୍ବିତ ହୋଇଅଛନ୍ତି, ଡମ ଡମ ଧ୍ୱନିରେ ଡମରୁ ପ୍ରତିଧ୍ୱନିତ କରି ଯେ ପ୍ରଚଣ୍ଡତାଣ୍ଡବ ନୃତ୍ୟ କରୁଛନ୍ତି ସେହି ଶିବ ଆମ୍ଭମାନଙ୍କର କଲ୍ୟାଣ କରନ୍ତୁ । ୨ ।

ଧରାଧରେନ୍ଦ୍ରନନ୍ଦିନୀ ବିଳାସ ବନ୍ଧୁବନ୍ଧୁର-
ସ୍ଫୁରଦ୍ଦିଗନ୍ତ ସନ୍ତତି-ପ୍ରମୋଦମାନମାନସେ ।
କୃପାକଟାକ୍ଷଧୋରଣୀ ନିରୁଦ୍ଧଦୁର୍ଦ୍ଧରାପଦି
କ୍ୱଚିଦ୍ଦିଗମ୍ବରେ ମନୋ ବିନୋଦମେତୁ ବସ୍ତୁନି ॥ ୩ ॥

ଜଟାଭୁଜଙ୍ଗପିଙ୍ଗଳସ୍ଫୁରତ୍‌ଫଣାମଣିପ୍ରଭା
କଦମ୍ବକୁଙ୍କୁମଦ୍ରବ ପ୍ରଲିପ୍ତ ଦିଗ୍‌ବଧୂମୁଖେ ।
ମଦାନ୍ଧସିନ୍ଧୁରସ୍ଫୁରତ୍ତ୍ୱଗୁତ୍ତରୀୟ ମେଦୁରେ
ମନୋବିନୋଦମଦ୍ଭୁତଂ ବିଭର୍ତ୍ତୁ ଭୂତଭର୍ତ୍ତରି ॥ ୪ ॥

ଲଲାଟ ଚତ୍ୱରଜ୍ୱଳଦ୍ଧନଞ୍ଜୟସ୍ଫୁଲିଙ୍ଗଭା
ନିପୀତ ପଞ୍ଚସାୟକଂ ନମନ୍ନିଲିମ୍ପନାୟକମ୍ ।
ସୁଧାମୟୂଖରେଖୟା ବିରାଜମାନ ଶେଖରଂ
ମହାଃ କପାଳ ସମ୍ପଦେ ସରିଜ୍ଜଟାଲମସ୍ତୁ ନଃ ॥ ୫ ॥

ସହସ୍ରଲୋଚନ ପ୍ରଭୃତ୍ୟଶେଷଲେଖଶେଖର-
ପ୍ରସୂନଧୂଳିଧୋରଣୀ ବିଧୂସରାଙ୍ଘ୍ରି ପୀଠଭୂଃ ।
ଭୁଜଙ୍ଗରାଜମାଳୟା ନିବଦ୍ଧଜାଟଜୂଟକଃ
ଶ୍ରିୟୈ ଚିରାୟ ଜାୟତାଂ ଚକୋରବଂଧୁଶେଖରଃ ॥ ୬ ॥

---

ଯାହାଙ୍କର ଆନନ୍ଦ ସଞ୍ଜାତ କୃପାକଟାକ୍ଷ ଗିରିରାଜନନ୍ଦିନୀ (ପାର୍ବତୀଙ୍କର) ବିଳାସ ସହଚର ଅତି ରମଣୀୟ ଓ ଦେଦୀପ୍ୟମାନ, ଯାହା ସଂସାରର ଭୟଙ୍କର ଆପଦକୁ ଦୂର କରିପାରେ ସେହି ଦିଗମ୍ବର ଶଙ୍କର ମୋର ମନକୁ ଆନନ୍ଦିତ କରନ୍ତୁ । ୩ ।

ଯାହାଙ୍କର ଜଟାସ୍ଥ ସର୍ପମାନଙ୍କର ଫଣାସ୍ଥିତ ପିଙ୍ଗଳବର୍ଣ୍ଣ ମଣିପ୍ରଭା ପୃଷ୍ଠରେ ଦିଗଙ୍ଗନାମାନେ କୁଙ୍କୁମଦ୍ରବ ବୋଳି ହେଲାଭଳି ଦେଖାଯାନ୍ତି; ଯେ ଗଜାସୁର ଚର୍ମକୁ ଉତ୍ତରୀୟ ରୂପେ ଧାରଣ କରି ଶୋଭାଯୁକ୍ତ ହୋଇଛନ୍ତି; ସେହି ଭୂତପତି ମୋର ମନକୁ ଆନନ୍ଦିତ କରନ୍ତୁ । ୪ ।

ଯାହାଙ୍କର ଲଲାଟ ପଟରେ ପ୍ରଜ୍ୱଳିତ ଅଗ୍ନିର ସ୍ଫୁଲିଙ୍ଗ କନ୍ଦର୍ପକୁ ଭସ୍ମ କରିଅଛି; ସେହି ସ୍ୱର୍ଗର ନାୟକ ଇନ୍ଦ୍ରଙ୍କ ଦ୍ୱାରା ପୂଜିତ; ଯାହାଙ୍କର ମସ୍ତକ ଚନ୍ଦ୍ରମାଙ୍କର ଶୁଭ୍ରଜ୍ୟୋତ୍ସ୍ନାରେ ସୁଶୋଭିତ; ଯେ କପାଳ ମାଳାଧାରୀ, ଯାହାଙ୍କର ଜଟାଜୁଟରେ ଗଙ୍ଗା ବିରାଜିତ, ତେଜୋମୟ ସେହି ଶଙ୍କର ଆମ୍ଭଙ୍କୁ ସକଳ ସମ୍ପଦ ଦିଅନ୍ତୁ । ୫ ।

ଯାହାଙ୍କର ପାଦପୀଠ ଇନ୍ଦ୍ରାଦି ସମସ୍ତ ଦେବତାଙ୍କର ମସ୍ତକସ୍ଥ ପୁଷ୍ପମାଳା

କରାଳ ଭାଲପଟ୍ଟିକା ଧଗଦ୍ଧଗଦ୍ଧଗଜ୍ଜ୍ୱଳ-
ଦ୍ଧନଞ୍ଜୟାହୁତୀକୃତ-ପ୍ରଚଣ୍ଡପଞ୍ଚସାୟକେ ।
ଧରାଧରେନ୍ଦ୍ରନନ୍ଦିନୀ-କୁଚାଗ୍ରଚିତ୍ରପତ୍ରକ
ପ୍ରକଳ୍ପନୈକଶିଳ୍ପିନି ତ୍ରିଲୋଚନେ ରତିର୍ମମ ॥ ୭ ॥

ନବୀନମେଘମଣ୍ଡଳୀନିରୁଦ୍ଧଦୁର୍ଦ୍ଧରସ୍ଫୁରତ୍
କୁହୂ ନିଶୀଥିନୀ ତମଃ ପ୍ରବନ୍ଧବଦ୍ଧକନ୍ଧରଃ ।
ନିଲିମ୍ପନିର୍ଝରୀଧରସ୍ତନୋତୁ କୃତ୍ତିସୁନ୍ଦରଃ
କଳାନିଧାନବନ୍ଧୁରଃ ଶ୍ରିୟଂ ଜଗଦ୍ଧୁରନ୍ଧରଃ ॥ ୮ ॥

ପ୍ରଫୁଲ୍ଲ-ନୀଳପଙ୍କଜ ପ୍ରପଞ୍ଚକାଳିମ-ପ୍ରଭା-
ବଲମ୍ବି କଣ୍ଠକନ୍ଦଳୀ ରୁଚିପ୍ରବଦ୍ଧକନ୍ଧରମ୍
ସ୍ମରଚ୍ଛିଦଂ ପୁରଚ୍ଛିଦଂ ଭବଚ୍ଛିଦଂ ଗଜଚ୍ଛିଦଂ ।
ମଖଚ୍ଛିଦାନ୍ଧକଚ୍ଛିଦଂ ତମନ୍ତକଚ୍ଛିଦଂ ଭଜେ ॥ ୯ ॥

---

ପରାଗ ଦ୍ୱାରା ଲିପ୍ତ, ଜଟାଜୁଟ ନାଗରାଜ ବାସୁକୀଙ୍କ ଦ୍ୱାରା ଆବଦ୍ଧ ସେହି ଚନ୍ଦ୍ରଶେଖର ଚିରକାଳ ମଙ୍ଗଳ ବିଧାନ କରନ୍ତୁ । ୬ ।

ଯାହାଙ୍କର ବିଶାଳ ଭାଲ ପ୍ରଦେଶରେ ଧକ୍ ଧକ୍ ହୋଇ ଜଳୁଥିବା ଅଗ୍ନିରେ ପରାକ୍ରମଶାଳୀ କନ୍ଦର୍ପ ଆହୁତ ହୋଇଅଛି, ହିମାଳୟ ନନ୍ଦିନୀଙ୍କ କୁଚପ୍ରଦେଶରେ ଚିତ୍ରପତ୍ର ବିଧାନ ପାରଙ୍ଗମ ସେହି ତ୍ରିନେତ୍ରଙ୍କଠାରେ ମୋର ପ୍ରୀତି ରହୁ । ୭ ।

ଯାହାଙ୍କର କଣ୍ଠଦେଶ ଅମାବାସ୍ୟାର ଅର୍ଦ୍ଧରାତ୍ରିରେ ନୂଆମେଘ ଘୋଟିଥିବା ଅନ୍ଧାର ଭଳି କଳା ଦେଖାଯାଏ, ଯେ ଗଙ୍ଗାକୁ ଧାରଣ କରିଛନ୍ତି, ଗଜ ଚର୍ମରେ ସୁଶୋଭିତ ସେହି ତ୍ରିଲୋକରକ୍ଷକ ଶଶାଙ୍କମୌଳି ସମସ୍ତ ସମ୍ପଦ ଦିଅନ୍ତୁ । ୮ ।

ଯାହାଙ୍କର ଗ୍ରୀବାଦେଶ ପ୍ରଫୁଲ୍ଲ ନୀଳକମଳର ଅପରୂପ ଶୋଭା ଧାରଣ କରିଅଛି, ଯେ କନ୍ଦର୍ପ ଭସ୍ମକାରୀ, ତ୍ରିପୁରାସୁର ନାଶକାରୀ, ସଂସାର ଦୁଃଖ ଦୂରକାରୀ, ଗଜାସୁର ନାଶକାରୀ, ଦକ୍ଷଯଜ୍ଞ ବିନାଶକାରୀ; ଅନ୍ଧକାସୁର ଧ୍ୱଂସକାରୀ, ଯମଦଣ୍ଡ ନିବାରଣକାରୀ ସେହି ପ୍ରଭୁ ଶଙ୍କରଙ୍କୁ ମୁଁ ଭଜନା କରୁଅଛି । ୯ ।

ଅଖର୍ବ ସର୍ବମଙ୍ଗଲା କଲାକଦମ୍ବମଞ୍ଜରୀ
ରସପ୍ରବାହମାଧୁରୀ ବିଜୃମ୍ଭଣାମଧୁବ୍ରତଂ ।
ସ୍ମରାନ୍ତକଂ ପୁରାନ୍ତକଂ ଭବାନ୍ତକଂ ମଖାନ୍ତକଂ
ଯୁଗାନ୍ତକାନ୍ଧକାନ୍ତକଂ ତମନ୍ତକାନ୍ତକଂ ଭଜେ ॥ ୧୦ ॥

ଜୟତ୍ୱଦଭ୍ରବିଭ୍ରମଭ୍ରମଦ୍ଭୁଜଙ୍ଗମେଶ୍ୱର
ଶ୍ୱସଦ୍ ବିନିର୍ଗମକ୍ରମସ୍ଫୁରତ୍କରାଲହବ୍ୟବାଟ୍ ।
ଧିମିଂ ଧିମିଂ ଧିମିଂ ଧ୍ୱନନ୍ମୃଦଙ୍ଗତୁଙ୍ଗମଙ୍ଗଲ—
ଧ୍ୱନିକ୍ରମ ପ୍ରବର୍ତ୍ତିତ ପ୍ରଚଣ୍ଡତାଣ୍ଡବଃ ଶିବଃ ॥ ୧୧ ॥

ଦୃଷଦ୍ ବିଚିତ୍ରତଲ୍ପୟୋ ର୍ଭୁଜଙ୍ଗମୌକ୍ତିକସ୍ରଜୋ
ଗରିଷ୍ଠରତ୍ନଲୋଷ୍ଟୟୋ ସୁହୃଦ୍ ବିପକ୍ଷପକ୍ଷୟୋଃ ।
ତୃଣାରବିନ୍ଦ ଚକ୍ଷୁଷୋଃ ପ୍ରଜାମହୀମହେନ୍ଦ୍ରୟୋଃ
ସମପ୍ରବର୍ତ୍ତିକଃ କଦା ସଦାଶିବଂ ଭଜାମ୍ୟହଂ ॥ ୧୨ ॥

---

ଯେ ସମସ୍ତ ମଙ୍ଗଲ ପ୍ରଦାନ କରନ୍ତି; ଚଉଷଠୀ କଲାର ରସ ପ୍ରବାହ ମଧୁରତା ଯେ ଭ୍ରମର ତୁଲ୍ୟ ଉପଭୋଗ କରୁଛନ୍ତି ଅର୍ଥାତ୍ ଯେ ସକଳ କଲା-ପ୍ରବୀଣ ଅଟନ୍ତି, ସେ କନ୍ଦର୍ପାରି, ତ୍ରିପୁରାରି, ଭବଦୁଃଖାପହାରୀ, ଦକ୍ଷଯଜ୍ଞ ଧ୍ୱଂସକାରୀ, ଗଜାସୁର ବିନାଶକାରୀ, ଅନ୍ଧକାରି ଯମଦଣ୍ଡ ନିବାରଣକାରୀଙ୍କୁ ମୁଁ ଭଜନା କରୁଅଛି । ୧୦ ।

ଯାହାଙ୍କର ପ୍ରଚଣ୍ଡ ତାଣ୍ଡବନୃତ୍ୟରେ ଅତ୍ୟନ୍ତ ବେଗରେ ଘୂର୍ଣ୍ଣାୟମାନ ଶିରସ୍ଥ ସର୍ପମାନଙ୍କର ଶ୍ୱାସନିର୍ଗମନ ଫଲରେ କପାଳସ୍ଥ ଅଗ୍ନି କ୍ରମଶଃ ପ୍ରଜ୍ୱଳିତ, ଧିମିଂ ଧିମିଂ ଶବ୍ଦାୟମାନ ମୃଦଙ୍ଗର ମଙ୍ଗଲଧ୍ୱନିରେ ଯାହାଙ୍କର ନୃତ୍ୟ ପରିଶୋଭିତ ସେହି ଶିବ ଜୟଯୁକ୍ତ ହୁଅନ୍ତୁ । ୧୧ ।

ମୋତେ କେବେ ସେହି ଶୁଭ ସମୟ ମିଳିବ, ଯେତେବେଳେ ମୁଁ ପଥର ଉପରେ ଶୋଇବା ତଥା ଉତ୍ତମ କୋମଲ ଶେଯରେ ଶୋଇବାରେ ପ୍ରଭେଦ ଦେଖିବି ନାହିଁ, ସାପ ତଥା ମୁକ୍ତାମାଳାକୁ ଏକ ବୋଲି ବୁଝିବି, ବହୁମୂଲ୍ୟର ରତ୍ନ ଓ ମାଟି ଢେଲାକୁ ସମଜ୍ଞାନ କରିବି, ମିତ୍ର ତଥା ଶତ୍ରୁରେ ପ୍ରଭେଦ ଦେଖିବି ନାହିଁ, ପଦ୍ମନୟନା ନାରୀକୁ ସାମାନ୍ୟ ତୃଣବତ୍ ଜ୍ଞାନ କରିବି, ପ୍ରଜା ଓ ଚକ୍ରବର୍ତ୍ତୀଙ୍କୁ ସମାନ ଦୃଷ୍ଟିରେ ଦେଖିବି ଅର୍ଥାତ୍ ଭେଦଶୂନ୍ୟ ହୋଇ ସଦାଶିବଙ୍କୁ ଭଜନା କରିବି । ୧୨ ।

କଦାନିଲିମ୍ପନିର୍ଝରୀ ନିକୁଞ୍ଜକୋଟରେ ବସନ୍
ବିମୁକ୍ତ ଦୁର୍ମତିଃ ସଦା ଶିରଃସ୍ଥମଞ୍ଜଳିଂ ବହନ୍ ।
ବିଲୋଳଲୋଳଲୋଚନା ଲଲାମଭାଲଲଗ୍ନକଂ
ଶିବେତି ମନ୍ତ୍ରମୁଚ୍ଚରନ୍ ସଦାସୁଖୀ ଭବାମ୍ୟହମ୍ ॥ ୧୩ ॥

ନିଲିମ୍ପନାଥନାଗରୀ କଦମ୍ବମୌଳିମଲ୍ଲିକା
ନିଗୁମ୍ଫନିର୍ଝରକ୍ଷରନ୍ମଧୂଲିକା ମନୋହରଃ
ତନୋତୁ ନୋ ମନୋମୁଦଂ ବିନୋଦିନୀମହର୍ନିଶଂ
ପରଶ୍ରିୟଃ ପରଂପଦଂ ତଦଙ୍ଗଜତ୍ୱିଷାଞ୍ଚୟଃ ॥ ୧୪ ॥

ପ୍ରଚଣ୍ଡବାଡବାନଳ ପ୍ରଭାଶୁଭ ପ୍ରଚାରଣୀ
ମହାଷ୍ଟସିଦ୍ଧିକାମିନୀଜନାବହୂତ ଜଳ୍ପନା ।
ବିମୁକ୍ତ ବାମଲୋଚନା ବିବାହକାଳିକଧ୍ୱନିଃ
ଶିବେତି ମନ୍ତ୍ରଭୂଷଣା ଜଗଜ୍ଜୟାୟ ଜାୟତାମ୍ ॥ ୧୫ ॥

ଇମଂ ହି ନିତ୍ୟମେବ ମୁକ୍ତମୁତ୍ତମୋତ୍ତମଂ ସ୍ତବଂ
ପଠନ୍ ସ୍ମରନ୍ ବ୍ରୁବନ୍ନରୋ ବିଶୁଦ୍ଧିମେତି ସନ୍ତତମ୍ ।
ହରେ ଗୁରୌ ସୁଭକ୍ତିମାଶୁ ଯାତି ନାନ୍ୟଥା ଗତିଂ
ବିମୋହନଂ ହି ଦେହିନାଂ ସୁଶଙ୍କରସ୍ୟ ଚିନ୍ତନମ୍ ॥ ୧୬ ॥

---

କେବେ ମୋତେ ଏଭଳି ଶୁଭଦିନ ମିଳିବ, ଯେଉଁଦିନ ମୁଁ ଦୁର୍ମତିରୁ ରକ୍ଷା ପାଇ ଗଙ୍ଗାତଟରେ ଏକାନ୍ତ ସ୍ଥାନରେ ବାସ କରି ମସ୍ତକରେ ଅଞ୍ଜଳିରଖି ଅତ୍ୟନ୍ତ ଚଞ୍ଚଳନୟନା ନାରୀକୁଳର ଭଳି ପାର୍ବତୀଙ୍କ ସହ ଶିବଙ୍କ ନାମ ନିରନ୍ତର ଜପ କରି ସୁଖୀ ହେବି ? । ୧୩ ।

ଇନ୍ଦ୍ରନଗରୀର ଅପ୍ସରାମାନଙ୍କର ଶିରୋଦେଶସ୍ଥ ମଲ୍ଲିମାଳାରୁ କ୍ଷରଣ ହେଉଥିବା ମଧୁଦ୍ୱାରା ଦିବାରାତ୍ର ସୁରଭିତ, ସୁଶୋଭିତ ପରମ ସ୍ଥାନ ପ୍ରଭୁଙ୍କ ଶରୀର ଜାତ ତେଜପୁଞ୍ଜ ଦ୍ୱାରା ଆଲୋକିତ, ସେହି ଶଙ୍କର ମୋର ମନର ଆନନ୍ଦ ବୃଦ୍ଧି କରନ୍ତୁ । ୧୪ ।

ପ୍ରଚଣ୍ଡବାଡବାଗ୍ନି ତୁଲ୍ୟ ପ୍ରଖର ଅମଙ୍ଗଳକୁ ବିନାଶ କରିପାରନ୍ତି ଓ ଅଣିମାଦି ଅଷ୍ଟସିଦ୍ଧି ପ୍ରଦାନ କରି ପାରନ୍ତି ଏଭଳି ଯେ ମଙ୍ଗଳମୟ ଶବ୍ଦ 'ଶିବ' ତାହା ଶୋଭନନେତ୍ରୀ ଜଗଜ୍ଜନନୀ ପାର୍ବତୀ ଦେବୀଙ୍କ ବିବାହ କାଳରେ ସ୍ତ୍ରୀମାନେ ଗାନ କରୁଥିଲେ, ସେହି ଧ୍ୱନି ସମସ୍ତ ଜଗତର ଜୟପ୍ରଦ ହେଉ । ୧୫ ।

ଏହି ଉତ୍ତମ ସ୍ତବକୁ ଶୁଦ୍ଧ ହୃଦୟରେ ଭକ୍ତିପୂର୍ଣ୍ଣ ଭାବେ ଯେଉଁ ଲୋକ

ପୂଜାବସାନସମୟେ ଦଶବକ୍ତ୍ର ଗୀତଂ
ଯଃ ଶମ୍ଭୁପୂଜନପରଂ ପଠତି ପ୍ରଦୋଷେ ।
ତସ୍ୟ ସ୍ଥିରାଂ ରଥଗଜେନ୍ଦ୍ର ତୁରଙ୍ଗଯୁକ୍ତାଂ
ଲକ୍ଷ୍ମୀଂ ସଦୈବସୁମୁଖୀଂ ପ୍ରଦଦାତି ଶମ୍ଭୁଃ ॥ ୧୭ ॥
ଇତି ଶିବତାଣ୍ଡବ ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

—

## ଶିବମହିମ୍ନଃସ୍ତୋତ୍ରମ୍

ମହିମ୍ନଃ ପାରଂତେ ପରମବିଦୁଷୋ ଯଦ୍ୟସଦୃଶୀ
ସ୍ତୁତିର୍ବ୍ରହ୍ମାଦୀନାମପି ତଦବସନ୍ନାସ୍ତ୍ୱୟି ଗିରଃ ।
ଅଥାବାଚ୍ୟଃ ସର୍ବଃ ସ୍ୱମତିପରିଣାମାବଧିଗୃଣନ୍
ମମାପ୍ୟେଷ ସ୍ତୋତ୍ରେ ହରନିରପବାଦଃ ପରିକରଃ ॥୧॥
ଅତୀତ ପନ୍ଥାନଂ ତବ ଚ ମହିମା ବାଙ୍ମନସୟୋ-
ରତଦ୍ବ୍ୟାବୃତ୍ତ୍ୟା ଯଂ ଚକିତମଭିଧତ୍ତେ ଶ୍ରୁତିରପି ।
ସ କସ୍ୟ ସ୍ତୋତବ୍ୟଃ କତିବିଧଗୁଣଃ କସ୍ୟ ବିଷୟଃ
ପଦେ ତ୍ୱର୍ବାଚୀନେ ପତତି ନ ମନଃ କସ୍ୟ ନ ବଚଃ ॥୨॥

---

ପ୍ରତିଦିନ ପାଠ କରିବ, ସ୍ମରଣ କରିବ ବା କହିବ ତାହାର ପୂଜାରେ ଶଙ୍କର ଭଗବାନ୍ ପରିତୁଷ୍ଟ ହୋଇ ସକଳ ଦୁଃଖ ନାଶ କରିବେ ଓ ସେ ପରମପଦ ପ୍ରାପ୍ତ ହେବ । ୧୬ ।

ସନ୍ଧ୍ୟାକାଳରେ ଶିବଙ୍କ ପୂଜାପରେ ରାବଣକୃତ ସ୍ତୋତ୍ର ଯେ ପାଠ କରିବ ସେ ପ୍ରଭୁଙ୍କ କୃପାରେ ରଥ, ଶ୍ରେଷ୍ଠ ହସ୍ତୀ ଅଶ୍ୱାଦି ରାଜଚିହ୍ନ ଓ ଅଚଳାଲକ୍ଷ୍ମୀ ଲାଭ କରିବ ।

---

ହେ ହର, ତୁମର ମହିମାର ପରପାର ଜାଣି ନଥିବା ଲୋକର ସ୍ତୁତି ଯଦି ଅନୁଚିତ ହୁଏ, ତେବେ ବ୍ରହ୍ମାଦି ଦେବତାଙ୍କ ସ୍ତବ ମଧ୍ୟ ତମ ନିକଟରେ ପଣ୍ଡ ଶ୍ରମ ହେବ । କାରଣ ସେମାନେ ମଧ୍ୟ ତୁମର ସକଳ ମହିମା ଜାଣିନାହାନ୍ତି । ନିଜ ସୀମିତ ବୁଦ୍ଧିରେ ସ୍ତବ କରିବା ଅବାଚ୍ୟ ଅର୍ଥାତ୍ ଦୋଷଜନକ ନୁହେଁ । ତେଣୁ ମୋର ଏହି ସ୍ତୋତ୍ରରେ କରାଯାଇଥିବା ଉଦ୍ୟମ ମଧ୍ୟ ନିନ୍ଦନୀୟ ହେବନାହିଁ ।୧।

ହେ ପ୍ରଭୁ, ତୁମର ମହିମା ମନ ଓ ବଳର ଅଗୋଚର କାରଣ ମନ ସେଠାକୁ ଯାଇପାରିବନାହିଁ କି ବଳ ପ୍ରକାଶ କରିପାରିବନାହିଁ । ବେଦ ମଧ୍ୟ

ମଧୁସ୍ଫୀତା ବାଚଃ ପରମମମୃତଂ ନିର୍ମିତବତ-
ସ୍ତବ ବ୍ରହ୍ମନ୍ କିଂ ବାଗପି ସୁରଗୁରୋର୍ବିସ୍ମୟପଦମ୍ ।
ମମତ୍ୱେତାଂ ବାଣୀ ଗୁଣକଥନପୁଣ୍ୟେନ ଭବତଃ
ପୁନାମୀତ୍ୟର୍ଥେଽସ୍ମିନ୍ ପୁରମଥନ ବୁଦ୍ଧିର୍ବ୍ୟବସିତା ॥୩॥
ତବୈଶ୍ୱର୍ଯ୍ୟଂ ଯତ୍ତଜ୍ଜଗଦୁଦୟରକ୍ଷାପ୍ରଳୟକୃତ୍
ତ୍ରୟୀବସ୍ତୁ ବ୍ୟସ୍ତଂ ତିସୃଷୁ ଗୁଣଭିନ୍ନାସୁ ତନୁଷୁ ।
ଅଭବ୍ୟାନାମସ୍ମିନ୍ ବରଦ ରମଣୀୟାମରମଣୀଂ
ବିହନ୍ତୁଂ ବ୍ୟାକ୍ରୋଶୀଂ ବିଦଧତ ଇହୈକେ ଜଡ଼ଧିୟଃ ॥୪॥
କିମୀହଃ କିଂକାୟଃ ସ ଖଳୁ କିମୁପାୟସ୍ତ୍ରିଭୁବନଂ
କିମାଧାରୋ ଧାତା ସୃଜତି କିମୁପାଦାନ ଇତି ଚ ।
ଅତର୍କୈଶ୍ୱର୍ଯ୍ୟେ ତ୍ୱୟ୍ୟନବସରଦୁଃସ୍ଥୋ ହତଧିୟଃ
କୁତର୍କୋଽୟଂ କାଂଶ୍ଚିନ୍ମୁଖରୟତି ମୋହାୟ ଜଗତଃ ॥୫॥

---

ଅନିର୍ବଚନୀୟ ହୋଇ 'ନେତି ନେତି' ବୋଲି ବାରମ୍ବାର କହି କେବଳ ଅସାମର୍ଥ୍ୟ ପ୍ରକାଶ କରେ । ଅନନ୍ତଗୁଣ ବିଶିଷ୍ଟ ମହିମା ଯାହାର ଜ୍ଞାନଗମ୍ୟ ସେ ସ୍ତୁତି କିଏ କରିପାରିବ ? କିନ୍ତୁ ପରବର୍ତ୍ତୀ ପଦ ବା ନୂଆ ସଗୁଣ ସାକାର ଲୀଳାରେ କାହାର ମନ ଆକୃଷ୍ଟ ନ ହେବ ବା ବଚନ ପ୍ରକାଶ ନ ହେବ ? ଅର୍ଥାତ୍ ସମସ୍ତଙ୍କର ଇଚ୍ଛା ନୂଆ କଥା ବର୍ଣ୍ଣନା କରିବାପାଇଁ ।୨।

ହେ ବ୍ରହ୍ମନ୍, ଆପଣ ଅତି ମଧୁର ପରମ ଅମୃତ (ବେଦ) ବାକ୍ୟ ରଚୟିତା । ଆପଣଙ୍କ ପାଖରେ ଦେବଗୁରୁ (ବୃହସ୍ପତି)ଙ୍କ ବାକ୍ୟ ରଚନା ମଧ୍ୟ ବିସ୍ମୟୋତ୍ପାଦକ ହେବନାହିଁ । ହେ ତ୍ରିପୁରାରି, ମୁଁ ବା କ'ଣ ସ୍ତୁତି କରିପାରିବି ? ଆପଣଙ୍କ ଗୁଣ ବର୍ଣ୍ଣନାକଲେ ମୋର ବଚନ ପବିତ୍ର ହେବ । ଏହି ଆଶାରେହିଁ ସ୍ତୋତ୍ର ରଚନାରେ ବୁଦ୍ଧି ପ୍ରବୃତ୍ତ ହେଉଛି ।୩।

ହେ ବରଦ, ଆପଣଙ୍କ ଐଶ୍ୱର୍ଯ୍ୟ ତ୍ରିଗୁଣାତୀତ ହେଲେ ହେଁ ସତ୍ତ୍ୱ-ରଜ-ତମ ଗୁଣ ଭେଦରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଏହି ତିନି ରୂପରେ ସଂସାରର ସୃଷ୍ଟି, ସ୍ଥିତି ଓ ପ୍ରଳୟ କାରକ ତୁମର ସେହି ବେଦ ତ୍ରୟୀ ପ୍ରତିପାଦ୍ୟ ଈଶ୍ୱରତ୍ୱକୁ ଖଣ୍ଡନ କରିବା ସକାଶେ କେତେକ ମୂର୍ଖ ଲୋକ ଅସାଧୁମାନଙ୍କ ଚିତ୍ତହାରୀ ଅଥଚ ଅସୁନ୍ଦର କୁତର୍କର ଅବତାରଣା କରିଥାନ୍ତି । ୪।

କାହାର ଇଚ୍ଛାରେ, କେଉଁ ଶରୀରରେ, କେଉଁ ଉପାୟରେ, କାହାର ଆଶ୍ରୟରେ, କେଉଁ ପଦାର୍ଥରେ ବିଧାତା ଏହି ତ୍ରିଭୁବନକୁ ସୃଷ୍ଟି କରିଛନ୍ତି ? ଏହିପରି ଅନର୍ଥକ କୁତର୍କରେ ବୁଦ୍ଧିହୀନ ଲୋକେ ବ୍ୟସ୍ତ ରହୁଛନ୍ତି ଏବଂ

ଅଜନ୍ମାନୋ ଲୋକାଃ କିମବୟବବନ୍ତୋଽପି ଜଗତା-
ମଧିଷ୍ଠାତାରଂ କିଂ ଭବବିଧିରନାଦୃତ୍ୟ ଭବତି ।
ଅନୀଶୋ ବା କୁର୍ଯ୍ୟାଦ୍ ଭୁବନଜନନେ କଃ ପରିକରୋ
ଯତୋ ମନ୍ଦାସ୍ତ୍ୱାଂ ପ୍ରତ୍ୟମରବର ସଂଶେରତ ଇମେ ॥୬॥
ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତିଚ ।
ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ
ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବ ଇବ ॥୭॥
ମହୋକ୍ଷଃ ଖଟ୍ୱାଙ୍ଗଂ ପରଶୁରଜିନଂ ଭସ୍ମ ଫଣିନଃ
କପାଳଞ୍ଚେତୀୟତ୍ତବ ବରଦ ତନ୍ତ୍ରୋପକରଣମ୍ ।
ସୁରାସ୍ତାଂ ତାମୃଦ୍ଧିଂ ଦଧତି ତୁ ଭବଦ୍ଭ୍ରୂପ୍ରଣିହିତାଂ
ନହି ସ୍ୱାତ୍ମାରାମଂ ବିଷୟମୃଗତୃଷ୍ଣା ଭ୍ରମୟତି ॥ ୮ ॥

ଜଗତକୁ ସେଥିରେ ମୋହିଗ୍ରସ୍ତ କରୁଛନ୍ତି । ଆପଣଙ୍କ ମହିମା କିନ୍ତୁ ତର୍କର ଅଗୋଚର ହେତୁ ଆପଣଙ୍କ ବିଷୟରେ କୁତର୍କର ଅବକାଶ ନାହିଁ ।୫।

ଜଗତର ଲୋକମାନେ ଶରୀରଧାରୀ ହେଲେ ହେଁ କ'ଣ ଅଜନ୍ମା ବା ଜନ୍ମରହିତ ହୋଇପାରନ୍ତି ? ଚତୁର୍ଦ୍ଦଶ ଲୋକର ନିର୍ମାଣ କ'ଣ କର୍ତ୍ତା ବିନା ସମ୍ଭବ ? ପ୍ରଭୁତ୍ୱ ବା ଐଶ୍ୱର୍ଯ୍ୟବିହୀନ କେଉଁ ଦାସ ଜଗତର ନିର୍ମାଣରେ କ୍ଷମ ହୋଇପାରିବ ? ହେ ସୁରଶ୍ରେଷ୍ଠ ! ବୁଦ୍ଧିହୀନ ମନ୍ଦ ଲୋକମାନେ ହିଁ ତୁମର କର୍ତ୍ତୃତ୍ୱ ବିଷୟରେ ସନ୍ଦିହାନ ହୁଅନ୍ତି । ୬ ।

ବେଦତ୍ରୟ, ସାଂଖ୍ୟ, ଯୋଗ, ଶୈବ, ବୈଷ୍ଣବ ପ୍ରଭୃତି ଭିନ୍ନ ଭିନ୍ନ ମାର୍ଗରେ 'ଏହା ଶ୍ରେଷ୍ଠ, ତାହା ଶ୍ରେଷ୍ଠ' ବୋଲି ବିଭିନ୍ନ ପ୍ରକାରେ କହୁଥାଆନ୍ତି । କାରଣ, ସମସ୍ତଙ୍କର ରୁଚି ସମାନ ନୁହେଁ । ରୁଚିର ବିଚିତ୍ରତାକୁ ନେଇ ଲୋକ ସରଳ ଓ ବକ୍ର ନାନା ମାର୍ଗରେ ଗତି କରିଥାଏ । ମାତ୍ର ସବୁ ନଦୀମାନଙ୍କର ଏକମାତ୍ର ଗମନସ୍ଥଳ ସମୁଦ୍ର ହେଲାଭଳି ତୁମେ ସବୁ ଲୋକଙ୍କର ଏକମାତ୍ର ଗତି ଅଟ । ୭ ।

ହେ ବରଦ ! ଗୋଟିଏ ବଡ ବଳଦ, ଖଟ୍ୱାଙ୍ଗ ପରଶୁ ମୃଗଚର୍ମ, ଭସ୍ମ, ଗୁଡାଏ ସାପ, ଖପ'ର—ଏହି କେତୋଟି ମାତ୍ର ତୁମର ଉପକରଣ ବା ଦ୍ରବ୍ୟ-ବିଶେଷ । କିନ୍ତୁ ତୁମର କୃପାକଟାକ୍ଷରେ ଦେବତାମାନେ ନିଜ ନିଜର ସୁଖସମୃଦ୍ଧି ଭୋଗ କରୁଛନ୍ତି । ଯେ ଆତ୍ମତତ୍ତ୍ୱରେ ନିମଗ୍ନ, ତାକୁ ବିଷୟରୂପକ ମୃଗତୃଷ୍ଣା ବିଭ୍ରାନ୍ତ କରି ନ ପାରେ । ୮ ।

ଧ୍ରୁବଂ କଶ୍ଚିତ୍ସର୍ବଂ ସକଳମପରସ୍ତ୍ୱଧ୍ରୁବମିଦଂ
ପରୋ ଧ୍ରୌବ୍ୟାଧ୍ରୌବ୍ୟେ ଜଗତି ଗଦତି ବ୍ୟସ୍ତବିଷୟେ ।
ସମସ୍ତେଽପ୍ୟେତସ୍ମିନ୍ ପୁରମଥନ ତୈର୍ବିସ୍ମିତ ଇବ
ସ୍ତୁବନ୍ ଜିହ୍ରେମି ତ୍ୱାଂ ନ ଖଲୁ ନନୁ ଧୃଷ୍ଟା ମୁଖରତା ॥ ୯ ॥
ତବୈଶ୍ୱର୍ଯ୍ୟଂ ଯତ୍ନାଦ୍ ଯଦୁପରି ବିରିଞ୍ଚିର୍ହରିରଧଃ
ପରିଚ୍ଛେତ୍ତୁଂ ଯାତାବନଲମନଲସ୍କନ୍ଧବପୁଷଃ ।
ତତୋ ଭକ୍ତିଶ୍ରଦ୍ଧାଭରଗୁରୁଗୃଣଦ୍ଭ୍ୟାଂ ଗିରିଶ ଯତ୍
ସ୍ୱୟଂ ତସ୍ଥେ ତାଭ୍ୟାଂ ତବ କିମନୁବୃତ୍ତିର୍ନ ଫଳତି ॥ ୧୦ ॥
ଅଯତ୍ନାଦାପାଦ୍ୟ ତ୍ରିଭୁବନମବୈରବ୍ୟତିକରଂ
ଦଶାସ୍ୟୋ ଯଦ୍ବାହୂନଭୃତ ରଣକଣ୍ଡୂପରବଶାନ୍ ।
ଶିରଃ ପଦ୍ମଶ୍ରେଣୀରଚିତଚରଣାମ୍ଭୋରୁହବଳେଃ
ସ୍ଥିରାୟାସ୍ତ୍ୱଦ୍ଭକ୍ତେସ୍ତ୍ରିପୁରହର ବିସ୍ଫୂର୍ଜିତମିଦମ୍ ॥ ୧୧ ॥

---

କେହି କେହି ଏହି ଜଗତର ସବୁକିଛି ନିତ୍ୟ କହୁଥିବେଳେ ଆଉ କେତେକ ଏହି ସବୁ ମିଥ୍ୟା ବୋଲି କହନ୍ତି । ଆଉ କେହି କେହି ଏହି ଜଗତରେ ଥିବା ବିଷୟ ସମୂହକୁ ପୃଥକ୍ କରି କାହାକୁ ନିତ୍ୟ ଓ କାହାକୁ ଅନିତ୍ୟ ବୋଲନ୍ତି । ହେ ପୁରମଥନ ! ଏ ସବୁ ବିଷୟରେ ସେମାନଙ୍କ କଥନ ଦ୍ୱାରା ମୁଁ ବିସ୍ମିତ ହେଲେ ହେଁ ତୁମର ସ୍ତୁତି କରିବାରେ ଲଜ୍ଜିତ ନୁହେଁ କାରଣ ବାଚାଳ ବ୍ୟକ୍ତି ସର୍ବଦା ଧୃଷ୍ଟ ହୁଏ । ୯ ।

ହେ ଗିରିଶ ! ଆପଣଙ୍କ ବିଶ୍ୱବ୍ୟାପ୍ତ ଅନନ୍ତ ଐଶ୍ୱର୍ଯ୍ୟ ଜ୍ୟୋତିର୍ଲିଙ୍ଗର ପରିମାଣ ବା ଆଦିଅନ୍ତ ସ୍ଥିର କରିବା ପାଇଁ ବ୍ରହ୍ମା ଊର୍ଦ୍ଧ୍ୱକୁ ଓ ବିଷ୍ଣୁ ନିମ୍ନକୁ ଯାଇ ଅସମର୍ଥ ହେଲେ ଅର୍ଥାତ୍ କିଛି ସ୍ଥିର କରିପାରିଲେ ନାହିଁ କାରଣ ତୁମର ଆଦି ଅନ୍ତ କିଛି ନାହିଁ । ତେଣୁ ଉଭୟେ ଅତ୍ୟନ୍ତ ଭକ୍ତି ଓ ଶ୍ରଦ୍ଧାର ସହିତ ଆପଣଙ୍କର ସ୍ତୁତି କଲେ ଏବଂ ଆପଣ ସେମାନଙ୍କ ଆଗରେ ପ୍ରକଟିତ ହେଲେ । ଆପଣଙ୍କୁ ସେବା କଲେ କେଉଁ ଫଳ ବା ନ ମିଳିବ ? ଅର୍ଥାତ୍ ସକଳ ଅଭୀଷ୍ଟ ପୂରଣ ହେବ । ୧୦ ।

ହେ ତ୍ରିପୁରହର ! ଦଶାନନ ରାବଣ ନିଜ ମସ୍ତକମାନଙ୍କୁ ପଦ୍ମ ପୁଷ୍ପ ଭଳି ଆପଣଙ୍କ ପାଦପଦ୍ମରେ ସମର୍ପଣ କରିବା ଫଳରେ ଅନ୍ୟ କୌଣସି ପରିଶ୍ରମ ନ କରି ମଧ୍ୟ ତ୍ରିଭୁବନକୁ ଶତ୍ରୁଶୂନ୍ୟ ବା ନିଷ୍କଣ୍ଟକ କରିଥିଲା । ତାହାର ସମସମ ଯୋଦ୍ଧା ନ ମିଳିବା ଯୋଗୁଁ ତା' ବାହୁର ରଣକଣ୍ଡୁ ମେଣ୍ଟି ନ ଥିଲା । ଏ ସବୁ ପ୍ରତାପ ଆପଣଙ୍କଠାରେ ତା'ର ଅଚଳାଭକ୍ତିର ପ୍ରଭାବ । ୧୧ ।

ଅମୁଷ୍ୟ ତ୍ୱତ୍ସେବାସମଧିଗତସାରଂ ଭୁଜବନଂ
ବଲାତ୍କୈଳାସେଽପି ତ୍ୱଦଧିବସତୌ ବିକ୍ରମୟତଃ ।
ଅଲଭ୍ୟା ପାତାଳେଽପ୍ୟଲସଚଳିତାଙ୍ଗୁଷ୍ଠଶିରସି
ପ୍ରତିଷ୍ଠା ତ୍ୱୟ୍ୟାସୀଦ୍ ଧ୍ରୁବମୁପଚିତୋ ମୁହ୍ୟତି ଖଳଃ ॥ ୧୨ ॥
ଯଦୃଦ୍ଧିଂ ସୁତ୍ରାମ୍ଣୋ ବରଦ ପରମୋଚ୍ଚୈରପି ସତୀ
ମଧଶ୍ଚକ୍ରେ ବାଣଃ ପରିଜନବିଧେୟ-ତ୍ରିଭୁବନଃ ।
ନ ତଚ୍ଚିତ୍ରଂ ତସ୍ମିନ୍ ବରିବସିତରି ତ୍ୱଚ୍ଚରଣୟୋ—
ର୍ନ କସ୍ୟା ଉନ୍ନତ୍ୟୈ ଭବତି ଶିରସସ୍ତ୍ୱୟ୍ୟବନତିଃ ॥ ୧୩ ॥
ଅକାଣ୍ଡବ୍ରହ୍ମାଣ୍ଡକ୍ଷୟଚକିତ ଦେବାସୁରକୃପା—
ବିଧେୟସ୍ୟାଽସୀଦ୍ ଯସ୍ତ୍ରିନୟନ ବିଷଂ ସଂହୃତବତଃ ।
ସ କଲ୍ମାଷଃ କଣ୍ଠେ ତବ ନ କୁରୁତେ ନ ଶ୍ରିୟମହୋ
ବିକାରୋଽପି ଶ୍ଲାଘ୍ୟୋ ଭୁବନଭୟଭଙ୍ଗବ୍ୟସନିନଃ ॥ ୧୪ ॥

---

ଆପଣଙ୍କ ସେବାଜନିତ ବଳଯୁକ୍ତ ହୋଇଥିବା ରାବଣର ଭୁଜସମୂହ ଆପଣଙ୍କ ବାସସ୍ଥାନ କୈଳାସରେ ବିକ୍ରମ ପ୍ରକାଶ କରି (କୈଳାସକୁ ଉପାଡ଼ିବା ପାଇଁ ଚେଷ୍ଟା କରି)ବାରୁ ଆପଣ ଅବହେଳାରେ ନିଜ ପାଦାଙ୍ଗୁଷ୍ଠର ଅଗ୍ରଭାଗ ଦ୍ୱାରା ସାମାନ୍ୟ ମଡ଼ାଇ ଦେବାରୁ ରାବଣ ପାତାଳପୁରରେ କେଉଁଠି ଠିକଣା ପାଇଲା ନାହିଁ । ଖଳ ବା ଦୁଷ୍ଟ ଲୋକ ସମୃଦ୍ଧ ହେଲେ କ୍ଷମତାରେ ମୋହ ହୋଇଯାଏ । ୧୨ ।

ହେ ବରଦ ! ଇନ୍ଦ୍ରଙ୍କର ଐଶ୍ୱର୍ଯ୍ୟକୁ ବାଣାସୁର ଆପଣଙ୍କ ଅନୁଗ୍ରହରୁ ତୁଚ୍ଛ ମନେକରି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—ଏହି ତିନି ଭୁବନକୁ ନିଜ ଅଧୀନରେ ରଖିଲା । ତାହା ତୁମର ଚରଣସେବକ ବାଣାସୁର) ପକ୍ଷରେ ଆଶ୍ଚର୍ଯ୍ୟଜନକ ନ ଥିଲା । ତୁମଠାରେ ଭକ୍ତର ସହିତ ମସ୍ତକର ଅବନତ କେଉଁ ଉନ୍ନତିର କାରଣ ନ ହୁଏ ? । ୧୩ ।

ହେ ତ୍ରିନୟନ ! (ସମୁଦ୍ରମନ୍ଥନରୁ ଉଦ୍ଭୂତ କାଳକୂଟ ବିଷର ପ୍ରଭାବରେ) ଅସମୟରେ ବ୍ରହ୍ମାଣ୍ଡର ବିନାଶ ସମ୍ଭାବନାରେ ଭୀତ ଦେବତା ଓ ଅସୁରମାନଙ୍କ ପ୍ରତି କୃପା କରି ଆପଣ ବିଷକୁ କଣ୍ଠରେ (ସଂହାର କଲେ ବା) ରଖିଲେ ଏବଂ ନୀଳକଣ୍ଠ ହେଲେ । ସେହି ବିଷର କାଳିମା ଆପଣଙ୍କ କଣ୍ଠର ଶୋଭାବର୍ଦ୍ଧକ ନୁହେଁ କି ? ଜଗତର ଭୟ ବିନାଶ ପାଇଁ ସଚେଷ୍ଟ ବ୍ୟକ୍ତିର ଅଙ୍ଗର ବିକୃତି ମଧ୍ୟ ପ୍ରଶଂସିତ ହୋଇଥାଏ । ତେଣୁ ସେ ବ୍ୟକ୍ତି ସର୍ବତୋଭାବେ ସମଧିକ ପ୍ରଶଂସାର ପାତ୍ର ହୋଇଥାଏ । ତେଣୁ ତୁମେ ଦେବଦେବ ମହାଦେବ । ୧୪ ।

ଅସିଦ୍ଧାର୍ଥା ନୈବ କ୍ୱଚିଦପି ସଦେବାସୁରନରେ
ନିବର୍ତ୍ତନ୍ତେ ନିତ୍ୟଂ ଜଗତି ଜୟିନୋ ଯସ୍ୟ ବିଶିଖାଃ ।
ସ ପଶ୍ୟନ୍ନୀଶ ତ୍ୱାମିତରସୁରସାଧାରଣମଭୂତ୍
ସ୍ମରଃ ସ୍ମର୍ତ୍ତବ୍ୟାତ୍ମା ନହି ବଶିଷୁ ପଥ୍ୟଃ ପରିଭବଃ ॥ ୧୫ ॥
ମହୀପାଦାଘାତାଦ୍ ବ୍ରଜତି ସହସା ସଂଶୟପଦଂ
ପଦଂ ବିଷ୍ଣୋର୍ଭ୍ରାମ୍ୟଦ୍ଭୁଜ ପରିଘରୁଗ୍ଣଗ୍ରହଗଣମ୍ ।
ମୁହୁର୍ଦ୍ୟୌର୍ଦୌସ୍ଥ୍ୟଂ ଯାତ୍ୟନିଭୃତଜଟାତାଡ଼ିତତଟା
ଜଗଦ୍ରକ୍ଷାୟୈ ତ୍ୱଂ ନଟସି ନନୁ ବାମୈବ ବିଭୁତା ॥ ୧୬ ॥
ବିୟଦ୍ବ୍ୟାପି ତାରାଗଣଗୁଣିତଫେନୋଦ୍‌ଗମରୁଚିଃ
ପ୍ରବାହୋ ବାରାଂ ଯଃ ପୃଷତଲଘୁ-ଦୃଷ୍ଟଃ ଶିରସି ତେ ।
ଜଗଦ୍‌ଦ୍ୱୀପାକାରଂ ଜଲଧିବଲୟଂ ତେନ କୃତମି—
ତ୍ୟନେନୈବୋନ୍ନେୟଂ ଧୃତମହିମ ଦିବ୍ୟଂ ତବ ବପୁଃ ॥ ୧୭ ॥

---

ହେ ଈଶ ! କାମଦେବଙ୍କ ଜୟକ୍ଷମ ବାଣ କି ଦେବତା, କି ରାକ୍ଷସ, କି ମନୁଷ୍ୟ—କାହାରିଠାରେ ବ୍ୟର୍ଥ ହୁଏ ନାହିଁ । ଅର୍ଥାତ୍ କାମବାଣ ସର୍ବତ୍ର ବିଜୟୀ । ତେଣୁ କାମଦେବ ଆପଣଙ୍କୁ ଅନ୍ୟ ସାଧାରଣ ଦେବତା ଦୃଷ୍ଟିରେ ଦେଖି ବାଣ ପ୍ରୟୋଗ କରିବାରୁ ଭସ୍ମ ହୋଇଗଲେ ଓ ସ୍ମରଣ ବିଷୟ ହେଉ ସ୍ମର ବା ମନୋଜ ହୋଇ ରହିଲେ । କାରଣ ଜିତେନ୍ଦ୍ରିୟ ବ୍ୟକ୍ତିଙ୍କ ପ୍ରତି ଅବଜ୍ଞା ହିତକର ନୁହେ । ୧୫ ।

ହେ ପ୍ରଭୁ ! ଆପଣ ତାଣ୍ଡବ ନୃତ୍ୟ କଲାବେଳେ ପାଦର ଆଘାତରେ ପୃଥିବୀ ଧ୍ୱଂସ ହୋଇଯିବ କି ବୋଲି ସନ୍ଦେହ କଲା । ଆକାଶସ୍ଥ ଗ୍ରହଗଣ ଆପଣଙ୍କ ଭୁଜଦଣ୍ଡର ଆଘାତରେ ପୀଡ଼ିତ ହେଲେ । ବିକ୍ଷିପ୍ତ ଜଟାଜୁଟର ତାଡନାରେ ସ୍ୱର୍ଗଲୋକର ଅବସ୍ଥା ସଙ୍କଟାପନ୍ନ ହେଲା । ଜଗତ ରକ୍ଷା ନିମନ୍ତେ ବିଭୁତା ଦେଖାଇବା ଫଳରେ—ଏସବୁ ବିପରୀତ ଘଟିଗଲା । ଆପଣଙ୍କ ମହିମା ଅତୀବ ବିଚିତ୍ର । ୧୬ ।

ଯେଉଁ ସ୍ୱର୍ଗଙ୍ଗାର ବିପୁଳ ଆକାଶ ବ୍ୟାପି ପ୍ଲାବନରେ ତାରାଗଣ ଫେନ ପ୍ରାୟ ସୁନ୍ଦର ଦେଖାଯାନ୍ତି, ସେହି ଗଙ୍ଗାପ୍ରବାହ ଆପଣଙ୍କ ମସ୍ତକରେ ଗୋଟିଏ ବିନ୍ଦୁ ଭଳି ଦେଖାଯାଏ । ସେହି ବିନ୍ଦୁ ପୃଥିବୀକୁ ଅବତରଣ କରିବାରୁ ସପ୍ତ ସମୁଦ୍ରର ସୃଷ୍ଟି ହେଲା ଏବଂ ପୃଥିବୀ ଗୋଟିଏ ଦ୍ୱୀପରେ ପରିଣତ ହେଲା । ଏଥିରୁ ଆପଣଙ୍କ ଦିବ୍ୟ ଶରୀର କେତେ ବିରାଟ, ତାହା ଅବଧାରଣ କରାଯାଇପାରେ । ୧୭ ।

ରଥ କ୍ଷୌଣୀଃ ଯନ୍ତା ଶତଧୃତିରଗେନ୍ଦ୍ରୋ ଧନୁରଥୋ
ରଥାଙ୍ଗେଚନ୍ଦ୍ରାର୍କୌ ରଥଚରଣପାଣିଃ ଶର ଇତି ।
ଦିଧକ୍ଷୋସ୍ତେ କୋଽୟଂ ତ୍ରିପୁରତୃଣମାଡମ୍ବରବିଧି —
ର୍ବିଧେୟୈଃ କ୍ରୀଡନ୍ତ୍ୟୋ ନ ଖଳୁ ପରତନ୍ତ୍ରାଃ ପ୍ରଭୁଧିୟଃ ।।୧୮।।
ହରିସ୍ତେ ସାହସ୍ରଂ କମଳବଳିମାଧାୟ ପଦୟୋ—
ର୍ଯଦେକୋନେ ତସ୍ମିନ୍ନିଜମୁଦହରନ୍ନେତ୍ରକମଳମ୍ ।
ଗତୋ ଭକ୍ତ୍ୟୁଦ୍ରେକଃ ପରିଣତିମସୌ ଚକ୍ରବପୁଷା
ତ୍ରୟାଣାଂ ରକ୍ଷାୟୈ ତ୍ରିପୁରହର ଜାଗର୍ତ୍ତି ଜଗତାମ୍ ।। ୧୯ ।।
କ୍ରତୌ ସୁପ୍ତେ ଜାଗ୍ରତ୍ତ୍ୱମସି ଫଳଯୋଗେ କ୍ରତୁମତାଂ
କ୍ୱ କର୍ମ ପ୍ରଧ୍ୱସ୍ତଂ ଫଳତି ପୁରୁଷାରାଧନମୃତେ ।
ଅତସ୍ତ୍ୱାଂ ସଂପ୍ରେକ୍ଷ୍ୟ କ୍ରତୁଷୁ ଫଳଦାନପ୍ରତିଭୁବଂ
ଶ୍ରୁତୌ ଶ୍ରଦ୍ଧାଂ ବଦ୍ଧ୍ୱା ଦୃଢପରିକରଃ କର୍ମସୁ ଜନଃ ।। ୨୦ ।।

---

ତ୍ରିପୁରପୁରକୁ ଭସ୍ମ କରିବା ସକାଶେ ଆପଣ ସମର୍ଥ ଥିଲେ । ଆପଣଙ୍କ କୋପାନଳ ଆଗରେ ସେ ଏକ ତୁଚ୍ଛ ତୃଣ ମାତ୍ର ଥିଲା । ତଥାପି ତୁମର ରଥ ହେଲା ପୃଥିବୀ, ସାରଥି ହେଲେ ବ୍ରହ୍ମା, ସୁମେରୁ ହେଲା ଧନୁ, ଚନ୍ଦ୍ର ଓ ସୂର୍ଯ୍ୟ ହେଲେ ରଥର ଚକ ଏବଂ ଚକ୍ରପାଣି ବିଷ୍ଣୁ ହେଲେ ଶର । କାହିଁକି ତେବେ ଏ ଆଡମ୍ବର ସମ୍ଭାର ? କାରଣ ଆପଣ ପ୍ରଭୁ ଏବଂ ଆପଣଙ୍କ ବୁଦ୍ଧି ଆଜ୍ଞାକାରୀ-ସେବକଙ୍କ ସହ ଖେଳ କଲାବେଳେ ଅନ୍ୟ ଉପରେ ନିର୍ଭର କରେ ନାହିଁ । ଅର୍ଥାତ୍ ଆପଣ ଯାହାର ଆଶ୍ରୟ ନେଲେ ସେ ସମସ୍ତେ ଆପଣଙ୍କ ଅଧୀନ ଅଟନ୍ତି । ୧୮ ।

ହେ ତ୍ରିପୁରହର ! ଶ୍ରୀହରି ଆପଣଙ୍କ ପଦଯୁଗଳରେ ସହସ୍ର କମଳ ଅର୍ପଣ କରିବା ସମୟରେ ଗୋଟିଏ ଊଣା ହେଉଥିବା ଦେଖି ନିଜର ନେତ୍ରପଦ୍ମ ଉତ୍ପାଟନ କରିଥିଲେ । ସେହି ଭକ୍ତିର ଆତିଶଯ୍ୟ ହିଁ ସୁଦର୍ଶନ ଚକ୍ର ରୂପରେ ପରିଣତ ହୋଇ ସର୍ବଦା ତ୍ରିଭୁବନ ରକ୍ଷାରେ ସଜାଗ ଅଛି । ୧୯ ।

ଯଜ୍ଞକର୍ତ୍ତା ଅଦୃଷ୍ଟ ଫଳପ୍ରାପ୍ତି ନିମିତ୍ତ ଯଜ୍ଞ କରିଥାଏ । ଶେଷରେ ଯଜ୍ଞ ସୁପ୍ତ ହୁଏ ବା ଯଜ୍ଞକ୍ରିୟା ନିର୍ବାପିତ ହୁଏ । ଆପଣ କିନ୍ତୁ ଯଜ୍ଞକାରୀଙ୍କୁ ଫଳ ପ୍ରଦାନ କରିବା ପାଇଁ ଜାଗ୍ରତ ଥାଆନ୍ତି । ଈଶ୍ୱରୋପାସନା ବିନା ପ୍ରଧ୍ୱସ୍ତ କର୍ମ ବା ଯଜ୍ଞ ଶେଷ କରିଦେଲେ କ'ଣ କେଉଁଠି ଫଳ ମିଳନ୍ତି ? ଯଜ୍ଞଫଳ ଦାନ କରିବା ବିଷୟରେ ଆପଣଙ୍କୁ ପ୍ରତିଭୂ (ବା ଜାମିନ୍) ଜାଣି ଲୋକେ ବେଦବିଶ୍ୱାସୀ ହୋଇ ଦୃଢ଼ତାର ସହ କର୍ମପଥରେ ପ୍ରବୃତ୍ତ ହେଉଛନ୍ତି । ୨୦ ।

କ୍ରିୟାଦକ୍ଷୋ ଦକ୍ଷଃ କ୍ରତୁପତିରଧୀଶସ୍ତନୁଭୃତା-
ମୃଷୀଣାମାର୍ତ୍ୱିଜ୍ୟଂ ଶରଣଦସଦସ୍ୟାଃ ସୁରଗଣାଃ ।
କ୍ରତୁଭ୍ରଂଶସ୍ତ୍ୱତ୍ତଃ କ୍ରତୁଷୁ ଫଳଦାନ-ବ୍ୟସନିନୋ
ଧ୍ରୁବଂ କର୍ତ୍ତୁଃ ଶ୍ରଦ୍ଧାବିଧୁରମଭିଚାରାୟ ହି ମଖାଃ ॥ ୨୧ ॥
ପ୍ରଜାନାଥଂ ନାଥ ପ୍ରସଭମଭିକଂ ସ୍ୱାଂ ଦୁହିତରଂ
ଗତଂ ରୋହିଦ୍ଭୂତାଂ ରିରମୟିଷୁମୃଷ୍ୟସ୍ୟ ବପୁଷା ।
ଧନୁଷ୍ପାଣେର୍ଯାତଂ ଦିବମପି ସପତ୍ରାକୃତମମୁଂ
ତ୍ରସନ୍ତଂ ତେଽଦ୍ୟାପି ତ୍ୟଜତି ନ ମୃଗବ୍ୟାଧରଭସଃ ॥ ୨୨ ॥
ସ୍ୱଲାବଣ୍ୟାଶଂସାଧୃତଧନୁଷମହ୍ନାୟ ତୃଣବତ୍
ପୁରଃ ପ୍ଲୁଷ୍ଟଂ ଦୃଷ୍ଟ୍ୱା ପୁରମଥନ ପୁଷ୍ପାୟୁଧମପି ।
ଯଦି ସ୍ତ୍ରୈଣଂ ଦେବୀ ଯମନିରତଦେହାର୍ଦ୍ଧଘଟନା-
ଦବୈତି ତ୍ୱାମଦ୍ଧା ବତ ବରଦ ମୁଗ୍ଧା ଯୁବତୟଃ ॥ ୨୩ ॥

---

ହେ ଶରଣଦ ! କର୍ମକାଣ୍ଡ କ୍ରିୟାରେ ନିପୁଣ ଦକ୍ଷପ୍ରଜାପତି ଯଜମାନ, ଋଷିଗଣ ଋତ୍ୱିକ୍ ବା ଯାଜକ ଏବଂ ଦେବତାମାନେ ସଦସ୍ୟ ଥାଇ ମଧ୍ୟ ସେହି ଯଜ୍ଞକୁ ଯଜ୍ଞଫଳ ପ୍ରଦାନରେ ସମୁତ୍ସୁକ ଆପଣ ଧ୍ୱଂସ କରି ଦେଇଥିଲେ । କାରଣ ଏହା ନିଶ୍ଚିତ ଯେ, ଶ୍ରଦ୍ଧାରହିତ ଯଜ୍ଞ ଯଜ୍ଞକର୍ତ୍ତାର ବିନାଶ ସାଧନ କରିଥାଏ । ୨୧ ।

ହେ ନାଥ ! କାମୁକ ବ୍ରହ୍ମା ନିଜ କନ୍ୟା ସହ ସଙ୍ଗମ ଇଚ୍ଛା କରିବାରୁ କନ୍ୟା ହରିଣୀ ରୂପ ଧରି ଧାଇଁବାରୁ ବ୍ରହ୍ମା ମଧ୍ୟ ହରିଣ ରୂପ ଧରି ଅନୁସରଣ କଲେ । ଏ ଅନ୍ୟାୟ ନ ସହି ଆପଣ ଧନୁ ଧରି ଗୋଡ଼ାଇବାରୁ ବ୍ରହ୍ମା ଭୟରେ ସେଥିରୁ ନିବୃତ୍ତ ହୋଇ ଆକାଶକୁ ଲୁଚିଗଲେ ମଧ୍ୟ ଆପଣ ତାଙ୍କୁ ଧରି ମୃଗଧର ରୂପରେ ନିଜର ପ୍ରତାପ ଆଜି ପର୍ଯ୍ୟନ୍ତ ଛାଡୁନାହାନ୍ତି । (ଅନ୍ୟପକ୍ଷରେ ଆକାଶରେ ମୃଗଶିରନକ୍ଷତ୍ର ପ୍ରଜାପତି, ରୋହିଣୀ ନକ୍ଷତ୍ର ତାଙ୍କର କନ୍ୟା ଏବଂ ପୁନର୍ବସୁ ନକ୍ଷତ୍ର ରୁଦ୍ରଙ୍କର ପିନାକ ଓ ଲୁବ୍‌ଧକ ନକ୍ଷତ୍ର ରୁଦ୍ର ରୂପରେ— ଉକ୍ତ ଲୀଳା ଅଦ୍ୟାପି ପ୍ରଦର୍ଶନ କରୁଛନ୍ତି) । ୨୨ ।

ହେ ପୁରମଥନ ! ହେ ସଂଯମଶୀଳ ! ପୁଷ୍ପାୟୁଧ କାମଦେବ ଅଗ୍ନିରେ ତୃଣ ପରି ଆପଣଙ୍କ ଆଗରେ ଅବିଳମ୍ବେ ଦଗ୍‌ଧ ହୋଇଗଲେ । ତାହା ଦେଖି ମଧ୍ୟ ସ୍ୱରୂପ ଲାବଣ୍ୟ ଯୋଗୁଁ ଆପଣଙ୍କ ଅର୍ଦ୍ଧାଙ୍ଗ ଅଧିକାର କରିଥିବାରୁ ପାର୍ବତୀ ଯଦି ଆପଣଙ୍କୁ 'ସ୍ତ୍ରୈଣ' ବୋଲି ଭାବୁଥାଆନ୍ତି ତେବେ ସେ ନିଶ୍ଚୟ ଭୁଲ

ଶ୍ମଶାନେଷ୍ୱାକ୍ରୀଡ଼ା ସ୍ମରହର ପିଶାଚାଃ ସହଚରା-
ଶ୍ଚିତାଭସ୍ମାଲେପଃ ସ୍ରଗପି ନୃକରୋଟୀପରିକରଃ ।
ଅମଙ୍ଗଲ୍ୟଂ ଶୀଳଂ ତବ ଭବତୁ ନାମୈବମଖିଳଂ
ତଥାପି ସ୍ମର୍ତ୍ତୃଣାଂ ବରଦ ପରମଂ ମଙ୍ଗଳମସି ॥ ୨୪ ॥

ମନଃ ପ୍ରତ୍ୟକ୍ ଚିତ୍ତେ ସବିଧମବଧାୟାତ୍ତମରୁତଃ
ପ୍ରହୃଷ୍ୟଦ୍ରୋମାଣଃ ପ୍ରମଦସଲିଳୋତ୍ସଙ୍ଗିତଦୃଶଃ ।
ଯଦାଲୋକ୍ୟାହ୍ଲାଦଂ ହ୍ରଦ ଇବ ନିମଜ୍ଜ୍ୟାମୃତମୟେ
ଦଧତ୍ୟନ୍ତସ୍ତତ୍ତ୍ୱଂ କିମପି ଯମିନସ୍ତତ୍କିଲ ଭବାନ୍ ॥ ୨୫ ॥

ତ୍ୱମର୍କସ୍ତ୍ୱଂ ସୋମସ୍ତ୍ୱମସି ପବନସ୍ତ୍ୱଂ ହୁତବହ—
ସ୍ତ୍ୱମାପସ୍ତ୍ୱଂ ବ୍ୟୋମ ତ୍ୱମୁ ଧରଣିରାତ୍ମା ତ୍ୱମିତି ଚ ।
ପରିଚ୍ଛିନ୍ନାମେବଂ ତ୍ୱୟି ପରିଣତା ବିଭ୍ରତି ଗିରଂ
ନ ବିଦ୍ମସ୍ତତ୍ତ୍ୱଂ ବୟମିହ ତୁ ଯତ୍ତ୍ୱଂ ନ ଭବସି ॥ ୨୬ ॥

---

କରୁଛନ୍ତି । କାରଣ ଦୁଃଖର ସହିତ କହିବାକୁ ପଡ଼ୁଛି ଯେ ଯୁବକମାନେ ପ୍ରାୟଶଃ ଭ୍ରମଧାରଣାର ବଶବର୍ତ୍ତୀ ହୋଇ ଥାଆନ୍ତି । ୨୩ ।

ହେ ସ୍ମରହର ! ହେ ବରଦ ! ଆପଣ ଶ୍ମଶାନରେ କ୍ରୀଡ଼ା କରନ୍ତି, ଭୂତ-ପ୍ରେତ-ପିଶାଚାଦି ସହଚରଙ୍କ ସହ ବିହାର କରନ୍ତି, ଶରୀରରେ ଶବପୋଡ଼ା ପାଉଁଶ ବୋଳି ହୁଅନ୍ତି ଓ ନର କପାଳରେ ଗୁନ୍ଥା ମାଳା ଧାରଣ କରିଛନ୍ତି । ଆପଣଙ୍କର ଏସବୁ ଆଚରଣ ଅମଙ୍ଗଳଜନକ ହେଲେ ହେଁ ଆପଣ ସ୍ମରଣକାରୀ ଭକ୍ତ ପାଖରେ ପରମ ମଙ୍ଗଳ ବା କଲ୍ୟାଣକାରୀ ହୋଇଥାଆନ୍ତି । ୨୪ ।

ଯୋଗୀମାନେ ବାହ୍ୟ ବିଷୟରୁ ମନକୁ ନିବୃତ୍ତ କରି ବିଧାନ ଅନୁସାରେ ପ୍ରାଣାୟାମାଦି ଯୋଗ ଆଚରଣ କରି ଯେଉଁ ତତ୍ତ୍ୱ ଲାଭ କରି ଶରୀରକୁ ପୁଲକିତ ଓ ଚକ୍ଷୁକୁ ଆନନ୍ଦାଶ୍ରୁପୂର୍ଣ୍ଣ କରନ୍ତି ତଥା ଅମୃତ ହ୍ରଦରେ ନିମଜ୍ଜନର ସୁଖ ଲାଭ କରନ୍ତି, ସେହି ତତ୍ତ୍ୱ ହେଉଛନ୍ତି ଆପଣ ନିଜେ । ୨୫ ।

ଆପଣ ସୂର୍ଯ୍ୟ ଆପଣ ଚନ୍ଦ୍ର ଆପଣ ବାୟୁ, ଆପଣ ଅଗ୍ନି, ଆପଣ ଜଳ, ଆପଣ ଆକାଶ ଆପଣ ପୃଥିବୀ, ଆପଣ ଆତ୍ମା (ଏହିପରି ଅଷ୍ଟମୂର୍ତ୍ତି) ଅଟନ୍ତି ବୋଲି ଆପଣଙ୍କ ସମ୍ବନ୍ଧରେ ସସୀମ ବାକ୍ୟ ପରିପକ୍ୱ ବୁଦ୍ଧି ସମ୍ପନ୍ନ ଜ୍ଞାନୀ ବ୍ୟକ୍ତିମାନେ ପ୍ରୟୋଗ କରିଥାଆନ୍ତି । ମୁଁ ଜାଣିବାରେ ଏପରି ତତ୍ତ୍ୱ ନାହିଁ ଯାହାକି ଆପଣ ନୁହନ୍ତି । ୨୬ ।

ତ୍ରୟୀଂ ତିସ୍ରୋ ବୃତ୍ତୀସ୍ତ୍ରିଭୁବନମଥୋ ତ୍ରୀନପି ସୁର-
ନକାରାଦ୍ୟୈର୍ବର୍ଣ୍ଣୈସ୍ତ୍ରିଭିରପି ଦଧତ୍ତୀର୍ଣ୍ଣବିକୃତି ।
ତୁରୀୟନ୍ତେ ଧାମ ଧ୍ୱନିଭିରବରୁନ୍ଧାନମଣୁଭିଃ
ସମସ୍ତଂ ବ୍ୟସ୍ତଂ ତ୍ୱାଂ ଶରଣଦ ଗୃଣାତ୍ୟୋମିତି ପଦମ୍ ॥୨୭॥
ଭବଃ ଶର୍ବୋ ରୁଦ୍ରଃ ପଶୁପତିରଥୋଗ୍ରଃ ସହମହାଂ-
ସ୍ତଥା ଭୀମେଶାନାବିତି ଯଦଭିଧାନାଷ୍ଟକମିଦମ୍ ।
ଅମୁଷ୍ମିନ୍ ପ୍ରତ୍ୟେକଂ ପ୍ରବିଚରତି ଦେବ ଶ୍ରୁତିରପି
ପ୍ରିୟାୟାସ୍ମୈ ଧାମ୍ନେ ପ୍ରଣିହିତନମସ୍ୟୋଽସ୍ମି ଭବତେ ॥୨୮॥
ନମୋ ନେଦିଷ୍ଠାୟ ପ୍ରିୟଦବ ଦବିଷ୍ଠାୟ ଚ ନମୋ
ନମଃ କ୍ଷୋଦିଷ୍ଠାୟ ସ୍ମରହର ମହିଷ୍ଠାୟ ଚ ନମଃ ।
ନମୋ ବର୍ଷିଷ୍ଠାୟ ତ୍ରିନୟନ ଯବିଷ୍ଠାୟ ଚ ନମୋ
ନମଃ ସର୍ବସ୍ମୈ ତେ ତଦିଦମିତି ସର୍ବାୟ ଚ ନମଃ ॥୨୯॥

---

ହେ ଶରଣଦ, ଓଁ-ଏହି ପଦଟି ଅ-ଉ-ମ-ବର୍ଣ୍ଣତ୍ରୟ ଦ୍ୱାରା ଋକ୍, ଯଜୁଃ ଓ ସାମ ବେଦ ତ୍ରୟ ତଥା ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି-ଅବସ୍ଥାତ୍ରୟ; ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ-ଭୁବନତ୍ରୟ, ବ୍ରହ୍ମା, ବିଷ୍ଣୁ ଓ ଶିବ-ଦେବତାତ୍ରୟର ପ୍ରତିପନ୍ନ ହେବା ସଙ୍ଗେ ସଙ୍ଗେ ଆପଣଙ୍କର ବିକାରାତୀତ ତୁରୀୟ ଅବସ୍ଥାକୁ ପ୍ରତିପାଦନ କରି ବ୍ୟଷ୍ଟି ଓ ସମଷ୍ଟି ଭାବରେ ଆପଣଙ୍କର ହିଁ ସ୍ତୁତି କରୁଥାଏ ।।୨୭।।

ହେ ଦେବ, ଭବ (ଜଗଦୁତ୍ପାଦକ) ଶର୍ବ (ପ୍ରଳୟକର୍ତ୍ତା) ରୁଦ୍ର (ସଂହାରକ) ପଶୁପତି (ଜୀବମାନଙ୍କ ଅଧିପତି) ଉଗ୍ର [ବିଶ୍ୱାଧିକ] ମହାଦେବ (ସର୍ବଶ୍ରେଷ୍ଠ ଦେବତା), ଭୀମ (ଭୟଙ୍କର) ଓ ଈଶାନ (ନିଗ୍ରହାନୁଗ୍ରହ-ସମର୍ଥ—ଏହି ଆଠଟି ନାମରୁ ପ୍ରତ୍ୟେକଟିର ଅର୍ଥ ପ୍ରକାଶ କରାଇବେ ବେଦ ମଧ୍ୟ ସଚେଷ୍ଟ । ଉକ୍ତ ପ୍ରିୟ ଆନନ୍ଦସ୍ୱରୂପ ତଦ୍ରୂପ ବା ସକଳର ଆଶ୍ରୟ ଧାମ ଆପଣଙ୍କୁ କାୟମନୋ-ବାକ୍ୟରେ ପ୍ରକୃଷ୍ଟରୂପେ ନମସ୍କାର କରୁଛି ।୨୮।

ହେ ପ୍ରିୟଦବ (ଆନନ୍ଦକାନନରେ ସଂଚରଣଶୀଳ)! (ଭକ୍ତଜନଙ୍କ) ନିକଟତମ, ଆପଣଙ୍କୁ ପ୍ରଣାମ, (ଅଭକ୍ତମାନଙ୍କଠାରୁ) ଦୂରତମ ଆପଣଙ୍କୁ ନମସ୍କାର ହେ ସ୍ମରହର, (ନିର୍ଗୁଣରୂପେ) ସୂକ୍ଷ୍ମତମ ଆପଣଙ୍କୁ ପ୍ରଣାମ, (ସଗୁଣରୂପେ) ସ୍ଥୂଳତମ ଆପଣଙ୍କୁ ନମସ୍କାର । ହେ ତ୍ରିନୟନ(ଅନାଦି ହେତୁ) ଅତିବୃଦ୍ଧ ଆପଣଙ୍କୁ ପ୍ରଣାମ, ଜରାହୀନ ରହିତ ହେତୁ ଅତି ଯୁବକ ଆପଣଙ୍କୁ ନମସ୍କାର । ପରୋକ୍ଷ ଓ ଅପରୋକ୍ଷ ସର୍ବରୂପେ ବର୍ତ୍ତମାନ ଏବଂ ସର୍ବାତୀତ ବା

ବହଳରଜସେ ବିଶ୍ୱୋତ୍ପତ୍ତୌ ଭବାୟ ନମୋ ନମଃ
ପ୍ରବଳତମସେ ତତ୍ସଂହାରେ ହରାୟ ନମୋ ନମଃ ।
ଜନସୁଖକୃତେ ସତ୍ତ୍ୱୋଦ୍ରିକ୍ତୌ ମୃଡାୟ ନମୋ ନମଃ
ପ୍ରମହସି ପଦେ ନିସ୍ତ୍ରୈଗୁଣ୍ୟେ ଶିବାୟ ନମୋ ନମଃ ॥୩୦॥

କୃଶପରିଣତି ଚେତଃ କ୍ଲେଶବଶ୍ୟଂ କ୍ୱ ଚେଦଂ
କ୍ୱ ଚ ତବ ଗୁଣସୀମୋଲ୍ଲଂଘିନୀ ଶଶ୍ୱଦୃଦ୍ଧିଃ ।
ଇତି ଚକିତମମନ୍ଦୀକୃତ୍ୟ ମାଂ ଭକ୍ତିରାଧାଦ୍
ବରଦ ଚରଣୟୋସ୍ତେ ବାକ୍ୟପୁଷ୍ପୋପହାରମ୍ ॥୩୧॥

ଅସିତଗିରିସମଂ ସ୍ୟାତ୍କଜ୍ଜ୍ୱଳଂ ସିନ୍ଧୁପାତ୍ରେ
ସୁରତରୁବର ଶାଖା ଲେଖନୀ ପତ୍ରମୁର୍ବୀ ।
ଲିଖତି ଯଦି ଗୃହୀତ୍ୱା ସାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ॥୩୨॥

---

ଅବାଙ୍ମନସୋଗୋଚର ଆପଣଙ୍କୁ ବାରମ୍ବାର ନମସ୍କାର ।୨୯।

ବିଶ୍ୱ ସୃଷ୍ଟି ସକାଶେ ରଜୋଗୁଣର ବ୍ରହ୍ମା-ରୂପୀ ଭବ ନାମକ ଆପଣଙ୍କୁ ନମସ୍କାର । ସଂସାରର ସଂହାର ସକାଶେ ତମୋଗୁଣର ରୁଦ୍ରମୂର୍ତ୍ତି ହରଙ୍କୁ ନମସ୍କାର । ଲୋକମାନଙ୍କ ସୁଖ ପାଇଁ ସତ୍ତ୍ୱମୂର୍ତ୍ତି ବିଷ୍ଣୁରୂପୀ ମୃଡଙ୍କୁ ନମସ୍କାର । ସର୍ବୋତ୍ତମ ଜ୍ୟୋତିଃସ୍ୱରୂପ ମୁକ୍ତିପ୍ରାପ୍ତିର କାରଣ ମଙ୍ଗଳମୟ ନିଗୁଣାତୀତ ଶିବଙ୍କୁ ପ୍ରଣାମ ।୩୦।

ହେ ବରଦ (ଅଳ୍ପବିଷୟଗ୍ରାହୀ ହେତୁ) ଅତିମନ୍ଦ (ଅବିଦ୍ୟା ଅସ୍ମିତା-ରାଗ ଦ୍ୱେଷ-ଅଭିନିବେଶ ଏହି ପଞ୍ଚ କ୍ଲେଶର ବଶ୍ୟ ହେତୁ) କ୍ଲେଶଯୁକ୍ତ ଏହି ସସୀମ ବୁଦ୍ଧି କେଉଁଠି, ଆଉ ଅସୀମ ଗୁଣ ସମ୍ପନ୍ନ ଆପଣଙ୍କ ନିତ୍ୟବିଭୂତି କେଉଁଠି ? ଏ କଥା ଚିନ୍ତା କରି ଭୟରେ ମୋର ମନ ଦୁର୍ବଳ ହୋଇ ପଡ଼ୁଥିଲେ ମଧ୍ୟ ଭକ୍ତି ସଦ୍ଭାବରେ ଏ ଭୟକୁ ନାଶକରି । ବଚନରୂପକ ପୁଷ୍ପହାର (ମହିମ୍ନସ୍ତୋତ୍ର) ଆପଣଙ୍କ ଚରଣରେ ଅର୍ପଣ କରୁଛି ।୩୧।

ହେ ଈଶ, ଯଦି ସମୁଦ୍ର ରୂପକ (ପାତ୍ର ବା) ଦୁଆତରେ କଳା ପର୍ବତଭଳି କଜ୍ଜଳ (ବା କାଳି) ରହେ, କଳ୍ପବୃକ୍ଷର ଶାଖା ଲେଖନୀ ହୁଏ ଏବଂ ଏହି ପୃଥିବୀ ପତ୍ର ହୁଏ ଏବଂ ସେ ସବୁକୁ ନେଇ ସ୍ୱୟଂ ସରସ୍ୱତୀ ଚିରକାଳ ଲେଖନ୍ତି, ତେବେ ମଧ୍ୟ ଆପଣଙ୍କ ଗୁଣାବଳୀ ଶେଷ ହେବନାହିଁ ।୩୨।

ଅସୁରସୁରମୁନୀନ୍ଦ୍ରୈରର୍ଚ୍ଚିତସ୍ୟେନ୍ଦୁମୌଳେ-
ର୍ଗ୍ରଥିତଗୁଣମହିମ୍ନୋ ନିର୍ଗୁଣସ୍ୟେଶ୍ୱରସ୍ୟ ।
ସକଳ ଗଣବରିଷ୍ଠଃ ପୁଷ୍ପଦନ୍ତାଭିଧାନୋ
ରୁଚିରମଲଘୁବୃତ୍ତୈଃ ସ୍ତୋତ୍ରମେତଚ୍ଚକାର ॥୩୩॥
ଅହରହରନବଦ୍ୟଂ ଧୂର୍ଜଟେଃ ସ୍ତୋତ୍ରମେତତ୍
ପଠତି ପରମଭକ୍ତ୍ୟା ଶୁଦ୍ଧଚିତ୍ତଃ ପୁମାନ୍ ଯଃ ।
ସ ଭବତି ଶିବଲୋକେ ରୁଦ୍ରତୁଲ୍ୟସ୍ତଥାଽତ୍ର
ପ୍ରଚୁରତରଧନାୟୁଃ ପୁତ୍ରବାନ୍ କୀର୍ତ୍ତିମାଂଶ୍ଚ ॥୩୪॥
ମହେଶାନ୍ନାପରୋ ଦେବୋ ମହିମ୍ନୋ ନାପରା ସ୍ତୁତିଃ ।
ଅଘୋରାନ୍ନାପରୋ ମନ୍ତ୍ରୋ ନାସ୍ତି ତତ୍ତ୍ୱଂ ଗୁରୋଃ ପରମ୍ ॥୩୫॥
ଦୀକ୍ଷା ଦାନଂ ତପସ୍ତୀର୍ଥଂ ଜ୍ଞାନଂ ଯାଗାଦିକାଃ କ୍ରିୟାଃ ।
ମହିମ୍ନଃ ସ୍ତବପାଠସ୍ୟ କଳାଂ ନାର୍ହନ୍ତି ଷୋଡ଼ଶୀମ୍ ॥୩୬॥
କୁସୁମଦଶନନାମା ସର୍ବଗନ୍ଧର୍ବରାଜଃ
ଶିଶୁଶଶଧରମୌଳେର୍ଦେବଦେବସ୍ୟ ଦାସଃ ।
ସ ଖଳୁ ନିଜମହିମ୍ନୋ ଭ୍ରଷ୍ଟ ଏବାସ୍ୟ ରୋଷାତ୍
ସ୍ତବନମିଦମକାର୍ଷୀଦ୍ଦିବ୍ୟ ଦିବ୍ୟଂ ମହିମ୍ନଃ ॥୩୭॥

---

ଯେଉଁ ଚନ୍ଦ୍ରଶେଖର ସୁର, ଅସୁର ଓ ମୁନିଗଣଙ୍କ ଦ୍ୱାରା ପୂଜିତ, ଯାହାଙ୍କର ଗୁଣ ମହିମା ବିଭିନ୍ନ ଶାସ୍ତ୍ର ପୁରାଣରେ ଲିପିବଦ୍ଧ, ଯେ ନିର୍ଗୁଣ ଈଶ୍ୱର, ତାହାଙ୍କ ବିଷୟରେ ସକଳ ଗୁଣଗରିଷ୍ଠ ପୁଷ୍ପଦନ୍ତ ନାମକ ଗନ୍ଧର୍ବ ରାଜା ସୁନ୍ଦର ଦୀର୍ଘ ଛନ୍ଦରେ ଏହି ସ୍ତୋତ୍ର ରଚନା କଲେ ।୩୩।

ଯେଉଁ ଲୋକ ଶୁଦ୍ଧ ଚିତ୍ତରେ ଭକ୍ତିର ସହିତ ଧୂର୍ଜଟିଙ୍କର ଏହି ସୁନ୍ଦର ସ୍ତୋତ୍ର ସବୁବେଳେ ପଢ଼ିବ, ସେ ଶିବ ଲୋକରେ ରୁଦ୍ରତୁଲ୍ୟ ପୂଜା ପାଇବ ଏବଂ ଇହଲୋକରେ ଧନବାନ୍, ପୁତ୍ରବାନ୍ ଓ କୀର୍ତ୍ତିମାନ୍ ହେବ ।୩୪।

ମହେଶ୍ୱରଙ୍କ ଠାରୁ ବଡ଼ ଦେବତା ନାହାନ୍ତି କି ମହିମ୍ନସ୍ତବ ଠାରୁ ଆଉ ସୁନ୍ଦର ସ୍ତୋତ୍ର ନାହିଁ, ଅଘୋର ବା ଶିବଙ୍କର ମନ୍ତ୍ରଠାରୁ ଶ୍ରେଷ୍ଠ ମନ୍ତ୍ର ନାହିଁ କି ଗୁରୁଙ୍କଠାରୁ ଅଧିକ ପରମତତ୍ତ୍ୱ ନାହିଁ ।୩୫।

ଦୀକ୍ଷା, ଦାନ, ତପ, ତୀର୍ଥ, ଜ୍ଞାନ, ଯଜ୍ଞାଦି ସକଳ କ୍ରିୟା ମହିମ୍ନ ପାଠଫଳର (ଷୋଡ଼ଶ କଳାରୁ) ଏକ କଳାକୁ ସମାନ ନୁହନ୍ତି ।୩୬।

ସମସ୍ତ ଗନ୍ଧର୍ବଙ୍କ ରାଜା ପୁଷ୍ପଦନ୍ତ ନବୀନଚନ୍ଦ୍ରଶେଖର ଦେବଦେବ

ସୁରବରମୁନିପୂଜ୍ୟଂ ସ୍ୱର୍ଗମୋକ୍ଷୈକହେତୁଂ
ପଠତି ଯଦି ମନୁଷ୍ୟଃ ପ୍ରାଞ୍ଜଳିର୍ନାନ୍ୟଚେତାଃ ।
ବ୍ରଜତି ଶିବସମୀପଂ କିନ୍ନରୈଃ ସ୍ତୂୟମାନଃ
ସ୍ତବନମିଦମମୋଘଂ ପୁଷ୍ପଦନ୍ତପ୍ରଣୀତମ୍ ॥ ୩୮ ॥
ଆସମାପ୍ତମିଦଂ ସ୍ତୋତ୍ରଂ ପୁଣ୍ୟଂ ଗନ୍ଧର୍ବଭାଷିତଂ ।
ଅନୌପମ୍ୟଂ ମନୋହାରି ଶିବମୀଶ୍ୱରବର୍ଣ୍ଣନମ୍ ॥ ୩୯ ॥
ଶ୍ରୀପୁଷ୍ପଦନ୍ତମୁଖପଙ୍କଜନିର୍ଗତେନ
ସ୍ତୋତ୍ରେଣ କିଲ୍ବିଷହରେଣ ହରପ୍ରିୟେଣ ।
କଣ୍ଠସ୍ଥିତେନ ପଠିତେନ ଗୃହସ୍ଥିତେନ
ସୁପ୍ରୀଣିତୋ ଭବତି ଭୂତପତିର୍ମହେଶଃ ॥ ୪୦ ॥
ଇତ୍ୟେଷା ବାଙ୍ମୟୀ ପୂଜା ଶ୍ରୀମଚ୍ଛଙ୍କର ପାଦୟୋଃ ।
ଅର୍ପିତା ତେନ ଦେବେଶଃ ପ୍ରୀୟତାଂ ମେ ସଦାଶିବଃ ॥ ୪୧ ॥

---

ମହାଦେବଙ୍କର କିଙ୍କର ଅଟନ୍ତି । (ଥରେ ସେ ଶିବଙ୍କ ପ୍ରସାଦ ଲଂଘନ କରିବାରୁ ତାଙ୍କର ଆକାଶରେ ଗମନ କରିବା ଶକ୍ତି ହରାଇଲେ) ପ୍ରଭୁଙ୍କ କୋପ ବଶତଃ ନିଜର ମହତ୍ତ୍ୱରୁ ଭ୍ରଷ୍ଟ ହୋଇ ଅତି ମନୋହର ଏହି ମହିମ୍ନ ସ୍ତୋତ୍ର ସେ ରଚନା କଲେ ।୩୭।

ମନୁଷ୍ୟ ଯଦି ଅନନ୍ୟଚିତ୍ତରେ ଅଞ୍ଜଳିବଦ୍ଧ ହୋଇ ଇନ୍ଦ୍ରାଦି ଦେବତା ଓ ବଶିଷ୍ଠାଦି ମହର୍ଷିଙ୍କ ଦ୍ୱାରା ସେବିତ ସ୍ୱର୍ଗ ତଥା ମୋକ୍ଷର ଏକମାତ୍ର ସାଧକ ମହାଦେବଙ୍କ ପୁଷ୍ପଦନ୍ତପ୍ରଣୀତ ଅମୋଘ (ବା ଅବ୍ୟର୍ଥ) ସ୍ତୋତ୍ର ପାଠ କରେ ସେ କିନ୍ନରମାନଙ୍କ କର୍ତ୍ତୃକ ସେବିତ ହୋଇ ଶିବଙ୍କ ସମୀପକୁ ବା ଶିବଲୋକକୁ ଯାଏ ।୩୮।

ଭକ୍ତପ୍ରବରେ ଶ୍ରୀ ପୁଷ୍ପଦନ୍ତଙ୍କ ଉଚ୍ଚାରିତ ଏହି ସ୍ତୋତ୍ରଟି ଅତ୍ୟନ୍ତ ପବିତ୍ର, ଅନୁପମ, ମନୋରମ ମଙ୍ଗଳପ୍ରଦ ଓ ଈଶ୍ୱରଙ୍କ ବର୍ଣ୍ଣନାରେ ପରିପୂର୍ଣ୍ଣ ।୩୯।

ଶ୍ରୀ ପୁଷ୍ପଦନ୍ତଙ୍କ ମୁଖପଦ୍ମରୁ ବିନିଃସୃତ, ପାପନାଶକ, ମହାଦେବଙ୍କ ପ୍ରିୟ ଏହି ସ୍ତୋତ୍ର କଣ୍ଠସ୍ଥ କଲେ, ପାଠକଲେ କିମ୍ବା ଘରେ ରଖିଲେ ଭୂତପତି ମହାଦେବ ଅତି ପ୍ରୀତ ହୁଅନ୍ତି ।୪୦।

ଉପର୍ଯ୍ୟୁକ୍ତ ସ୍ତବ ଦ୍ୱାରା ପୂଜା ଶଙ୍କରଙ୍କ ପଦ ଯୁଗଳରେ ଅର୍ପିତ ହେଲା । ଏହାଦ୍ୱାରା ଦେବଦେବ ସଦାଶିବ ମୋ ଉପରେ ପ୍ରସନ୍ନ ହୁଅନ୍ତୁ ।୪୧।

# ଶିବ-ମାନସ ପୂଜା-ସ୍ତୋତ୍ର

ଆତ୍ମା ତ୍ୱଂ ଗିରିଜା ମତିଃ ସହଚରାଃ ପ୍ରାଣାଃ ଶରୀରଂ ଗୃହଂ
ପୂଜା ତେ ବିଷୟୋପଭୋଗରଚନା ନିଦ୍ରା ସମାଧିସ୍ଥିତିଃ ।
ସଞ୍ଚାରଃ ପଦୟୋଃ ପ୍ରଦକ୍ଷିଣବିଧିଃ ସ୍ତୋତ୍ରାଣି ସର୍ବା ଗିରୋ
ଯଦ୍ ଯତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍ ॥ ୧ ॥
ରତ୍ନୈଃ କଳ୍ପିତମାସନଂ ହିମଜଳୈଃ ସ୍ନାନଞ୍ଚ ଦିବ୍ୟାମ୍ବରଂ
ନାନାରତ୍ନବିଭୂଷିତଂ ମୃଗମଦାମୋଦାଙ୍କିତଂ ଚନ୍ଦନମ୍ ।
ଜାତୀଚମ୍ପକ ବିଲ୍ୱପତ୍ରରଚିତଂ ପୁଷ୍ପଞ୍ଚ ଧୂପଂ ତଥା
ଦୀପଂ ଦେବ ଦୟାନିଧେ ପଶୁପତେ ହୃତ୍କଳ୍ପିତଂ ଗୃହ୍ୟତାମ୍ ॥ ୨॥
ସୌବର୍ଣ୍ଣେ ମଣିଖଣ୍ଡରତ୍ନରଚିତେ ପାତ୍ରେ ଘୃତଂ ପାୟସଂ
ଭକ୍ଷ୍ୟଂ ପଞ୍ଚବିଧଂ ପୟୋଦଧିଯୁତଂ ରମ୍ଭାଫଳଂ ପାନକମ୍ ।
ଶାକାନାମଯୁତଂ ଜଳଂ ରୁଚିକରଂ କର୍ପୂରଖଣ୍ଡୋଜ୍ଜ୍ୱଳଂ
ତାମ୍ବୂଳଂ ମନସା ମୟା ବିରଚିତଂ ଭକ୍ତ୍ୟା ପ୍ରଭୋ ସ୍ୱୀକୁରୁ ॥ ୩ ॥

---

ହେ ଶମ୍ଭୁ ! ତୁମେ ମୋର ଆତ୍ମା । ମୋର ମନ ହେଉଛି ଗିରିଜା । ମୋର ପ୍ରାଣବାୟୁ ହେଉଛି ସହଚର । ଶରୀର ହେଉଛି ମନ୍ଦିର ବା ଗୃହ । ଯେତେସବୁ ବିଷୟ-ଉପଭୋଗ ଏ ସବୁ ତୁମର ହିଁ ପୂଜା । ମୋର ନିଦ୍ରା ହିଁ ହେଉଛି ସମାଧିଅବସ୍ଥା । ମୁଁ ପାଦରେ ଯେଉଁଆଡେ ଗଲେ ମଧ୍ୟ ତୁମକୁ ପ୍ରଦକ୍ଷିଣ କରୁଛି (କାରଣ ତୁମେ ସର୍ବତ୍ର ବ୍ୟାପ୍ତ) । ମୁଁ ଯାହା କହୁଛି ସବୁ ତୁମର ସ୍ତୋତ୍ର ବା ପ୍ରଶଂସା ବାକ୍ୟ (କାରଣ ଏ ବାକ୍‌ର ତୁମେ ହିଁ ଅଧୀଶ୍ୱର । ତେଣୁ ମୁଁ ଯାହା ଯାହା କରୁଛି ସବୁ ତୁମର ହିଁ ପୂଜା । ୧ ।

ହେ ଦେବ, ହେ ଦୟାନିଧି, ହେ ପଶୁପତି ! ତୁମପାଇଁ ମୋ ହୃଦୟରେ ରତ୍ନର ସିଂହାସନ, ସ୍ନାନ ସକାଶେ ଶୀତଳ ଜଳ, ଦିବ୍ୟ ବସ୍ତ୍ର, ନାନା ରତ୍ନର ଭୂଷଣ, କସ୍ତୂରୀମିଶା ଚନ୍ଦନ, ଜାଈ ଚମ୍ପା-ବିଲ୍ୱପତ୍ର, ଧୂପ, ଦୀପ—ସମସ୍ତ କଳ୍ପନା କରୁଛି । ଗ୍ରହଣ କର । ୨ ।

ମଣିଖଣ୍ଡ ଓ ରତ୍ନ ଖଚିତ ସୁବର୍ଣ୍ଣ ପାତ୍ରରେ ଘୃତ, ପାୟସ, ପଞ୍ଚବିଧ ଭକ୍ଷ୍ୟ; ଦୁଗ୍ଧ ଓ ଦଧିଯୁକ୍ତ ଖାଦ୍ୟ, କଦଳୀ, ପଣା, ବହୁ ପ୍ରକାର ବ୍ୟଞ୍ଜନ, ତୃପ୍ତିକର ଜଳ, କର୍ପୂର ଖଣ୍ଡଯୁକ୍ତ ତାମ୍ବୂଳ ମୋର ଅନ୍ତରର ଭକ୍ତି ସହିତ ସମର୍ପଣ କରୁଛି । ହେ ପ୍ରଭୁ ! ଏ ସବୁ ଗ୍ରହଣ କର । ୩ ।

ଛତ୍ରଂ ଚାମରୟୋର୍ଯୁଗଂ ବ୍ୟଜନକଂ ଚାଦର୍ଶକଂ ନିର୍ମଳଂ
ବୀଣାଭେରିମୃଦଙ୍ଗକାହଳକଲାଗୀତଂ ଚ ନୃତ୍ୟଂ ତଥା ।
ସାଷ୍ଟାଙ୍ଗଂ ପ୍ରଣତିଃ ସ୍ତୁତିର୍ବହୁବିଧା ଏତତ୍ ସମସ୍ତଂ ମୟା
ସଙ୍କଳ୍ପେନ ସମର୍ପିତଂ ଭବ ବିଭୋ ପୂଜାଂ ଗୃହାଣ ପ୍ରଭୋ ॥ ୪ ॥
ଇତ୍ଥଂ ମାନସପୂଜନଂ ଶଶିଭୃତଃ କୁର୍ବନ୍ ତ୍ରିସନ୍ଧ୍ୟଂ ନରଃ
କିଂବା ଶ୍ଳୋକଚତୁଷ୍ଟୟଂ ପ୍ରତିଦିନଂ ପୂଜାବସାନେ ପଠନ୍ ।
ପ୍ରାପ୍ନୋତୀହ ସମସ୍ତପାର୍ଥିବସୁଖଂ ଗୃନ୍ତେ ପଦଂ ଶୂଳିନଃ
ବ୍ୟାସସ୍ତେନ ମହାବସାନସମୟେ କୈଳାସଲୋକଂ ଗତଃ ॥୫॥
ଇତି ଶିବମାନସପୂଜନସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

—

## ଶିବାପରାଧକ୍ଷମାପନ ସ୍ତୋତ୍ରମ୍

ଆଦୌ କର୍ମ ପ୍ରସଙ୍ଗାତ୍ କଳୟତି କଲୁଷଂ ମାତୃକୁକ୍ଷୌ ସ୍ଥିତଂ ମାଂ
ବିଣ୍ମୂତ୍ରାମେଧ୍ୟମଧ୍ୟେ କ୍ୱଥୟତି ନିତରାଂ ଜାଠରୋ ଜାତବେଦାଃ ।
ଯଦ୍ ଯଦ୍ ବୈ ତତ୍ର ଦୁଃଖଂ ବ୍ୟଥୟତି ସତତଂ ଶକ୍ୟତେ କେନ ବକ୍ତୁଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୧॥

---

ଛତ୍ର, ଚାମରଦ୍ୱୟ ପଙ୍ଖା ବା ବିଞ୍ଚଣା ପରିଷ୍କାର ଦର୍ପଣ, ବୀଣା, ଭେରୀ, ମୃଦଙ୍ଗ, କାହାଳୀ, ଲଳିତ ଗୀତ, ନୃତ୍ୟ, ସାଷ୍ଟାଙ୍ଗ ପ୍ରଣାମ ଓ ନାନା ପ୍ରକାର ସ୍ତୁତି ମନମଧ୍ୟରେ କଳ୍ପନା କରି ଭକ୍ତିର ସହିତ ଅର୍ପଣ କରୁଛି । ଏ ସବୁ ଗ୍ରହଣ କରନ୍ତୁ । ୪ ।

ମନୁଷ୍ୟ ତ୍ରିସନ୍ଧ୍ୟାରେ ଶିବଙ୍କର ଏହିପରି ମାନସ ପୂଜା କରି କିମ୍ବା ପ୍ରତିଦିନ ପୂଜା ଶେଷରେ ଶ୍ଳୋକ ଚାରୋଟି ପଢ଼ି ଇହକାଳରେ ସମସ୍ତ ଜାଗତିକ ସୁଖ ଲାଭ କରେ ଏବଂ ପରକାଳରେ ଶିବଲୋକକୁ ଗମନ କରେ । ଏହାଦ୍ୱାରା ବ୍ୟାସ ଜୀବନର ଶେଷ ସମୟରେ କୈଳାସ ଲୋକକୁ ଯାଇଥିଲେ । ୫ ।

ପ୍ରଥମେ (ପୂର୍ବଜନ୍ମାର୍ଜିତ) କର୍ମଫଳ ବଶତଃ ମାତୃଗର୍ଭରେ ସ୍ଥିତ ମତେ ପାପ ବ୍ୟଥିତ କରୁଛି । (ମାତାର) ଅପବିତ୍ର ମଳମୂତ୍ର ଭିତରେ ଗର୍ଭର ଅଗ୍ନି ମତେ ଅତ୍ୟନ୍ତ ପାକସିଦ୍ଧ କରୁଛି । ସେଠାରେ ଯେଉଁ ଯେଉଁ ଦୁଃଖ ନିତି ମତେ ବ୍ୟଥିତ କରୁଛି, ତାର ବର୍ଣ୍ଣନା କିଏ କରି ପାରିବ ? (ଏ ସବୁ ତ

ବାଲ୍ୟେ ଦୁଃଖାତିରେକୋ ମଲଲୁଲିତବପୁଃ ସ୍ତନ୍ୟପାନେ ପିପାସା
ନୋ ଶକ୍ତଶ୍ଚେନ୍ଦ୍ରିୟେଭ୍ୟୋ ଭବଗୁଣଜନିତାଃ ଜନ୍ତବୋ ମାଂ ତୁଦନ୍ତି ।
ନାନାରୋଗାଦ୍ୟ ଦୁଃଖାଦ୍ରୁଦନପରବଶଃ ଶଙ୍କରଂ ନ ସ୍ମରାମି
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୨॥
ପ୍ରୌଢୋଽହଂ ଯୌବନସ୍ଥୋ ବିଷୟବିଷଧରୈଃ ପଞ୍ଚଭିର୍ମର୍ମସନ୍ଧୌ
ଦଷ୍ଟୋ ନଷ୍ଟୋ ବିବେକଃ ସୁତଧନଯୁବତିସ୍ୱାଦସୌଖ୍ୟେ ନିଷଣ୍ଣଃ ।
ଶୈବୀଚିନ୍ତାବିହୀନଂ ମମ ହୃଦୟମହୋ ମାନଗର୍ବାଧିରୂଢଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୩॥
ବାର୍ଦ୍ଧକ୍ୟେ ଚେନ୍ଦ୍ରିୟାଣାଂ ବିଗତଗତିମତିଶ୍ଚାଧିଦୈବାଦିତାପୈଃ
ପାପୈ ରୋଗୈର୍ବିୟୋଗୈସ୍ତ୍ୱନବସିତବପୁଃ ପ୍ରୌଢିହୀନଞ୍ଚ ଦୀନମ୍ ।
ମିଥ୍ୟାମୋହାଭିଲାଷୈର୍ଭ୍ରମତି ମମ ମନୋ ଧୂର୍ଜଟେର୍ଧ୍ୟାନଶୂନ୍ୟଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୪॥

---

ମୋର ଅପରାଧର ଫଳ) । ହେ ଶିବ, ହେ ମଙ୍ଗଳମୟ, ହେ ସିଦ୍ଧିଦାୟକ, ହେ ଶମ୍ଭୁ ମୋର ଅପରାଧ କ୍ଷମାକର ।୧।

ମୁଁ ବାଲ୍ୟକାଳରେ ଅସୀମ ଦୁଃଖ ଭୋଗ କଲି, ଶରୀର ମଳରେ ବୋଳି ହୋଇଥିଲା, ମା'ର ସ୍ତନକ୍ଷୀର ପାନ କରିବା ପାଇଁ ପ୍ରବଳ ଇଚ୍ଛା ଜାତ ହୋଇଥିଲା, ଇନ୍ଦ୍ରିୟମାନେ ମୋର ଆୟତ୍ତରେ ନଥିଲେ, ଜନ୍ଦା-ପିମ୍ପୁଡ଼ି-ମଶା ମଛି କାମୁଡ଼ି ନାନା କଷ୍ଟ ଦେଉଥିଲେ (ଶକ୍ତିହୀନ ମୁଁ ବା କିପରି ଏ ସବୁରୁ ରକ୍ଷା ପାଆନ୍ତି ?) । ଏହିଭଳି ନାନା ରୋଗ କ୍ଲେଶ ଭୋଗକରି ଶଙ୍କରଙ୍କୁ ସ୍ମରଣ କରିନାହିଁ । ହେ ଶିବ ଶମ୍ଭୁ, ମହାଦେବ ମୋ ଅପରାଧ କ୍ଷମାକର ।୨।

ବୟସ ବଢ଼ିଲା, ଯୌବନ ଆସିଲା, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧର ପଞ୍ଚ ରୂପକ ସର୍ପମାନେ ମୋର ମର୍ମ ସନ୍ଧିକୁ ଦଂଶନ କଲେ ଅର୍ଥାତ୍ ମୁଁ ବିଷୟ ବିଷରେ ଘାରି ହେଲି । ମୋର ବିବେକ ନଷ୍ଟ ହେଲା । ପୁତ୍ର ପ୍ରତି ମମତା ଧନପ୍ରତି ଲୋଭ, ଯୁବତୀର ସମ୍ଭୋଗ ସୁଖ, ସ୍ୱାଦୁ ଭୋଜନ ପାଇଁ ଜିହ୍ୱାର ଲାଳସାରେ ମୋର ମନ ଆସକ୍ତ ହୋଇ ପଡ଼ିଲା । ଅପରିଣାମଦର୍ଶୀ ମୋର ହୃଦୟ ଶିବଭାବନା ବିହୀନ ହୋଇ ଅଭିମାନ ଓ ଗର୍ବରେ ଭରପୂର ହୋଇଗଲା । ହେ ଶିବ, ଶମ୍ଭୁ ମହାଦେବ — ମୋ ଅପରାଧ କ୍ଷମାକର ।୩।

ବାର୍ଦ୍ଧକ୍ୟ ଆସିଲା । ବର୍ତ୍ତମାନ ଇନ୍ଦ୍ରିୟମାନଙ୍କର କର୍ମଶକ୍ତି ଓ ଜ୍ଞାନ ଶକ୍ତି ଖସିଗଲାଣି । ଅଧିଦୈବାଦି ପାପ ରୋଗ ଓ (ଆତ୍ମୀୟଜନଙ୍କ) ବିୟୋଗରେ

ନୋ ଶକ୍ୟଂ ସ୍ମାର୍ତ୍ତକର୍ମ ପ୍ରତିପଦଗହନପ୍ରତ୍ୟବାୟାକୁଳାଖ୍ୟଂ
ଶ୍ରୌତେ ବାର୍ତ୍ତା କଥଂ ମେ ଦ୍ୱିଜକୁଳବିହିତେ ବ୍ରହ୍ମମାର୍ଗେ ସୁସାରେ ।
ଜ୍ଞାତୋ ଧର୍ମୋ ବିଚାରୈଃ ଶ୍ରବଣମନନୟୋଃ କିଂ ନିଦିଧ୍ୟାସିତବ୍ୟଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୪॥
ସ୍ନାତ୍ୱା ପ୍ରତ୍ୟୂଷକାଳେ ସ୍ନପନବିଧିବିଧୌ ନାହୃତଂ ଗାଙ୍ଗତୋୟଂ
ପୂଜାର୍ଥଂ ବା କଦାଚିଦ୍ ବହୁତରଗହନାତ୍ ଖଣ୍ଡବିଲ୍ୱୀଦଳାନି ।
ନାନୀତା ପଦ୍ମମାଳା ସରସି ବିକସିତା ଗନ୍ଧପୁଷ୍ପୈସ୍ତ୍ୱଦର୍ଥଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୫॥
ଦୁଗ୍ଧୈର୍ମଧ୍ୱାଜ୍ୟଯୁକ୍ତୈର୍ଦଧିସିତସହିତୈଃ ସ୍ନାପିତଂ ନୈବ ଲିଙ୍ଗଂ
ନୋ ଲିପ୍ତଂ ଚନ୍ଦନାଦ୍ୟୈଃ କନକବିରଚିତୈଃ ପୂଜିତଂ ନ ପ୍ରସୂନୈଃ ।
ଧୂପୈଃ କର୍ପୂରଦୀପୈର୍ବିବିଧରସଯୁତୈର୍ନୈବ ଭକ୍ଷ୍ୟୋପହାରୈଃ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୬॥

---

ଶରୀର ସଂଶୋଷ ନ ହେଲେ ହେଁ ଅବସନ୍ନ ଓ କ୍ଷୀଣ ହୋଇଗଲାଣି । ତଥାପି ମନ ମିଥ୍ୟା ମୋହାଭିଳାଷରେ ଭ୍ରାନ୍ତ ହୋଇ କାମନା ମିଳି ଲାଗି ଘୂରିବୁଲୁଛି ଜିନା ଧୂର୍ଜଟୀ ଶିବଙ୍କ ଧ୍ୟାନରେ ଲାଗୁନାହିଁ । ହେ ଶିବ, ଶମ୍ଭୁ, ମହାଦେବ – ମୋ ଅପରାଧ କ୍ଷମାକର । ୪ ।

ହେ ସ୍ମରାରି ! ପଦେ ପଦେ ଦୁର୍ବୋଧ ଓ ବିଘ୍ନସଂକୁଳ ହୋଇ ସ୍ମାର୍ତ୍ତ (ସ୍ମୃତି ବିହିତ) କର୍ମ ତ କରି ପାରିନାହିଁ ଦ୍ୱିଜକୁଳ ବିହିତ ବ୍ରହ୍ମଲୋକର ଉପାୟ ସ୍ୱରୂପ ଶ୍ରୌତ (ବେଦ ବିହିତ) କର୍ମ ବା କିପରି କରିବି ? ଧର୍ମକଥାର ଶ୍ରବଣ ଓ ମନନ ଦ୍ୱାରା ଜ୍ଞେୟ ଧର୍ମ ବିଚାର କରି ଜାଣି ନାହିଁ । ତେଣୁ ନିଦିଧ୍ୟାସନ ବା ଧ୍ୟାନ କରିବି କିପରି ? ହେ ଶିବ, ଶମ୍ଭୁ, ମହାଦେବ ! ମୋର ଅପରାଧ କ୍ଷମାକର । ୫ ।

ସକାଳେ ସ୍ନାନ କରି ଆପଣଙ୍କ ଅଭିଷେକ ସକାଶେ ଯଥା ସମୟରେ ଗଙ୍ଗାଜଳ ଯୋଗାଡ଼ି ନାହିଁ, କି ପୂଜା ସକାଶେ ଗହନ ବଣରୁ ବେଲପତ୍ର ତୋଳି ନାହିଁ, କିମ୍ବା ପୋଖରୀରେ ଫୁଟିଥିବା ପଦ୍ମଫୁଲର ମାଳ ଆଣି ନାହିଁ କିମ୍ବା ଗନ୍ଧ ଓ ଧୂପ ଦେଇ ଆପଣଙ୍କ ପୂଜା କରିନାହିଁ । ହେ ଶିବ, ଶମ୍ଭୁ ମହାଦେବ — ମୋ ଅପରାଧ କ୍ଷମାକର । ୬ ।

ମୁଁ କେବେହେଲେ ଶିବଲିଙ୍ଗଙ୍କୁ ଦୁଗ୍ଧ, ମଧୁ, ଘୃତ, ଦଧି, ଶର୍କରା (ପଞ୍ଚାମୃତ)ରେ ସ୍ନାନ ବା ଅଭିଷେକ କରାଇ ନାହିଁ, ଚନ୍ଦନାଦି ଲେପନ

ଧ୍ୟାତ୍ୱା ଚ ଚିତ୍ତେ ଶିବାଖ୍ୟଂ ପ୍ରଚୁରତରଧନଂ ନୈବ ଦତ୍ତଂ ଦ୍ୱିଜେଭ୍ୟୋ
ହବ୍ୟଂ ତେ ଲକ୍ଷସଂଖ୍ୟୈର୍ହୁତବହବଦନେ ନାର୍ପିତଂ ବୀଜମନ୍ତ୍ରୈଃ ।
ନୋ ତପ୍ତଂ ଗାଙ୍ଗତୀରେ ବ୍ରତଜପନିୟମୈ ରୁଦ୍ରଜାପ୍ୟୈର୍ନ ବେଦୈଃ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୮॥

ସ୍ଥିତ୍ୱା ସ୍ଥାନେ ସରୋଜେ ପ୍ରଣବମୟମରୁତ୍କୁମ୍ଭିତେ ସୂକ୍ଷ୍ମମାର୍ଗେ
ଶାନ୍ତେ ସ୍ୱାନ୍ତେ ପ୍ରଲୀନେ ପ୍ରକଟିତବିଭବେ ଜ୍ୟୋତିରୂପେ ପରାଖ୍ୟେ ।
ଲିଙ୍ଗଂ ତେ ବ୍ରହ୍ମବାଚ୍ୟଂ ସକଳମଭିମତଂ ଶଙ୍କରଂ ନ ସ୍ମରାମି
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୯॥

ନଗ୍ନୋ ନିଃସଙ୍ଗଶୁଦ୍ଧସ୍ତ୍ରିଗୁଣବିରହିତୋ ଧ୍ୱସ୍ତମୋହାନ୍ଧକାରୋ
ନାସାଗ୍ରେ ନ୍ୟସ୍ତଦୃଷ୍ଟିର୍ବିଦିତଭବଗୁଣୋ ନୈବ ଦୃଷ୍ଟଃ କଦାଚିତ୍ ।
ଉନ୍ମନ୍ୟାବସ୍ଥୟା ତ୍ୱାଂ ବିଗତକଲିମଲଂ ଶଙ୍କରଂ ନ ସ୍ମରାମି
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ॥୧୦॥

---

କରିନାହିଁ, ସୁବର୍ଣ୍ଣ ନିର୍ମିତ ପୁଷ୍ପ ସହ ଧୂପ, କର୍ପୂର ଦୀପ, ବିବିଧ ସୁମିଷ୍ଟ ଭକ୍ଷ୍ୟ ନୈବେଦ୍ୟ ଦେଇ ପୂଜା କରିନାହିଁ, ହେ ଶିବ; ଶମ୍ଭୁ, ମହାଦେବ-ମୋର ଅପରାଧ କ୍ଷମା କର ।୭।

ମନରେ 'ଶିବ'-ନାମ ସ୍ମରଣ କରି ମୁଁ କେବେ ବ୍ରାହ୍ମଣମାନଙ୍କୁ ପ୍ରଚୁର ଧନ ଦାନ କରି ନାହିଁ । ବୀଜମନ୍ତ୍ର ସହ ଲକ୍ଷାହୁତି ତୁମ ଉଦ୍ଦେଶ୍ୟରେ ଅଗ୍ନିରେ ଦେଇନାହିଁ । ଗଙ୍ଗାତୀରରେ ବ୍ରତଯମନିୟମାନୁସାରେ ରୁଦ୍ରମନ୍ତ୍ର ଜପକରି ତପସ୍ୟା କରିନାହିଁ କି ବେଦ ଦ୍ୱାରା ମଧ୍ୟ ଅର୍ଚ୍ଚନା କରିନାହିଁ । ହେ ଶିବ, ଶମ୍ଭୁ, ମହାଦେବ-ମୋର ଅପରାଧ କ୍ଷମା କର ।୮।

ପଦ୍ମାସନରେ ବସି ପ୍ରଣବ ଉଚ୍ଚାରଣ ପୂର୍ବକ ପ୍ରାଣବାୟୁକୁ ସୁଷୁମ୍ନା ପଥରେ କୁମ୍ଭକ ବା ନିରୁଦ୍ଧ କରି ତା'ପରେ ଅନ୍ତଃକରଣକୁ ଶାନ୍ତ କରି ନିଜର ବିଭବ ପ୍ରକାଶ କରିଥିବା ପ୍ରଣବ ଜ୍ୟୋତିରୂପ ପରବ୍ରହ୍ମଠାରେ ଲୀନ ହୋଇ ସକଳ ଜନ ପୂଜ୍ୟ ଚିହ୍ନ ଲିଙ୍ଗ ଶଙ୍କରଙ୍କୁ ସ୍ମରଣ କରିନାହିଁ । ହେ ଶିବ ଶମ୍ଭୁ ମହାଦେବ ! ମୋର ଅପରାଧ କ୍ଷମା କର । ୯ ।

ଦିଗମ୍ବର, ସଙ୍ଗହୀନ, ଶୁଦ୍ଧ, ତ୍ରିଗୁଣାତୀତ, ମୋହାନ୍ଧକାର ବିମୁକ୍ତ, ନାସାଗ୍ରେ ନ୍ୟସ୍ତଦୃଷ୍ଟି ଏବଂ ଆପଣଙ୍କ ସ୍ୱରୂପ ବିଷୟରେ ଜ୍ଞାନବାନ୍ କୌଣସି ଯୋଗୀଙ୍କୁ କେବେ ଦେଖିନାହିଁ (ଏହିଭଳି ଶିବ-ଯୋଗୀଙ୍କ ଦର୍ଶନ ପାଇଥିଲେ

ଚନ୍ଦ୍ରୋଦ୍ଭାସିତଶେଖରେ ସ୍ମରହରେ ଗଙ୍ଗାଧରେ ଶଙ୍କରେ
ସର୍ପୈର୍ଭୂଷିତକଣ୍ଠକର୍ଣ୍ଣଯୁଗଳେ ନେତ୍ରୋତ୍ଥ ବୈଶ୍ୱାନରେ ।
ଦନ୍ତିତ୍ୱକ୍କୃତସୁନ୍ଦରାମ୍ବରଧରେ ତ୍ରୈଲୋକ୍ୟସାରେ ହରେ
ମୋକ୍ଷାର୍ଥଂ କୁରୁ ଚିତ୍ତବୃତ୍ତିମଚଳାମନ୍ୟୈସ୍ତୁ କିଂ କର୍ମଭିଃ ॥୧୧॥
କିଂ ବାଽନେନ ଧନେନ ବାଜିକରିଭିଃ ପ୍ରାପ୍ତେନ ରାଜ୍ୟେନ କିଂ
କିଂ ବା ପୁତ୍ରକଳତ୍ରମିତ୍ରପଶୁଭିର୍ଦେହେନ ଗେହେନ କିମ୍ ।
ଜ୍ଞାତ୍ୱୈତତ୍ କ୍ଷଣଭଙ୍ଗୁରଂ ସପଦି ରେ ତ୍ୟାଜ୍ୟଂ ମନୋ ଦୂରତଃ
ସ୍ୱାତ୍ମାର୍ଥଂ ଗୁରୁବାକ୍ୟତୋ ଭଜ ଭଜ ଶ୍ରୀପାର୍ବତୀବଲ୍ଲଭମ୍ ॥ ୧୨ ॥
ଆୟୁର୍ନଶ୍ୟତି ପଶ୍ୟତାଂ ପ୍ରତିଦିନଂ ଯାତି କ୍ଷୟଂ ଯୌବନଂ
ପ୍ରତ୍ୟାୟାନ୍ତି ଗତାଃ ପୁନର୍ନ ଦିବସାଃ କାଳୋ ଜଗଦ୍ଭକ୍ଷକଃ ।
ଲକ୍ଷ୍ମୀସ୍ତୋୟତରଙ୍ଗଭଙ୍ଗଚପଳା ବିଦ୍ୟୁଚ୍ଚଳଂ ଜୀବିତଂ
ତସ୍ମାନ୍ମାଂ ଶରଣାଗତଂ ଶରଣଦ ତ୍ୱଂ ରକ୍ଷ ରକ୍ଷାଧୁନା ॥ ୧୩ ॥

ଅବା ପାପ କ୍ଷୟ ହୋଇଥିଅନ୍ତା) କି ଉନ୍ମନ୍ୟବସ୍ଥା*ରେ ଚନ୍ଦ୍ରମଣ୍ଡଳରେ କଳି-କଲୁଷ ଶୂନ୍ୟ ମଙ୍ଗଳମୟ ଅପଣଙ୍କ ସ୍ମରଣ କରିନାହିଁ । ହେ ଶିବ, ଶମ୍ଭୁ, ମହାଦେବ ! ମୋର ଅପରାଧ କ୍ଷମାକର । ୧୦ ।

ଯାହାଙ୍କ ମସ୍ତକ ଚନ୍ଦ୍ରଙ୍କ (କିରଣ) ଦ୍ୱାରା ଉଦ୍ଭାସିତ, ଯେ କାମର ବିନାଶକ, ଯେ ଗଙ୍ଗାଧର, ଯେ ମଙ୍ଗଳ ବିଧାୟକ, ଯାହାଙ୍କର କଣ୍ଠ ଓ କର୍ଣ୍ଣର ଭୂଷଣ ସର୍ପ, ଯାହାଙ୍କ ନୟନରୁ ଅଗ୍ନି ଉତ୍ଥିତ ହୁଏ, ଯେ ଗଜଚର୍ମକୁ ସୁନ୍ଦର ବସ୍ତ୍ର ରୂପେ ପରିଧାନ କରିଛନ୍ତି, ଯେ ତ୍ରିଭୁବନର ସାରସର୍ବସ୍ୱ, ସେହି ତ୍ରିଲୋକର ସାର ହରଙ୍କଠାରେ ମୋକ୍ଷ ପାଇବା ସକାଶେ ଚିତ୍ତକୁ ସ୍ଥିର କର । ଅନ୍ୟ କର୍ମର ପ୍ରୟୋଜନ କଣ ? । ୧୧ ।

ଏ ଧନ, ଘୋଡା, ହାତୀ, ରାଜ୍ୟ ସମ୍ପତ୍ତିରେ କ'ଣ ହେବ ? ପୁତ୍ର, ସ୍ତ୍ରୀ, ବନ୍ଧୁ ଓ ଗାଈଗୋରୁ ପ୍ରଭୃତି ପଶୁ ଦ୍ୱାରା ବା କ'ଣ ହୋଇପାରିବ ? ଦେହ ଓ ଗୃହ ଥାଇ ମଧ୍ୟ କ'ଣ ହେବ ? ରେ ମନ ! ଏ ସବୁ କ୍ଷଣିକ ଓ ନାଶଶୀଳ ବୋଲି ଅରକେ ଜାଣି ଦୂରରୁ ତ୍ୟାଗ କରିବା ଉଚିତ । ନିଜର ଲାଭ ପାଇଁ ଗୁରୁବାକ୍ୟ ଅନୁସାରେ ପାର୍ବତୀବଲ୍ଲଭ ଶିବଙ୍କୁ ଭଜନା କର । ୧୨ ।

ଦେଖୁ ଦେଖୁ ପ୍ରତିଦିନ ଆୟୁଷ ନାଶ ହେଉଛି ଓ ଯୌବନ କ୍ଷୟ ହୋଇ

* ଉନ୍ମନ୍ୟବସ୍ଥାଧିଗମାୟ ବିଦ୍ୱନ୍ନୁପାୟମେକଂ ତବ ନିର୍ଦ୍ଦିଶାମି ।
ପଶ୍ୟନ୍ନୁଦାସୀନତୟା ପ୍ରପଞ୍ଚଂ ସଙ୍କଳ୍ପମୁନ୍ମୂଳୟ ସାବଧାନତଃ ॥

ବପୁଃ ପ୍ରଦୁର୍ଭାବାଦନୁମିତମିଦଂ ଜନ୍ମନି ପୁରା
ପୁରାରେ ନ ପ୍ରାପ୍ତଃ କ୍ୱଚିଦପି ଭବନ୍ତଂ ନ ପ୍ରଣତବାନ୍ ।
ନମନ୍ମୁକ୍ତଃ ସମ୍ପ୍ରତ୍ୟହମତନୁରଗ୍ରେଽପ୍ୟନତଭାକ୍—
ମହେଶ କ୍ଷନ୍ତବ୍ୟଂ ତଦିଦମପରାଧଦ୍ୱୟମପି ॥ ୧୪ ॥
ଶାନ୍ତଂ ପଦ୍ମାସନସ୍ଥଂ ଶଶଧରମୁକୁଟଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ
ଶୂଳଂ ବଜ୍ରଞ୍ଚ ଖଡ୍ଗଂ ପରଶୁମପି ବରଂ ଦକ୍ଷିଣାଙ୍ଗେ ବହନ୍ତଂ ।
ନାଗଂ ପାଶଞ୍ଚ ଘଣ୍ଟାଂ ଡମରୁକସହିତଂ ଚାଙ୍କୁଶଂ ବାମଭାଗେ
ନାନାଲଙ୍କାରଯୁକ୍ତଂ ସ୍ଫଟିକମଣିନିଭଂ ପାର୍ବତୀଶଂ ଭଜାମି ॥ ୧୫ ॥
ବନ୍ଦେ ଦେବମୁମାପତିଂ ସୁରଗୁରୁଂ ବନ୍ଦେ ଜଗତ୍କାରଣଂ
ବନ୍ଦେ ପନ୍ନଗଭୂଷଣଂ ମୃଗଧରଂ ବନ୍ଦେ ପଶୂନାଂ ପତିମ୍ ।
ବନ୍ଦେ ସୂର୍ଯ୍ୟଶଶାଙ୍କବହ୍ନିନୟନଂ ବନ୍ଦେ ମୁକୁନ୍ଦପ୍ରିୟଂ
ବନ୍ଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବନ୍ଦେ ଶିବଂ ଶଙ୍କରମ୍ ॥ ୧୬ ॥

---

ଯାଉଛି । ଗତ ଦିବସଗୁଡ଼ିକ ଆଉ ଫେରି ଆସୁନାହାନ୍ତି । କାଳ ହେଉଛି ଜଗତର ଭକ୍ଷଣକାରୀ । ଜଳତରଙ୍ଗ ଯେପରି ଶୀଘ୍ର ଆସି ଶୀଘ୍ର ଭାଙ୍ଗିଯାଏ ସେହିପରି ଲକ୍ଷ୍ମୀ ଅତି ଚଞ୍ଚଳ ଅର୍ଥାତ୍ ଧନସମ୍ପତ୍ତି କ୍ଷଣସ୍ଥାୟୀ ମାତ୍ର । ଜୀବନ ବିଜୁଳି ପରି ଚଞ୍ଚଳ । ହେ ଶରଣଦ ! ମୁଁ ତୁମଠାରେ ଶରଣ ପଶିବାକୁ ଆସିଛି । ଏବେ ମତେ ରକ୍ଷାକର । ୧୩ ।

ହେ ତ୍ରିପୁରାରି ! ପୁଣି ଶରୀର ଧାରଣ କରିବାରୁ ଜାଣୁଛି ଯେ ପୂର୍ବଜନ୍ମରେ ମୁଁ କେବେ ତୁମକୁ ପ୍ରଣାମ କରିନାହିଁ । ବର୍ତ୍ତମାନ ତୁମକୁ ପ୍ରଣାମ କରି ମୁକ୍ତିଲାଭ କରିବି ଓ ଭବିଷ୍ୟତରେ ଆଉ ଦେହଧାରି ଜନ୍ମ ନ ହେବା ଯୋଗୁଁ ଆଉ ପ୍ରଣାମ ମଧ୍ୟ କରିବାକୁ ପାଇବି ନାହିଁ । ପ୍ରଣାମ ଅତୀତରେ କରି ନଥିଲି ଏବଂ ଭବିଷ୍ୟତରେ କରି ପାରିବି ନାହିଁ ବୋଲି—ଏ ଯେଉଁ ଦୁଇ ଅପରାଧ ହେ ମହେଶ୍ୱର ! କ୍ଷମାକର । ୧୪ ।

ଯେ ଶାନ୍ତ, ପଦ୍ମାସନରେ ଆସୀନ, ଚନ୍ଦ୍ରଶେଖର, ପଞ୍ଚମୁଖ, ତ୍ରିନେତ୍ର, ଯାହାଙ୍କ ଦକ୍ଷିଣ ହସ୍ତ ସମୂହରେ ଶୂଳ, ବଜ୍ର, ଖଡ୍ଗ, ପରଶୁ ଓ ବରମୁଦ୍ରା ବିଦ୍ୟମାନ ଏବଂ ଯାହାଙ୍କ ବାମହସ୍ତରେ ନାଗ, ପାଶ, ଘଣ୍ଟା, ଡମରୁ ଓ ଅଙ୍କୁଶ ବିଦ୍ୟମାନ, ଯେ ନାନା ଅଳଙ୍କାର ବିଭୂଷିତ, ସ୍ଫଟିକ ମଣି ପରି ଶୁଭ୍ର, ସେହି ପାର୍ବତୀପତିଙ୍କୁ ଭଜନା କରୁଛି । ୧୫ ।

ଉମାପତି, ଦେବତାମାନଙ୍କ ବନ୍ଦନୀୟ, ଜଗତର କାରଣ ସର୍ପଭୂଷଣ, ମୃଗଧର, ପଶୁପତି; ସୂର୍ଯ୍ୟ-ଚନ୍ଦ୍ର-ଅଗ୍ନି-ନେତ୍ର, ବିଷ୍ଣୁପ୍ରିୟ, ଭକ୍ତଜନାଶ୍ରୟ, ବରଦ, ଶିବ, ଶଙ୍କରଙ୍କୁ ବାରମ୍ବାର ବନ୍ଦନା କରୁଛି । ୧୬ ।

ଗାତ୍ରଂ ଭସ୍ମସିତଂ ସିତଞ୍ଚ ହସିତଂ ହସ୍ତେ କପାଲଂ ସିତଂ
ଖଟ୍ୱାଙ୍ଗଞ୍ଚ ସିତଂ ସିତଶ୍ଚ ବୃଷଭଃ କର୍ଣ୍ଣେ ସିତେ କୁଣ୍ଡଳେ ।
ଗଙ୍ଗାଫେନସିତା ଜଟା ପଶୁପତେଶ୍ଚନ୍ଦ୍ରଃ ସିତୋ ମୂର୍ଦ୍ଧନି
ସୋଽୟଂ ସର୍ବସିତୋ ଦଦାତୁ ବିଭବଂ ପାପକ୍ଷୟଂ ସର୍ବଦା ।। ୧୭ ।।
କରଚରଣକୃତଂ ବାକ୍‌କାୟଜଂ କର୍ମଜଂ ବା
ଶ୍ରବଣନୟନଜଂ ବା ମାନସଂ ବାଽପରାଧମ୍ ।
ବିହିତମବିହିତଂ ବା ସର୍ବମେତତ୍ କ୍ଷମସ୍ୱ
ଜୟ ଜୟ କରୁଣାବ୍ଧେ ଶ୍ରୀମହାଦେବ ଶମ୍ଭୋ ।। ୧୮ ।।

—

## ହରଗୌର୍ଯ୍ୟଷ୍ଟକମ୍

କସ୍ତୂରିକାଚନ୍ଦନଲେପନାୟୈ, ଶ୍ମଶାନଭସ୍ମାଙ୍ଗବିଲେପନାୟ
ସତ୍କୁଣ୍ଡଳାୟୈ ଫଣିକୁଣ୍ଡଳାୟ, ନମଃ ଶିବାୟୈ ଚ ନମଃ ଶିବାୟ ।।୧।।
ମନ୍ଦାରମାଳା ପରିଶୋଭିତାୟୈ, କପାଳମାଳା ପରିଶୋଭିତାୟ ।
ଦିବ୍ୟାମ୍ବରାୟୈ ଚ ଦିଗମ୍ବରାୟ, ନମଃ ଶିବାୟୈ ଚ ନମଃ ଶିବାୟ ।।୨।।

---

ଶରୀର ଭସ୍ମ ଦ୍ୱାରା ଧବଳ, ହସିବାବେଳେ ଦନ୍ତଗୁଡ଼ିକ ଶ୍ୱେତ, ହାତରେ ଥିବା କପାଳ ମଧ୍ୟ ଶୁକ୍ଳ, ଖଟ୍ୱାଙ୍ଗର ବର୍ଣ୍ଣ ଶୁକ୍ଳ, ବୃଷଭର ବର୍ଣ୍ଣ ଶୁକ୍ଳ, କାନରେ ଥିବା କୁଣ୍ଡଳ ଶୁକ୍ଳ, ଗଙ୍ଗା ତରଙ୍ଗର ଫେନ ଶୁକ୍ଳ, ପଶୁପତିଙ୍କ ଜଟାର ବର୍ଣ୍ଣ ଶୁକ୍ଳ, ମୂର୍ଦ୍ଧାରେ ଥିବା ଚନ୍ଦ୍ରଙ୍କ ବର୍ଣ୍ଣ ଶୁକ୍ଳ—ଏହିପରି ସର୍ବଶୁକ୍ଳ ସେହି ଦେବଦେବ ପାପ କ୍ଷୟ କରି ସମ୍ପଦ୍ ପ୍ରଦାୟକ ହୁଅନ୍ତୁ । ୧୭ ।

ମୋର ହସ୍ତକୃତ, ପାଦକୃତ, ବଚନକୃତ, ଶରୀରକୃତ ତଥା କର୍ମ ହେତୁ ଶ୍ରବଣ ହେତୁ ଦୃଷ୍ଟି ହେତୁ ଓ ମନ ହେତୁ ଯେଉଁ ସବୁ ଅପରାଧ ଘଟିଛି ଏବଂ ମୁଁ ଜାଣି ବା ନ ଜାଣି ଯାହା ସବୁ କରିଛି, ହେ କରୁଣାମୟ ! ସେ ସବୁ ଦୋଷ କ୍ଷମା କର । ଆପଣଙ୍କ ଜୟ ହେଉ । ୧୮ ।

ଯେ (ଗୌରୀରୂପ ଅର୍ଦ୍ଧାଙ୍ଗରେ) ମୃଗନାଭିସହ ଚନ୍ଦନ ଲେପନ କରିଅଛନ୍ତି ଏବଂ ହରରୂପ ଅର୍ଦ୍ଧାଙ୍ଗରେ) ଶ୍ମଶାନ ରୂପକ ଅଙ୍ଗଲେପ ବୋଲି ହୋଇଛନ୍ତି, ଯେ ଅର୍ଦ୍ଧାଙ୍ଗରେ ମନୋହର କୁଣ୍ଡଳ ଧାରଣୀ ଏବଂ ଅର୍ଦ୍ଧାଙ୍ଗରେ ସର୍ପକୁଣ୍ଡଳ-ଧାରୀ, ସେହି ଶିବାଙ୍କୁ ନମସ୍କାର ଏବଂ ସେହି ଶିବଙ୍କୁ ନମସ୍କାର । ୧ ।

ଯେ ଅର୍ଦ୍ଧାଙ୍ଗରେ ମନ୍ଦାରମାଳାରେ ପରିଶୋଭିତା ଏବଂ ଅପରାର୍ଦ୍ଧେ

ଚଲତ୍କ୍ୱଣତ୍‌କଙ୍କଣନୂପୁରାୟୈ, ବିଭ୍ରତ୍‌ଫଣାଭାସ୍ୱରନୂପୁରାୟ ।
ହେମାଙ୍ଗଦାୟୈ ଚ ଫଣାଙ୍ଗଦାୟ, ନମଃ ଶିବାୟୈ ଚ ନମଃ ଶିବାୟ ॥୩॥
ବିଲୋଲନୀଲୋତ୍ପଳଲୋଚନାୟୈ, ବିକାସିପଙ୍କେରୁହଲୋଚନାୟ ।
ତ୍ରିଲୋଚନାୟୈ ଚ ବିଷମେକ୍ଷଣାୟ, ନମଃ ଶିବାୟୈ ଚ ନମଃ ଶିବାୟ ॥୪
ପ୍ରପନ୍ନପୃଷ୍ଠେ ସୁଖଦାସ୍ଥିତାୟୈ, ତ୍ରୈଲୋକ୍ୟସଂହାରକତାଣ୍ଡବାୟ ।
କୃତସ୍ମରାୟୈ ବିକୃତସ୍ମରାୟ, ନମଃ ଶିବାୟୈ ଚ ନମଃ ଶିବାୟ ॥ ୫ ॥
ଚାମ୍ପେୟଗୌରାର୍ଦ୍ଧଶରୀରକାୟୈ, କର୍ପୂରଗୌରାର୍ଦ୍ଧଶରୀରକାୟ ।
ଧମ୍ମିଲ୍ଲବତ୍ୟୈ ଚ ଜଟାଧରାୟ, ନମଃ ଶିବାୟୈ ଚ ନମଃ ଶିବାୟ ॥୬॥
ଅମ୍ଭୋଧରଶ୍ୟାମଳକୁନ୍ତଳାୟୈ, ବିଭୂତିଭୂଷାଙ୍ଗ ଜଟାଧରାୟ ।
ଜଗଜ୍ଜନନ୍ୟୈ ଜଗଦେକପିତ୍ରେ, ନମଃ ଶିବାୟୈ ଚ ନମଃ ଶିବାୟ ॥୭॥

---

କପାଳମାଳାରେ ପରିଶୋଭିତ, ଯାହାଙ୍କର ଅର୍ଦ୍ଧାଙ୍ଗରେ ଦିବ୍ୟବସ୍ତ୍ର ଏବଂ ଅନ୍ୟ ଅର୍ଦ୍ଧାଙ୍ଗ ଉଲଗ୍ନ ସେ ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୨ ।

ଯାହାଙ୍କର ଅର୍ଦ୍ଧାଙ୍ଗର ଚରଣରେ ସ୍ୱର୍ଣ୍ଣନୂପୁର ବାଜୁଅଛି ଏବଂ ଅପରାର୍ଦ୍ଧରେ ସର୍ପର ଉଜ୍ଜ୍ୱଳ ନୂପୁର ରହିଅଛି, ଯାହାଙ୍କର ଅର୍ଦ୍ଧାଙ୍ଗର ବାହୁରେ ସ୍ୱର୍ଣ୍ଣର ଅଙ୍ଗଦ ଏବଂ ଅପରାର୍ଦ୍ଧରେ ଫଣୀର ଅଙ୍ଗଦ—ସେହି ଶିବାଙ୍କୁ ନମସ୍କାର ଏବଂ ସେହି ଶିବଙ୍କୁ ନମସ୍କାର । ୩ ।

ଯାହାଙ୍କର ଅର୍ଦ୍ଧାଙ୍ଗରେ ଚଞ୍ଚଳ ନୀଳ ପଦ୍ମପରି ଲୋଚନ ଏବଂ ଅପରାର୍ଦ୍ଧରେ ପ୍ରସ୍ଫୁଟନୋନ୍ମୁଖ ପଦ୍ମଭଳି ଲୋଚନ, ଯେ ତ୍ରିନୟନା ଏବଂ ତ୍ରିନୟନ, ସେହି ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୪ ।

ଯେ ଅର୍ଦ୍ଧାଙ୍ଗରେ ସ୍ୱାଶ୍ରିତ ବାହନ ପୃଷ୍ଠରେ ସୁଖରେ ସମାସୀନା ଓ ଅପରାର୍ଦ୍ଧରେ ତ୍ରିଭୁବନର ସଂହାରକାରୀ ତାଣ୍ଡବ ନୃତ୍ୟରେ ବିଭୋର, ଯେ ଅର୍ଦ୍ଧାଙ୍ଗରେ କାମଦେବଙ୍କୁ ସୃଷ୍ଟି କରନ୍ତି ଏବଂ ଅପରାର୍ଦ୍ଧରେ ତାଙ୍କୁ ସଂହାର କରନ୍ତି ସେହି ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୫

ଯାହାଙ୍କର ଅର୍ଦ୍ଧଶରୀର ଚମ୍ପାକଳି ସ୍ୱର୍ଣ୍ଣାଭ ଏବଂ ଅର୍ଦ୍ଧଶରୀର କର୍ପୂର ପରି ଶୁଭ୍ର, ଯେ କବରୀଧାରିଣୀ ଅଥଚ ଜଟାଧର ସେହି ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୬ ।

ଯାହାଙ୍କର ଅର୍ଦ୍ଧାଙ୍ଗର କୁନ୍ତଳ ମେଘ ପରି ଶ୍ୟାମଳ, ଅଥଚ ଯେ ବିଭୂତି-ଭୂଷିତ ଅପରାର୍ଦ୍ଧରେ ଜଟା ଧାରଣ କରନ୍ତି; ଯେ ଜଗଜ୍ଜନନୀ ଅଥଚ ଜଗତର ଏକମାତ୍ର ପିତା ସେହି ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୭ ।

ସଦା ଶିବାନାଂ ପରଭୂଷଣାୟୈ, ସଦାଽଶିବାନାଂ ପରଭୂଷଣାୟ ।
ଶିବାନ୍ୱିତାୟୈ ଚ ଶିବାନ୍ୱିତାୟ, ନମଃ ଶିବାୟୈ ଚ ନମଃ ଶିବାୟ ॥୮॥

—

## ଶିବ ପଞ୍ଚରତ୍ନସ୍ତୋତ୍ର

ବନ୍ଦେ ଦେବମୁମାପତିଂ ସୁରଗୁରୁଂ ବନ୍ଦେ ଜଗତ୍କାରଣଂ
ବନ୍ଦେ ପନ୍ନଗଭୂଷଣଂ ମୃଗଧରଂ ବନ୍ଦେ ପଶୂନାଂ ପତିଂ ।
ବନ୍ଦେ ସୂର୍ଯ୍ୟଶଶାଙ୍କ ବହ୍ନିନୟନଂ ବନ୍ଦେ ମୁକୁନ୍ଦପ୍ରିୟଂ
ବନ୍ଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବନ୍ଦେ ଶିବଂ ଶଙ୍କରଂ ॥୧॥
ବନ୍ଦେ ଶଙ୍କରମର୍ଦ୍ଧଚନ୍ଦ୍ରସହିତଂ ବନ୍ଦେ ଭୁଜଙ୍ଗାଙ୍ଗଦଂ
ବନ୍ଦେ ମାରହରଂ ପୁରନ୍ଦୟହରଂ ବନ୍ଦେ ଗଣାନାଂ ପତିଂ ।
ବନ୍ଦେ ଭସ୍ମବିଲେପନଂ ତ୍ରିନୟନଂ ବନ୍ଦେ ସୁରେଶପ୍ରିୟଂ
ବନ୍ଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବନ୍ଦେ ଶିବଂ ଶଙ୍କରଂ ॥୨॥
ବନ୍ଦେ ରୁଦ୍ର ମନନ୍ତମକ୍ଷୟପଦଂ ବନ୍ଦେ ତ୍ୱଖଣ୍ଡାକୃତିଂ
ବନ୍ଦେ ଭୂଧର କାର୍ମୁକଂ ହରିଶରଂ ବନ୍ଦେ କୁମାରାତ୍ମଜଂ ।
ବନ୍ଦେ ଦକ୍ଷହରଂ ବିଷୋଜ୍ଜ୍ୱଳଗଳଂ ବନ୍ଦେ ଜଗତ୍ପାବନଂ
ବନ୍ଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବନ୍ଦେ ଶିବଂଶଙ୍କରଂ ॥୩॥

---

ଯେ ସର୍ବଦା ଅର୍ଦ୍ଧାଙ୍ଗସ୍ଥ ମଙ୍ଗଳମୟ ବସ୍ତୁବ୍ରଜର ମଧ୍ୟ ଶୋଭାବର୍ଦ୍ଧନ-କାରିଣୀ, ବାସ୍ତବରେ ଯେ ସର୍ବଦା ଅପରାର୍ଦ୍ଧରେ ସ୍ଥିତ ଅମଙ୍ଗଳ ବସ୍ତୁ ସମୂହର ମଧ୍ୟ ଶୋଭାବର୍ଦ୍ଧକ, ଯେ ଶିବଙ୍କ ସହିତ ସଂଯୁକ୍ତା ଏବଂ ଯେ ଶିବାଙ୍କ ସହିତ ସଂଯୁକ୍ତ, ସେହି ଶିବାଙ୍କୁ ନମସ୍କାର ଓ ସେହି ଶିବଙ୍କୁ ନମସ୍କାର । ୮ ।

---

ଉମାପତି, ସୁରଗୁରୁ, ଜଗତ୍କାରକ, ସର୍ପଭୂଷଣ, ମୃଗଧର, ପଶୁପତି ରବି-ଚନ୍ଦ୍ର ଅଗ୍ନିନେତ୍ର ମୁକୁନ୍ଦପ୍ରିୟ ଭକ୍ତଜନମାନଙ୍କର ଆଶ୍ରୟ, ବରଦାତା, ଶିବ, ଶଙ୍କରଙ୍କୁ ବନ୍ଦନା କରୁଛୁ । ୧ ।

ଅର୍ଦ୍ଧଚନ୍ଦ୍ରଯୁକ୍ତ ଶଙ୍କର, ବାହୁରେ ସର୍ପବଳୟ, କନ୍ଦର୍ପନାଶକାରୀ, ତ୍ରିପୁରାସୁର ନାଶକ ଗଣପତି, ଭସ୍ମବିଲେପନ, ତ୍ରିନୟନ, ସୁରେଶପ୍ରିୟ, ଭକ୍ତଜନମାନଙ୍କର ଆଶ୍ରୟ ବରଦାତା, ଶିବଶଙ୍କରଙ୍କୁ ବନ୍ଦନା କରୁଅଛୁ । ୨ ।

ରୁଦ୍ର, ଅନନ୍ତ ଅକ୍ଷୟ, ଅଖଣ୍ଡାକୃତି, ଭୂଧରକାର୍ମୁକ (ମେରୁ ଧନୁ ହୋଇଥିଲେ) ହରିଶର (ନାରାୟଣ ଶରରୂପେ ଥିଲେ) କାର୍ତ୍ତିକେୟଙ୍କ ପିତା;

ବନ୍ଦେ ଶର୍ବମନାକୃତିଂ ମୁନିନୁତଂ ବନ୍ଦେ ଚ ଗଙ୍ଗାଧରଂ
ବଂଦେ ପୁଷ୍କର କେଶମନ୍ଧକରିପୁଂ ବଂଦେ ବୃଷାଙ୍କଧ୍ୱଜଂ ।
ବଂଦେ ବାସୁକିଭୂଷଣଂ ପରଶିବଂ ବଂଦେ ଗିରୀଶଂ ହରଂ
ବଂଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବଂଦେ ଶିବଂ ଶଙ୍କରଂ ॥୪॥
ବଂଦେ ଭର୍ଗମନର୍ଘଭୂଷଣଧରଂ ବଂଦେ ମହତ୍କାରଣଂ
ବଂଦେ ବାର୍ଦ୍ଧିନିଷଙ୍ଗମର୍ଜ୍ଜୁନନୁତଂ ବଂଦେ ଶ୍ରୁତିବ୍ୟାପକଂ ।
ବଂଦେ ବଶ୍ୟମୟଂ ପୁରନ୍ଦରନୁତଂ ବଂଦେ ଧରଣୀରଥଂ
ବଂଦେ ଭକ୍ତଜନାଶ୍ରୟଞ୍ଚ ବରଦଂ ବଂଦେ ଶିବଂ ଶଙ୍କରଂ ॥୫॥
ଯଃ ପଞ୍ଚରତ୍ନାନି ପଠେଦ୍ଭକ୍ତ୍ୟା ବନ୍ଦତ୍ୟସଂଖ୍ୟଂ ସୁକୃତଂ ପ୍ରଭାତେ ।
ଭୁକ୍ତ୍ୱା ସୁରାଣାଂ ବିବିଧଂ ଚ ଭୋଗଂ ପ୍ରାପ୍ନୋତି କୈଳାସପଦଂ ଦୁରାପମ୍ ॥
ଇତି ଶ୍ରୀଶଙ୍କରାଚାର୍ଯ୍ୟ ବିରଚିତଂ ଶିବପଞ୍ଚରତ୍ନଂ ସମ୍ପୂର୍ଣ୍ଣମ୍ ।

—

ତ୍ରିପୁରାସୁରନାଶକାରୀ, ବିଷଦ୍ୱାରା ଗ୍ରୀବା ଉଜ୍ଜ୍ୱଳ, ଜଗତପବିତ୍ରକାରୀ, ଭକ୍ତଜନମାନଙ୍କର ଆଶ୍ରୟ, ବରଦାତା; ଶିବ ଶଙ୍କରଙ୍କୁ ବନ୍ଦନା କରୁଅଛୁ । ୩ ।

ସର୍ବ ଅକୃତିଶୂନ୍ୟ ମୁନିମାନଙ୍କ ଦ୍ୱାରା ବନ୍ଦିତ, ଗଂଗାଧର, ଆକାଶ ଯାହାର କେଶରୂପ, ଅନ୍ଧକରିପୁ, ବୃଷଧ୍ୱଜ, ବାସୁକୀ ଭୂଷଣ, ପରମମଂଗଳ ଗିରୀଶ, ହର, ଭକ୍ତମାନଙ୍କର ଆଶ୍ରୟ, ବରଦାତା, ଶିବ, ଶଙ୍କରଙ୍କୁ ବନ୍ଦନା କରୁଅଛୁ । ୪ ।

ଭର୍ଗ, ଅମୂଲ୍ୟ ଭୂଷଣଧାରୀ, ମହତ୍କାରଣ, ଅକ୍ଷୟତୂଣୀରଧାରୀ, ଅର୍ଜ୍ଜୁନଙ୍କ ଦ୍ୱାରା ସେବିତ, ଶ୍ରୁତିବ୍ୟାପକ ବଶ୍ୟମୟ, ଇନ୍ଦ୍ରଙ୍କ ଦ୍ୱାରା ପୂଜିତ, ଧରଣୀରଥ (ତ୍ରିପୁର ବଧ କାଳରେ ମେରୁ ଧନୁ, ନାଗସୂଣ ଶର ଓ ପୃଥିବୀ ରଥ ହୋଇଥିଲେ) ଭକ୍ତମାନଙ୍କ ଆଶ୍ରୟ, ବରଦାତା ଶିବ ଶଙ୍କରଙ୍କୁ ବନ୍ଦନା କରୁଅଛୁ । ୫ ।

ଏହି ପାଞ୍ଚଟି ଶ୍ଳୋକର ନାମ 'ପଞ୍ଚରତ୍ନ' ସ୍ତୋତ୍ର । ଏହା ଯେ ଭକ୍ତସହ ପ୍ରାତଃକାଳରେ ପାଠ କରିବ ସେ ବହୁ ସୁକୃତ ଲାଭ କରିବ । ଦେବତାମାନଙ୍କର ତୁଲ୍ୟ ବହୁଭୋଗ ଲାଭ କରି ଦୁର୍ଲ୍ଲଭ କୈଳାସପଦ ପ୍ରାପ୍ତ ହେବ ଅର୍ଥାତ୍ ସେ ଶିବ ସାଯୁଜ୍ୟ ଲାଭ କରିବ ।

—

## ଦୁର୍ଗା (ମହାଶକ୍ତି) :

ସମସ୍ତ ଜଗତର ସୃଷ୍ଟି-ସ୍ଥିତି ଲୟାଦିର ମୂଳକାରଣ ଆଦି ପ୍ରକୃତିଠାରୁ ହିଁ ସ୍ଥାବର ଜଙ୍ଗମାଦି ସମସ୍ତ ବସ୍ତୁର ସୃଷ୍ଟି । ପ୍ରତ୍ୟେକ ବସ୍ତୁରେ ଚିନ୍ମୟୀ ସତ୍ତା ବା ଶକ୍ତିର ସଞ୍ଚାର ବିନା ତାହା ଜଡ଼, ନିର୍ଜୀବ ଓ ସ୍ଥାଣୁ ହୋଇ ପଡ଼େ । ତେଣୁ ଜଗତରେ ଯେଉଁସବୁ କ୍ରିୟାଶୀଳ ବୋଲି ପ୍ରତିଭାତ ଓ ପରିଗଣିତ ତାହାର ମୂଳରେ ସେହି ସଂବିନ୍ମୟୀ ଶକ୍ତିଙ୍କ ସୂକ୍ଷ୍ମ ସତ୍ତା ବିଦ୍ୟମାନ । ତେଣୁ ଦୁର୍ଗା ସପ୍ତଶତୀରେ ଦେବୀ ନିଶୁମ୍ଭ ଦୈତ୍ୟକୁ କହିଛନ୍ତି—"ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା" ଅର୍ଥାତ୍ ଏହି ଜଗତରେ ମୁହିଁ ଏକମାତ୍ର ସତ୍ ଅଟେ । ମୋ ବ୍ୟତୀତ ଅପର ଦ୍ୱିତୀୟ କେହି ନାହିଁ । ଏହାକୁ ଆହୁରି ସ୍ପଷ୍ଟତର ଭାବରେ ଅଥର୍ବ ବେଦରେ ସମସ୍ତ ଦେବତାଙ୍କୁ ଦେବୀ ନିଜର ସ୍ୱରୂପ ବୁଝାଇବାକୁ ଯାଇ କହିଛନ୍ତି—

"ଅହଂ ବ୍ରହ୍ମ ସ୍ୱରୂପିଣୀ । ମତ୍ତଃ ପ୍ରକୃତି ପୁରୁଷାତ୍ମକଂ ଜଗତ୍ । ଶୂନ୍ୟଂ ଚାଶୂନ୍ୟଞ୍ଚ ଅହମାନନ୍ଦାନାନନ୍ଦୌ । ଅହଂ ବିଜ୍ଞାନାବିଜ୍ଞାନେ । ଅହଂ ବ୍ରହ୍ମାବ୍ରହ୍ମଣୀ ବେଦିତବ୍ୟେ । ଅହଂ ପଞ୍ଚଭୂତାନି ଅହମଖିଳଂ ଜଗତ୍ । ବେଦୋଽହମବେଦୋଽହମ । ବିଦ୍ୟାହମ ଅବିଦ୍ୟାହମ୍ ଅଜାହମନଜାହମ୍ । ଅଧଶ୍ଚୋର୍ଦ୍ଧ୍ୱଂ ଚ ତିର୍ଯ୍ୟକ୍ ଚାହମ୍ ॥ ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମି । ଅହମାଦିତ୍ୟୈରୁତ ବିଶ୍ୱଦେବୈଃ ଅହଂ ମିତ୍ରାବରୁଣା ଉଭୌ ବିଭର୍ମି । ଅହମିନ୍ଦ୍ରାଗ୍ନୀ ଅହମଶ୍ୱିନା ଉଭୌ ॥ ଅହଂ ସୋମଂ ତ୍ୱଷ୍ଟାରଂ ପୂଷଣଂ ଭଗଂ ଦଧାମି । ଅହଂ ବିଷ୍ଣୁମୁରୁକ୍ରମଂ ବ୍ରହ୍ମାଣମୁତ ପ୍ରଜାପତିଂ ଦଧାମି ॥ ଦ୍ରବିଣଂ ହବିଷ୍ମତେ ସୁପ୍ରାବ୍ୟେ ଯଜମାନାୟ ସୁନ୍ୱତେ । ଅହଂ ରାଷ୍ଟ୍ରୀ ସଙ୍ଗମନୀ ବସୂନାଂ ଚିକିତୁଷୀ ପ୍ରଥମା ଯଜ୍ଞିୟାନାମ୍ । ଅହଂ ସୁବେ ପିତରମସ୍ୟ ମୂର୍ଦ୍ଧନ୍ମମ ଯୋନିରପ୍ସ୍ୱନ୍ତଃ ସମୁଦ୍ରେ ।

ଅର୍ଥାତ୍, ମୁଁ ବ୍ରହ୍ମ ସ୍ୱରୂପିଣୀ ଅଟେ । ମୋଠାରୁ ହିଁ ପ୍ରକୃତି ପୁରୁଷାତ୍ମକ ସଦ ସଦ୍ ଜଗତର ଉତ୍ପତ୍ତି । ମୁଁ ଆନନ୍ଦ ଓ ନିରାନନ୍ଦ, ବିଜ୍ଞାନ ଓ ଅବିଜ୍ଞାନ, ଜ୍ଞାତବ୍ୟ-ବ୍ରହ୍ମ ଓ ଅବ୍ରହ୍ମ, ପଞ୍ଚଭୂତ ଓ ଅପଞ୍ଚଭୂତ ଇତ୍ୟାଦି । ଏହିପରି ସମସ୍ତ ଦୃଶ୍ୟମାନ ଜଗତ ମଧ୍ୟ କେବଳ ମୁଁ (ବା ମୋର ପ୍ରକାଶ ମାତ୍ର) ଅଟେ । ମୁଁ ବେଦ ଓ ଅବେଦ, ବିଦ୍ୟା ଓ

ଅବିଦ୍ୟା, ଅଜା ଓ ଅନଜା, ଅଧଃ ଓ ଊର୍ଦ୍ଧ୍ୱ ଇତ୍ୟାଦି ସବୁ ଅଟେ । ମୁଁ ହିଁ ରୁଦ୍ର ଓ ଅଷ୍ଟବସୁ ଉପରେ ସଂସାରରେ ବିଚରଣ କରେ । ଆଦିତ୍ୟ ଓ ବିଶ୍ୱଦେବ ରୂପରେ ମୁଁ କେବଳ ଘୂରିବୁଲେ । ମିତ୍ର ଓ ବରୁଣ ଇନ୍ଦ୍ର ଓ ଅଗ୍ନି ଏବଂ ଦୁଇ ଅଶ୍ୱିନୀ କୁମାରଙ୍କ ଭରଣପୋଷଣ ମୁଁ କରେ । ମୁଁ ସୋମ, ତ୍ୱଷ୍ଟା, ପୂଷା ଓ ଭଗଙ୍କୁ ଧାରଣ କରିଛି । ମୁଁ ବିଶ୍ୱକର୍ମା ବ୍ରହ୍ମା ଓ ପ୍ରଜାପତିଙ୍କୁ ମଧ୍ୟ ଧାରଣ କରିଛି । ଦେବତାଙ୍କ ନିକଟକୁ ଉତ୍ତମ ହବିର ପ୍ରେରକ ଏବଂ ସୋମରସ ନିଷ୍କାସକ ଯଜମାନଙ୍କ ପାଇଁ ହବିର୍ଦ୍ରବ୍ୟ ଯୁକ୍ତଧନ ମୁଁ ଧାରଣ କରେ । ମୁଁ ସମଗ୍ର ଜଗତର ଈଶ୍ୱରୀ, ଉପାସକ ମାନଙ୍କର ଧନଦାତ୍ରୀ, ବ୍ରହ୍ମରୂପା ଏବଂ ଯଜ୍ଞାର୍ହ ଦେବମାନଙ୍କ ମଧ୍ୟରେ ମୁଖ୍ୟଅଟେ । ମୁଁ ଆତ୍ମସ୍ୱରୂପତାର ଆକାଶାଦି ନିର୍ମାଣ କରେ । ଆତ୍ମ ସ୍ୱରୂପ ଧାରଣକର୍ତ୍ତ୍ରୀ ବୁଦ୍ଧି ବୃତ୍ତିରେ ମୋର ସ୍ଥାନ ଅଛି ।

ଏଥିରୁ ପ୍ରକୃତିରୂପିଣୀ ମହାମାୟାଙ୍କ ଶକ୍ତିମତ୍ତ୍ୱ ଓ ବ୍ୟାପକତା ସ୍ପଷ୍ଟ ଅନୁମିତ ହୁଏ । ଯେହିଁ ସମସ୍ତ ଶବ୍ଦଶବ୍ଦର ଆଧାର ରୂପ । ସମସ୍ତ କାର୍ଯ୍ୟ ଓ ତାର କାରଣ ମୂଳରେ ସେ ବିଦ୍ୟମାନା । ତେଣୁ ସମସ୍ତ ଶାସ୍ତ୍ରରେ ସେହି ଚୈତନ୍ୟ ଶକ୍ତିର ଭୂୟସୀ ବର୍ଣ୍ଣନା ପରିଦୃଷ୍ଟ ହୁଏ । ଉକ୍ତ ଅଥର୍ବ ବେଦୀୟ ମନ୍ତ୍ରରେ ଦେବତାମାନେ—"ନମୋ ଦେବ୍ୟୈ ମହା-ଦେବ୍ୟୈ ଶିବାୟୈ ସତତଂ ନମଃ । ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାସ୍ମତାମ୍"—ରୁ ଆରମ୍ଭ କରି ବହୁ ଭାବରେ ସ୍ତୁତି କରିଅଛନ୍ତି । ବେଦାଦି ଶାସ୍ତ୍ର ବହୁଭାବରେ ଦେବୀଙ୍କର ମହିମା କୀର୍ତ୍ତନ କରି ସୁଦ୍ଧା ଶେଷ କରି ପାରିନାହାନ୍ତି । ତେଣୁ ଭଗବତ୍ ପାଦ ଶ୍ରୀମଚ୍ଛଙ୍କରାଚାର୍ଯ୍ୟ ସ୍ୱ ଆନନ୍ଦ ଲହରୀରେ ଯଥାର୍ଥତଃ କହିଛନ୍ତି—'କଥଙ୍କାରଂ ବ୍ରୂମଃ ସକଳ ନିଗମା ଗୋଚର ଗୁଣେ'—ଅର୍ଥାତ୍, ଯାହାର ଗୁଣାବଳୀ ସମସ୍ତ ବେଦ ପକ୍ଷରେ ଅଜ୍ଞାତ ତାହା କେଉଁପରି ଭାବରେ ବର୍ଣ୍ଣନା କରିବ ? ବାସ୍ତବରେ ଏହା ଅନୁଭବସିଦ୍ଧ ଓ ସତ୍ୟ ଅଟେ । ଜଗତର ଆଦି କାରଣ ସଚ୍ଚିଦା-ନନ୍ଦମୟୀ ଶକ୍ତିଙ୍କ କଳନା କ୍ଷୁଦ୍ରବୁଦ୍ଧି ସମ୍ପନ୍ନ ମାନବ ପକ୍ଷରେ ଅସମ୍ଭବ । ସିଦ୍ଧସାଧକ, ପ୍ରଖ୍ୟାତ ଆଚାର୍ଯ୍ୟଗଣ ବେଦାଦିଙ୍କୁ ଅଗୋଚର କହି ନିରସ୍ତ ହେଉଥିଲେ-ବେଳେ ସାଧାରଣ ମନୁଷ୍ୟ କେବଳ ନାମ ମହିମା ବ୍ୟତୀତ ଆଉ କେଉଁଥିରୁ କପରି ତାଙ୍କର ମହିମାର ଲବମାତ୍ର ବୁଝିପାରିବ ବା

ଅନୁଭବ କରି ପାରିବ ? ଏକ ଆଦ୍ୟଶକ୍ତି ବିଭିନ୍ନ କାଳରେ ବିଭିନ୍ନ ସ୍ଥାନରେ ପ୍ରକଟିତ ହୋଇ ଭିନ୍ନ ଭିନ୍ନ ନାମ ଓ ରୂପ ଧାରଣ କରିଥାନ୍ତି – ତତ୍‌କାଳୀନ କାର୍ଯ୍ୟାବଳୀର ସାଙ୍କେତିକାର୍ଥ ବହନ କରି, ତେଣୁ ତାଙ୍କର ନାମ ବିଶ୍ଳେଷଣ କରି ଦେଖିଲେ ତହିଁରୁ ହିଁ ସେହି ଅଚିନ୍ତ୍ୟ ଶକ୍ତିଙ୍କ ବାହ୍ୟ କର୍ମର କିଞ୍ଚିତ ଆଭାସ ମିଳିପାରିବ । ଅତଏବ ସେଗୁଡ଼ିକର ବିଶ୍ଳେଷଣ ତାଙ୍କର ତତ୍ତ୍ୱଜ୍ଞାନରେ ସହାୟକ ହେବ । ବିଭିନ୍ନ ସ୍ଥାନରେ ଦେବୀ ମହାମାୟାଙ୍କୁ ବିଭିନ୍ନ ନାମ ଓ ଉପାଧିଯୁକ୍ତା କରାଯାଇଛି । ସେଗୁଡ଼ିକ ବିଶ୍ଳେଷଣ କରି ସେଥିରେ ନାମକରଣର ସାର୍ଥକତା ଓ ଯଥାର୍ଥତା ହୃଦୟଙ୍ଗମ କରି ପାରିଲେ ସେହି ଶକ୍ତିଙ୍କ ସମ୍ବନ୍ଧରେ କିଞ୍ଚିତ୍ ଜ୍ଞାନର ଅବଧାରଣା ହୋଇପାରିବ । ସୁପ୍ରସିଦ୍ଧ କୋଷଗ୍ରନ୍ଥ ଅମର-କୋଷରେ ଅମରସିଂହ ଦୁର୍ଗାଙ୍କ ୧୭ଟି ନାମ ନିମ୍ନପ୍ରକାରେ ପ୍ରଦାନ କରିଛନ୍ତି—

ଉମା କାତ୍ୟାୟନୀ ଗୌରୀ କାଳୀ ହୈମବତୀଶ୍ୱରୀ
ଶିବା ଭବାନୀ ରୁଦ୍ରାଣୀ ଶର୍ବାଣୀ ସର୍ବ ମଙ୍ଗଳା
ଅପର୍ଣ୍ଣା ପାର୍ବତୀ ଦୁର୍ଗା ମୃଡ଼ାନୀ ଚଣ୍ଡିକା ଅମ୍ବିକା ।
(ଅମରକୋଷ, ପ୍ରଥମକାଣ୍ଡ, ସ୍ୱର୍ଗବର୍ଗ)

ନିମ୍ନରେ ଦୁର୍ଗାଙ୍କର ପ୍ରୋକ୍ତ ନାମକରଣର ତାତ୍ପର୍ଯ୍ୟ କ୍ରମଶଃ ପ୍ରଦତ୍ତ ହେଲା ।

ଏକାକ୍ଷର କୋଷର ନିଷ୍ପତ୍ତି ଅନୁସାରେ ଉ ଶବ୍ଦର ଅର୍ଥ ଶଙ୍କର ('ଉ-କାରଃ ଶଙ୍କରଃ ପ୍ରୋକ୍ତ') ଏବଂ ମା ଶବ୍ଦର ଅର୍ଥ ଲକ୍ଷ୍ମୀ ('ମା ଲକ୍ଷ୍ମୀଶ୍ଚ ପ୍ରକୀର୍ତ୍ତିତା' । ତେଣୁ ଉ'ଙ୍କର ମା (ବା ମହେଶସ୍ୟ ମା ଲକ୍ଷ୍ମୀଃ) ଅର୍ଥାତ୍ ଶିବଙ୍କର ଲକ୍ଷ୍ମୀ ବା ଶୋଭା ସ୍ୱରୂପା ହେବାରୁ ତାଙ୍କର ନାମ ଉମା ବୋଲି କୁହାଯାଏ । ବାସ୍ତବରେ ତେଣୁ ଶିବ ତାଙ୍କୁ ନିଜ ଶରୀରରେ ସ୍ଥାନ ଦେଇ ମସ୍ତକରେ ଧାରଣକରି ନିଜେ ଅର୍ଦ୍ଧନାରୀଶ୍ୱର ବୋଲାଉଛନ୍ତି । ଏତଦ୍‌ଦ୍ୱାରା ନାରୀମାନଙ୍କର ଶ୍ରେଷ୍ଠତ୍ୱ ସ୍ୱତଃ ସୂଚିତ । ମହାକବି କାଳିଦାସ ସ୍ୱ-'କୁମାର ସମ୍ଭବ' କାବ୍ୟରେ ସ୍ୱକୀୟ ଅପୂର୍ବ ଶୈଳୀରେ ଉମା ନାମକରଣର ଅପୂର୍ବ ତାତ୍ପର୍ଯ୍ୟ ବ୍ୟକ୍ତକରି କହିଛନ୍ତି —"ଉମେତି ମାତା

ତପସୋ ନଷିଦ୍ଧା, ପଶ୍ଚାଦୁମାଖ୍ୟାଂ ସୁମୁଖୀ ଜଗାମ(୧୧୬)” ଯେ ପାର୍ବତୀ ଯେତେବେଳେ ଶିବଙ୍କୁ ବର ରୂପରେ ପାଇବା ନମିତ୍ତ ତପସ୍ୟା କରିବାକୁ ଗଲେ; ସେତେବେଳେ ତାଙ୍କର ମାତା—“ଉ ଅର୍ଥାତ୍ ହେ (ଏଠାରେ ‘ଉ ଇତି ବଚଙ୍କ’ ସମ୍ବୋଧନ ପାଦ ପୂରଣେଷୁ’ ନୟମରେ ହେ ପାର୍ବତୀ ବୋଲି ସମ୍ବୋଧନରେ ଅର୍ଥ କରାଯାଏ), ମା (ଏହା ନଷେଧସୂଚକ ଅବ୍ୟୟ, ତେଣୁ ଅମରକୋଷ କହେ—‘ମା ସ୍ମ ମାଳଂ ଚ ବାରଣେ’) ଅର୍ଥାତ୍ ‘ହେ ପାର୍ବତୀ ! ତପ କରନା’ ବୋଲି କହିବାରୁ ତାଙ୍କୁ ସେହି ଦନଠାରୁ ‘ଉମା’ ବୋଲି କୁହାଗଲା । କମ୍ବା “ଉ ତାପେଽ ବ୍ୟୟମାଶେ ନା ଇତି” ଯାଦବକୋଶ ପ୍ରମାଣାନୁସାରେ - ଉ-ତପସ୍ୟା, ମା-ମାକୁରୁ ବା କରନାହିଁ ବୋଲି ପାର୍ବତୀଙ୍କ ମା କହିବାରୁ ତାଙ୍କୁ ଉମାଆଖ୍ୟା ପ୍ରଦାନ କରାଗଲା । ଏହି ନାମରୁ ପାର୍ବତୀଙ୍କର ତପସ୍ୟା କରିବା ପାଇଁ ଦୃଢ଼ତା ସୂଚତ ହେଉଛି ।

ଦେବତାମାନଙ୍କ କାର୍ଯ୍ୟସିଦ୍ଧି କରିବା ନମିତ୍ତ ଦେବୀ ପ୍ରଥମେ କାତ୍ୟାୟନ ମୁନଙ୍କ ଆଶ୍ରମରେ ପ୍ରକଟ ହୋଇଥିଲେ ଏବଂ ଉକ୍ତ ମହର୍ଷି ତାଙ୍କୁ କନ୍ୟାରୂପେ ଗ୍ରହଣ କରିଥିଲେ । ତେଣୁ ‘କାତ୍ୟସ୍ୟ ଅପତ୍ୟମ୍ ସ୍ତ୍ରୀ’ କାତ୍ୟାୟନୀ ନାମରେ ସେ ବିଖ୍ୟାତା ହୋଇଅଛନ୍ତି । ତେଣୁ କୁହାଯାଇଛି —

**କାତ୍ୟାୟନୋ ବରେ଼ୁକ୍ତେ କାତ୍ୟାୟନୀ ତୁ ପାର୍ବତୀ ।**
**କଷାୟ ବସ୍ତ୍ର ବିଧବାର୍ଦ୍ଧ ବୃଦ୍ଧ ମହିଳାପି ଚ ॥**

କାତ୍ୟାୟନୀଙ୍କ ଏକ ଅନନ୍ୟ କାର୍ଯ୍ୟ ହେଉଛି କୃଷ୍ଣଭକ୍ତି ପ୍ରଦାନ । ଗୋପୀମାନେ “କାତ୍ୟାୟନ ମହାମାୟେ ମହାଯୋଗିନ୍ୟଧୀଶ୍ୱରି, ନନ୍ଦ-ଗୋପସୁତଂ ଦେବୀ ପତିଂ ମେ କୁରୁ ତେ ନମଃ” କହି କାତ୍ୟାୟନୀ ପୂଜା କରି କୃଷ୍ଣଭକ୍ତିର ଅଧିକାରିଣୀ ହୋଇଥିଲେ । ତେଣୁ ତାଙ୍କର ଅଧିଷ୍ଠାନ ପୀଠ ହେଉଛି ବୃନ୍ଦାବନ । ଚଣ୍ଡୀରେ ଦେବୀଙ୍କ ସୁଖଦା ଓ ମୋକ୍ଷଦା ଦୁଇଟି ସ୍ୱରୂପ ଦେଖିବାକୁ ମିଳେ । ସୁରଥ ରାଜାକୁ ଦେଲେ ସୁଖ, ସମାଧି ବୈଶ୍ୟକୁ ଦେଲେ ମୋକ୍ଷ । କାତ୍ୟାୟନୀରୂପେ ଦେବୀ ହେଉଛନ୍ତି ଭକ୍ତିଦା ।

ଦେବୀଙ୍କ ବର୍ଣ୍ଣ ଗୌର । ବଭିନ୍ନ ସ୍ତୋତ୍ରମାନଙ୍କରେ ମଧ୍ୟ ("ପ୍ରାତଃ ସ୍ମରାମି ଶରଦିନ୍ଦୁ କରୋଜ୍ଜ୍ୱଳାଭାଂ) (ଇତି ଭଗବତୀ ସ୍ତୁତି) । "ବିଦ୍ୟୁଦ୍ଦାମ ସମପ୍ରଭାଂ (ଇତି ଦୁର୍ଗା ସପ୍ତଶତୀ ୧୨ । ୧) "ଭଜାମି ତ୍ୱାଂ ଗୌରୀଂ (ଇତି ଶଙ୍କରାଚାର୍ଯ୍ୟ କୃତାନନ୍ଦ ଲହରୀ-ଶ୍ଲୋ ୩) ତାଙ୍କର ବର୍ଣ୍ଣ ଗୌର ବୋଲି କୁହାଯାଇଛି । ତେଣୁ "ଗୌରବର୍ଣ୍ଣୋଽସ୍ତ୍ୟସ୍ୟାଃ ଇତି" ଗୌରୀ ନାମରେ ସେ ଦେବୀ ।

କାଳ ଶବ୍ଦ ମହାକାଳ ଶିବଙ୍କର ଦ୍ୟୋତକ । ତେଣୁ ତାଙ୍କର ଅର୍ଥାତ୍ ସେହି କାଳରୂପୀ ଶିବଙ୍କର ଶକ୍ତି କାଳୀ ଅଟନ୍ତି । ଦୁର୍ଗା ସପ୍ତଶତୀ ଅନୁସାରେ ଚଣ୍ଡାସୁର ବଧ ସମୟରେ ଦେବୀ ଆଦ୍ୟାଶକ୍ତି ଶତ୍ରୁମାନଙ୍କ ପ୍ରତି ଅତ୍ୟନ୍ତ କ୍ରୋଧ ପ୍ରକାଶ କରିବାରୁ ତାଙ୍କର ମୁଖ କଳା ପଡ଼ିଗଲା ଏବଂ ତାଙ୍କଠାରୁ ବିକରାଳ ମୁଖୀ କାଳୀ ଉତ୍ପନ୍ନ ହେଲେ । ସପ୍ତଶତୀରେ ଅଛି—

**ତତଃ କୋପଂ ଚକାରୋଚ୍ଚୈରମ୍ବିକା ତାନରୀନ୍ ପ୍ରତି ।**
**କୋପେନ ଚାସ୍ୟା ବଦନଂ ମଷୀବର୍ଣ୍ଣ ମଭୂତ୍ତଦା ॥**
**ଭ୍ରୁକୁଟୀ କୁଟିଲାତ୍ତସ୍ୟା ଲଲାଟ ଫଲକାଦ୍ ଦ୍ରୁତମ୍ ।**
**କାଳୀ କରାଳ ବଦନା ବିନିଷ୍କ୍ରାନ୍ତାସିପାଶିନୀ ॥** (ସପ୍ତଶତୀ ୭।୫,୬)

ଅସୁର ରକ୍ତବୀଜ ଯୁଦ୍ଧବେଳେ ଆଦ୍ୟାଶକ୍ତି ତାକୁ ବଧ କରନ୍ତେ ତା'ର ରକ୍ତ ରୂପକ ବୀଜରୁ ଅସଂଖ୍ୟ ଅସୁର ଉତ୍ପନ୍ନ ହେବାରୁ ଆଦ୍ୟାଶକ୍ତି କାଳୀକୁ ଆଦେଶ ଦେଇ କହିଲେ—

**'ଉବାଚ କାଳୀଂ ଚାମୁଣ୍ଡେ ବିସ୍ତୀର୍ଣ୍ଣଂ ବଦନଂ କୁରୁ ॥**
**ମଚ୍ଛସ୍ତ୍ରପାତ ସମ୍ଭୂତାନ୍ ରକ୍ତବିନ୍ଦୂନ୍ମହାସୁରାନ୍ ।**
**ରକ୍ତବିନ୍ଦୋଃ ପ୍ରତୀଚ୍ଛ ତ୍ୱଂ ବକ୍ତ୍ରେଣାନେନ ବେଗିନା ॥**
(ଦୁର୍ଗା ସପ୍ତଶତୀ ୮।୫୩,୫୪)

ତା ପରେ ମହାଶକ୍ତି ରକ୍ତବୀଜକୁ ନିଧନ କଲେ ଏବଂ କାଳୀ ତା'ର ରକ୍ତପାନ କଲେ । ତେଣୁ ଚଣ୍ଡୀରେ ବର୍ଣ୍ଣିତ ହୋଇଛି—

**"ଇତ୍ୟୁକ୍ତ୍ୱା ତାଂ ତତୋ ଦେବୀ ଶୂଳେନାଭିଜଘାନ ତମ୍ ।**
**ମୁଖେନ କାଳୀ ଜଗୃହେ ରକ୍ତବୀଜସ୍ୟ ଶୋଣିତମ୍ ॥"**
(ଦୁର୍ଗା ସପ୍ତଶତୀ ୮।୫୬-୫୭)

ତେଣୁ ଶକ୍ତିଙ୍କ କାଳୀ ନାମ ସେହି ସମୟରୁ ଉତ୍ପନ୍ନ ବୋଲି ସପ୍ତଶତୀ ଅନୁଯାୟୀ ଗୃହୀତ ହୁଏ । ଏତଦ୍ଵାରା ଶତ୍ରୁମାନଙ୍କ ପକ୍ଷରେ ଦେବୀ କାଳୀ ରୂପରେ କପରି ଉଗ୍ର ସ୍ଵଭାବାପନ୍ନା ସ୍ପଷ୍ଟ ପ୍ରତୀତ ହେଉଛି ।

ହିମବାନ୍ ବା ହିମାଳୟଙ୍କର କନ୍ୟା ରୂପରେ ଜାତ ହୋଇ ଥିବାରୁ ଦେବୀଙ୍କୁ (ହିମବତୋଽପତ୍ୟମ୍ ସ୍ତ୍ରୀତି) ହୈମବତୀ କୁହାଯାଏ ।

ଈଶ୍-ଧାତୁ ଆଧିପତ୍ୟ ଅର୍ଥକ । ତେଣୁ ସମଗ୍ର ଜଗତର ଅଧୀଶ୍ଵରଙ୍କୁ ଈଶ୍ଵର କୁହାଯାଏ । ତାଙ୍କର ସ୍ତ୍ରୀ ହେତୁ ଈଶ୍ଵରୀ ବା ଈଶ୍ଵରୀ ନାମରେ ଦେବୀ ନାମିତା ଅଟନ୍ତି ।

ସମସ୍ତଙ୍କର ଶିବ ବା କଲ୍ୟାଣ କାରିଣୀ ଦେବୀ ଶିବା ଅଟନ୍ତି । "ଶିବମସ୍ତି । ଶିବୋଽସ୍ତ୍ୟସ୍ୟାଃ ॥ ଶିବୋବାସ୍ତି ଭର୍ତ୍ତୃତ୍ୱେନ ଯସ୍ୟ ଇତି ବା" —ହେତୁ ଶିବଙ୍କର ପତ୍ନୀଯୋଗୁଁ ମଧ୍ୟ ତାଙ୍କୁ ଶିବା କୁହାଯାଏ । ଅତଏବ ଶାଶ୍ଵତ କୋଷରେ ପରିଦୃଷ୍ଟ ହୁଏ—"ଶିବଂ ଭଦ୍ରଂ ଶିବଃ ଶମ୍ଭୁଃ ଶିବା ଗୌରୀ ଶିବାଭୟା" ।

ଭବାନୀ (ଭବ+ଇନ୍ଦ୍ ବରୁଣ ଭବଶର୍ବେତି ୪।୧।୪୯ ଇତି ସ୍ତ୍ରିୟାଂ ଙୀପ ତତଃ ଆନୁକ୍ ଗୃଗମଃ) ନାମ-ଭବ ଅର୍ଥାତ୍ ଶିବ (ଭବୋ ଖ୍ୟାମଃ ସ୍ଥାଣ ରୁଦ୍ର ଉମାପତିଃ ଇତ୍ୟମରଃ) ତାହାଙ୍କ ପତ୍ନୀ ହୋଇଥିବାରୁ ଦେବୀଙ୍କୁ କୁହାଯାଏ । ଦେବୀ ପୁରାଣର ୪୫ ଅଧ୍ୟାୟରେ ଏପରି ନାମକରଣର କାରଣ ସମ୍ବନ୍ଧରେ କୁହାଯାଇଛି—

"ରୁଦ୍ରୋ ଭବଃ ସମ ଖ୍ୟାତୋ ଭବଃ ସଂସାର ସାଗରଃ ।
ଭବଃ କାମସ୍ତଥା ସୃଷ୍ଟିର୍ଭବାନୀ ପରକୀର୍ତ୍ତିତା ॥"

ହରିବଂଶରେ ମଧ୍ୟ ଦେଖିବାକୁ ମିଳେ —

"ଭବାନୀ ତ୍ଵଂ ମେ ଦେବ । ପରଚଣ୍ଡୀଂ ତଦାଭବତ୍ ॥
( ଭବିଷ୍ୟ ପର୍ବଣୀ ୧୬।୬ )

ରୁଦ୍ରାଣୀ, ଶର୍ବାଣୀ ନାମ ମଧ୍ୟ ସେହିପରି ରୁଦ୍ର ଓ ସର୍ବଙ୍କର ପତ୍ନୀ ଯୋଗୁଁ ହୋଇଛି, 'ଈଶ୍ଵର ସର୍ବ ଈଶାନଃ 'ଏର୍ବ' ସ୍ଥାଣୁ ରୁଦ୍ର ଉମାପତି' ଇତ୍ୟାଦି ଅମରକୋଷ ପ୍ରମାଣରୁ ଶର୍ବ ଓ ରୁଦ୍ର ମଧ୍ୟ ଈଶ୍ଵରଙ୍କ ଅନ୍ୟ ନାମ ରୂପେ ଗୃହୀତ ।

ସମସ୍ତ ମଙ୍ଗଳ ଦେବୀଙ୍କଠାରେ ଥିବାରୁ କିମ୍ବା ସେ ସ୍ୱୟଂ ସମସ୍ତଙ୍କ ମଙ୍ଗଳ ସ୍ୱରୂପା ହୋଇଥିବାରୁ (ସର୍ବେଭ୍ୟଃ ସର୍ବେଷାଂ ବା ମଙ୍ଗଳା। ସର୍ବାଣି ମଙ୍ଗଳାନି ଅସ୍ୟାଃ, ଇତି ବା) ତାହାଙ୍କୁ ସର୍ବମଙ୍ଗଳା କୁହାଯାଏ।

ପାର୍ବତୀ ଶିବଙ୍କୁ ବରରୂପେ ପାଇବା ନିମିତ୍ତ ଅତ୍ୟନ୍ତ କଷ୍ଟକର ତପସ୍ୟା କରୁଥିଲାବେଳେ ସମସ୍ତ ଆହାର ତ୍ୟାଗ କରି ମାତ୍ର ପତ୍ରଖାଇ କିଛି ଦିନ ଅତିବାହିତ କଲେ। ଶେଷରେ ପତ୍ର ମଧ୍ୟ ଆହାର ନ କରିବାରୁ ତାଙ୍କର ନାମ ଅପର୍ଣ୍ଣା ହେଲା। ତେଣୁ ମହାକବି କାଳିଦାସ କୁମାର ସମ୍ଭବରେ କହିଛନ୍ତି—

ସ୍ୱୟଂ ବିଶୀର୍ଣ୍ଣ ଦ୍ରୁମପର୍ଣ୍ଣବୃତ୍ତିତା ପରା ହି କାଷ୍ଠା ତପସସ୍ତୟା ପୁନଃ।
ତଦପ୍ୟପାକୀର୍ଣ୍ଣମତଃ ପ୍ରିୟମ୍ବଦାଂ ବଦନ୍ତ୍ୟପର୍ଣ୍ଣେତି ଚ ତାଂ ପୁରାବିଦଃ॥
(କୁମାର ସମ୍ଭବ ୫।୨୮)

ପର୍ବତରେ ଜନ୍ମଗ୍ରହଣ କରିଥିବାରୁ ବା ପର୍ବତରାଜ ହିମାଳୟଙ୍କ ତପସ୍ୟାରେ ପ୍ରୀତ ହୋଇ ଦେବୀ ତାଙ୍କର କନ୍ୟାରୂପେ ଜନ୍ମିଥିବାରୁ "ପର୍ବତସ୍ୟାପତ୍ୟେସ୍ତ୍ରୀମିତି" ତାଙ୍କର ନାମ ପାର୍ବତୀ। ତେଣୁ ମହାକବି କାଳିଦାସ ପର୍ବତ ଦୁହିତାଙ୍କର ନାମକରଣବେଳେ କୁମାର ସମ୍ଭବରେ କହିଛନ୍ତି—

"ତାଂ ପାର୍ବତୀତ୍ୟାଭିଜନେନ ନାମ୍ନା ବନ୍ଧୁପ୍ରିୟାଂ ବନ୍ଧୁଜନୋ ଜୁହାବ।"
(କୁମାର ସମ୍ଭବ ୧।୨୬)

ଦେବୀ ପୁରାଣରେ ମଧ୍ୟ କୁହାଯାଇଛି—

ପର୍ବତସ୍ୟ ସୁତା ଦେବୀ ସାବିର୍ଭୂତା ତ ପର୍ବତେ।
ପର୍ବତାଖ୍ୟାସ୍ତୁ ଦେବୀ ପାର୍ବତୀ ତେନ କୀର୍ତ୍ତିତା॥
( ପ୍ରକୃତି ଖଣ୍ଡେ ଦୁର୍ଗୋପାଖ୍ୟାନେ ୫୪ ଅଧ୍ୟାୟେ )

ଦେବୀଙ୍କର ଅନ୍ୟ ନାମ ଦୁର୍ଗା। ବହୁ ଦୁଃଖ ସହି ସ୍ତୁତି ଯାହାଙ୍କୁ କରାଯାଏ ବା ଦୁଷ୍ଟ ଦୈତ୍ୟମାନେ ଯାହାଙ୍କୁ ସ୍ତବ କରନ୍ତି ସେ ଦୁର୍ଗା (ଦୁଃଖେନ ଦୁଷ୍ଟୈର୍ବା ଗୀୟତେ ସ୍ତୂୟତେ ଇତି) ନାମରେ କଥିତା। ଅଷ୍ଟାଙ୍ଗ ଯୋଗ, କର୍ମ ଏବଂ ଉପାସନା ରୂପ ଦୁଃସାଧ୍ୟ ସାଧନରେ ପ୍ରାପ୍ତ

ହେଉଥିବାରୁ ତାଙ୍କର ନାମ ଦୁର୍ଗା ବୋଲି ପଣ୍ଡିତମାନେ ମତବ୍ୟକ୍ତ କରି କହନ୍ତି— "ଦୁଃଖେନ ଅଷ୍ଟାଙ୍ଗ ଯୋଗ କର୍ମୋପାସନା ରୂପେଣ କ୍ଳେଶେନ ପ୍ରାପ୍ୟତେ ଯା ସା ଦୁର୍ଗା ।"

ଶିବଙ୍କ ଅନ୍ୟ ନାମ ମୃଡ଼ ["ଗିରିଶୋ ଗିରିଶୋ ମୃଡ଼ଃ" ଇତ୍ୟମରଃ] ତାଙ୍କର ପତ୍ନୀ ହେତୁ ମୃଡ଼ାନୀ । କିମ୍ବା 'ମୃଡ ତୋଷଣେ' ହେତୁ ମୃଡ଼ ଧାତୁର ଅର୍ଥ ତୋଷ କରିବା, ତେଣୁ ଭକ୍ତମାନଙ୍କୁ ସ୍ୱାଭିଷ୍ଟ ପ୍ରଦାନ କରି ଦେବୀ ସେମାନଙ୍କର ତୋଷକାରିଣୀ ହୋଇଥିବାରୁ ସେ ମୃଡ଼ାନୀ ।

ଚଣ୍ଡିକା ଶବ୍ଦର ମୂଳ ଚଣ୍ଡ୍ ଧାତୁରୁ, 'ଚଡ଼ି କୋପେ' ସୂତ୍ରାନୁସାରେ ଚଣ୍ଡ୍ ଧାତୁର ଅର୍ଥ କୋପ କରିବା । ଦେବୀ ଦୁଷ୍ଟ ରାକ୍ଷସ-ମାନଙ୍କ ପ୍ରତି କୋପ କରି ସେମାନଙ୍କୁ ସଂହାର କରିଥିବାରୁ ତାଙ୍କୁ ଚଣ୍ଡିକା କୁହାଯାଏ ।

ସମସ୍ତ ଜଗତର ମାତୃ ରୂପିଣୀ ଦେବୀ ଅମ୍ବା ବା ଅମ୍ବିକାରୂପରେ ପ୍ରଖ୍ୟାତା ଅଟନ୍ତି ।

ଏତଦ୍ ବ୍ୟତୀତ ବିଶ୍ୱସାରତନ୍ତ୍ର, ଦୁର୍ଗା ଦ୍ୱାତ୍ରିଂଶନ୍ନାମମାଳା, ଦୁର୍ଗା ସହସ୍ର ନାମ ଓ ମାର୍କଣ୍ଡେୟ ପୁରାଣ ଇତ୍ୟାଦିରେ ଦେବୀଙ୍କ ଅନେକ ନାମ ପରିଦୃଷ୍ଟ ହୁଏ । ଅତି ବ୍ୟାପ୍ତି ଭୟରେ ସମସ୍ତ ଏକ ପ୍ରବନ୍ଧରେ ସନ୍ନିବେଶ କରିବା ଅସମ୍ଭବ । ବହୁ ଶାସ୍ତ୍ର, ପୁରାଣ, ସ୍ତୋତ୍ରାଦିରେ ଅନେକ ଭାବରେ ଭିନ୍ନ ଭିନ୍ନ ନାମରେ ବିଭିନ୍ନ ରୂପରେ ଦେବୀ ସ୍ତୁତ ହୋଇଛନ୍ତି ।

ଭାରତୀୟ ଧର୍ମ ରାଜ୍ୟରେ ଜ୍ଞାନ, କର୍ମ ଓ ଭକ୍ତିର ଅପୂର୍ବ ସମନ୍ୱୟ ପରିଦୃଷ୍ଟ ହୁଏ । ନାମ ମହିମା ଭକ୍ତିମାର୍ଗାବଲମ୍ବୀଙ୍କ ପକ୍ଷରେ କେତେ ଆବଶ୍ୟକ ଏବଂ କେବଳ ନାମହିଁ କିପରି ସଂସାର ସାଗରକୁ ତାରଣ କରିଥାଏ; ତାହାର ବର୍ଣ୍ଣନା ଏଠାରେ ଅନାବଶ୍ୟକ । ବିଶେଷତଃ ତନ୍ତ୍ରୋକ୍ତରେ ନାମର କାର୍ଯ୍ୟକାରିତା ଶକ୍ତି ଅତ୍ୟଧିକ । କେବଳ ନାମ ସହିତ ବିଭିନ୍ନ ବୀଜ ସଂଯୋଗ କରି କିପରି ତା'ର ବିଧିବଦ୍ଧ ପୁରଶ୍ଚରଣ ସ୍ୱାଭିଷ୍ଟ ପୂରଣ କରିଥାଏ, ତାହାର ଜ୍ୱଳନ୍ତ ପ୍ରମାଣ ବର୍ତ୍ତମାନର ବିଜ୍ଞାନ

ଜଗତରେ ମଧ୍ୟ ପରିଦୃଷ୍ଟ ହୁଏ, ବିଶେଷତଃ ବିଭିନ୍ନ ପୌରାଣିକ ଉପାଖ୍ୟାନକୁ ଭିତ୍ତି କରି ସେହି ନାମାବଳୀ ପ୍ରଦାନ କରାଯାଇଥିବାରୁ, ସେମାନଙ୍କର ତତ୍ତ୍ୱାନୁସନ୍ଧାନ କଲେ ଉକ୍ତ ପୁରାଣୋକ୍ତିର ସତ୍ୟତା ଜଣାଯାଏ ଏବଂ ତଦ୍ଦ୍ୱାରା ତନ୍ନାମଧାରୀ ବ୍ୟକ୍ତି ବା ବସ୍ତୁର ଐତିହାସିକ ଓ ପୌରାଣିକ ଗୁରୁତ୍ୱ ମଧ୍ୟ ଉପଲବ୍ଧ ହୋଇଥାଏ। ଠିକ୍ ସେହି ଦୃଷ୍ଟିକୋଣରୁ ବିଚାର କଲେ ଦୁର୍ଗା ବା ଦେବୀଙ୍କର ନାମାବଳୀ ବିଶୃତର ଯଥାର୍ଥ୍ୟ ରହିଛି। ମାର୍କଣ୍ଡେୟ ପୁରାଣ—ଦେବୀ କବଚରେ ମଧ୍ୟ ନବଦୁର୍ଗାଙ୍କର ବର୍ଣ୍ଣନା ରହିଛି— ତାହା ହେଉଛି—

**ପ୍ରଥମଂ ଶୈଳପୁତ୍ରୀ ଚ ଦ୍ୱିତୀୟଂ ବ୍ରହ୍ମଚାରିଣୀ ।**
**ତୃତୀୟଂ ଚନ୍ଦ୍ରଘଣ୍ଟେତି କୂଷ୍ମାଣ୍ଡେତି ଚତୁର୍ଥକମ୍ ।।**
**ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀତି ଚ ।**
**ସପ୍ତମଂ କାଳରାତ୍ରୀତି ମହାଗୌରୀତି ଚାଷ୍ଟକମ୍ ।।**
**ନବମଂ ସିଦ୍ଧିଦାତ୍ରୀ ଚ ନବଦୁର୍ଗାଃ ପ୍ରକୀର୍ତ୍ତିତାଃ ।**

ଏତଦନୁଯାୟୀ ଆମର ପ୍ରସିଦ୍ଧ ନବଦୁର୍ଗା ହେଉଛନ୍ତି—୧-ଶୈଳପୁତ୍ରୀ, ୨-ବ୍ରହ୍ମଚାରିଣୀ; ୩-ଚନ୍ଦ୍ରଘଣ୍ଟା, ୪-କୁଷ୍ମାଣ୍ଡା, ୫-ସ୍କନ୍ଦମାତା, ୬-କାତ୍ୟାୟନୀ ୭-କାଳରାତ୍ରୀ, ୮-ମହାଗୌରୀ, ୯-ସିଦ୍ଧିଦାତ୍ରୀ।

ଉପରୋକ୍ତ ନବ ନାମରୁ ଶୈଳପୁତ୍ରୀ (ବା ପାର୍ବତୀ), କାତ୍ୟାୟନୀ ଏବଂ ଗୌରୀ (ବା ମହାଗୌରୀ) ବିଷୟରେ ପୂର୍ବେ କୁହାଯାଇଛି। 'ସଚ୍ଚିଦାନନ୍ଦମୟ ବ୍ରହ୍ମ ସ୍ୱରୂପକୁ ପ୍ରାପ୍ତି କରାଇବା' ଆଦ୍ୟାଶକ୍ତି ବା ଦେବୀଙ୍କ ସ୍ୱଭାବ ହୋଇଥିବାରୁ ତାଙ୍କର ନାମ (ବ୍ରହ୍ମଚାରୟିତୁଂଶୀଳଂ ଯସ୍ୟାଃ ସା।) ବ୍ରହ୍ମଚାରିଣୀ ହୋଇଛି। ଆହ୍ଲାଦକାରିଣୀ ଚନ୍ଦ୍ରମା ତାଙ୍କର ଘଣ୍ଟାରେ ଥିବାରୁ ତାଙ୍କୁ ଚନ୍ଦ୍ରଘଣ୍ଟା କୁହାଯାଏ [ଚନ୍ଦ୍ରଃ ଘଣ୍ଟାୟାଂ ଯସ୍ୟାଃ ସା]। କୁତ୍ସିତଃ ଊଷ୍ମା କୂଷ୍ମା-ତ୍ରିବିଧତାପଯୁତଃ ସଂସାରଃ ସ ଅଣ୍ଡେ ମାଂସପେଶ୍ୟାମୁଦର ରୂପାୟାଂ ଯସ୍ୟାଃ ସା କୁଷ୍ମାଣ୍ଡା-ଅର୍ଥାତ୍ ତ୍ରିବିଧତାପଯୁକ୍ତ ସଂସାର ଯାହାର ଉଦରରେ ସ୍ଥିତ ସେହି ଭଗବତୀ ହିଁ 'କୁଷ୍ମାଣ୍ଡା' ନାମରେ ପ୍ରସିଦ୍ଧା ଅଟନ୍ତି। କୃଷ୍ଣ ଭକ୍ତମାନଙ୍କୁ ରକ୍ଷା କରିବା ସକାଶେ ଦାବାନଳ ପାନ କରିଥିଲେ। ପଦାଶ୍ରିତ ପୁଅ ତ୍ରିତାପକୁ ଉଦରସ୍ଥ ବା ଆତ୍ମସ୍ଥ କରେ ମା'। ଯେଉଁମାନେ ମା'କୁ ଗୁଡ଼

ରହନ୍ତି, ସେମାନେ ସବୁବେଳେ ଦୁର୍ବିଷହ ଜ୍ୱାଳା ଅନୁଭବ କରନ୍ତି । ଯେଉଁମାନେ ଭକ୍ତିର ସହିତ ଆତ୍ମସମର୍ପଣ କରି ମା'ର କୋଳରେ ପିଲାଟିଏ ଭଳି ରହନ୍ତି, ସେମାନଙ୍କର ସବୁ ସଂତାପ ହରଣ କରି ମା' ହୁଏ କୁଷ୍ମାଣ୍ଡା ଏବଂ ସନ୍ତାନକୁ ଦିଏ ପରମ ଶାନ୍ତି । ସ୍କନ୍ଦ ବା କାର୍ତ୍ତିକେୟଙ୍କ ମାତା ହୋଇଥିବାରୁ ତାଙ୍କୁ ସ୍କନ୍ଦମାତା ମଧ୍ୟ କୁହାଯାଏ ।

"କଳଂ ଦଦାତି ସୁଖମିତି ରାତ୍ରିଃ ଅତଃ କାଳେଷୁ ସର୍ବକାଳେଷୁ ଯା ରାତ୍ରିଃ ସୁଖଦାତ୍ରୀ ସା କାଳରାତ୍ରୀ"—ତେଣୁ ଯେ ସବୁକାଳରେ ଅର୍ଥାତ୍ ବିପଦ ସମୟରେ ଶତ୍ରୁ ଓ ଦୁଃଖ ବିନାଶନ ପୂର୍ବକ ସୁଖ ପ୍ରଦାନ କରେ ସେ କାଳରାତ୍ରୀ । ଏତଦ୍ ବ୍ୟତୀତ ସମସ୍ତଙ୍କ ସଂହାରକ କାଳର ମଧ୍ୟ ଭଗବତୀ ରାତ୍ରୀ ବା ବିନାଶିକା ହୋଇଥିବାରୁ କାଳରାତ୍ରି ଅଟନ୍ତି । କାଳରାତ୍ରି ଦୁର୍ଗାଙ୍କ ଅନ୍ୟ ଏକ ନାମ ଓ ସ୍ୱରୂପ । ଋଗ ବେଦର ଦଶମ-ମଣ୍ଡଳରେ ରାତ୍ରି ସୂକ୍ତ ରହିଛି । ଏଥିରେ ପରଂବ୍ରହ୍ମ ପରମାତ୍ମା ହିଁ ରାତ୍ରି । ବ୍ରହ୍ମମୟୀ ମା' ହିଁ ରାତ୍ରିର ଶକ୍ତି । ରାତ୍ରିରେ ଜୀବଜଗତର ବିରତି ହୁଏ ସବୁକାର୍ଯ୍ୟରୁ ଏବଂ ସେ ବିଶ୍ରାମ କରି ତା'ର କ୍ଳାନ୍ତି ଅପନୋଦନ କରେ । ପ୍ରଳୟ କାଳରେ ଏହି ରାତ୍ରିରୂପିଣୀ ମାତାର କୋଳରେ ବିଲୟ ଘଟେ ବିଶ୍ୱର । ମାଆର କୋଳରେ ନିଖିଳ ଜୀବ ବିଶ୍ରାମ ନିଅନ୍ତି । ମହା-ପ୍ରଳୟର ରାତ୍ରି ହିଁ ମହାରାତ୍ରି । ଦେବୀ ତେଣୁ ରାତ୍ରିରୂପା । ମହାରାତ୍ରିଠାରୁ କାଳରାତ୍ରି ଗଭୀରତର । ମହାରାତ୍ରିରେ ସଂସାର ଲୟ ହୁଏ, ମାତ୍ର ପରମ ପୁରୁଷ ମହାବିଷ୍ଣୁ ଜାଗ୍ରତ ଥାଆନ୍ତି । କାଳରାତ୍ରିରେ ସେ ଯୋଗ-ନିଦ୍ରାରେ ଶୟନ କରନ୍ତି ।

ସିଦ୍ଧି ଅର୍ଥାତ୍ ମୋକ୍ଷ ବା ଭକ୍ତମାନଂକର ଅଭୀଷ୍ଟ ଫଳ ପ୍ରଦାନ କରୁଥିବାରୁ ସେ ସିଦ୍ଧିଦାତ୍ରୀ ଅଟନ୍ତି ।

ବିଶ୍ୱସାରତନ୍ତ୍ରାନ୍ତର୍ଗତ ଦୁର୍ଗାଷ୍ଟୋତ୍ତର—ଶତନାମ ସ୍ତୋତ୍ରରେ ଦୁର୍ଗାଙ୍କର ୧୦୮ଗୋଟି ନାମ ଦିଆଯାଇଛି । ସେଗୁଡ଼ିକ ହେଉଛି—

**ଓଁ ସତୀ ସାଧ୍ୱୀ ଭବପ୍ରୀତା ଭବାନୀ ଭବମୋଚନୀ ।**
**ଆର୍ଯ୍ୟା ଦୁର୍ଗା ଜୟା ଆଦ୍ୟା ତ୍ରିନେତ୍ରା ଶୂଳଧାରିଣୀ ।।**
**ପିନାକ ଧାରିଣୀ ଚିତ୍ରା ଚଣ୍ଡଘଣ୍ଟା ମହାତପାଃ ।**
**ମନୋ ବୁଦ୍ଧି ରହଂକାରା ଚିତ୍ତରୂପା ଚିତା ଚିତିଃ ।।**

ସର୍ବମନ୍ତ୍ରମୟୀ ସତ୍ୟା ସତ୍ୟାନନ୍ଦସ୍ୱରୂପିଣୀ ।
ଅନନ୍ତା ଭାବିନୀ ଭାବ୍ୟା ଭବ୍ୟାଭବ୍ୟା ସଦାଗତିଃ ।।
ଶାମ୍ଭବୀ ଦେବମାତା ଚ ଚିନ୍ତା ରତ୍ନପ୍ରିୟା ସଦା ।
ସର୍ବବିଦ୍ୟା ଦକ୍ଷକନ୍ୟା ଦକ୍ଷଯଜ୍ଞ ବିନାଶିନୀ ।।
ଅପର୍ଣ୍ଣା ନୈକବର୍ଣ୍ଣା ଚ ପାଟଲା ପାଟଲାବତୀ ।
ପଟ୍ଟାମ୍ବର ପରୀଧାନା କଳମଞ୍ଜୀର ରଞ୍ଜିନୀ ।।
ଅମେୟ ବିକ୍ରମା କ୍ରୂରା ସୁନ୍ଦରୀ ସୁରସୁନ୍ଦରୀ ।

—ଇତ୍ୟାଦି—

ସମସ୍ତ ନାମ ଏଠାରେ ବ୍ୟାଖ୍ୟାନ କରି ତାର ମହତ୍ତ୍ୱ ପ୍ରତିପାଦନ କରିବା ସମ୍ଭବ ନୁହେଁ । ତେଣୁ ୧୦୮ରୁ ମାତ୍ର କେତେକର ବିବୃତି ନିମ୍ନରେ ପ୍ରଦତ୍ତ ହେଲା ।

ଶିବୈକ ପ୍ରାଣା ଦେବୀ ଶିବଙ୍କ ପ୍ରତି ଅପମାନ ହେତୁ ଦକ୍ଷଯଜ୍ଞ କୁଣ୍ଡରେ ଶରୀର ବିସର୍ଜନ କରି ପରଜନ୍ମରେ ପୁଣି ଶିବଙ୍କୁ ପତିରୂପେ ପାଇବା ପାଇଁ କଠୋର ବ୍ରତାଚରଣ କରି ନିଜର ସତୀତ୍ୱ ପ୍ରତିଷ୍ଠା କରିଥିବାରୁ ତାହାଙ୍କୁ ସତୀ କୁହାଯାଏ । ମହାକବି କାଳିଦାସଙ୍କ କୁମାର ସମ୍ଭବରେ ମଧ୍ୟ ଦେଖିବାକୁ ମିଳେ—

"ଅଥାବମାନେନ ପିତୁଃ ପ୍ରଯୁକ୍ତା ଦକ୍ଷସ୍ୟ କନ୍ୟା ଭବପୂର୍ବ ପତ୍ନୀ ।
ସତୀ ସତୀ ଯୋଗ-ବିସୃଷ୍ଟ-ଦେହା ତାଂ ଜନ୍ମନେ ଶୈଳବଧୂଂ ପ୍ରପେଦେ ।।"

ସ୍ୱାମୀଙ୍କର ଦୁଃଖରେ ଦୁଃଖୀ, ସୁଖରେ ସୁଖୀ, ବିଦେଶ ଗମନରେ ମଳିନା ଓ କୃଶା ହେବା ସଙ୍ଗେ ସଙ୍ଗେ ତାଙ୍କର ମୃତ୍ୟୁରେ ଯେ ସ୍ୱୟଂ ମୃତ୍ୟୁବରଣ କରିଥାଏ, ସେହି ପତିବ୍ରତା ସ୍ତ୍ରୀ, ସାଧ୍ୱୀ ନାମରେ କଥିତା ହୁଅନ୍ତି । ତେଣୁ ଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଛି—"ଆର୍ତ୍ତାର୍ତ୍ତେ ମୁଦିତା ହୃଷ୍ଟେ ପ୍ରୋଷିତେ ମଳିନା କୃଶା । ମୃତେ ମ୍ରିୟେତେ ଯା ପତ୍ୟୌ ସାଧ୍ୱୀ ଜ୍ଞେୟା ପତିବ୍ରତା ।" ମହାମାୟା ପାର୍ବତୀ ରୂପରେ ଶିବଙ୍କର ମୃତ୍ୟୁ ସହ୍ୟ କରିବା ଦୂରେଥାଉ ଦକ୍ଷଙ୍କର ଯଜ୍ଞକୁ ଅନିମନ୍ତ୍ରଣହେତୁ ଅପମାନ ମଧ୍ୟ ସହ୍ୟ କରିପାରି ନ ଥିଲେ, ତେଣୁ ସେ ସାଧ୍ୱୀ ।

ଭଗବାନ୍ ଶିବଙ୍କଠାରେ ସଦା ପ୍ରୀତା ହୋଇଥିବାରୁ ବା ତାଙ୍କଠାରେ ପ୍ରୀତି ରଖିଥିବାରୁ ସେ ଭବପ୍ରୀତା ଏବଂ ତାଙ୍କର ପତ୍ନୀ ହୋଇଥିବାରୁ ଭବାନୀ । ଭବ ବା ସଂସାରର ବନ୍ଧନରୁ ମୁକ୍ତ କରି ମୋକ୍ଷ ପ୍ରଦାନ କରୁଥିବାରୁ ସେ ଭବମୋଚନା ।

ଆବଶ୍ୟକ ସମୟରେ ବା ବିପଦ କାଳରେ ଶମ୍ଭୁ ସହାଯ କରି ନିଜର କର୍ତ୍ତବ୍ୟ ସମ୍ପାଦନ କରୁଥିବାରୁ ତାଙ୍କୁ ଆର୍ଯ୍ୟା କୁହାଯାଏ । ଆର୍ଯ୍ୟର ଲକ୍ଷଣ ସମ୍ବନ୍ଧରେ ତନ୍ତ୍ରରେ କୁହାଯାଇଛି—"କର୍ତ୍ତବ୍ୟ ମାଚରନ୍, କାମମକର୍ତ୍ତବ୍ୟମନାଚରନ୍; ତିଷ୍ଠତି ପ୍ରକୃତାଚାରେ ସ ବା ଆର୍ଯ୍ୟ ଇତି ସ୍ମୃତଃ" ।

ଯୁଦ୍ଧରେ ସେ ସର୍ବଦା ଜୟଯୁକ୍ତା ହେଉଥିବାରୁ ଜୟା ସୃଷ୍ଟିର ଆଦ୍ୟରେ ମହାମାୟା ବା ଆଦ୍ୟାଶକ୍ତି ବିରାଜମାନା ଥିଲେ । ତେଣୁ ତାଙ୍କୁ ଆଦ୍ୟା କୁହାଯାଏ । ସମସ୍ତ ସୃଷ୍ଟିର ସେ ଆଦି ଉତ୍ସ ଅଟନ୍ତି । ଦୁଇ ନେତ୍ର ବ୍ୟତୀତ କପୋଳରେ ଅନ୍ୟ ଏକି ଅଗ୍ନି ନେତ୍ର ଥିବାରୁ ତାହାଙ୍କୁ ତ୍ରିନେତ୍ରା କୁହାଯାଏ । ଚଣ୍ଡୀରେ କୁହାଯାଇଛି—"ନୟନ ତ୍ରିତୟଂ ଯଜ୍ଞେ ତଥା ପାବକ ତେଜସା ।"

ସର୍ବଦେବଙ୍କ ତେଜରୁ ମହିଷାସୁରକୁ ବଧ କରିବା ପାଇଁ ଯେତେବେଳେ ଦେବୀ ଆବିର୍ଭୂତା ହେଲେ । ସେତେବେଳେ ସମସ୍ତ ଦେବତା ନିଜ ନିଜର ପ୍ରାଧାନାୟୁଧମାନ ପ୍ରଦାନ କରିଥିଲେ । ସେତେ-ବେଳେ ଭଗବାନ୍ ଶଙ୍କର ମଧ୍ୟ ନିଜ ଶୂଳରୁ ଅନ୍ୟ ଏକ ଶୂଳ ବାହାର କରି ତାଙ୍କୁ ଦେଇଥିଲେ ଏବଂ ଦେବୀ ତାହା ଧାରଣ କରିଥିଲେ ବୋଲି ତାଙ୍କୁ ଶୂଳ ଧାରିଣୀ କୁହାଯାଏ । ଚଣ୍ଡୀ ୨ୟ ଅଧ୍ୟାୟ ୨୦ ଶ୍ଲୋକରେ ଏହା ବର୍ଣ୍ଣିତ—'ଶୂଳଂ ଶୂଳାଦ୍ ବିନିଷ୍କୃଷ୍ୟ ଦଦୌ ତସ୍ୟୈ ପିନାକଧୃକ୍ ।' ଶୂଳକୁ ମଧ୍ୟ ପିନାକ କୁହାଯାଏ । "ଅଥ ପିନାକୋଽସ୍ତ୍ରୀ ଶୂଳଶଙ୍କର ଧନ୍ୱନୋ ଇତ୍ୟମରଃ", ତେଣୁ ସେ ପିନାକଧାରିଣୀ ନାମରେ ମଧ୍ୟ ପରିଚିତା ।

ତାଙ୍କର ଗୁଣାବଳୀ ଅତ୍ୟନ୍ତ ବିଚିତ୍ର ବା ଆଶ୍ଚର୍ଯ୍ୟାତ୍ମକ ହେତୁ ଏବଂ ବେଦ ଓ ଦେବମାନଙ୍କର ଅଗୋଚର ଯୋଗୁଁ ତାଙ୍କୁ ଚିତ୍ରା

କୁହାଯାଏ । ଯୁଦ୍ଧ ସମୟରେ ପ୍ରଚଣ୍ଡ ସ୍ୱରରେ ଘଣ୍ଟାନାଦ କରୁଥିବାରୁ ତାଙ୍କୁ ଚଣ୍ଡଘଣ୍ଟା କୁହାଯାଏ । ଅତି କଠୋର ତପସ୍ୟା କରୁଥିବାରୁ ସେ ମହାତପା । ସେ ସମସ୍ତ ଶକ୍ତିର ସଞ୍ଚାଳିକା ତଥା କ୍ରିୟାକାରିଣୀ ମନଃଶକ୍ତି ସ୍ୱରୂପା ଅତଏବ ମନଃ । ସମସ୍ତ ପ୍ରାଣୀମାନଙ୍କର ଜ୍ଞାନକର୍ତ୍ତ୍ରୀ ହେତୁ ସେ ବୁଦ୍ଧିଶକ୍ତି ଅଟନ୍ତି ।

ଅନେକ ସ୍ଥଳରେ 'ମୁଁ' ହିଁ ସବୁ କହି ନିଜେ ନିଜର ବିଭୂତି ବର୍ଣ୍ଣନା କରି ଅହଂକାର ପ୍ରକାଶ କରିଥିବାରୁ ସେ ଅହଂକାରା । ଚିତ୍ତ ସ୍ୱରୂପିଣୀ ସେହି ଚିନ୍ମୟୀ ଚିତ୍ତରୂପା, ଚିତା ଏବଂ ଚିତିଃ ନାମରେ ପ୍ରଖ୍ୟାତା । ସମସ୍ତ ମନ୍ତ୍ରରେ ତାଙ୍କର ଗୁଣାବଳୀ ସ୍ଫୁଟ ହୋଇଥିବାରୁ ସେ ସର୍ବମନ୍ତ୍ରମୟୀ । ସତ୍ ସ୍ୱରୂପା ହେତୁ କିମ୍ବା ସେହିଁ ଏକମାତ୍ର ସତ୍ତା ବା ମୂଳବସ୍ତୁ ହୋଇଥିବାରୁ ତାଙ୍କୁ ସତ୍ତା କୁହାଯାଏ । ସତ୍ୟ ଓ ଆନନ୍ଦ ରୂପିଣୀ ହେତୁ ତାଙ୍କୁ ସଚ୍ଚିଦାନନ୍ଦ ସ୍ୱରୂପିଣୀ କୁହାଯାଏ ।

ଧ୍ୟାନ ଶ୍ଳୋକଗୁଡ଼ିକ ମଧ୍ୟ ଦେବତାଙ୍କର ସ୍ୱରୂପ ଅବଧାରଣରେ ପ୍ରଭୂତ ସହାୟକ ହୋଇଥାଏ । ଏଠାରେ ମହାଶକ୍ତି ଦୁର୍ଗାଙ୍କର କେତୋଟି ଧ୍ୟାନ ଓ ତା'ର ରହସ୍ୟ ବିଚାର କରିବା ସମୁଚିତ ମନେହୁଏ । ଦୁର୍ଗା ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା ଇତ୍ୟାଦି ଭେଦରେ ବହୁଭାବରେ ପୂଜିତା ହୋଇଥାଆନ୍ତି ।

**ଚତୁର୍ଭୁଜା ଦୁର୍ଗା—**

ଦୁର୍ଗା ସପ୍ତଶତୀର ଚତୁର୍ଥ ଅଧ୍ୟାୟରେ **ଚତୁର୍ଭୁଜା ଦୁର୍ଗାଙ୍କ** ନିମ୍ନଲିଖିତ ଧ୍ୟାନ ଦେଖିବାକୁ ମିଳେ—

**ଓଁ କାଳାଭ୍ରାଭାଂ କଟାକ୍ଷୈରରିକୁଳଭୟଦାଂ ମୌଳିବଦ୍ଧେନ୍ଦୁରେଖାଂ,**
**ଶଙ୍ଖଂ ଚକ୍ରଂ କୃପାଣଂ ତ୍ରିଶିଖମପି କରୈରୁଦ୍‌ବହନ୍ତୀଂ ତ୍ରିନେତ୍ରାମ୍ ।**
**ସିଂହସ୍କନ୍ଧାଧିରୂଢ଼ାଂ ତ୍ରିଭୁବନମଖିଳଂ ତେଜସା ପୂରୟନ୍ତୀଂ,**
**ଧ୍ୟାୟେଦ୍ ଦୁର୍ଗାଂ ଜୟାଖ୍ୟାଂ ତ୍ରିଦଶପରିବୃତାଂ ସେବିତାଂ ସିଦ୍ଧିକାମୈଃ ।।**

ଯାହାଙ୍କ ବର୍ଣ୍ଣ କଳାମେଘ ପରି, ଯେ କଟାକ୍ଷପାତରେ ଶତ୍ରୁକୁଳକୁ ଭୟ ପ୍ରଦାନ କରନ୍ତି, ଯାହାଙ୍କର ମସ୍ତକରେ ଚନ୍ଦ୍ର ଅଛନ୍ତି, ଯେ ହାତରେ

ଶଙ୍ଖ, ଚକ୍ର, ଖଡ୍ଗ ଓ ତ୍ରିଶୂଳ ଧରିଛନ୍ତି, ସେହି ତ୍ରିନୟନା, ସିଂହ ସ୍କନ୍ଧରେ ଅଧିରୂଢ଼ା, ସର୍ବତ୍ର ନିଜ ତେଜ ବିସ୍ତାର କରୁଥିବା ଦେବତା-ମାନଙ୍କ ଦ୍ୱାରା ପରିବୃତା, କାମନା ସିଦ୍ଧି ସକାଶେ ସେବିତା, ଜୟଦୁର୍ଗାଙ୍କୁ ଧ୍ୟାନ କରୁଛି ।

ଏଠାରେ ଜୟଦୁର୍ଗା ଶଙ୍ଖ-ଚକ୍ର-ଖଡ୍ଗ-ତ୍ରିଶୂଳ ଧାରିଣୀ ଚତୁର୍ଭୁଜା ଓ କୃଷ୍ଣବର୍ଣ୍ଣା ଅଟନ୍ତି । ମାତ୍ର ଭଗବତୀ ଦୁର୍ଗାଙ୍କର ଏକାକ୍ଷର (ଦୁଂ) ବା ଅଷ୍ଟାକ୍ଷର ମନ୍ତ୍ର (ଓଁ ହ୍ରୀଂ ଦୁଂ ଦୁର୍ଗାୟୈ ନମଃ). ଅନୁସାରେ ତନ୍ତ୍ରୋକ୍ତ ଧ୍ୟାନ ହେଉଛି—

ସିଂହସ୍ଥା ଶଶିଶେଖରା ମରକତପ୍ରଖ୍ୟା ଚତୁର୍ଭିର୍ଭୁଜୈଃ
ଶଙ୍ଖଂ ଚକ୍ରଧନୁଃଶରାଂଶ୍ଚ ଦଧତୀ ନେତ୍ରୈସ୍ତ୍ରିଭିଃ ଶୋଭିତା ।
ଆମୁକ୍ତାଙ୍ଗଦହାରକଙ୍କଣରଣତ୍ କାଞ୍ଚୀକ୍ୱଣନ୍ନୂପୁର
ଦୁର୍ଗା ଦୁର୍ଗତିହାରିଣୀ ଭବତୁ ନୋ ରତ୍ନୋଲ୍ଲସତ୍କୁଣ୍ଡଳା ।।

ଅର୍ଥାତ୍, ସିଂହ ଉପରେ ଆସୀନା, ଅର୍ଦ୍ଧଚନ୍ଦ୍ରଙ୍କୁ ଶିରରେ ଧାରଣ କରିଥିବା, ମରକତମଣି ପରି ଦୂର୍ବାଦଳ ଶ୍ୟାମଳା, ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଧନୁ ଓ ଶର ଧାରଣ କରିଥିବା, ନେତ୍ରତ୍ରୟ ଦ୍ୱାରା ଶୋଭା ପାଉଥିବା, କହୁଣୀ ଉପର (ପ୍ରଗଣ୍ଡ) ରେ ଅଙ୍ଗଦ, ବକ୍ଷୋଦେଶରେ ହାର, କରରେ କଙ୍କଣ, କଟିରେ ଶବ୍ଦାୟମାନ କାଞ୍ଚୀ ଏବଂ ପାଦରେ ନୂପୁର ପିନ୍ଧିଥିବା, କାନରେ ରତ୍ନକୁଣ୍ଡଳ ଶୋଭା ପାଉଥିବା ଦୁର୍ଗତିହାରିଣୀ ଦୁର୍ଗା ଆପଣଙ୍କର ଓ ଆମ୍ଭର ମଙ୍ଗଳ କରନ୍ତୁ ।

ଦେବୀଙ୍କ ମୂର୍ତ୍ତିକୁ ହୃଦୟରେ ଅବଧାରଣ ସକାଶେ ଉପର୍ଯ୍ୟୁକ୍ତ ଧ୍ୟାନରେ ବ୍ୟବହୃତ ପଦାବଳୀର ସାମାନ୍ୟ ବିଚାର କରିବା ।

୧- **ସିଂହାସନ**—ଆସନ ହେଉଛି ଅଧିଷ୍ଠାନର ସୂଚକ । ଅବ୍ୟକ୍ତା ପରମା ପ୍ରକୃତି ବା ମହାଶକ୍ତି କୌଣସି ବସ୍ତୁ ବା ତତ୍ତ୍ୱକୁ ଆଶ୍ରୟ ବା ଆଧାର କରି ହିଁ ବ୍ୟକ୍ତ ବା ପ୍ରକଟ ହୁଏ । ଏହାଙ୍କର ଅଧିଷ୍ଠାନ ରୂପରେ ସାଧାରଣତଃ ରକ୍ତକମଳ ସିଂହ ଓ ଶବ (ପ୍ରେତ) ନିର୍ଦ୍ଦିଷ୍ଟ ହୋଇଥାଏ । ଇଚ୍ଛା ଶକ୍ତିର ପ୍ରତୀକ ରକ୍ତକମଳ ହେଉଛି ରଜୋଗୁଣାତ୍ମକ ବ୍ରହ୍ମା, ଜ୍ଞାନ ଶକ୍ତିର ପ୍ରତୀକ ସିଂହ ହେଉଛି ସତ୍ତ୍ୱଗୁଣାତ୍ମକ ବିଷ୍ଣୁ ଏବଂ କ୍ରିୟାଶକ୍ତିର

ସ୍ରଷ୍ଟାଙ୍କ ହେଉଛନ୍ତି ତମୋଗୁଣାତ୍ମକ ଶିବ । ଏହି ତିନଙ୍କ ଦ୍ୱାରା ସୃଷ୍ଟି, ସ୍ଥିତି ଓ ପାଳନ ହୁଏ । ତେଣୁ ମହାଦେବୀଙ୍କ ସୃଷ୍ଟି, ସ୍ଥିତି ଓ ପାଳନ ଶକ୍ତିର ପ୍ରକାଶ ହେଉଛନ୍ତି ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ଶିବ--ଜଗନ୍ମାତାଙ୍କ ସେବକ । ସିଂହାସନ ହେଉଛି ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ସୃଷ୍ଟି, ପାଳନ ଓ ସଂହାରର ସମନ୍ୱୟ ଗୁଣବୋଧକ ରହସ୍ୟାତ୍ମକ ଆସନ ହୋଇଥିବାରୁ ସିଂହ ଉପରେ କମଳ ଓ ତା' ଉପରେ ଶିବ-ଶବ ରହିଥାନ୍ତି । ତେଣୁ ଏହାର ରହସ୍ୟ ଧ୍ୟାନକଲେ ପରମାତ୍ମା ଦୁର୍ଗା ବରାଭୟପ୍ରଦା ହୋଇଥାଆନ୍ତି । ଯଥା—

ସିଂହୋପରିସ୍ଥିତଂ ପଦ୍ମଂ ରକ୍ତଂ ତସ୍ୟୋର୍ଦ୍ଧ୍ୱଗଃ ଶବଃ
ତସ୍ୟୋପରି ମହାମାୟା ବରଦାଭୟଦାୟିନୀ ।
ଏବଂ ରୂପେଣ ଯୋ ଧ୍ୟାତ୍ୱା ପୂଜୟେତ୍ ସତତଂ ଶିବାଂ
ବ୍ରହ୍ମବିଷ୍ଣୁଶିବାଦ୍ୟୈନ ପୂଜିତାଃ ସ୍ୟୁନ' ସଂଶୟଃ ॥

୨- **ଶଶିଶେଖରା**— ଯାହାଙ୍କର ଶିଖର ବା ମସ୍ତକ ଉପରେ ଶଶି ବା ଚନ୍ଦ୍ର ବିଦ୍ୟମାନ । 'ଶଶ-ପ୍ଲୁତଗତୌ' ଧାତୁରୁ ଡେଇଁ କରି ଗତି କରିବା ଶକ୍ତି ଥିବାରୁ 'ଶଶୀ' ଉକ୍ରାମିଣି ଶକ୍ତିର ବୋଧକ । ଏହାକୁ ବିହଙ୍ଗମ-ଗତି ମଧ୍ୟ କୁହାଯାଏ । ବ୍ୟଷ୍ଟିରେ ଆତ୍ମଶକ୍ତିର ଏହା ଦ୍ୱିବିଧ ପ୍ରକାର ଗତି । ପ୍ରଥମ ପ୍ରକାର ଗତି ପିପୀଲିକା ଗତି ନାମରେ ପରିଚିତ । ଏହି ଦୁଇଗତି ସମଷ୍ଟି ଭାବରେ ମଧ୍ୟ ସମ୍ଭବ ହୋଇଥାଏ । ଏହାଦ୍ୱାରା ଅଘଟନ ଘଟନା ଘଟିଥାଏ । ପୁଣି ଏହି ଶଶୀ ଦୃଶ୍ୟମାନ ଭୂତ ବା ଜଡ଼ଶଶୀ ନୁହେଁ । ଏହା ହେଉଛି ଚିତ୍-ଶଶୀ । ଏହା ଆଜ୍ଞାଚକ୍ର ଉପରେ ସୋମମଣ୍ଡଳରେ ଅବସ୍ଥିତ । ଏଥିରୁ ଅମୃତ ସ୍ରବି ସାଧକକୁ ସଦାନନ୍ଦୀ କରାଏ । ତେଣୁ 'ଚନ୍ଦ୍ର' ଶବ୍ଦର ଅର୍ଥ ହେଉଛି 'ଆହ୍ଲାଦକ' ।

୩- **ମରକତପ୍ରଖ୍ୟା** ଦୁର୍ଗାଙ୍କର ବର୍ଣ୍ଣ ମରକତମଣି ପରି ସବୁଜ ବା ହରିତ୍ ବର୍ଣ୍ଣ । ଏହା ନୀଳ ଓ ପୀତର ମଧ୍ୟବର୍ତ୍ତୀ ବର୍ଣ୍ଣ । ମତ୍ସ୍ୟ ଓ କାଳିକା ପୁରାଣରେ ଏହାକୁ ଅତସୀକୁସୁମଶ୍ୟାମା ବୋଲି କୁହାଯାଇଛି । ଏଥିରୁ ଜଣାଯାଉଛି ଯେ, ଭଗବତୀ ଦୁର୍ଗାଙ୍କ ବର୍ଣ୍ଣ ନୀଳାଭ ହରିତ୍ ଅଥବା ଘନ ହରିତ୍, ଯାହା ଫଳରେ ତାଙ୍କର ବର୍ଣ୍ଣ କେତେବେଳେ ନୀଳାଭ (୧-୨-

୨୩) ତ ଆଜି କେତେବେଳେ ହରିତାଭ ଦେଖାଯାଉଥିଲା । ବ୍ରହ୍ମସୂତ୍ରର ରୂପୋପନ୍ୟାସାଚ୍ଚ ସୂତ୍ର ଅନୁସାରେ ବ୍ରହ୍ମଙ୍କ ସାକାରୋପାସନା ବେଳେ ଉପାସ୍ୟ ଦେବତାଙ୍କ ବର୍ଣ୍ଣ ଶୁକ୍ଳ, ନୀଳ, ପିଙ୍ଗଳ, ଲୋହିତ ଓ ହରିତ ହେବା ବ୍ୟବସ୍ଥା ରହିଛି । ତେଣୁ ବୃହଦାରଣ୍ୟକୋପନିଷଦ୍ (୪।୪।୯)ରେ କୁହାଯାଇଛି—

"ତସ୍ମିନ୍ ଛୁକ୍ଳମୁତ ନୀଳମାହୁଃ ପିଙ୍ଗଳଂ ହରିତଂ ଲୋହିତଂ ଚ ।
ଏଷ ପନ୍ଥା ବ୍ରହ୍ମଣା ହାନୁବିତ୍ତସ୍ତେନୈତି ବ୍ରହ୍ମବିତ୍ ପୁଣ୍ୟକୃତ୍ତୈଜସଶ୍ଚ ।।"

ଯେଉଁପରି କୃଷ୍ଣବର୍ଣ୍ଣ ନିର୍ଗୁଣତ୍ୱର, ନୀଳବର୍ଣ୍ଣ ଶବ୍ଦବ୍ରହ୍ମତ୍ୱର, ରକ୍ତବର୍ଣ୍ଣ ରଜୋଗୁଣ ପ୍ରଧାନ ବ୍ରହ୍ମତ୍ୱ ବୋଧକ ସେହିପରି ହରିତ୍ ବର୍ଣ୍ଣ ପ୍ରାଣଜ୍ୟୋତିର ସୂଚକ । ଗୋଟିଏ ଦୀପଶିଖାର ମଧ୍ୟଭାଗର ବର୍ଣ୍ଣ ପୀତାଭ ହୋଇଥାଏ କିନ୍ତୁ ଦୀପଶିଖାର ନିମ୍ନଭାଗରେ ଅର୍ଥାତ୍ ବଳିତା ପାଖରେ ନୀଳାଭ ବର୍ଣ୍ଣ ଦେଖାଯାଇଥାଏ । ଏଥିରୁ ଅନୁମେୟ ଯେ ଦୀପଶିଖା ସଦୃଶ ପ୍ରାଣଜ୍ୟୋତିର ଆଦିରୂପ ନୀଳକାନ୍ତମଣି ବା ମରକତମଣି ପରି ହୋଇଥାଏ ।

(୪) ଚତୁର୍ଭୁଜା—ଚାରିଭୁଜରେ କ୍ରମଶଃ ଶଙ୍ଖ, ଚକ୍ର, ଧନୁଃ ଓ ଶର । ଶଙ୍ଖ ଶବ୍ଦଟି 'ଶଂ ଶାନ୍ତିକରଣେରୁ ଉଣାଦି ଖ-ପ୍ରତ୍ୟୟ' ହୋଇ ନିଷ୍ପନ୍ନ । ଶଙ୍ଖ ଧ୍ୱନିହେଲେ ଦୁଷ୍ଟ ପ୍ରେତାତ୍ମା ରହନ୍ତିନାହିଁ ଏବଂ ଘରେ ଶାନ୍ତି ବିରାଜମାନ କରେ । ଅନ୍ୟ ଦୃଷ୍ଟିରେ ବହୁତ୍ୱବାଚକ ଶଙ୍ଖ ଶବ୍ଦ ଅନନ୍ତ ଶକ୍ତିର ଦ୍ୟୋତକ । ପୁଣି 'ଶଙ୍ଖ' କୁବେରଙ୍କ ଅକ୍ଷୟ ଭଣ୍ଡାରକୁ ବୁଝାଉଥିବାରୁ ଏହା ବର ଓ ଅକ୍ଷୟ ସମ୍ପଦର ସୂଚକ ।

'ଚକ୍ର' ହେଉଛି ସଂସରଣଶୀଳ ସଂସାରର ପ୍ରତୀକ । ତାହାର ନିୟନ୍ତ୍ରୀ ଶକ୍ତି ହେଉଛନ୍ତି ଦୁର୍ଗା । ପୁଣି 'ଚକ୍ର' ନାମକ ମହାସ୍ତ୍ର ଦ୍ୱାରା ସେ ଭକ୍ତମାନଙ୍କୁ ରକ୍ଷା କରନ୍ତି ଓ ଅଭୟ ପ୍ରଦାନ କରନ୍ତି ।

'ଧନୁଃ'ର ରହସ୍ୟାର୍ଥ ଶାସ୍ତ୍ରରେ 'ମନ' ଓ 'ପ୍ରାଣ' ବୋଲି କହାଯାଇଛି । ସଂକଳ୍ପ-ବିକଳ୍ପ-ରହିତ ମନ ବା ପରିମାର୍ଜିତ ଚିତ୍ତବୃତ୍ତି ମହାବାକ୍ୟ-ମନ୍ତ୍ରକୁ ଶର କରି ନିଜର ଲକ୍ଷ୍ୟ ବିଦ୍ଧ କରେ । କ୍ରିୟାଯୋଗ

ଓ ଜ୍ଞାନଯୋଗରେ ଏହାର ଭିନ୍ନାର୍ଥ କରାଗଲେ ସୁଦ୍ଧା ତାତ୍ପର୍ଯ୍ୟ ଏକ ଅଟେ । ମୁଣ୍ଡକଶ୍ରୁତି (୨।୨।୩୪)ରେ କୁହାଯାଇଛି –

ଧନୁର୍ଗୃହୀତ୍ୱୌପନିଷଦଂ ମହାସ୍ତ୍ରଂ
ଶରଂ ହ୍ୟୁପାସାନିଶିତଂ ସଂଧୀତ ।
ଆୟମ୍ୟ ତଦ୍‌ଭାବଗତେନ ଚେତସା
ଲକ୍ଷ୍ୟଂ ତଦେବାକ୍ଷରଂ ସୋମ୍ୟ ବିଦ୍ଧି ॥

ପ୍ରଣବୋ ଧନୁଃ ଶରୋ ହ୍ୟାତ୍ମା ବ୍ରହ୍ମ ତଲ୍ଲକ୍ଷ୍ୟମୁଚ୍ୟତେ ।
ଅପ୍ରମତ୍ତେନ ବେଦ୍ଧବ୍ୟଂ ଶରବତ୍ତନ୍ମୟୋ ଭବେତ୍ ॥

୪- **ଶର**—ପଞ୍ଚତନ୍ମାତ୍ରା ବା ପଞ୍ଚଜ୍ଞାନେନ୍ଦ୍ରିୟର ପ୍ରବୃତ୍ତିକୁ ଅନ୍ତର୍ମୁଖୀ କରି ଲକ୍ଷ୍ୟବେଧ ବା ଇଷ୍ଟଧ୍ୟେୟ ସାଧ୍ୟ କରିବାକୁ ହେବ । କାଳୀ ଯେପରି 'ଖଡ୍‌ଗ' ବା ଜ୍ଞାନ ଏବଂ 'ମୁଣ୍ଡ' ବା ତତ୍ତ୍ୱଜ୍ଞାନ ପ୍ରଦାନ କରି ମୋକ୍ଷ ଦିଅନ୍ତି, ସେହିପରି ଭଗବତୀ ଦୁର୍ଗା ତତ୍ତ୍ୱଜ୍ଞାନ ରୂପକ ଧନୁରେ ମନ୍ତ୍ରରୂପକ ଶର ଯୋଜନା କରି ଭକ୍ତର ଲକ୍ଷ୍ୟ ସାଧନ କରନ୍ତି ।

ନିଦିଧ୍ୟାସନର ଚାରିବାଧା (୧-ଲୟ, ୨-ବିକ୍ଷେପ, ୩-କଷାୟ ଓ ୪-ରସାସ୍ୱାଦ) ଦୂର କରିବା ପାଇଁ ଦୁର୍ଗାଙ୍କ ଚାରି ହାତରେ ଚାରି ଆୟୁଧ । ଚିତ୍ତର ଖଣ୍ଡାକାର ବୃତ୍ତି ବା ପୂର୍ଣ୍ଣଦ୍ୱୈତ ଭାବର ନିଷ୍କ୍ରିୟ ଅବସ୍ଥାକୁ କୁହାଯାଏ 'ଲୟ' । ଏହି ଲୟ ପୁଣି ବାଞ୍ଛିତ 'ପରଲୟ' ଓ ଅବାଞ୍ଛିତ ଅନିଷ୍ଟକର 'ଅପରଲୟ' ଭେଦରେ ଦୁଇ ପ୍ରକାର । ପ୍ରଥମ 'ପରଲୟ' ଅନେକ ଜନ୍ମଜନ୍ମାନ୍ତରର ଅଷ୍ଟାଙ୍ଗଯୋଗ ସମାଧିର ଅଭ୍ୟାସ ବଶତଃ 'ଲୟ' ସିଦ୍ଧି । ଦ୍ୱିତୀୟ 'ଅପରଲୟ' ଦ୍ୱାରା ବହିର୍ମୁଖୀ ବିଷୟଲୀନତା ଯୋଗୁଁ ନିଦ୍ରା; ଆଳସ୍ୟ, ସ୍ତବ୍ଧତା ଓ କିଂକର୍ତ୍ତବ୍ୟ ବିମୂଢ଼ତା ହେତୁ ବିଘ୍ନ ହୁଏ । ଅନୁରୂପ ଭାବରେ ବିକ୍ଷେପ ମଧ୍ୟ 'ପରରାଗ' ବା ଅନୁରାଗ ଏବଂ 'ବିଷୟରାଗ' ଭେଦରେ ଦ୍ୱିବିଧ । ନିତ୍ୟାନନ୍ଦ ବିଷୟରେ ପରମନର ଅନୁରାଗକୁ କୁହାଯାଏ 'ପରରାଗ' । ଅନିତ୍ୟ ଅସାର ବିଷୟୋପଭୋଗ ପ୍ରତି ବାସନା ହେଉଛି 'ବିଷୟରାଗ' । ଚିତ୍ତବୃତ୍ତିରେ ସତ୍ୟଶିବସୁନ୍ଦର ବସ୍ତୁ ଗ୍ରହଣରେ କୁସଂସ୍କାରବଶତଃ ଅବଜ୍ଞା ଦ୍ୱାରା ସଜାତୀୟ ଚିତ୍ତପ୍ରବାହର ଭଙ୍ଗ ହେଉଥିବା ଯୋଗୁଁ କୁହାଯାଏ 'କଷାୟ' ।

ବ୍ରହ୍ମାନନ୍ଦ ହେଉଛି ଅନ୍ତର୍ମୁଖୀ ଆନନ୍ଦ କିନ୍ତୁ 'ରସାସ୍ୱାଦ' ହେଉଛି ତା'ର ବାଧକ ।

୫- ତ୍ରିନେତ୍ରା—ଦକ୍ଷିଣ ନେତ୍ର ସୂର୍ଯ୍ୟ, ବାମନେତ୍ର ଚନ୍ଦ୍ର ଏବଂ ଭ୍ରୂମଧ୍ୟସ୍ଥ ନେତ୍ର ହେଉଛି ଅଗ୍ନି । ଦିନରେ ସୂର୍ଯ୍ୟ, ରାତିରେ ଚନ୍ଦ୍ର ଏବଂ ଏମାନଙ୍କ ଅଭାବରେ ଅଗ୍ନି ସାକ୍ଷୀରୂପେ ଥିବାରୁ ଦେବୀ ହେଉଛନ୍ତି ସର୍ବଜ୍ଞା ଓ ସର୍ବସାକ୍ଷିଣୀ । ସେ ଇଚ୍ଛା, ଜ୍ଞାନ ଓ କ୍ରିୟା ଶକ୍ତି ସମ୍ପନ୍ନା ଏବଂ ସୃଷ୍ଟି-ସ୍ଥିତି-ପ୍ରଳୟକାରିଣୀ ।

୬- ଅଙ୍ଗଦ (କେୟୂର), ହାର, କଙ୍କଣ, କାଞ୍ଚୀ ଓ ନୂପୁର—ଏହି ପଞ୍ଚ ଆଭରଣରେ ଭୂଷିତା । 'ଅଙ୍ଗଂ ଦଦାତୀତି ଅଙ୍ଗଦଂ'—ଯାହା ଅଙ୍ଗ ଦାନ କରେ, ସେହି ଅଙ୍ଗଦ 'ନିର୍ବିଷୟତ୍ୱ'ର ପ୍ରତୀକ । 'ଶୋକଂ ଦୁଃଖଂ ବା ହରତୀତି' ହାର ହେଉଛି 'ଅଶୋକତ୍ୱ'ର ପ୍ରତୀକ । 'କଂ+କଣ—ଶବ୍ଦେ+ଅଚ୍'—ମନୋହର ଶବ୍ଦ କାରକ କଙ୍କଣରୁ ଅନାହତ ଧ୍ୱନିର ନିରଞ୍ଜନତ୍ୱ ପ୍ରତୀତ ହୁଏ । କାଞ୍ଚୀ—'କଚ ପ୍ରକାଶେ+ଇନ୍ ବା ଙୀପ୍'—ରୁ ଅମୃତତ୍ୱର ପ୍ରକାଶକ । 'ନୂ ଆଭରଣଂ ପୂରୟତି' ବ୍ୟୁତ୍ପତ୍ତିରୁ ନୂପୁର ପୂର୍ଣ୍ଣତାର ପ୍ରତିପାଦକ । ଏ ସବୁ 'ଆମୁକ୍ତ'—ଅର୍ଥାତ୍ 'ଆ—ସମନ୍ତାତ୍ ମୁକ୍ତ' ସର୍ବଥା ଅନାବୃତ ବା ଅବିନାଭାବସମ୍ବନ୍ଧରେ ପୂର୍ଣ୍ଣତଃ ପ୍ରକାଶକ ଅଟନ୍ତି ।

୭- ରତ୍ନୋଲ୍ଲସତ୍କୁଣ୍ଡଳା—'ରତ୍ନ' ଶବ୍ଦଟି 'ରମୁ-କ୍ରୀଡ଼ାୟାଂ ଧାତୁରୁ ରମନ୍ତେ ଅସ୍ମିନ୍' ବ୍ୟୁତ୍ପତ୍ତିରେ ଅର୍ଥ ହେଉଛି ରମଣୀୟ । ଗୋଲାକୃତି କୁଣ୍ଡଳ ଶବ୍ଦଟି 'କୁଡ଼ରକ୍ଷାୟାଂ ଧାତୁରୁ ବୃଷାଦିତ୍ୱାତ୍ କଲଚ୍' ପ୍ରତ୍ୟୟ କଲେ ରକ୍ଷାକାରକ ଘନୀଭୂତ ଶକ୍ତିର ପ୍ରତୀକ । 'ଉଲ୍ଲସତ୍'—ବିଶେଷଣରୁ ଏହାର ଆନନ୍ଦରୂପତା ପ୍ରତୀତ ହୁଏ । 'ରତ୍ନଂ ଶ୍ରେଷ୍ଠମ୍ ଉଲ୍ଲସିତମ୍ ଆନନ୍ଦବର୍ଦ୍ଧନଂ କୁଣ୍ଡଳମେବ ଯସ୍ୟାଃ' ବିଗ୍ରହ କଲେ ଦୁର୍ଗା ଆନନ୍ଦମୟୀ ପ୍ରାଣଶକ୍ତିର ବୋଧକ ।

୮- ଦୁର୍ଗତିହାରିଣୀ – ଶାରୀରିକ, ଆର୍ଥିକ, ମାନସିକ ଅଥବା ଆଧିଭୌତିକ, ଆଧ୍ୟାତ୍ମିକ, ଆଧିଦୈବିକ—ସକଳ ପ୍ରକାର ଅସୁବିଧା ବା ଅଧୋଗତିରୁ ଉଦ୍ଧାର କରି ସେ ଭୋଗ ଓ ମୋକ୍ଷ ପ୍ରଦାନ କରନ୍ତି ।

ନବାର୍ଣ୍ଣମନ୍ତ୍ର ଜପରେ ଅଷ୍ଟଭୁଜା ଦୁର୍ଗାଙ୍କର ଅନଳାତ୍ମକ ତେଜୋମୟୀ ମୂର୍ତ୍ତିର ଧ୍ୟାନ ଅଧୋଲିଖିତ ପ୍ରକାରେ କରାଯାଇଥାଏ—

ବିଦ୍ୟୁଦ୍ଦାମସମପ୍ରଭାଂ ମୃଗପତିସ୍କନ୍ଧସ୍ଥିତାଂ ଭୀଷଣାଂ
କନ୍ୟାଭିଃ କରବାଲଖେଟବିଲସଦ୍‌ହସ୍ତାଭିରାସେବିତାମ୍ ।
ହସ୍ତୈଶ୍ଚକ୍ରଗଦାସିଖେଟବିଶିଖାଂଶ୍ଚାପଂ ଗୁଣଂ ତର୍ଜନୀଂ
ବିଭ୍ରାଣାମନଲାତ୍ମିକାଂ ଶଶିଧରାଂ ଦୁର୍ଗାଂ ତ୍ରିନେତ୍ରାଂ ଭଜେ ॥

ଅନେକ ବିଦ୍ୟୁତ୍‌ଚଳିତ ତେଜ ପରି ଯାହାଙ୍କର ବର୍ଣ୍ଣ, ସିଂହ ଉପରେ ସମାସୀନା, ଭୟଙ୍କରୀ, ଖଡ୍‌ଗ ଓ ଢାଲ ଧରିଥିବା କନ୍ୟାମାନଙ୍କ ଦ୍ୱାରା ସେବିତା; ଅଷ୍ଟଭୁଜରେ ଚକ୍ର, ଗଦା, ଖଡ୍‌ଗ, ଢାଲ, ଶର, ଧନୁ, ପାଶ, ସାବଧାନକାରକ ତର୍ଜନୀମୁଦ୍ରା ଧାରଣ କରିଥିବା ଅଗ୍ନିରୂପା ଚନ୍ଦ୍ରଶେଖରୀ ତ୍ରିନେତ୍ରା ଦୁର୍ଗାଙ୍କୁ ଭଜନ କରୁଛି ।

୧- ବିଦ୍ୟୁଦ୍ଦାମସମପ୍ରଭା—ଏହି ଧ୍ୟାନ ତେଜଃ ସ୍ୱରୂପା ଦୁର୍ଗାଙ୍କର । ଏହାଙ୍କର ହିଁ ସ୍ୱରୂପ ବର୍ଣ୍ଣନାରେ ଦେବ୍ୟଥର୍ବଶୀର୍ଷୋପନିଷଦ୍‌ରେ କୁହାଯାଇଛି—

ତାମଗ୍ନିବର୍ଣ୍ଣାଂ ତପସା ଜ୍ୱଳନ୍ତୀଂ ବୈରୋଚନୀଂ କର୍ମଫଳେଷୁ ଜୁଷ୍ଟାଂ ।
ଦୁର୍ଗାଂ ଦେବୀଂ ଶରଣଂ ପ୍ରପଦ୍ୟାମହେଽସୁରାନ୍ନାଶୟିତ୍ର୍ୟୈ ତେ ନମଃ ॥

—ଅଗ୍ନିପରି ରଙ୍ଗ ବା ଲାଲବର୍ଣ୍ଣ, ତପସ୍ୟାଦ୍ୱାରା କି ନିଜର ଜ୍ଞାନମୟ ରୂପରେ ପ୍ରଦୀପ୍ତ, କର୍ମଫଳାର୍ଥୀଙ୍କ ଦ୍ୱାରା ବୈରୋଚନୀ ବା ଅଗ୍ନି-ତତ୍ତ୍ୱର ଶକ୍ତିବିଶେଷରୂପେ ସେବନୀୟ ଅସୁରମାନଙ୍କ ବିନାଶକାରିଣୀ ଦୁର୍ଗା ଦେବୀଙ୍କଠାରେ ଶରଣ ପଶୁଛି ।

ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ, 'ଦୁ ର୍ ଗା'— ଏହି ତିନିବର୍ଣ୍ଣ ଅଗ୍ନିବର୍ଣ୍ଣ ଭାବରେ ପ୍ରସିଦ୍ଧ । ଦ-କାର ଅଗ୍ନିନେତ୍ରକ ବା ଅଗ୍ନୀଶ ବୋଲି ବୀଜାଭିଧାନରେ ଆଗ୍ନେୟ ବର୍ଣ୍ଣ ରୂପେ ଉଲ୍ଲିଖିତ । ରେଫ ତ ଅଗ୍ନିବୀଜ ଭାବରେ ପ୍ରସିଦ୍ଧ । 'ଗ'-କାରର ସଂଜ୍ଞା 'ପଞ୍ଚାନ୍ତକ' ଅର୍ଥାତ୍ ମହାପ୍ରଳୟାଗ୍ନିର ବୋଧକ । ଅତଏବ 'ଦୁର୍ଗା' ନାମରୁ ହିଁ ସେ ଅଗ୍ନି-ବର୍ଣ୍ଣା ବୋଲି ପ୍ରତିପନ୍ନ ହୁଏ । ତାଙ୍କର ବିଦ୍ୟୁତ୍-କାନ୍ତି ସମ୍ବନ୍ଧରେ ମଧ୍ୟ କୁହାଯାଇଛି—

'ଅଥ କସ୍ମାଦୁଚ୍ୟତେ ବୈଦ୍ୟୁତମ୍? ଯସ୍ମାଦୁଚ୍ଚାର୍ଯ୍ୟମାଣ ଏବ ବ୍ୟକ୍ତେ ମହସି ତମସି ଦ୍ୟୋତୟତି ତସ୍ମାଦୁଚ୍ୟତେ ବୈଦ୍ୟୁତମ୍' ।

ବୃହଦାରଣ୍ୟକୋପନିଷଦ୍ (୫।୭)ରେ ତେଣୁ 'ବିଦ୍ୟୁଦ୍ ବ୍ରହ୍ମ' ବୋଲି କହିଛି । ମନ୍ତ୍ରମହୋଦଧି ଅନୁସାରେ ବିଦ୍ୟୁଲ୍ଲତା ହେଉଛି ଚିତ୍-ଶକ୍ତି ବା ପ୍ରାଣ ଶକ୍ତି । ଏହି (ଚେତନା ବା ପ୍ରାଣ) ଶକ୍ତି ମାଟି ପଥର ପ୍ରଭୃତି ଜଡ଼ ବସ୍ତୁରେ ସୁପ୍ତ ଅବସ୍ଥାରେ, ବୃକ୍ଷଲତାଦିରେ ସ୍ୱପ୍ନାବସ୍ଥାରେ ଏବଂ ପ୍ରାଣୀମାନଙ୍କଠାରେ ଜାଗ୍ରତ ଅବସ୍ଥାରେ ଥାଏ ।

୨-**ମୃଗପତି**—ଏହା ସିଂହ ଓ ଶଶିଚୂଡ଼ୀ ଶିବ ଉଭୟଙ୍କର ବୋଧକ । କାରଣ ଶିବ ମଧ୍ୟ ପଶୁପତି ହେତୁ ମୃଗପତି ବା ଦେବଦେବ । ଶିରୋପନିଷଦ୍ କୁହାଯାଇଛି—

'ସର୍ବେ ଦେବାଃ ପଶୂତାମବାପୁଃ । ସ୍ୱୟଂ ତସ୍ମାତ୍ ପଶୁପତିର୍ବଭୂବ ।'

୩- **ଭୀଷଣା**—ଶଙ୍କା ହୁଏ ଜଗଜ୍ଜନନୀ 'ଭୀଷଣା' କାହିଁକି? ତାଙ୍କୁ ସମସ୍ତେ ଡ଼ରନ୍ତି କିନ୍ତୁ ସେ କାହାକୁ ଡରନ୍ତି ନାହିଁ । ତାଙ୍କ ଡରରେ ବାୟୁ ଠିକ୍ ପ୍ରବାହିତ ହେଉଛି, ସୂର୍ଯ୍ୟ ଠିକ୍ ଉଦୟ ହେଉଛି - ସଂସାର ଶୃଙ୍ଖଳାର ସହ ଚାଲିଛି । (ଦ୍ରଷ୍ଟବ୍ୟ—ନୃସିଂହ ପୂର୍ବତାପିନ୍ୟୁପନିଷଦ୍) । ପୁଣି 'ମହତୋ ମହୀୟାନ୍' ବିରାଟ ରୂପ 'ଭୀଷଣ' ହେବା ସ୍ୱାଭାବିକ ହେଲେ ମଧ୍ୟ ଦର୍ଶନୀୟ କାରଣ ଗୀତାରେ କୁହାଯାଇଛି—'ସୁଦୁର୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ' ।

୪- **କନ୍ୟାମାନଙ୍କ କର୍ତ୍ତୃକ ସେବିତା**—ଏଠାରେ 'କନ ପ୍ରକାଶନେ ଧାତୁରୁ ଉଣାଦିକ ଯକ୍ ପ୍ରତ୍ୟୟ ଓ ସ୍ତ୍ରୀଲିଙ୍ଗରେ ଟାପ୍' ହୋଇ ନିଷ୍ପନ୍ନ କନ୍ୟାର ଅର୍ଥ ଜ୍ୟୋତିଷ୍ମତୀ । କରବାଳ—ହନନ ଶକ୍ତିର ଓ ଢ଼ାଲ—ରକ୍ଷଣ ଶକ୍ତିର ପ୍ରତୀକ । ତେଣୁ ସେ 'ଅଘଟନ-ଘଟନପଟୀୟସୀ' ବା ତାରଣ ଓ ମାରଣ—ଉଭୟରେ ନିପୁଣା ।

୫- **ଅଷ୍ଟଭୁଜ**—ତାଙ୍କର ପୃଥ୍ୱୀ, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର—ଏହି ଆଠ ପ୍ରକୃତିର ବୋଧକ ।

ଶଶିଧର, ତ୍ରିନେତ୍ର ପ୍ରଭୃତି ଅନ୍ୟ ଶବ୍ଦମାନଙ୍କର ତାତ୍ପର୍ଯ୍ୟ ପୂର୍ବେ ଆଲୋଚିତ ହୋଇଛି ।

ମହିଷାସୁରମର୍ଦ୍ଦିନୀ ମୂର୍ତ୍ତି ମଧ୍ୟ ଅଷ୍ଟଭୂଜା କିନ୍ତୁ ମରକତମଣି ପରି ଦେହର କାନ୍ତି । ତାଙ୍କର ଧ୍ୟାନ ହେଉଛି—

ଗାରୁଡ଼ୋପଲସନ୍ନିଭାଂ ମଣିମୌଳିକୁଣ୍ଡଳମଣ୍ଡିତାଂ
ନୌମି ଭାଲବଲୋଚନାଂ ମହିଷୋତ୍ତମାଙ୍ଗ ନିଷେଦୁଷୀମ୍ ।
ଶଙ୍ଖଚକ୍ରକୃପାଣଖେଟକ ବାଣକାର୍ମୁକ ଶୂଳକାନ୍
ତର୍ଜନୀମପି ବିଭ୍ରତୀଂ ନିଜବାହୁଭିଃ ଶଶିଶେଖରାମ୍ ।।

ଗରୁଡ଼ୋଦ୍ଗୀର୍ଣ୍ଣ ମରକତମଣି ପରି ଯାହାଙ୍କ ବର୍ଣ୍ଣ, ମଣିମୟ ମୁକୁଟ କୁଣ୍ଡଳରେ ଯେ ଭୂଷିତା, ଲଲାଟରେ ଯାହାଙ୍କ ଏକ ନେତ୍ର ଅଛି; ମହିଷ ମୁଣ୍ଡରେ ଯେ ଅବସ୍ଥାନ କରନ୍ତି, ନିଜର ଦକ୍ଷିଣ ଓ ବାମ ଊର୍ଦ୍ଧ୍ୱ ହସ୍ତରେ ଶଙ୍ଖ ଚକ୍ର, ତା' ତଳ ହସ୍ତଦ୍ୱୟରେ କୃପାଣ ଓ ଖେଟକ, ତା' ତଳ ଦୁଇ ହାତରେ ବାଣ ଓ କାର୍ମୁକ ଏବଂ ତା' ତଳ ହସ୍ତ ଦ୍ୱୟରେ ଶୂଳ ଓ ତର୍ଜନୀ ମୁଦ୍ରା ଧାରଣ କରିଥିବା ଚନ୍ଦ୍ରଶେଖରା ମହିଷମର୍ଦ୍ଦିନୀଙ୍କୁ ସ୍ତୁତି କରୁଛି ।

ଦଶଭୁଜା ଦୁର୍ଗା ମଧ୍ୟ ଅତସୀପୁଷ୍ପବର୍ଣ୍ଣାଭା । ଓଡ଼ିଶାରେ କିନ୍ତୁ 'ଦୁର୍ଗୋତ୍ସବଚନ୍ଦ୍ରିକା' ଅନୁସାରେ ସୁବର୍ଣ୍ଣବର୍ଣ୍ଣାଭା ବନଦୁର୍ଗାଙ୍କର ହ୍ରୀଁ ବିଜସ୍ତୁ ପାଇଁ ଅଷ୍ଟବିଂଶାକ୍ଷରମନ୍ତ୍ର—'ଓଁ ଉତ୍ତିଷ୍ଠ ପୁରୁଷି କିଂ ସ୍ୱପିଷି ଭୟଂ ମେ ସମୁପସ୍ଥିତଂ ଯଦି ଶକ୍ୟମଶକ୍ୟଂ ହୁଂ ଦୁର୍ଗେ ଭଗବତି ଶମୟ ସ୍ୱାହା'ରେ ପୂଜା ପ୍ରଚଳିତ । ଏହାଙ୍କ ଧ୍ୟାନ ଯଥା—

ଧ୍ୟାୟେତ୍ ସୁବର୍ଣ୍ଣବର୍ଣ୍ଣାଭାଂ ତ୍ରିନେତ୍ରାଂ ସ୍ମିତହାସିନୀମ୍ ।
ସର୍ବଲକ୍ଷଣସମ୍ପନ୍ନାମର୍ଦ୍ଧେନ୍ଦୁକୃତଶେଖରାମ୍ ।।
ଚତୁର୍ଭୁଜାଂ ଶଙ୍ଖଚକ୍ର-ଧନ୍ୱଂ ବାଲାଂ ସୁରୂପିଣୀମ୍ ।
ହଦ୍ୟତ୍ରିଶୂଳନିର୍ଭିନ୍ନମହିଷାଂ ସିଂହବାହନାମ୍ ।।
ମୁକ୍ତାଦାମଲସତ୍କଣ୍ଠାଂ ମୁନିଭିଃ ସ୍ତୁତପାଠକୈଃ ।
ସିଦ୍ଧୈର୍ଦ୍ଦେବଗଣୈର୍ଜୁଷ୍ଟାଂ କୁମାରୀଭିଷ୍ଟ ଦେବତାମ୍ ।
ସର୍ବକାମ ପ୍ରଦାଂ ଦୁର୍ଗାଂ ବରଦାଂ ଭକ୍ତବତ୍ସଲାମ୍ ।।

ଦୁର୍ଗା ହେଉଛନ୍ତି ଅଖଣ୍ଡ ରାଜଶକ୍ତି ଓ ଅପରାଜେୟ ଦୁର୍ଗ ଶକ୍ତିର ସମଷ୍ଟିଭୂତା ମହାଦେବୀ । ସଗୁଣ ବ୍ରହ୍ମର ସାକାର ରୂପ ବା ଭଗବତୀ ମୂର୍ତ୍ତି ହେଉଛନ୍ତି ଦୁର୍ଗା । ଏହି ବିଶ୍ୱରୂପା ନିତ୍ୟା ମହାମାୟାଙ୍କଠାରୁ ବିଶ୍ୱର ଉତ୍ପତ୍ତି । ଦେବତା ଓ ଅସୁରଙ୍କ ସଂଗ୍ରାମ ହେଉଛି ଏ ସଂସାରରେ ପ୍ରଚଳିତ ପୁଣ୍ୟ ଓ ପାପର ସଂଘର୍ଷ । ପାପ ଓ ଅନାଚାରର କାଳିମାମୟ ମହିଷକୁ ବିନାଶ କରିବା ପାଇଁ ସକଳ ଦେବତାମାନଙ୍କ କ୍ରୋଧ, ତେଜ ଓ ଅସ୍ତ୍ରର ସମୂହ ଶକ୍ତିରୁ ଉଦ୍ଭୂତା ଦେବୀ ହିଁ ଦୁର୍ଗା, ସେ ଦୁର୍ଗମ-ଅସୁରକୁ ନାଶ କରି 'ଦୁର୍ଗା' (ସପ୍ତଶତୀ ୧୨।୪୭) । ତେଣୁ ସମସ୍ତ ଦୁର୍ଗତିରୁ ଉଦ୍ଧାର ପାଇବା ସକାଶେ ତାଙ୍କୁ ସ୍ମରଣ କରି, ତାଙ୍କଠାରେ ଆମେ ପ୍ରଣତି ଜଣାଇ କହିବା—

ଦୁର୍ଗାୟୈ ଦୁର୍ଗପାରାୟୈ ସାରାୟୈ ସର୍ବକାରଣ୍ୟୈ ।
ଖ୍ୟାତ୍ୟୈ ତଥୈବ କୃଷ୍ଣାୟୈ ଧୂମ୍ରାୟୈ ସତତଂ ନମଃ ।।

ସାଧାରଣ ମାନବ ପକ୍ଷରେ ତାଙ୍କର ଗୁଣ ଓ ସ୍ୱଭାବ ଜାଣିବା କଠିନ । ତାହା ସାଧକ ନ ହେଲେ ଜାଣିବା ଅସମ୍ଭବ । ଯୋଗମାର୍ଗରେ ମଧ୍ୟ ଦୁର୍ଗାଙ୍କର ଅବସ୍ଥାନ ଦୁର୍ଗମ ସହସ୍ରାର ଚକ୍ରରେ । ତେଣୁ ଦୁର୍ଗାପୂଜା ପାଇଁ କୁହାଯାଇଛି—'ମୂଳେନାବାହୟେଦ୍ ଦେବୀଂ ଶ୍ର(ଶ୍ରା)ବଣେନ ବିସର୍ଜୟେତ୍'—ଅର୍ଥାତ୍ ମୂଳାନକ୍ଷତ୍ର (ଯୁକ୍ତ ଅଷ୍ଟମୀ)ରେ ଆବାହନ କରି ଶ୍ରବଣା ନକ୍ଷତ୍ର (ଯୁକ୍ତ ଦଶମୀ)ରେ ବିସର୍ଜନ କରିବ । ମୋ ମତରେ ଏହାର ପ୍ରକୃତ ସାଧନୋପଲବ୍ଧ ମର୍ମ ହେଉଛି—ମୂଳାଧାରରେ କୁଣ୍ଡଳିନୀ ଶକ୍ତିକୁ ଆବାହନ କରି, ସହସ୍ରାରକୁ ନେଇ ଯେତେବେଳେ ଯୋଗ ପ୍ରକ୍ରିୟାରେ ଅମୃତ ସ୍ରବଣ ହେବ, ସେତେବେଳେ ଦେବୀଙ୍କୁ ବିସର୍ଜନ କରି ପୁଣି ଆତ୍ମସ୍ଥ ହେବ । ଏ ତ ଅତି ଦୁରୂହ ଯୋଗୀଜନଗମ୍ୟ କଥା । ସାଧାରଣ ମନୁଷ୍ୟ କେବଳ ତାଙ୍କର ନାମ-କୀର୍ତ୍ତନ କରି ତାହାଁରୁ ଗୁଣାବଳୀ ଓ ସ୍ୱଭାବ ଜାଣି ଭବସଂସାର ପାର ହେବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ତେଣୁ ଶେଷରେ ତାଙ୍କଠାରେ ପ୍ରାର୍ଥନା—

ସର୍ବାନୁକୂଳମହସା ତ୍ୱଦୁଦାର କାନ୍ତି—
ର୍ଭୂୟସ୍ତମୋ ହରତୁ ନୃତ୍ୟତୁ ନିତ୍ୟଶାନ୍ତିଃ ।
ପୀୟୂଷ ବୃଷ୍ଟିରଜସ୍ରଂ ଚରଣୋଦକାଗ୍ରଂ
ସଞ୍ଜୀବୟତ୍ୱିହ ସଦା ମୟି ! ସଂଘଟନଂ ହି ।।

# ଦୁର୍ଗାସ୍ତବ

(ଅର୍ଜୁନକୃତ—ଦ୍ର: ଭୀଷ୍ମପର୍ବ ୨୩।୪-୧୬)

ନମସ୍ତେ ସିଦ୍ଧସେନାନି ଆର୍ଯ୍ୟେ ମନ୍ଦରବାସିନି ।
କୁମାରି କାଳି କପାଳି କପିଳେ କୃଷ୍ଣପିଙ୍ଗଳେ ॥ ୧ ॥

ଭଦ୍ରକାଳି ନମସ୍ତୁଭ୍ୟଂ ମହାକାଳି ନମୋଽସ୍ତୁ ତେ ।
ଚଣ୍ଡି ଚଣ୍ଡେ ନମସ୍ତୁଭ୍ୟଂ ତାରିଣି ବରବର୍ଣ୍ଣିନି ॥ ୨ ॥

କାତ୍ୟାୟନି ମହାଭାଗେ କରାଳି ବିଜୟେ ଜୟେ ।
ଶିଖିପିଚ୍ଛଧ୍ୱଜଧରେ ନାନାଭରଣ ଭୂଷିତେ ॥ ୩ ॥

ଅଟ୍ଟଶୂଳପ୍ରହରଣେ ଖଡ୍‌ଗଖେଟକଧାରିଣି ।
ଗୋପେନ୍ଦ୍ରସ୍ୟାନୁଜେ ଜ୍ୟେଷ୍ଠେ ନନ୍ଦଗୋପକୁଳୋଦ୍ଭବେ ॥ ୪ ॥

ମହିଷାସୃକ୍‌ପ୍ରିୟେ ନିତ୍ୟଂ କୌଶିକି ପୀତବାସିନି ।
ଅଟ୍ଟହାସେ କାକମୁଖି ନମସ୍ତେଽସ୍ତୁ ରଣପ୍ରିୟେ ॥ ୫ ॥

ଉମେ ଶାକମ୍ଭରି ଶ୍ୱେତେ କୃଷ୍ଣେ କୈଟଭନାଶିନି ।
ହିରଣ୍ୟାକ୍ଷି ବିରୂପାକ୍ଷି ସୁଧୂମ୍ରାକ୍ଷି ନମୋଽସ୍ତୁ ତେ ॥ ୬ ॥

---

ସିଦ୍ଧସେନାନି, ହେ ଆର୍ଯ୍ୟେ, ମନ୍ଦରବାସିନି, କୁମାରି, କାଳି, କାପାଳି, କପିଳେ, କୃଷ୍ଣପିଙ୍ଗଳେ - ଆପଣଙ୍କୁ ନମସ୍କାର କରୁଛି । ୧ ।

ହେ ଭଦ୍ରକାଳି ଆପଣଙ୍କୁ ନମସ୍କାର । ମହାକାଳି । ଆପଣଙ୍କୁ ନମସ୍କାର, ଚଣ୍ଡି, ଚଣ୍ଡେ, ତାରିଣି, ବରବର୍ଣ୍ଣିନି ଆପଣଙ୍କୁ ନମସ୍କାର । ୨ ।

କାତ୍ୟାୟନି, ମହାଭାଗେ, କରାଳି, ବିଜୟେ, ଜୟେ, ମୟୂରପୁଚ୍ଛ ଧ୍ୱଜଧାରିଣୀ, ନାନାଭରଣଭୂଷିତେ-ଆପଣଙ୍କୁ ନମସ୍କାର । ୩ ।

ମହାଶୂଳାସ୍ତ୍ରେ, ଖଡ୍‌ଗ ଓ ମୁଦ୍‌ଗରଧାରିଣୀ, କୃଷ୍ଣାନୁଜେ, ଜଗତ୍ର ପ୍ରାଚୀନେ, ନନ୍ଦ ଗୋପ କୁଳୋଦ୍ଭବେ-ଆପଣଙ୍କୁ ନମସ୍କାର । ୪ ।

ସର୍ବଦା ମହିଷରକ୍ତପ୍ରିୟେ, କୌଶିକ, ପୀତବସନେ, ଅଟ୍ଟହାସେ, କାକବଦନେ, ରଣପ୍ରିୟେ-ଆପଣଙ୍କୁ ନମସ୍କାର । ୫ ।

ଉମେ, ଶାକମ୍ଭରି, ଶ୍ୱେତେ, କୃଷ୍ଣେ, କୈଟଭନାଶିନି, ପୀତନୟନେ, ବିରୂପାକ୍ଷି, ଅତିଧୂମ୍ରନୟନେ - ଆପଣଙ୍କୁ ନମସ୍କାର । ୬ ।

ବେଦଶ୍ରୁତିମହାପୁଣ୍ୟେ ବ୍ରହ୍ମଣେ ଜାତବେଦସି ।
ଜମ୍ଭୂ-କଟକଚୈତ୍ୟେଷୁ ନିତ୍ୟଂ ସନ୍ନିହିତାଳୟେ ॥ ୭ ॥
ତ୍ୱଂ ବ୍ରହ୍ମଚର୍ଯ୍ୟା ବିଦ୍ୟାନାଂ ମହାନିଦ୍ରା ଚ ଦେହିନାମ୍ ।
ସ୍କନ୍ଦମାତର୍ଭଗବତି ଦୁର୍ଗେ କାନ୍ତାରବାସିନି ॥ ୮ ॥
ସ୍ୱାହାକାରଃ ସ୍ୱଧା ଚୈବ କଳା କାଷ୍ଠା ସରସ୍ୱତୀ ।
ସାବିତ୍ରୀ ବେଦମାତା ଚ ତଥା ବେଦାନ୍ତ ଉଚ୍ୟସେ ॥ ୯ ॥
ସ୍ତୁତାସି ତ୍ୱଂ ମହାଦେବି ବିଶୁଦ୍ଧେନାନ୍ତରାତ୍ମନା ।
ଜୟୋ ଭବତୁ ମେ ନିତ୍ୟଂ ତ୍ୱତ୍ପ୍ରସାଦାଦ୍ରଣାଜିରେ ॥ ୧୦ ॥
କାନ୍ତାରଭୟ ଦୁର୍ଗେଷୁ ଭକ୍ତାନାମାଳୟେଷୁ ଚ ।
ନିତ୍ୟଂ ବସସି ପାତାଳେ ଯୁଦ୍ଧେ ଜୟସି ଦାନବାନ୍ ॥ ୧୧ ॥
ତ୍ୱଂ ଜମ୍ଭନୀ ମୋହିନୀ ଚ ମାୟା ହ୍ରୀଃ ଶ୍ରୀସ୍ତଥୈବ ଚ ।
ସନ୍ଧ୍ୟା ପ୍ରଭାବତୀ ଚୈବ ସାବିତ୍ରୀ ଜନନୀ ତଥା ॥ ୧୨ ॥
ତୁଷ୍ଟିଃ ପୁଷ୍ଟିର୍ଧୃତିର୍ଦୀପ୍ତିଶ୍ଚନ୍ଦ୍ରାଦିତ୍ୟବିବର୍ଦ୍ଧିନୀ ।
ଭୂତିର୍ଭୂତିମତାଂ ସଙ୍ଖ୍ୟେ ବୀକ୍ଷ୍ୟସେ ସିଦ୍ଧଚାରଣୈଃ ॥ ୧୩ ॥

---

ବେଦଶ୍ରୁତିମହାପୁଣ୍ୟେ, ଦେବହିତେ, ପ୍ରାଚୀନଜ୍ଞାନେ, ସର୍ବଦା ଜମ୍ଭୂଦ୍ୱୀପସ୍ଥ ଦୁର୍ଗଦେବତାଳୟବାସିନି-ଆପଣଙ୍କୁ ନମସ୍କାର । ୭ ।

କାର୍ତ୍ତିକେୟ ଜନନି, ଭଗବତି, ଦୁର୍ଗେ, ମହାରଣ୍ୟବାସିନି, ଆପଣ ବିଦ୍ୟା ମଧ୍ୟରେ ବ୍ରହ୍ମବିଦ୍ୟା ଏବଂ ପ୍ରାଣିମାନଙ୍କର ମହାନିଦ୍ରା । ୮ ।

ଜ୍ଞାନୀଗଣ ଆପଣଙ୍କୁ ସ୍ୱାହା, ସ୍ୱଧା, କଳା, କାଷ୍ଠା, ସରସ୍ୱତୀ, ବେଦମାତା ଗାୟତ୍ରୀ ଏବଂ ଉପନିଷଦ୍ ବୋଲି କହିଥାନ୍ତି । ୯ ।

ମହାଦେବି ! ମୁଁ ପବିତ୍ର ଚିତ୍ତରେ ଆପଣଙ୍କର ସ୍ତବ କଲି । ଆପଣଙ୍କର ଅନୁଗ୍ରହରେ ସମରାଙ୍ଗଣରେ ସର୍ବଦା ଯେପରି ମୋର ଜୟ ହୁଏ । ୧୦ ।

ଆପଣ ସର୍ବଦା ମହାରଣ୍ୟରେ, ଭୟସ୍ଥାନରେ, ଦୁର୍ଗମଦେଶରେ, ଭକ୍ତମାନଙ୍କ ଗୃହରେ ଏବଂ ପାତାଳରେ ବାସ କରନ୍ତି । ଆଉ ଯୁଦ୍ଧରେ ଦାନବମାନଙ୍କୁ ଜୟ କରିଥାଆନ୍ତି । ୧୧ ।

ଆପଣ ରତି, ମୋହିନୀ, ମାୟା, ଲଜ୍ଜା, ଲକ୍ଷ୍ମୀ, ସନ୍ଧ୍ୟା, ଦୀପ୍ତି, ସାବିତ୍ରୀ ଓ ଜଗତର ଜନନୀ ସ୍ୱରୂପ । ୧୨ ।

ଦେବି ! ଆପଣ ତୁଷ୍ଟି, ପୁଷ୍ଟି, ଧୃତି, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଉଜ୍ଜ୍ୱଳତାକାରିଣୀ ଦୀପ୍ତି ଏବଂ ସମ୍ପଦ୍-ବାନମାନଙ୍କର ସମ୍ପତ୍ତି । ଯୋଗିଗଣ ଓ ପରିବ୍ରାଜକଗଣ ଧ୍ୟାନରେ ଆପଣଙ୍କୁ ହିଁ ଦେଖିଥାଆନ୍ତି । ୧୩ ।

## ଦୁର୍ଗାସ୍ତବରାଜଃ

ନମସ୍ତେ ଶରଣ୍ୟେ ଶିବେ ସାନୁକମ୍ପେ
ନମସ୍ତେ ଜଗଦ୍ବ୍ୟାପିକେ ବିଶ୍ୱରୂପେ ।
ନମସ୍ତେ ଜଗଦ୍ବନ୍ଦ୍ୟ-ପାଦାରବିନ୍ଦେ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୧ ॥
ନମସ୍ତେ ଜଗଚ୍ଚିନ୍ତ୍ୟମାନସ୍ୱରୂପେ
ନମସ୍ତେ ମହାଯୋଗିନି ଜ୍ଞାନରୂପେ ।
ନମସ୍ତେ ସଦାନନ୍ଦନନ୍ଦସ୍ୱରୂପେ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୨ ॥
ଅନାଥସ୍ୟ ଦୀନସ୍ୟ ତୃଷ୍ଣାତୁରସ୍ୟ
ଭୟାର୍ତ୍ତସ୍ୟ ଭୀତସ୍ୟ ବଦ୍ଧସ୍ୟ ଜନ୍ତୋଃ ।
ତ୍ୱମେକା ଗତିର୍ଦ୍ଦେବି ନିସ୍ତାରଦାତ୍ରୀ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୩ ॥
ଅରଣ୍ୟେ ରଣେ ଦାରୁଣେ ଶତ୍ରୁମଧ୍ୟେ-
ଽନଲେ ସାଗରେ ପ୍ରାନ୍ତରେ ରାଜଗେହେ ।
ତ୍ୱମେକା ଗତିର୍ଦ୍ଦେବି ନିସ୍ତାର ହେତୁ-
ର୍ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୪ ॥

---

ହେ ଶରଣରକ୍ଷୟିତ୍ରୀ, ଶିବା, କୃପାବତୀ, ଜଗଦ୍ବ୍ୟାପିନୀ, ବିଶ୍ୱରୂପା, ଜଗଦ୍ବନ୍ଦନୀୟ ପାଦପଦ୍ମା, ଜଗତ୍ର ରକ୍ଷାକାରିଣୀ – ତୁମକୁ ଅନେକ ନମସ୍କାର । ରକ୍ଷାକର । ୧ ।

ହେ ଜଗତର ଚିନ୍ତନୀୟା ! ମହାଯୋଗିନୀ, ଜ୍ଞାନରୂପା ସର୍ବଦା ଆନନ୍ଦ ସମୂହରୂପା, ଜଗତର ରକ୍ଷାକାରିଣୀ- ତୁମକୁ ଅନେକ ନମସ୍କାର । ରକ୍ଷାକର ।୨।

ଅନାଥ, ଦୀନ, ତୃଷାତୁର ଭୟାର୍ତ୍ତ, ଭୀତ, ବଦ୍ଧ ପ୍ରାଣୀମାନଙ୍କର ତୁମେ ଉଦ୍ଧାରକାରିଣୀ ଓ ଏକମାତ୍ର ଗତି ଅଟ । ଜଗତର ରକ୍ଷାକାରିଣୀ, ତୁମକୁ ନମସ୍କାର । ରକ୍ଷାକର । ୩ ।

ବଣରେ, ଯୁଦ୍ଧବେଳେ, କଷ୍ଟଦାୟକ ଶତ୍ରୁମାନଙ୍କ ମଧ୍ୟରେ, ନିଆଁରେ, ସମୁଦ୍ରରେ, ପ୍ରାନ୍ତରରେ, ରାଜଗୃହରେ - ସବୁଠାରେ ତୁମେ ହିଁ ଏକମାତ୍ର ଗତି ଓ ରକ୍ଷାକର୍ତ୍ତ୍ରୀ । ହେ ଜଗତରକ୍ଷାକାରିଣୀ । ତୁମକୁ ନମସ୍କାର । କ୍ଷମାକର । ୪ ।

ଅପାରେ ମହାଦୁସ୍ତରେଽତ୍ୟନ୍ତଘୋରେ
ବିପତ୍‌ସାଗରେ ମଜ୍ଜତାଂ ଦେହଭାଜାମ୍ ।
ତ୍ୱମେକା ଗତିର୍ଦେବି ନିସ୍ତାରନୌକା
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୫ ॥
ନମଶ୍ଚଣ୍ଡିକେ ଚଣ୍ଡଦୋର୍ଦଣ୍ଡଲୀଳା-
ଲସତ୍‌ଖଣ୍ଡିତାଖଣ୍ଡଲାଶେଷଭୀତେ ।
ତ୍ୱମେକା ଗତିର୍ବିଘ୍ନ ସନ୍ଦୋହହନ୍ତ୍ରୀ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୬ ॥
ତ୍ୱମେକାଜିତାରାଧିତା ସତ୍ୟବାଦି-
ନ୍ୟମେୟା ଜିତକ୍ରୋଧନା କ୍ରୋଧନିଷ୍ଠା ।
ଇଡା ପିଙ୍ଗଳା ତ୍ୱଂ ସୁଷୁମ୍ନା ଚ ନାଡ଼ୀ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୭ ॥
ନମୋ ଦେବି ଦୁର୍ଗେ ଶିବେ ଭୀମନାଦେ
ସରସ୍ୱତ୍ୟରୁନ୍ଧତ୍ୟମୋଘସ୍ୱରୂପେ ।
ବିଭୂତିଃ ଶଚୀ କାଳରାତ୍ରିଃ ସତୀ ତ୍ୱଂ
ନମସ୍ତେ ଜଗତ୍ତାରିଣି ତ୍ରାହି ଦୁର୍ଗେ ॥ ୮ ॥

---

ଅପାର ଦୁସ୍ତର ଅତ୍ୟନ୍ତ ଘୋର ବିପଦ-ସାଗରରେ ପ୍ରାଣୀମାନେ ବୁଡ଼ି ଯାଉଥିବାବେଳେ, ତୁମେ ହିଁ ସେମାନଙ୍କର ଗତି ବା ଉଦ୍ଧାରନୌକା । ହେ ଜଗତର ତ୍ରାଣକର୍ତ୍ତ୍ରୀ । ତୁମକୁ ନମସ୍କାର । ରକ୍ଷାକର । ୫ ।

ହେ ଚଣ୍ଡିକା ! ତୁମର ପ୍ରଚଣ୍ଡ ବାହୁର ଲୀଳା ବିସ୍ତାର ଦ୍ୱାରା ତୁମେ ଇନ୍ଦ୍ରଙ୍କର ଅଶେଷ ଭୟ ଖଣ୍ଡନ କରିଛ । ତୁମେ ହିଁ ବିଘ୍ନସମୂହ ନାଶକାରିଣୀ ଏକମାତ୍ର ଆଶ୍ରୟ । ହେ ଜଗତରକ୍ଷାକର୍ତ୍ତ୍ରୀ ତୁମକୁ ନମସ୍କାର । ରକ୍ଷାକର । ୬ ।

ତୁମେ ହିଁ ଅଜିତା, ଆରାଧିତା, ସତ୍ୟବାଦିନୀ, ଅମେୟା, ଜିତକ୍ରୋଧନା, କ୍ରୋଧନିଷ୍ଠା । ତୁମେ ହିଁ ଇଡା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀ । ହେ ଜଗତ୍‌ତାରିଣୀ ଦୁର୍ଗା ! ତୁମକୁ ନମସ୍କାର । ରକ୍ଷାକର । ୭ ।

ହେ ଦେବୀ ଦୁର୍ଗା !, ଶିବା, ଭୀମନାଦା ! ତୁମେ ସରସ୍ୱତୀ, ଅରୁନ୍ଧତୀ ଓ ଅମୋଘସ୍ୱରୂପା ଅଟ । ତୁମେ ବିଭୂତି, ଶଚୀ, କାଳରାତ୍ରୀ ଓ ସତୀ ଅଟ । ହେ ଜଗତରକ୍ଷାକାରିଣୀ ଦୁର୍ଗା ! ତୁମକୁ ନମସ୍କାର । ରକ୍ଷାକର । ୮ ।

ଶରଣମସି ସୁରାଣାଂ ସିଦ୍ଧବିଦ୍ୟାଧରାଣାଂ
ମୁନିଦନୁଜନରାଣାଂ ବ୍ୟାଧିଭିଃ ପୀଡ଼ିତାନାମ୍ ।
ନୃପତିଗୃହଗତାନାଂ ଦସ୍ୟୁଭିସ୍ତ୍ରାସିତାନାଂ
ତ୍ୱମସି ଶରଣମେକା ଦେବି ଦୁର୍ଗେ ପ୍ରସୀଦ ॥ ୯ ॥
ଇଦଂ ସ୍ତୋତ୍ରଂ ମୟାପ୍ରୋକ୍ତମାପଦୁଦ୍ଧାରହେତୁକମ୍ ।
ତ୍ରିସନ୍ଧ୍ୟମେକସନ୍ଧ୍ୟଂ ବା ପଠନାଦେବ ସଙ୍କଟାତ୍ ॥
ମୁଚ୍ୟତେ ନାତ୍ରସନ୍ଦେହୋ ଭୁବି ସ୍ୱର୍ଗେ ରସାତଳେ ।
ସମସ୍ତଶ୍ଲୋକମେକଂ ବା ଯଃ ପଠେତ୍ ଭକ୍ତିତଃ ସଦା ॥
ସ ସର୍ବଦୁଷ୍କୃତଂ ତ୍ୟକ୍ତ୍ୱା ପ୍ରାପ୍ନୋତି ପରମାଂ ଗତିମ୍ ।
ପଠନାଦସ୍ୟ ଦେବେଶି କିଂ ନ ସିଦ୍ଧ୍ୟତି ଭୂତଳେ ।
ସ୍ତବରାଜମିଦଂ ଦେବି ସଂକ୍ଷେପାତ୍ କଥିତଂ ମୟା ॥

ଇତି ଶ୍ରୀ ବିଶ୍ୱସାରେ ଆପଦୁଦ୍ଧାରକଳ୍ପେ ଶ୍ରୀଦୁର୍ଗା-ସ୍ତବରାଜଃ ସମ୍ପୂର୍ଣ୍ଣଃ ।

—

## ଶକ୍ରାଦିସ୍ତୁତିଃ

### [ ଶ୍ରୀ ଶ୍ରୀ ଚଣ୍ଡୀ—ଚତୁର୍ଥ ଅଧ୍ୟାୟଃ ]

ଧ୍ୟାନଂ—ଓଁ କାଳାଭ୍ରାଭାଂ କଟାକ୍ଷୈରରିକୁଲଭୟଦାଂ ମୌଳିବଦ୍ଧେନ୍ଦୁରେଖାଂ
ଶଙ୍ଖଂ ଚକ୍ରଂ କୃପାଣଂ ତ୍ରିଶିଖମପି କରୈରୁଦ୍ୱହନ୍ତୀଂ ତ୍ରିନେତ୍ରାମ୍ ।
ସିଂହସ୍କନ୍ଧାଧିରୂଢ଼ାଂ ତ୍ରିଭୁବନମଖିଳଂ ତେଜସା ପୂରୟନ୍ତୀଂ
ଧ୍ୟାୟେତ୍ ଦୁର୍ଗାଂ ଜୟାଖ୍ୟାଂ ତ୍ରିଦଶପରିବୃତାଂ ସେବିତାଂ ସିଦ୍ଧିକାମୈଃ

---

ତୁମ୍ଭେ ଦେବତା ସିଦ୍ଧ ବିଦ୍ୟାଧର, ମୁନି, ଅସୁର, ନର, ବ୍ୟାଧିଗ୍ରସ୍ତପୀଡ଼ିତ ଲୋକ, ନୃପତି ଓ ଗୃହାଗତ, ଦସ୍ୟୁ ଦ୍ୱାରା ତ୍ରସ୍ତ – ସମସ୍ତଙ୍କର ଶରଣ୍ୟ । ତୁମେ ହିଁ ଏକମାତ୍ର ଶରଣ । ହେ ଦେବୀ ଦୁର୍ଗା—ପ୍ରସନ୍ନ ହୁଅ । ୯ ।

(ଫଳଶ୍ରୁତି) ଏହି ସ୍ତୋତ୍ରଟି ଆପଦରୁ ଉଦ୍ଧାର ପାଇବା ପାଇଁ ଉକ୍ତ ହୋଇଛି । ତ୍ରିସନ୍ଧ୍ୟାରେ ହେଉ ବା ଏକସନ୍ଧ୍ୟାରେ ହେଉ ଯେ ପଢ଼େ ସେ ସଂକଟରୁ ରକ୍ଷାପାଏ—ଏଥିରେ ସନ୍ଦେହ ନାହିଁ । ପୃଥିବୀରେ, ସ୍ୱର୍ଗରେ, ପାତାଳରେ ଯେ ସବୁଶ୍ଲୋକ ବା ଗୋଟିଏ ଶ୍ଲୋକ ଭକ୍ତିର ସହିତ ପଢ଼େ, ସେ ସକଳ ପାପରୁ ମୁକ୍ତ ପାଇ ମୋକ୍ଷ ଲାଭ କରେ । ହେ ଦେବୀ ! ଏହା ପାଠକଲେ ପୃଥିବୀରେ କ'ଣ ସିଦ୍ଧ ନ ହୁଏ ? ଏହି ସ୍ତବରାଜ ସଂକ୍ଷେପରେ କଥିତ ହୋଇଛି ।

—

ଦେବ୍ୟା ଯୟା ତତମିଦଂ ଜଗଦାତ୍ମଶକ୍ତ୍ୟା
ନିଃଶେଷଦେବଗଣଶକ୍ତିସମୂହମୂର୍ତ୍ତ୍ୟା ।
ତାମମ୍ବିକାମଖିଳଦେବମହର୍ଷିପୂଜ୍ୟାଂ
ଭକ୍ତ୍ୟାନତାଃ ସ୍ମ ବିଦଧାତୁ ଶୁଭାନି ସା ନଃ ॥ ୧ ॥
ଯସ୍ୟାଃ ପ୍ରଭାବମତୁଳଂ ଭଗବାନନନ୍ତୋ
ବ୍ରହ୍ମା ହରଶ୍ଚ ନ ହି ବକ୍ତୁମଳଂ ବଳଂ ଚ ।
ସା ଚଣ୍ଡିକାଖିଳ ଜଗତ୍ପରିପାଳନାୟ
ନାଶାୟ ଚାଶୁଭଭୟସ୍ୟ ମତିଂ କରୋତୁ ॥ ୨ ॥
ଯା ଶ୍ରୀଃ ସ୍ୱୟଂ ସୁକୃତିନାଂ ଭବନେଷ୍ୱଲକ୍ଷ୍ମୀଃ
ପାପାତ୍ମନାଂ କୃତଧିୟାଂ ହୃଦୟେଷୁ ବୁଦ୍ଧିଃ ।
ଶ୍ରଦ୍ଧା ସତାଂ କୁଳଜନପ୍ରଭବସ୍ୟ ଲଜ୍ଜା
ତାଂ ତ୍ୱାଂ ନତାଃ ସ୍ମ ପରିପାଳୟ ଦେବି ବିଶ୍ୱମ୍ ॥ ୩ ॥

---

| | | |
|---|---|---|
| ଯା ଦେବୀ ଆପଣା ଶକ୍ତିରେ | । ବ୍ୟାପି ଅଛନ୍ତି ଚରାଚରେ | ॥ |
| ସକଳ ସୁରଙ୍କ ଶକତି- | । ସମୂହ ଯାହାର ମୂରତି | ॥ |
| ଦେବ-ମହର୍ଷି-ପୂଜନୀୟା | । ଯେ ଜଗଦମ୍ବା ମହାମାୟା | ॥ |
| ତାହାଙ୍କ କମଳ ପଦ୍ୟରେ | । ନମୁଛୁଁ ଭକ୍ତି ସହକାରେ | ॥ |
| ଆମ୍ଭମାନଙ୍କ ସୁକଲ୍ୟାଣ | । ସେ ଦେବୀ କରନ୍ତୁ ବିଧାନ | ॥୧ |
| ଯେଉଁ ଦେବୀଙ୍କ ଅନୁପମ | । ପ୍ରଭାବ ବଳ ପରାକ୍ରମ | ॥ |
| କହନେ ବ୍ରହ୍ମା ପଞ୍ଚନାଥ | । ଅନନ୍ତ ନୁହନ୍ତି ସମର୍ଥ | ॥ |
| ସେହୁ ଚଣ୍ଡିକା ଭଗବତୀ | । ପାଳନେ ଅଖିଳ ଧରଣୀ | ॥ |
| ଆବର ଅମଙ୍ଗଳ ଭୀତି | । ନାଶେ ଚଳାନ୍ତୁ ନିଜ ମତି | ॥୨ |
| ସୁକୃତି-ଜନ-ଗୃହେ ଆପେ | । ଯେ ଦେବୀ ବିଜେ ଲକ୍ଷ୍ମୀରୂପେ | ॥ |
| ପାପାତ୍ମାମାନଙ୍କର ଗୃହେ | । ଅଲକ୍ଷ୍ମୀ ରୂପେ ସେହୁ ରହେ | ॥ |
| ବୁଦ୍ଧି ସ୍ୱରୂପେ ଶୁଦ୍ଧମତି | । ଜନ ହୃଦୟେ ଯା ବସତି | ॥ |
| ସଜ୍ଜନକୁଳ ହୃଦଦେଶେ | । ଯେ ଶ୍ରଦ୍ଧା ସ୍ୱରୂପେ ପ୍ରକାଶେ | ॥ |
| କୁଳୀନଜନ ମଧ୍ୟେ ଯେହ୍ନ | । ଲଜ୍ଜା ସ୍ୱରୂପେ ନିବସଇ | ॥ |
| ତୁହି ସେ ଦେବୀ ଭଗବତୀ | । ଯେଣୁ ମା ଆମ୍ଭର ପ୍ରଣତି | ॥ |
| ମାତ ! ଏ ବିଶ୍ୱ ଚରାଚର | । ପରିପାଳନା ତୁହି କର | ॥୩ |

କିଂ ବର୍ଣ୍ଣୟାମ ତବ ରୂପମଚିନ୍ତ୍ୟମେତତ୍
କିଂ ଚାତିବୀର୍ଯ୍ୟମସୁରକ୍ଷୟକାରି ଭୂରି ।
କିଂ ଚାହବେଷୁ ଚରିତାନି ତବାଦ୍ଭୁତାନି
ସର୍ବେଷୁ ଦେବ୍ୟସୁରଦେବଗଣାଦିକେଷୁ ॥ ୪ ॥
ହେତୁଃ ସମସ୍ତଜଗତାଂ ତ୍ରିଗୁଣାପି ଦୋଷୈ-
ର୍ନ ଜ୍ଞାୟସେ ହରିହରାଦିଭିରପ୍ୟପାରା ।
ସର୍ବାଶ୍ରୟାଖିଲମିଦଂ ଜଗଦଂଶଭୂତ-
ମବ୍ୟାକୃତା ହି ପରମା ପ୍ରକୃତିସ୍ତ୍ୱମାଦ୍ୟା ॥ ୫ ॥
ଯସ୍ୟାଃ ସମସ୍ତସୁରତା ସମୁଦୀରଣେନ
ତୃପ୍ତିଂ ପ୍ରୟାତି ସକଳେଷୁ ମଖେଷୁ ଦେବି ।
ସ୍ୱାହାସି ବୈ ପିତୃଗଣସ୍ୟ ଚ ତୃପ୍ତିହେତୁ-
ରୁଚ୍ଚାର୍ଯ୍ୟସେ ତ୍ୱମତ ଏବ ଜନୈଃ ସ୍ୱଧା ଚ ॥ ୬ ॥
ଯା ମୁକ୍ତିହେତୁରବିଚିନ୍ତ୍ୟମହାବ୍ରତା ତ୍ୱ-
ମଭ୍ୟସ୍ୟସେ ସୁନିୟତେନ୍ଦ୍ରିୟତତ୍ତ୍ୱସାରୈଃ ।

---

ଏହି ତୋ ରୂପ ଅନୁପମ । ଚିନ୍ତନେ କେହୁ ନୁହେଁ କ୍ଷମ ॥
ଅସୁର ବଳ କ୍ଷୟକାରୀ । ପ୍ରବଳ ପରାକ୍ରମେ ତୋରି ॥
ଆବର ଦେବାସୁରଗଣ । ସମକ୍ଷେ ହୋଇ ଅବତୀର୍ଣ୍ଣ ॥
ପରମ ଅଦ୍ଭୁତ ଚରିତ । ଯୁଦ୍ଧେ ଯା କଲୁ ପ୍ରକଟିତ ॥
ସେ ସବୁ ବିଷୟ ବର୍ଣ୍ଣନ । କରିବୁଁ କେ ଦେବି ! କେସନ ? ॥୪
ସମସ୍ତ ଜଗତର ତୁହି । କାରଣଭୂତା ମହାମାୟୀ ॥
ଯଦ୍ୟପି ତ୍ରିଗୁଣମୟୀ । ଦୋଷ ନ ଲାଗେ ତୋର ତହିଁ ॥
ହରିହରାଦି ଦେବକୁଳ । ନପା'ନ୍ତି ତୋର ଅଳକୂଳ ॥
ସବୁରି ଆଶ୍ରୟ ତୁହି ତ । ଖିଳ ବିଶ୍ୱ ତୋ ଅଂଶଭୂତ ॥
ତୁ ଦେବୀ ଅଟୁ ଆଦିଭୂତା । ପରା ପ୍ରକୃତି ଅବ୍ୟାକୃତା ॥୫
ସକଳ ଯଜ୍ଞେ ସୁରଗଣେ । ଯାହାର ନାମ ଉଚ୍ଚାରଣେ ॥
ଲଭ କରନ୍ତି ପରିତୃପ୍ତି । ସେ ସ୍ୱାହା ତୁହି ଭଗବତି ॥
ଆବର କେ ଦେବି ! ଅଟୁ ତୁ । ପିତୃଗଣଙ୍କ ତୃପ୍ତି ହେତୁ ॥
ଏଥି କାରଣ ସର୍ବ ନରେ । ଡାକନ୍ତି ସ୍ୱଧା ବୋଲି ତୋରେ ॥୬
ଯେହୁ ମୁକତି-ହେତୁଭୂତା । ଅଚିନ୍ତନୀୟା ମହାବ୍ରତା ॥
ଦୋଷ-ରହିତ ଜିତେନ୍ଦ୍ରିୟେ । ତତ୍ତ୍ୱକୁ ମଣନ୍ତି ଯେ ଶ୍ରେୟ ॥

ମୋକ୍ଷାର୍ଥିଭିର୍ମୁନିଭିରସ୍ତସମସ୍ତ ଦୋଷୈ-
ର୍ବିଦ୍ୟାସି ସା ଭଗବତୀ ପରମା ହି ଦେବି ॥ ୭ ॥
ଶବ୍ଦାତ୍ମିକା ସୁବିମଳର୍ଗ୍ୟଜୁଷାଂ ନିଧାନ-
ମୁଦ୍‌ଗୀଥରମ୍ୟପଦପାଠବତାଂ ଚ ସାମ୍ନାମ୍ ।
ଦେବୀ ତ୍ରୟୀ ଭଗବତୀ ଭବଭାବନାୟ
ବାର୍ତ୍ତା ଚ ସର୍ବଜଗତାଂ ପରମାର୍ତ୍ତିହନ୍ତ୍ରୀ ॥ ୮ ॥
ମେଧାସି ଦେବି ବିଦିତାଖିଳଶାସ୍ତ୍ରସାରା
ଦୁର୍ଗାସି ଦୁର୍ଗଭବସାଗର-ନୌରସଙ୍ଗା ।
ଶ୍ରୀଃ କୈଟଭାରିହୃଦୟୈକକୃତାଧିବାସା
ଗୌରୀ ତ୍ୱମେବ ଶଶିମୌଳିକୃତପ୍ରତିଷ୍ଠା ॥ ୯ ॥
ଈଷତ୍ସହାସମମଳଂ ପରିପୂର୍ଣ୍ଣଚନ୍ଦ୍ର-
ବିମ୍ବାନୁକାରି କନକୋତ୍ତମ କାନ୍ତିକାନ୍ତମ୍ ।
ଅତ୍ୟଦ୍ଭୁତଂ ପ୍ରହୃତମାତ୍ତରୁଷା ତଥାପି
ବକ୍ତ୍ରଂ ବିଲୋକ୍ୟ ସହସା ମହିଷାସୁରେଣ ॥ ୧୦ ॥

---

ସେ ମୋକ୍ଷକାମୀ ମୁନିଜନେ । ଯାହାଙ୍କୁ ଅଭ୍ୟାସନ୍ତି ଧ୍ୟାନେ ॥
ସେହି ପ୍ରକୃତ ପରା ବିଦ୍ୟା । ଅଟୁ ମା ତୁହି ଦେବୀ ଆଦ୍ୟା ॥୭
ଶବ୍ଦ ସ୍ୱରୂପା ଦେବୀ ତୁହି । ତୋତେ ହିଁ ବେଦତ୍ରୟୀ କହି ॥
ଅତ୍ୟନ୍ତ ନିର୍ମଳ ଅଟଇ । ଯେଉଁ ଋଗ୍ ଯଜୁ ବେଦ ଦୁଇ ॥
ପୁଣ ତୃତୀୟେ ସାମବେଦ । ଯାହା ଉଦ୍‌ଗୀଥ ରମ୍ୟ-ପଦ- ॥
ପାଠରେ ହୋଇଛି ଯୁକତ । ତିନିର ଆଧାର ତୁ ମାତ ! ॥
ଅଣିମା ଆଦି ଷଡୈଶ୍ୱର୍ଯ୍ୟେ । ଅଧିକାରିଣୀ ତୁହି ଆର୍ଯ୍ୟେ ! ॥
ସଂସାର-ଉତ୍ପତ୍ତି-ପାଳନ- । କାରିଣୀ ବାର୍ତ୍ତା ତୁ ଯେ ପୁଣ ॥
ସର୍ବ ଜଗତ ଘୋର କଷ୍ଟ । ଜନନି ! କରୁ ଗୋ ବିନଷ୍ଟ ॥୮
ସକଳଶାସ୍ତ୍ର ସାର-ତତ୍ତ୍ୱ । ଯାହେବନ ହୁଅଇ ବିଦିତ ॥
ତୁହି ଅଟୁ ସେ ମେଧା ଶକ୍ତି । କାହିଁରେ ନାହିଁ ତୋ ଆସକ୍ତି ॥
ଦୁର୍ଗମ-ଭବ-ସିନ୍ଧୁ-ତରି- । ରୂପିଣୀ ଦୁର୍ଗା ତୁ ଈଶ୍ୱରି ! ॥
ତୁହି ଗୋ ସ୍ୱୟଂ କମଳାକ୍ଷୀ । ଅଚ୍ୟୁତ ହୃଦୈକ ବାସିନୀ ॥
ଚନ୍ଦ୍ରମଉଳି-ପ୍ରତିଷ୍ଠିତା । ତୁ ଦେବୀ ଗୌରୀ ଜଗନ୍ମାତା ॥୯
ସଂପୂର୍ଣ୍ଣ-ଚନ୍ଦ୍ର-ବିମ୍ବପ୍ରାୟ । କନକ-କାନ୍ତି-କମନୀୟ ॥
ମନ୍ଦହାସରେ ସୁମଞ୍ଜୁଳ । ତୋ ମୁଖ ମଣ୍ଡଳ ନିର୍ମଳ ॥

ଦୃଷ୍ଟ୍ବା ତୁ ଦେବି କୁପିତଂ ଭ୍ରୁକୁଟୀକରାଳ-
ମୁଦ୍ୟଚ୍ଛଶାଙ୍କସଦୃଶଚ୍ଛବି ଯନ୍ନ ସଦ୍ୟଃ ।
ପ୍ରାଣାନ୍ ମୁମୋଚ ମହିଷସ୍ତଦତୀବ ଚିତ୍ରଂ
କୈର୍ଜୀବ୍ୟତେ ହି କୁପିତାନ୍ତକ ଦର୍ଶନେନ ॥ ୧୧ ॥

ଦେବି ପ୍ରସୀଦ ପରମା ଭବତୀ ଭବାୟ
ସଦ୍ୟୋ ବିନାଶୟସି କୋପବତୀ କୁଲାନି ।
ବିଜ୍ଞାତମେତଦଧୁନୈବ ଯଦସ୍ତମେତ-
ନ୍ନୀତଂ ବଳଂ ସୁବିପୁଳଂ ମହିଷାସୁରସ୍ୟ ॥ ୧୨ ॥

ତେ ସଂମତା ଜନପଦେଷୁ ଧନାନି ତେଷାଂ
ତେଷାଂ ଯଶାଂସି ନ ଚ ସୀଦନ୍ତି ଧର୍ମବର୍ଗଃ ।
ଧନ୍ୟାସ୍ତ ଏବ ନିଭୃତାତ୍ମଜଭୃତ୍ୟଦାରା
ଯେଷାଂ ସଦାଭ୍ୟୁଦୟଦା ଭବତୀ ପ୍ରସନ୍ନା ॥୧୩॥

---

ବଳେକ ମହିଷା ଅସୁର । ରୋଷେ ହୋଇଣ ଜରଜର ॥
ସହସା ପ୍ରହାରିଲା ତହିଁ । ଏ କଥା ଚିତ୍ର କି ନୁହଇ ? ॥୧୦
ଯେବେତୋ ମୁଖ କୋପେ ଦେବି । ନବ-ଉଦିତ-ଶଶି-ଛବି ॥
ପରସ୍ପେ ହୋଇଲା ଅରୁଣ । ଭ୍ରୂକୁଟି ବିକରାଳ ପୁଣ ॥
ତାହାକୁ ଦେଖି ଦୈତ୍ୟ ପ୍ରାଣ । ନ ମୁଞ୍ଚିଲା ଯା ତତକ୍ଷଣ ॥
ତହୁଁ ଅଧିକ ଅଦଭୁତ । କଥା କି ଅଛୁ ଏ ଜଗତ ? ॥
ହେରି କୃତାନ୍ତ କୋପ ମୂର୍ତ୍ତି । ପାରେ କେ ଅଦା ଭଲେ ବର୍ତ୍ତି ॥୧୧
ହେ ଦେବି ! ହୃଦୟେ କରୁଣା । ବହି ତୁ ହୁଅସି ପ୍ରସନ୍ନା ॥
ପରମ ଆତ୍ମା-ସ୍ୱରୂପିଣୀ । ପ୍ରସନ୍ନା ହୋଇଲେ ତୁ ପୁଣି ॥
ବିଶ୍ବର ଘଟେ ଅଭ୍ୟୁଦୟ । ତୋ କୋପେ କେତେ କୁଳକ୍ଷୟ ॥
ଅମ୍ଭଙ୍କୁ ଏବେ କେ ନ ଜଣା । ଯେଣୁ ଏ ସୁବିପୁଳ ସେନା ॥
ମହିଷାସୁରର ନମିଷେ । ବିନଷ୍ଟ ହେଲା ତୋର ରୋଷେ ॥୧୨
ତୁହି ଜନନୀ ଜଗଦ୍ଧାତ୍ରୀ । ସର୍ବଦା ଅଭ୍ୟୁଦୟଦାତ୍ରୀ ॥
ଯାହାରେ ହେଉ ସୁପ୍ରସନ୍ନ । ଲଭେ ସେ ଦେଶେ ଦେଶେ ମାନ ॥
ଅର୍ଜ୍ଜନ କରେ ଯଶଧନ । ତା'ର ଧରମ ନୋହେ କ୍ଷୀଣ ॥
ପୁଷ୍ଟ କାମିନୀ ସୁନନ୍ଦନ । ଦାସାଦି ଦେଖି ହୋଏ ଧନ୍ୟ ॥୧୩

ଧର୍ମ୍ୟାଣି ଦେବି ସକଲାନି ସଦୈବ କର୍ମା-
ଣ୍ୟତ୍ୟାଦୃତଃ ପ୍ରତିଦିନଂ ସୁକୃତୀ କରୋତି ।
ସ୍ୱର୍ଗଂ ପ୍ରୟାତି ଚ ତତୋ ଭବତୀପ୍ରସାଦା-
ଲ୍ଲୋକତ୍ରୟେଽପି ଫଳଦା ନନୁ ଦେବି ତେନ ॥୧୪॥
ଦୁର୍ଗେ ସ୍ମୃତା ହରସି ଭୀତିମଶେଷଜନ୍ତୋଃ
ସ୍ୱସ୍ଥୈଃ ସ୍ମୃତା ମତିମତୀବ ଶୁଭାଂ ଦଦାସି ।
ଦାରିଦ୍ର୍ୟଦୁଃଖଭୟହାରିଣି କା ତ୍ୱଦନ୍ୟା
ସର୍ବୋପକାରକରଣାୟ ସଦାର୍ଦ୍ରଚିତ୍ତା ॥୧୫॥
ଏଭିର୍ହତୈର୍ଜଗଦୁପୈତି ସୁଖଂ ତଥୈତେ
କୁର୍ବନ୍ତୁ ନାମ ନରକାୟ ଚିରାୟ ପାପଂ ।
ସଂଗ୍ରାମମୃତ୍ୟୁମଧିଗମ୍ୟ ଦିବଂ ପ୍ରୟାନ୍ତୁ
ମତ୍ୱେତି ନୂନମହିତାନ୍ ବିନିହଂସି ଦେବି ॥୧୬॥
ଦୃଷ୍ଟ୍ୱୈବ କିଂ ନ ଭବତୀ ପ୍ରକରୋତି ଭସ୍ମ
ସର୍ବାସୁରାନରିଷୁ ଯତ୍ପ୍ରହିଣୋଷି ଶସ୍ତ୍ରମ୍ ।

---

ଦେବି ! ଲଭି ତୋ କୃପାକଣ । ପୁଣ୍ୟାତ୍ମାଜନ ପ୍ରତିଦିନ ॥
ସଦା ଅତ୍ୟନ୍ତ ଶ୍ରଦ୍ଧାଭରେ । ଧର୍ମାନୁକୂଳ କର୍ମ କରେ ॥
ଅନ୍ତେ ଗମଇ ସ୍ୱର୍ଗପୁର । ଏ ସବୁ ପ୍ରସାଦୁଁ ତୋହର ॥
ଏଣୁ ତ୍ରୈଲୋକ୍ୟ ବାଞ୍ଛାଫଳ । ଦାନେ ସମର୍ଥା ତୁ କେବଳ ॥୧୪
ଦୁର୍ଗେ ! ଦୁର୍ଗତି ନିବାରିଣି ! । ମାନବେ ଯେବେ ତୋରେ ଗୁଣି ॥
ସକଳ ପ୍ରାଣୀଙ୍କ ହୃଦୟ- । ମଧ୍ୟୁଁ ହରଣ କରୁ ଭୟ ॥
ସ୍ୱସ୍ଥ ପୁରୁଷଗଣ ତୋତେ । ସ୍ମରଣ କଲେ ହୃଦଗତେ ॥
ବୁଦ୍ଧି ଅତୀବ ଶୁଭମୟୀ । ପ୍ରଦାନ କରୁ ମହାମାୟି ! ॥
ଦାରିଦ୍ର୍ୟ-ଦୁଃଖ-ବିଭଞ୍ଜନେ ! । ଭୟ ହରଣେ ! ତୋର ବିନେ ॥
ବ୍ରହ୍ମାଣ୍ଡେ ଆନ କେ ଅଛଇ । ସକଳ ଉପକାର ପାଇଁ ॥
କରୁଣା-ରସେ କରି ସିକ୍ତ । ଚିତ୍ତ-ଦେଶକୁ ଅନୁବ୍ରତ ? ।୧୫।
ମାରଣେ ରିପୁ-ସମୁଦାୟ । ସଂସାର ହେବ ସୁଖମୟ ॥
କୃତ ଦୁଷ୍କୃତ ଫଳେ ଚିର । ନର୍କେ ଏ ଲଭନ୍ତୁ ଉଦ୍ଧାର ॥
ସଂଗ୍ରାମେ ମରଣ ବରଣ । କରି ଚଳନ୍ତୁ ସ୍ୱର୍ଗେ ପୁଣ ॥
ଏମନ୍ତ ବିଚାର ନିଶ୍ଚୟ । ବଧ କରୁ ମା ! ଶତ୍ରୁଚୟ ॥୧୬
ଦୃଷ୍ଟି ପଡନ୍ତ ମାତ୍ରେ ମାତ । କିମ୍ପା ନ କରି ଭସ୍ମୀଭୂତ ॥

ଲୋକାନ୍ ଧ୍ରୁବାନ୍ ରିପବୋଽପି ଶସ୍ତ୍ରପୂତା
ଇତ୍ଥଂ ମତିର୍ଭବତି ତେଷ୍ୱପି ତେଽତିସାଧ୍ୱୀ ॥୧୭॥
ଖଡ୍ଗପ୍ରଭାନକରବତ୍ତ୍ରୁଟଣୈସ୍ତଥୋଗ୍ରୈଃ
ଶୂଳାଗ୍ରକାନ୍ତ୍ୟନବଚ୍ଛେଦନ ଦୃଶୋଽସୁରାଣାମ୍ ।
ଯନ୍ନାଗତା ବଲୟମଂଶୁଦନ୍ଦନ୍ଦୁଖଣ୍ଡ-
ଯୋଗ୍ୟାନନଂ ତବ ବିଲୋକୟତାଂ ତଦେତତ୍ ॥୧୮॥
ଦୁର୍ବୃତ୍ତବୃତ୍ତଶମନଂ ତବ ଦେବ ଶୀଲଂ
ରୂପଂ ତଥୈତଦବଚିନ୍ତ୍ୟମତୁଲ୍ୟମନ୍ୟୈଃ ।
ବୀର୍ଯ୍ୟଂ ଚ ହନ୍ତୃ ହୃତଦେବପଦାକ୍ରମାଣାଂ
ବୈରିଷ୍ୱପି ପ୍ରକଟିତୈବ ଦୟା ତ୍ୱୟେତ୍ଥମ୍ ॥୧୯॥
କେନୋପମା ଭବତୁ ତେଽସ୍ୟ ପରାକ୍ରମସ୍ୟ
ରୂପଂ ଚ ଶତ୍ରୁଭୟକାର୍ଯ୍ୟତିହାରି କୁତ୍ର ।
ଚିତ୍ତେ କୃପା ସମରାନସ୍ଥୂରତା ଚ ଦୃଷ୍ଟା
ତ୍ୱୟ୍ୟେବ ଦେବ ବରଦେ ଭୁବନତ୍ରୟେଽପି ॥୨୦॥

---

ଅସୁରେ ପ୍ରହାରୁ ତୁ ଶସ୍ତ୍ର । ଏଥି ଅଛଇ ଗୂଢ଼ ତତ୍ତ୍ୱ ॥
ଉତ୍ତମ ଧାମ ଶତ୍ରୁ ବ୍ରାତ । ଗମନ୍ତୁ ହୋଇ ଶସ୍ତ୍ର ପୂତ ॥
ଏସନେ ଅତି ସାଧୁ ମତ । ପୋଷୁ ମା ସେମାନଙ୍କ ପ୍ରତ ॥୧୭
ଖଡଗ-ଜାତ ଉଦ୍ୟାନକ । ଜ୍ୟୋତି ପୁଞ୍ଜର ଯେ ଝଲକ ॥
ଶୂଳର ଅଗ୍ରଙ୍କଗୁଁ ପୂର୍ଣ୍ଣ । ଯେ ପଦ୍ମପଟଳ ଉତ୍ପନ୍ନ ॥
ତହିଁ ଅସୁର ଗଣ-ଦୃଷ୍ଟି । ଅଟୁଟ ଥିଲ ଯା ନ ଫୁଟି ॥
ସେଥିର ଏକଇ କାରଣ । ତୋ ମୁଖ-ଶୀତାଂଶୁ ଦର୍ଶନ ॥୧୮
ଦୁର୍ବୃତ୍ତ-ଜନ-କୁଚେଷ୍ଟାର । ଦମନେ ସ୍ୱଭାବ ତୋହର ॥
ତୋ ରୂପ ସମ୍ଭାର ଉଜ୍ଜ୍ୱଳ । ଅଚିନ୍ତ୍ୟ ଆନରେ ଅତୁଲ୍ୟ ॥
ଯେ ଦୈତ୍ୟ ଦେବ ବଳବୀର୍ଯ୍ୟ । ହରଣେ ଥିଲେ କୃତକାର୍ଯ୍ୟ ॥
ତାହାଙ୍କ ନାଶେ ଅନର୍ଗଳ । ଅଟେ ତୋ ପରାକ୍ରମ ବଳ ॥
ଏମନ୍ତେ ବୈରିଗଣେ ଦୟା । ପ୍ରକଟ କଲୁ ମହାମାୟା ॥
ବରଦେ ! ତୋର ପରାକ୍ରମ । ବିଶ୍ୱ ବ୍ରହ୍ମାଣ୍ଡେ ଅନୁପମ ॥
ଶତ୍ରୁ ଗଣରେ ଭୟଙ୍କର । ଆବର ଅତି ମନୋହର ॥
ଏମନ୍ତ ରୂପ ତୋର କାହିଁ । କେହ୍ନ ତ କେବେ ଦେଖିନାହିଁ ॥

ତ୍ରୈଲୋକ୍ୟମେତଦଖିଳଂ ରିପୁନାଶନେନ
ତ୍ରାତଂ ତ୍ୱୟା ସମରମୂର୍ଦ୍ଧନି ତେଽପି ହତ୍ୱା ।
ନୀତା ଦିବଂ ରିପୁଗଣା ଭୟମପ୍ୟପାସ୍ତ-
ମସ୍ମାକମୁନ୍ମଦସୁରାରିଭବଂ ନମସ୍ତେ ॥୨୧॥
ଶୂଳେନ ପାହି ନୋ ଦେବି ପାହି ଖଡ୍ଗେନ ଚାମ୍ବିକେ ।
ଘଣ୍ଟାସ୍ୱନେନ ନଃ ପାହି ଚାପଜ୍ୟାନିଃସ୍ୱନେନ ଚ ॥୨୨॥
ପ୍ରାଚ୍ୟାଂ ରକ୍ଷ ପ୍ରତୀଚ୍ୟାଂ ଚ ଚଣ୍ଡିକେ ରକ୍ଷ ଦକ୍ଷିଣେ ।
ଭ୍ରାମଣେନାତ୍ମଶୂଳସ୍ୟ ଉତ୍ତରସ୍ୟାଂ ତଥେଶ୍ୱରି ॥୨୩॥
ସୌମ୍ୟାନି ଯାନି ରୂପାଣି ତ୍ରୈଲୋକ୍ୟେ ବିଚରନ୍ତି ତେ ।
ଯାନି ଚାତ୍ୟର୍ଥଘୋରାଣି ତୈ ରକ୍ଷାସ୍ମାଂସ୍ତଥା ଭୁବମ୍ ॥୨୪॥
ଖଡ୍ଗଶୂଳଗଦାଦୀନି ଯାନି ଚାସ୍ତ୍ରାଣି ତେଽମ୍ବିକେ ।
କରପଲ୍ଲବସଙ୍ଗୀନି ତୈରସ୍ମାନ୍ ରକ୍ଷ ସର୍ବତଃ ॥୨୫॥

ଇତି ଶ୍ରୀ ମାର୍କଣ୍ଡେୟ ପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ
ଦେବୀ ମାହାତ୍ମ୍ୟ ଶ୍ରୀ ଶକ୍ରାଦି ସ୍ତୁତିଃ ସମାପ୍ତା ॥୦॥

---

କରୁଣା ତୋର ହୃଦ ସ୍ଥଳେ । ନିଷ୍ଠୁରପଣ ରଣକାଳେ ॥
ଏ ଦେଖ ବିଷୟେ ତୁ ତୋର । ତ୍ରିପୁରେ ଏକା ପଟାନ୍ତର ॥୨୧
ବିନାଶି ଅସୁର ନିକର । ଉଦ୍ଧରିଲୁ ମା ଭୁବନପୁର ॥
ନିଧନ କରି ରଣାଙ୍ଗଣେ । ସ୍ୱର୍ଗେ ପେଷିଲୁ ରିପୁଗଣେ ॥
ଉନ୍ମତ୍ତ-ଦୈତ୍ୟକୁଳ ଜାତ । ଯେ ଭୟ ଥିଲା ଆମ୍ଭ ଚିତ୍ତ ॥
ଜନନି ! ତାହା କଲୁ ଦୂର । ତୋତେ କରୁଛୁ ନମସ୍କାର ॥
ଶୂଳେ ଆମ୍ଭଙ୍କୁ କର ରକ୍ଷା । ଖଡ୍ଗେ ରଖ ତୁ ଅମ୍ବିକା ॥
ଧନୁଷ୍ଟଙ୍କାରେ ଘଣ୍ଟା ନାଦେ । ଆମ୍ଭଙ୍କୁ ରକ୍ଷାକର ହ୍ଲାଦେ ॥୨୨
ପୂର୍ବେ ପଶ୍ଚିମେ ଯାମ୍ୟଦିକେ । ରକ୍ଷା କର ତୁ ମା ଚଣ୍ଡିକେ ! ॥
ଘୂରାଇ ତ୍ରିଶୂଳ ତୋହର । ଉତ୍ତରେ ରଖ ହେ ଈଶ୍ୱରି ! ॥୨୩
ଅନେକ ବିଧ ରୂପ ତୋର । କେତେ ଯେ ପରମ ସୁନ୍ଦର
ଅତ୍ୟନ୍ତ ଘୋର ଥାଇ କେତେ । ଭ୍ରମନ୍ତି ସର୍ବେ ତ୍ରିଜଗତେ ॥
ସେମାନେ ରକ୍ଷନ୍ତୁ ଆମ୍ଭଙ୍କୁ । ଆବର ଏହି ଭୂଲୋକକୁ ॥୨୪
ତୋ କର-ପଲ୍ଲବେ ଶୋଭିତ । ଖଡ୍ଗ ଶୂଳାଦି ଯେତେ ଶସ୍ତ୍ର ॥
ଅମ୍ବିକେ : ସକଳ ଦିଗରୁ । ଆମ୍ଭମାନଙ୍କୁ ରକ୍ଷା କରୁ ॥୨୫

# ଦେବୀସୂକ୍ତ ବା ଅପରାଜିତାସ୍ତବ

[ଶ୍ରୀ ଶ୍ରୀ ଚଣ୍ଡୀ – ପଞ୍ଚମୋଽଧ୍ୟାୟଃ]

ଧ୍ୟାନଂ—ଓଁ ଘଣ୍ଟାଶୂଳହଳାନି ଶଙ୍ଖମୁଷଳେ ଚକ୍ରଂ ଧନୁଃ ଶାୟକଂ
ହସ୍ତାବ୍ଜୈର୍ଦ୍ଦଧତୀଂ ଘନାନ୍ତବିଲସଚ୍ଛୀତାଂଶୁତୁଲ୍ୟପ୍ରଭାମ୍ ।
ଗୌରୀଦେହସମୁଦ୍ଭବାଂ ତ୍ରିଜଗତାମାଧାରଭୂତାଂ ମହା-
ପୂର୍ବାମତ୍ର ସରସ୍ୱତୀମନୁଭଜେ ଶୁମ୍ଭାଦିଦୈତ୍ୟାର୍ଦ୍ଦିନୀମ୍ ।।

ନମୋ ଦେବ୍ୟୈ ମହାଦେବ୍ୟୈ ଶିବାୟୈ ସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟତାଃ ପ୍ରଣତାଃ ସ୍ମ ତାମ୍ ।। ୧ ।।
ରୌଦ୍ରାୟୈ ନମୋ ନିତ୍ୟାୟୈ ଗୌର୍ଯ୍ୟୈ ଧାତ୍ର୍ୟୈ ନମୋ ନମଃ ।
ଜ୍ୟୋତ୍ସ୍ନାୟୈ ଚେନ୍ଦୁରୂପିଣ୍ୟୈ ସୁଖାୟୈ ସତତଂ ନମଃ ।। ୨ ।।
କଲ୍ୟାଣ୍ୟୈ ପ୍ରଣତାଂ ବୃଦ୍ଧ୍ୟୈ ସିଦ୍ଧ୍ୟୈ କୁର୍ମ୍ମୋ ନମୋ ନମଃ ।
ନୈର୍ଋତ୍ୟୈ ଭୂଭୃତାଂ ଲକ୍ଷ୍ମ୍ୟୈ ଶର୍ବାଣ୍ୟୈ ତେ ନମୋ ନମଃ ।। ୩ ।।
ଦୁର୍ଗାୟୈ ଦୁର୍ଗପାରାୟୈ ସାରାୟୈ ସର୍ବକାରିଣ୍ୟୈ ।
ଖ୍ୟାତ୍ୟୈ ତଥୈବ କୃଷ୍ଣାୟୈ ଧୂମ୍ରାୟୈ ସତତଂ ନମଃ ।। ୪ ।।
ଅତିସୌମ୍ୟାତିରୌଦ୍ରାୟୈ ନତାସ୍ତସ୍ୟୈ ନମୋ ନମଃ ।
ନମୋ ଜଗତ୍ପ୍ରତିଷ୍ଠାୟୈ ଦେବ୍ୟୈ କୃତ୍ୟୈ ନମୋ ନମଃ ।। ୫ ।।

---

ଦେବୀଙ୍କ ପ୍ରଣାମ ଆମ୍ଭର । ମହାଦେବୀଙ୍କି ନମସ୍କାର ।।
ଶିବାଙ୍କୁ ପ୍ରଣିପାତ ସଦା । ନମୋ ପ୍ରକୃତିରୂପା ଭଦ୍ରା ।।
ଆମ୍ଭେ ଯେ ଥାଇ ନିୟମନେ । ପ୍ରଣତ ତାହାଙ୍କ ଚରଣେ ।।୧
ରୌଦ୍ରା ନିତ୍ୟା ଗୌରୀ ଧାତ୍ରୀ । ଘେନମା ବାରମ୍ବାର ନତି ।।
ଚନ୍ଦ୍ରରୂପିଣୀ ଜ୍ୟୋତ୍ସ୍ନାମୟୀ । ସୁଖ ସ୍ୱରୂପା ମହାମାୟୀ ।।
ତାହାରେ ଆମ୍ଭମାନଙ୍କର । ଅନବରତ ନମସ୍କାର ।।୨
ପ୍ରଣତ ଜନର କଲ୍ୟାଣୀ । ଯେ ବୃଦ୍ଧି-ସିଦ୍ଧି-ସ୍ୱରୂପିଣୀ ।।
ସେ ଦେବୀ ଆମ୍ଭମାନଙ୍କର । ଘେନମା ନତି ବାରମ୍ବାର ।।
ନୈର୍ଋତୀ ରାଜଶ୍ରୀ ଶର୍ବାଣୀ । ପ୍ରଣାମ ତା'ରେ ପୁଣ ପୁଣି ।।୩
ସର୍ବକାରିଣୀ ଦୁର୍ଗା ସାର । ଯାହାରେ କହି ଦୁର୍ଗପାର ।।
ଧୂମଳା କୃଷ୍ଣବର୍ଣ୍ଣା ଖ୍ୟାତି । ତାହାରେ ସତତ ପ୍ରଣତି ।।୪
ଯେ ଅତି ରୌଦ୍ରା ଅତି ସୌମ୍ୟା । ସେ ଦେବୀ ବାରମ୍ବାର ନମ୍ୟା ।।
ବିଶ୍ୱପ୍ରତିଷ୍ଠା ଦେବୀ କୃତି । ଘେନମା ବାରମ୍ବାର ନତି ।।୫

ଯା ଦେବୀ ସର୍ବଭୂତେଷୁ ବିଷ୍ଣୁମାୟେତି ଶବ୍ଦିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୬ ॥

ଯା ଦେବୀ ସର୍ବଭୂତେଷୁ ଚେତନେତ୍ୟଭିଧୀୟତେ ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୭ ॥

ଯା ଦେବୀ ସର୍ବଭୂତେଷୁ ବୁଦ୍ଧିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୮ ॥

ଯା ଦେବୀ ସର୍ବଭୂତେଷୁ ନିଦ୍ରାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୯ ॥

ଯା ଦେବୀ ସର୍ବଭୂତେଷୁ କ୍ଷୁଧାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୦ ॥

ଯା ଦେବୀ ସର୍ବଭୂତେଷୁ ଛାୟାରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୧ ॥

ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୨ ॥

---

ଯେ ଦେବୀ ସର୍ବଭୂତେ ଆପେ । ନାମିତା ବିଷ୍ଣୁମାୟା ରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୬
ଯେ ଦେବୀ ସର୍ବଭୂତେ ଆପେ । ଖ୍ୟାତା ଚେତନାଶକ୍ତି ରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୭
ଯେ ଦେବୀ ସର୍ବଭୂତେ ଆପେ । ବିରାଜମାନା ବୁଦ୍ଧିରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୮
ଯେ ଦେବୀ ସର୍ବଭୂତେ ଆପେ । ବିରାଜମାନା ନିଦ୍ରା ରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୯
ଯେ ଦେବୀ ସର୍ବଭୂତେ ଆପେ । ବିରାଜମାନା କ୍ଷୁଧା ରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୧୦
ଯେ ଦେବୀ ସର୍ବଭୂତେ ଆପେ । ବିରାଜମାନା ଛାୟାରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୧୧
ଯେ ଦେବୀ ସର୍ବଭୂତେ ଆପେ । ବିରାଜମାନା ଶକ୍ତିରୂପେ ॥
ବନତ ଶିରେ ବାରମ୍ବାର । ତାହାରେ ଆମ୍ଭ ନମସ୍କାର ॥୧୨

ଯା ଦେବୀ ସର୍ବଭୂତେଷୁ ତୃଷ୍ଣାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୩ ॥

ଯା ଦେବୀ ସର୍ବଭୂତେଷୁ କ୍ଷାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୪ ॥

ଯା ଦେବୀ ସର୍ବଭୂତେଷୁ ଜାତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୫ ॥

ଯା ଦେବୀ ସର୍ବଭୂତେଷୁ ଲଜ୍ଜାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୬ ।

ଯା ଦେବୀ ସର୍ବଭୂତେଷୁ ଶାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୭ ॥

ଯା ଦେବୀ ସର୍ବଭୂତେଷୁ ଶ୍ରଦ୍ଧାରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୮ ॥

ଯା ଦେବୀ ସର୍ବଭୂତେଷୁ କାନ୍ତିରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥ ୧୯ ॥

---

ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା ତୃଷ୍ଣାରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୩
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା କ୍ଷମାରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୪
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା ଜାତିରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୫
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା ଲଜ୍ଜାରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୬
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା ଶାନ୍ତିରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୭
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା ଶ୍ରଦ୍ଧାରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୮
ଯେ ଦେବୀ ସର୍ବଭୂତେ ଆଛେ　। ବିରାଜମାନା କାନ୍ତିରୂପେ ॥
ବନତ ଶିରେ ବାରମ୍ବାର　। ତାହାରେ ଆମ୍ଭ ନମସ୍କାର ॥୧୯

ଯା ଦେବୀ ସର୍ବଭୂତେଷୁ ଲକ୍ଷ୍ମୀରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୦ ॥

ଯା ଦେବୀ ସର୍ବଭୂତେଷୁ ବୃତ୍ତିରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୧ ॥

ଯା ଦେବୀ ସର୍ବଭୂତେଷୁ ସ୍ମୃତିରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୨ ॥

ଯା ଦେବୀ ସର୍ବଭୂତେଷୁ ଦୟାରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୩ ॥

ଯା ଦେବୀ ସର୍ବଭୂତେଷୁ ତୁଷ୍ଟିରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୪ ॥

ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୫ ॥

ଯା ଦେବୀ ସର୍ବଭୂତେଷୁ ଭ୍ରାନ୍ତିରୂପେଣ ସଂସ୍ଥିତା ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୬ ॥

---

| | | |
|---|---|---|
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ଲକ୍ଷ୍ମୀରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୦ |
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ବୃତ୍ତିରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୧ |
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ସ୍ମୃତିରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୨ |
| ଯା ଦେବୀ ସର୍ବଭୂତେ ଅଛେ | । ବିରାଜମାନା ଦୟାରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୩ |
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ତୁଷ୍ଟିରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୪ |
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ମାତୃରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୫ |
| ଯେ ଦେବୀ ସର୍ବଭୂତେ ଅଛେ | । ବିରାଜମାନା ଭ୍ରାନ୍ତିରୂପେ | ॥ |
| ଅବନତ ଶିରେ ବାରମ୍ବାର | । ତାହ୍ୱାରେ ଅମ୍ଭ ନମସ୍କାର | ॥୨୬ |

ଇନ୍ଦ୍ରିୟାଣାମଧିଷ୍ଠାତ୍ରୀ ଭୂତାନାଂ ଚାଖିଳେଷୁ ଯା ।
ଭୂତେଷୁ ସତତଂ ତସ୍ୟୈ ବ୍ୟାପ୍ତିଦେବ୍ୟୈ ନମୋ ନମଃ ॥ ୨୭ ॥
ଚିତିରୂପେଣ ଯା କୃତ୍ସ୍ନମେତଦ୍ ବ୍ୟାପ୍ୟ ସ୍ଥିତା ଜଗତ୍ ।
ନମଃ ତସ୍ୟୈ ନମଃ ତସ୍ୟୈ ନମଃ ତସ୍ୟୈ ନମୋ ନମଃ ॥ ୨୮ ॥

ସ୍ତୁତା ସୁରୈଃ ପୂର୍ବମଭୀଷ୍ଟସଂଶ୍ରୟାତ୍
ତଥା ସୁରେନ୍ଦ୍ରେଣ ଦିନେଷୁ ସେବିତା ।
କରୋତୁ ସା ନଃ ଶୁଭହେତୁରୀଶ୍ୱରୀ
ଶୁଭାନି ଭଦ୍ରାଣ୍ୟଭିହନ୍ତୁ ଚାପଦଃ ॥ ୨୯ ॥
ଯା ସାମ୍ପ୍ରତଂ ଚୋଦ୍ଧତଦୈତ୍ୟତାପିତୈ-
ରସ୍ମାଭିରୀଶା ଚ ସୁରୈର୍ନମସ୍ୟତେ ।
ଯା ଚ ସ୍ମୃତା ତତ୍କ୍ଷଣମେବ ହନ୍ତି ନଃ
ସର୍ବାପଦୋ ଭକ୍ତିବିନମ୍ରମୂର୍ତ୍ତିଭିଃ ॥ ୩୦ ॥

ଇତି ଶ୍ରୀମାର୍କଣ୍ଡେୟପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ
ଦେବୀ ମାହାତ୍ମ୍ୟେ ଶ୍ରୀଦେବୀ-ସୂକ୍ତଂ ସଂପୂର୍ଣ୍ଣମ୍ ॥

---

ଯେ ସର୍ବ-ଜୀବ-ଇନ୍ଦ୍ରିୟଗଣେ । ବିରାଜେ ଅଧିଷ୍ଠାତ୍ରୀ ପଣେ ॥
ପୁଣ ଯେ ସର୍ବଭୂତେ ଆପେ । ବିରାଜେ ବ୍ୟାପ୍ତି ଦେବୀରୂପେ ॥
ବିନତ ଶିରେ, ବାରଂବାର । ତାହାରେ ଆମ୍ଭ ନମସ୍କାର ॥୨୭
ଚୈତନ୍ୟ ରୂପେ ଏ ଜଗତେ । ବ୍ୟାପ୍ତହୋଇ ଯେ ଓତପ୍ରୋତେ ॥
ବିରାଜେ ତାଙ୍କରେ ବାରଂବାର । ବିନତ ଶିରେ ନମସ୍କାର ॥୨୮
ଅଭୀଷ୍ଟ ପ୍ରାପ୍ତି ପାଇଁ ପୂର୍ବେ । ଯାହାରେ ସ୍ତୁତି କଲେ ଦେବେ ॥
ପୁଣ ବାସବ ସୁରଗଣ । ସେବିଲେ ଯାଙ୍କରେ ବହୁଦିନ ॥
ସେହୁ କଲ୍ୟାଣବୀଜରୂପା । ଈଶ୍ୱରୀ ହୁଏ ବହୁ କୃପା ॥
କରନ୍ତୁ ଆମ୍ଭର କଲ୍ୟାଣ । ଆବର ମଙ୍ଗଳ ବିଧାନ ॥୨୯
ଉଦ୍ଧତ ଦୈତ୍ୟେ ଉତ୍ପୀଡ଼ିତ । ଆମ୍ଭେ ଯେ ସକଳ ଦୈବତ ॥
ସଂପ୍ରତି ଯେଉଁ ଦେବୀଙ୍କର । ପଦେ କରୁଛୁ ନମସ୍କାର ॥
ଭକ୍ତିବିନମ୍ର ଜନେ ପୁଣ । ହୃଦୟେ କଲେ ସୁମରଣ ॥
ସକଳ ବିପଦ ତତ୍କ୍ଷଣ । ଯେ ଦେବୀ କରନ୍ତି ହରଣ ॥
ସେ ଜଗଦମ୍ବା ପରମେଶୀ । ନାଶନ୍ତୁ ଆମ୍ଭ ଦୁଃଖରାଶି ॥୩୦

# ଶ୍ରୀନାରାୟଣୀସ୍ତୁତିଃ

[ଶ୍ରୀ ଶ୍ରୀ ଚଣ୍ଡୀ--ଏକାଦଶୋଽଧ୍ୟାୟଃ]

ଧ୍ୟାନଂ-ଓଁ ବାଲରବିଦ୍ୟୁତିମିନ୍ଦୁକିରୀଟାଂ ତୁଙ୍ଗକୁଚାଂ ନୟନତ୍ରୟଯୁକ୍ତାମ୍ ।
ସ୍ମେରମୁଖୀଂ ବରଦାଙ୍କୁଶପାଶାଭୀତିକରାଂ ପ୍ରଭଜେ ଭୁବନେଶୀମ୍ ॥

ଦେବି ପ୍ରପନ୍ନାର୍ତ୍ତିହରେ ପ୍ରସୀଦ ପ୍ରସୀଦ ମାତର୍ଜଗତୋଽଖିଲସ୍ୟ ।
ପ୍ରସୀଦ ବିଶ୍ୱେଶ୍ୱରି ପାହି ବିଶ୍ୱଂ ତ୍ୱମୀଶ୍ୱରୀ ଦେବି ଚରାଚରସ୍ୟ ॥୧॥
ଆଧାରଭୂତା ଜଗତସ୍ତ୍ୱମେକା ମହୀସ୍ୱରୂପେଣ ଯତଃ ସ୍ଥିତାସି ।
ଅପାଂ ସ୍ୱରୂପସ୍ଥିତୟା ତ୍ୱୟୈତଦାପ୍ୟାୟତେ କୃତ୍ସ୍ନମଲଂଘ୍ୟବୀର୍ୟ୍ୟେ ॥୨॥
ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା ବିଶ୍ୱସ୍ୟ ବୀଜଂ ପରମାସି ମାୟା ।
ସଂମୋହିତଂ ଦେବି ସମସ୍ତମେତତ୍ ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତିହେତୁଃ ॥୩॥
ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ ।
ତ୍ୱୟୈକୟା ପୂରିତମମ୍ବୟୈତତ୍ କା ତେ ସ୍ତୁତିଃ ସ୍ତବ୍ୟପରା ପରୋକ୍ତିଃ ॥

---

ହେ ଦେବି ! ଆର୍ତ୍ତି-ଦଳନ- । କାରିଣି ! ହୁଅସି ପ୍ରସନ୍ନ ॥
ତୋହର ପ୍ରସାଦ ଗୋ ମାତ ! । ଲଭୁ ଏ ଅଖିଳ ଜଗତ ॥
ପ୍ରସନ୍ନା ହୁଅ ବିଶ୍ୱେଶ୍ୱରି । ପାଳ ଏ ବିଶ୍ୱ ରକ୍ଷାକରି ॥
ଏହି ଯେ ଚରାଚର ମହୀ । ତା' ଅଧୀଶ୍ୱରୀ ଦେବି ! ତୁହି ॥୧
ବିଶ୍ୱର ଏକମାତ୍ର ତୁହି । ଆଧାର ପୃଥ୍ୱୀ ରୂପେ ଥାଇ ॥
ଜଳ ରୂପେ ତୁ ହୋଇ ସ୍ଥିତ । କରୁ ଜଗତ ଆପ୍ୟାୟିତ ॥
ଦେବି ! ତୋ ବଳ ପରାକ୍ରମ । ଲଙ୍ଘନେ କେହୁ ନୋହେ କ୍ଷମ ॥୨
ଅନନ୍ତ ବିକ୍ରମା ବୈଷ୍ଣବୀ- । ଶକତି ଅଟୁ ତୁହି ଦେବି ! ॥
ବିଶ୍ୱର କାରଣ ରୂପିଣୀ । ପରମା ମାୟାଶକ୍ତି ପୁଣି ॥
ହେ ଦେବି ! ସକଳ ଜଗତ । ରଖିଛୁ କରି ସଂମୋହିତ ॥
ତୁହି ହୋଇଲେ ପରସନ୍ନା । ଭବେ ମୁକତି ମିଳେ ସିନା ॥୩
ତୋହର ରୂପ ଭିନ୍ନ ଭିନ୍ନ । ଅଟନ୍ତି ଦେବି ବିଦ୍ୟାମାନ ॥
ଜଗତେ ଛନ୍ତି ଯେତେ ନାରୀ । ସମସ୍ତେ ରୂପାନ୍ତର ତୋରି ॥
ବ୍ରହ୍ମାଣ୍ଡେ ତୁହି ଏକା ମାତ ! । ପୂରି ରହିଛୁ ଓତପ୍ରୋତ ॥
କରିବାକୁ ତୋ ଗୁଣ ଗାନ । କେବଣ ସ୍ତୁତି ବା ଭଜନ ? ॥
ସ୍ତୁତ୍ୟଙ୍କ ମଧ୍ୟେ ତୁ ଅଗ୍ରଣୀ । ଅବର ଅଟୁ ପରା ବାଣୀ ॥୪

ସର୍ବଭୂତା ଯଦା ଦେବୀ ସ୍ୱର୍ଗମୁକ୍ତି ପ୍ରଦାୟିନୀ ।
ତ୍ୱଂ ସ୍ତୁତା ସ୍ତୁତୟେ କା ବା ଭବନ୍ତୁ ପରମୋକ୍ତୟଃ ॥୫॥
ସର୍ବସ୍ୟ ବୁଦ୍ଧିରୂପେଣ ଜନସ୍ୟ ହୃଦି ସଂସ୍ଥିତେ ।
ସ୍ୱର୍ଗାପବର୍ଗଦେ ଦେବି ନାରାୟଣି ନମୋଽସ୍ତୁ ତେ ॥୬॥
କଳାକାଷ୍ଠାଦିରୂପେଣ ପରିଣାମ ପ୍ରଦାୟିନି ।
ବିଶ୍ୱସ୍ୟୋପରତୌ ଶକ୍ତେ ନାରାୟଣି ନମୋଽସ୍ତୁ ତେ ॥୭॥
ସର୍ବମଙ୍ଗଳମାଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥୮॥
ସୃଷ୍ଟିସ୍ଥିତିବିନାଶାନାଂ ଶକ୍ତିଭୂତେ ସନାତନି ।
ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁ ତେ ॥୯॥
ଶରଣାଗତଦୀନାର୍ତ୍ତ ପରିତ୍ରାଣ ପରାୟଣେ ।
ସର୍ବସ୍ୟାର୍ତ୍ତିହରେ ଦେବି ନାରାୟଣି ନମୋଽସ୍ତୁତେ ॥୧୦॥
ହଂସଯୁକ୍ତବିମାନସ୍ଥେ ବ୍ରହ୍ମାଣୀରୂପଧାରିଣି ।
କୌଶାମ୍ଭଃକ୍ଷରିକେ ଦେବି ନାରାୟଣି ନମୋଽସ୍ତୁତେ ॥୧୧॥

---

ତୁ ଦେବି ସର୍ବଭୂତାତ୍ମିକା । ସ୍ୱର୍ଗ-ମୁକତି-ପ୍ରଦାୟିକା ॥
ବୋଲିବା ମାତ୍ରେ ଏହି କଥା । ତୋ ସ୍ତୁତି ହୋଇଲା ସର୍ବଥା ॥
ତୋ ସ୍ତୁତି ପାଇଁ ଏହା ତନ୍ତୁଁ । ଶ୍ରେଷ୍ଠ ଉକ୍ତି ବା ଅଛି କାହୁଁ ॥୫
ସକଳ ଜନ ହୃଦନ୍ତରେ । ବିରାଜ ବୁଦ୍ଧି ସ୍ୱରୂପରେ ॥
ତୁ ସ୍ୱର୍ଗ-ମୋକ୍ଷ-ପ୍ରଦାୟିନୀ । ନମସ୍ତେ ଦେବୀ ନାରାୟଣୀ ॥୬
ତୁ କଳା କାଷ୍ଠା ଆଦି ରୂପେ । ଘଟାଉ ପରିଣାମ ଆପେ ॥
ବିଶ୍ୱର ସଂହାର କାରିଣୀ । ନମସ୍ତେ ଦେବୀ ନାରାୟଣୀ ॥୭
ସର୍ବ-ମଙ୍ଗଳ-ପ୍ରଦାୟିନୀ । ମଙ୍ଗଳମୟୀ ଶିବା ପୁଣି ॥
ସକଳ-ପୁରୁଷାର୍ଥ-ସିଦ୍ଧି- । କରଣେ ତୋହର ପ୍ରସିଦ୍ଧି ॥
ଶରଣପ୍ରଦା ତ୍ରିନୟନୀ । ନମସ୍ତେ ଗୌରୀ ନାରାୟଣୀ ॥୮
ସର୍ଜ୍ଜନ-ସ୍ଥିତ୍ୟନ୍ତ-କାରିଣୀ । ଶକତିଭୂତା ସନାତନୀ ॥
ତ୍ରିଗୁଣାଶ୍ରୟା ଗୁଣ-ମଣି । ନମସ୍ତେ ଦେବୀ ନାରାୟଣୀ ॥୯
ପ୍ରପନ୍ନ-ଦୀନ-ଆର୍ତ୍ତ-ଜନ । ରକ୍ଷଣେ ତୁହି ବିଚକ୍ଷଣ ॥
ସକଳ-ପୀଡ଼ା-ନିବାରିଣୀ । ନମସ୍ତେ ଦେବୀ ନାରାୟଣୀ ॥୧୦
ହଂସ-ସଂଯୁକ୍ତ-ରଥାସନ । ବ୍ରହ୍ମାଣୀ ସ୍ୱରୂପ ଧାରିଣୀ ॥
କୁଶାମ୍ବୁ-ସିଞ୍ଚନ-କାରିଣୀ । ନମସ୍ତେ ଦେବୀ ନାରାୟଣୀ ॥୧୧

ତ୍ରିଶୂଳଚନ୍ଦ୍ରାହିଧରେ ମହାବୃଷଭବାହିନି ।
ମାହେଶ୍ୱରୀ ସ୍ୱରୂପେଣ ନାରାୟଣି ନମୋଽସ୍ତୁ ତେ ॥ ୧୨ ॥
ମୟୂର କୁକ୍କୁଟବୃତେ ମହାଶକ୍ତିଧରେଽନଘେ ।
କୌମାରୀରୂପସଂସ୍ଥାନେ ନାରାୟଣି ନମୋଽସ୍ତୁ ତେ ॥ ୧୩ ॥
ଶଙ୍ଖଚକ୍ର ଗଦାଶାର୍ଙ୍ଗ ଗୃହୀତପରମାୟୁଧେ ।
ପ୍ରସୀଦ ବୈଷ୍ଣବୀରୂପେ ନାରାୟଣି ନମୋଽସ୍ତୁ ତେ ॥ ୧୪ ॥
ଗୃହୀତୋଗ୍ରମହାଚକ୍ରେ ଦଂଷ୍ଟ୍ରୋଦ୍ଧୃତବସୁନ୍ଧରେ ।
ବରାହରୂପିଣି ଶିବେ ନାରାୟଣି ନମୋଽସ୍ତୁ ତେ ॥ ୧୫ ॥
ନୃସିଂହରୂପେଣୋଗ୍ରେଣ ହନ୍ତୁଂ ଦୈତ୍ୟାନ୍ କୃତୋଦ୍ୟମେ ।
ତ୍ରୈଲୋକ୍ୟତ୍ରାଣସହିତେ ନାରାୟଣି ନମୋଽସ୍ତୁ ତେ ॥ ୧୬ ॥
କିରୀଟିନି ମହାବଜ୍ରେ ସହସ୍ରନୟନୋଜ୍ଜ୍ୱଳେ ।
ବୃତ୍ରପ୍ରାଣହରେ ଚୈନ୍ଦ୍ରି ନାରାୟଣି ନମୋଽସ୍ତୁ ତେ ॥ ୧୭ ॥
ଶିବଦୂତୀସ୍ୱରୂପେଣ ହତଦୈତ୍ୟ ମହାବଳେ ।
ଘୋରରୂପେ ମହାରାବେ ନାରାୟଣି ନମୋଽସ୍ତୁତେ ॥ ୧୮ ॥

---

ତ୍ରିଶୂଳ-ଚନ୍ଦ୍ରାହି-ଧାରିଣୀ । ବିଶାଳ-ବୃଷଭ-ବାହିନୀ ॥
ତୁ ମାହେଶ୍ୱରୀ-ସ୍ୱରୂପିଣୀ । ନମସ୍ତେ ଦେବୀ ନାରାୟଣୀ ॥୧୨
କେକୀ-କୁକ୍କୁଟ ପରିବୃତା । ନିଷ୍ପାପା ମହାଶକ୍ତିଧୃତା ॥
କୌମାରୀ ରୂପ-ସଂଧାରିଣୀ । ନମସ୍ତେ ଦେବୀ ନାରାୟଣୀ ॥୧୩
ଶାରଙ୍ଗ-ଶରାସନ, ଚକ୍ର, । ରଥ ଚରଣ, ଗଦା ବର ॥
ଆୟୁଧମାନ କରେ ଘେନି । ତୁ ହି ବୈଷ୍ଣବୀ-ସ୍ୱରୂପିଣୀ ॥
ପ୍ରସନ୍ନ ହୁଅସି ଜନନୀ ! । ନମସ୍ତେ ଦେବୀ ନାରାୟଣୀ ॥୧୪
ଅତ୍ୟୁଗ୍ର ମହାଚକ୍ର ଧରି । ଦନ୍ତାଗ୍ରେ ତୋଳି ବସୁନ୍ଧରୀ ॥
ବରାହ ରୂପିଣୀ କଲ୍ୟାଣୀ । ନମସ୍ତେ ଦେବୀ ନାରାୟଣୀ ॥୧୫
ଉଗ୍ର-ନୃସିଂହ-ରୂପ-ଧୃତା । ଦୈତ୍ୟ-ବଧନୋଦ୍ୟମ-କୃତା ॥
ତ୍ରୈଲୋକ୍ୟ-ତାରଣ କାରିଣୀ । ନମସ୍ତେ ଦେବୀ ନାରାୟଣୀ ॥୧୬
କିରୀଟ-ସୁଶୋଭିତ-ଶିର । ମହା କୁଳିଶ-ଧୃତ-କର ॥
ସହସ୍ର ନେତ୍ର-ଉଜ୍ଜ୍ୱଳନ୍ନ । ବୃତ୍ର-ପରାଣ-ବଧାଢନ୍ନ ॥
ଏମନ୍ତ ରୂପେ ଇନ୍ଦ୍ରାଣୀ । ନମସ୍ତେ ଦେବୀ ନାରାୟଣୀ ॥୧୭
ଶିବଦୂତୀଙ୍କ ରୂପେ ଦୈତ୍ୟ । ମହାସେନାକୁ କଲୁ ହତ ॥
ଘୋର ରୂପିଣୀ ଚଣ୍ଡ ଧ୍ୱନି । ନମସ୍ତେ ଦେବୀ ନାରାୟଣୀ ॥୧୮

ଦଂଷ୍ଟ୍ରାକରାଳବଦନେ ଶିରୋମାଳାବିଭୂଷଣେ ।
ଚାମୁଣ୍ଡେ ମୁଣ୍ଡମଥନେ ନାରାୟଣି ନମୋଽସ୍ତୁ ତେ ॥ ୧୯ ॥
ଲକ୍ଷ୍ମୀ ଲଜ୍ଜେ ମହାବିଦ୍ୟେ ଶ୍ରଦ୍ଧେ ପୁଷ୍ଟି-ସ୍ୱଧେ ଧ୍ରୁବେ ।
ମହାରାତ୍ରି ମହାବିଦ୍ୟେ ନାରାୟଣି ନମୋଽସ୍ତୁ ତେ ॥ ୨୦ ॥
ମେଧେ ସରସ୍ୱତି ବରେ ଭୂତି ବାଭ୍ରବି ତାମସି ।
ନିୟତେ ତ୍ୱଂ ପ୍ରସୀଦେଶେ ନାରାୟଣି ନମୋଽସ୍ତୁ ତେ ॥ ୨୧ ।
ସର୍ବ ସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ ॥ ୨୨ ॥
ଏତତ୍ତେ ବଦନଂ ସୌମ୍ୟ ଲୋଚନତ୍ରୟଭୂଷିତମ୍ ।
ପାତୁ ନଃ ସର୍ବଭୀତିଭ୍ୟଃ କାତ୍ୟାୟନି ନମୋଽସ୍ତୁ ତେ ॥ ୨୩ ॥
ଜ୍ୱାଳାକରାଳମତ୍ୟୁଗ୍ରମଶେଷାସୁରସୂଦନମ୍ ।
ତ୍ରିଶୂଳଂ ପାତୁ ନୋ ଭୀତେର୍ଭଦ୍ରକାଳି ନମୋଽସ୍ତୁ ତେ ॥ ୨୪ ॥

---

ଦଂଷ୍ଟ୍ରାଳିକରାଳ-ବଦନା । ନୃମୁଣ୍ଡ-ମାଳ-ବିଭୂଷଣା ॥
ଚାମୁଣ୍ଡେ ! ମୁଣ୍ଡ-ବିମର୍ଦ୍ଦିନୀ । ନମସ୍ତେ ଦେବୀ ନାରାୟଣୀ ॥୧୯
ଲକ୍ଷ୍ମୀରୂପିଣୀ, ଲଜ୍ଜା ଶ୍ରଦ୍ଧା । ତୁ ପୁଷ୍ଟି ସ୍ୱରୂପିଣୀ, ସ୍ୱଧା ॥
ତୁ ମହାବିଦ୍ୟା, ମହାରାତ୍ରି । ନିତ୍ୟସ୍ୱରୂପା; ଜଗଦ୍ଧାତ୍ରୀ ॥
ମହା ଅବିଦ୍ୟା-ସ୍ୱରୂପିଣୀ । ନମସ୍ତେ ଦେବୀ ନାରାୟଣୀ ॥୨୦
ମେଧାରୂପିଣୀ ସରସ୍ୱତୀ । ପ୍ରଧାନା ବାଭ୍ରବୀ ବିଭୂତି ॥
ସର୍ବାଧୀଶ୍ୱରୀ ତମୋଗୁଣା । କାଳିକେ ! ହୁଅସି ପ୍ରସନ୍ନା ॥
ତୁ ଯେ ସଂଯମପରାୟଣୀ । ନମସ୍ତେ ଦେବୀ ନାରାୟଣୀ ॥୨୧
ସକଳ ସ୍ୱରୂପ ତୋହର । ସର୍ବନିୟନ୍ତ୍ରୀ ସର୍ବେଶ୍ୱରୀ ॥
ସର୍ବ-ଶକତି-ସମନ୍ୱିତେ ! । ହେ ଦୁର୍ଗେ ! ଦେବି ! ନମୋଽସ୍ତୁତେ ॥
ଦିବ୍ୟ ତେଜରେ ଯୁକ୍ତା ତୁହି । ଭୟୁ ଆମ୍ଭଙ୍କୁ କର ତ୍ରାହି ॥୨୨
ତୋହର ସୌମ୍ୟ ବଦନ ଏ । ବିଭୂଷିତ ଯା ନେତ୍ର-ତ୍ରୟେ ॥
ରଖନ୍ତୁ ଭୟରୁ ଆମ୍ଭରେ । ପ୍ରଣାମ କାତ୍ୟାୟନି ! ତୋରେ ॥୨୩
ଜ୍ୱାଳାମାଳାରେ ବିକରାଳ । ଅତ୍ୟୁଗ୍ର ଅବର ଅଖିଳ- ॥
ଅସୁର-ବିନାଶନକାରୀ । କରନ୍ତୁ ତ୍ରିଶୂଳ ତୋହର ॥
ରଖନ୍ତୁ ଭୟରୁ ଆମ୍ଭରେ । ପ୍ରଣାମ ଭଦ୍ରକାଳି ! ତୋରେ ॥୨୪

ହିନସ୍ତି ଦୈତ୍ୟତେଜାଂସି ସ୍ୱନେନାପୂର୍ଯ୍ୟ ଯା ଜଗତ୍ ।
ସା ଘଣ୍ଟା ପାତୁ ନୋ ଦେବ ପାପେଭ୍ୟୋଽନଃ ସୁତାନିବ ।। ୨୫ ।।
ଅସୁରାସୃଗ୍‌ବସାପଙ୍କଚର୍ଚ୍ଚିତସ୍ତେ କରୋଜ୍ଜ୍ୱଳଃ ।
ଶୁଭାୟ ଖଡ୍‌ଗୋ ଭବତୁ ଚଣ୍ଡିକେ ତ୍ୱାଂ ନତା ବୟମ୍ ।। ୨୬ ।।
ରୋଗାନଶେଷାନପହଂସି ତୁଷ୍ଟା ରୁଷ୍ଟା ତୁ କାମାନ୍ ସକଳାନଭୀଷ୍ଟାନ୍ ।
ତ୍ୱାମାଶ୍ରିତାନାଂ ନ ବିପନ୍ନରାଣାଂ ତ୍ୱାମାଶ୍ରିତା ହ୍ୟାଶ୍ରୟତାଂ ପ୍ରୟାନ୍ତି ।।୨୭
ଏତତ୍ କୃତଂ ଯତ୍ କଦନଂ ତ୍ୱୟାଦ୍ୟ ଧର୍ମଦ୍ୱିଷାଂ ଦେବ ମହାସୁରାଣାମ୍ ।
ରୂପୈରନେକୈର୍ବହୁଧାତ୍ମମୂର୍ତ୍ତିଂ କୃତ୍ୱାମ୍ବିକେ ତତ୍ପ୍ରକରୋତି କାନ୍ୟା ।। ୨୮ ।।
ବିଦ୍ୟାସୁ ଶାସ୍ତ୍ରେଷୁ ବିବେକଦୀପେଷ୍ୱାଦ୍ୟେଷୁ ବାକ୍ୟେଷୁ ଚ କା ତ୍ୱଦନ୍ୟା ।
ମମତ୍ୱଗର୍ତ୍ତେଽତିମହାନ୍ଧକାରେ ବିଭ୍ରାମୟତ୍ୟେତଦତୀବ ବିଶ୍ୱମ୍ ।। ୨୯ ।
ରକ୍ଷାଂସି ଯତ୍ରୋଗ୍ରବିଷାଶ୍ଚ ନାଗା ଯତ୍ରାରୟୋ ଦସ୍ୟୁବଳାନି ଯତ୍ର ।
ଦାବାନଳୋ ଯତ୍ର ତଥାବ୍ଧିମଧ୍ୟେ ତତ୍ର ସ୍ଥିତା ତ୍ୱଂ ପରିପାସି ବିଶ୍ୱମ୍ ।।୩୦

---

ଯାହାର ଭୟାନକ ସ୍ୱନ । ଜଗତେ ହୋଇ ସମ୍ପୂର୍ଣ୍ଣ ।।
ଦୈତ୍ୟଗଣଙ୍କ ତେଜୋବଳ । ବିନାଶକରଣେ କୁଶଳ ।।
ତୋର ସେ ଘଣ୍ଟା ରକ୍ଷା କରୁ । ଆମ୍ଭଙ୍କୁ ସକଳ ପାପରୁ ।।
ତୁଷ୍ଟମୁଁ ଜନନୀ ଯେସନେ । ରକ୍ଷା କରଇ ତା' ସନ୍ତାନେ ।।୨୫
ଅସୁର-ରକ୍ତ ମେଦେ ଲିପ୍ତ । ଯେ ଖଡ୍‌ଗ ତୋର କରେ ଦୀପ୍ତ ।।
ସେ କରୁ ମଙ୍ଗଳ ବିଧାନ । ଚଣ୍ଡିକେ ଆମ୍ଭ ନତ ଘେନ ।।୨୬
ଯଦି ତୁ ମାତ ! ହୋଇ ତୁଷ୍ଟ । ଖଣ୍ଡ ଅଶେଷ ରୋଗ କଷ୍ଟ ।।
ମନୋବାଞ୍ଛିତ ସର୍ବାଭୀଷ୍ଟ । ନଷ୍ଟ କରୁ ତୁ ହେଲେ ରୁଷ୍ଟ ।।
ତୋର ଆଶ୍ରିତ ଯେଉଁ ନର । ନ ରହେ ବିପଦ ତାହାର ।।
ତୋର ଶରଣାଗତ ଜନ । ଆନେ ଶରଣ କରେ ଦାନ ।।୨୭
ଆପଣା ମୂରତି ବହୁତ । ବିସ୍ତରେ କରି ବିଭକତ ।।
ଅନେକ ରୂପେ ଧର୍ମଦ୍ରୋହୀ । ଦୈତ୍ୟଙ୍କୁ ବର୍ତ୍ତମାନ ତୁହି ।।
ସଂହାର କଲୁ ଯା ଅମ୍ବିକେ ! । ତା' କରି ପାରଇ ଆନ କେ ? ।।୨୮
ସକଳ ବିଦ୍ୟା ଶାସ୍ତ୍ର ପୁଣି । ଋଗାଦି ବେଦ ଆଦିବାଣୀ ।।
ପରସ୍ତେ ଜ୍ଞାନ-ଦୀପ ଥାଉଁ । ତୋ ବିନୁ କହ କିଏ ଆଉ ।।
ଅତି ନିବିଡ ଅନ୍ଧକାର । ପୂରିତ ମମତା ଗହ୍ୱର- ।।
ଗର୍ଭେ ଏ ସକଳ ଜଗତ । ଭ୍ରମେ ଭ୍ରମାଏ ଅବିରତ ? ।।୨୯
ରାକ୍ଷସ, ଉଗ୍ର ବିଷଧର । ସର୍ପ, ଅରି, ଦସ୍ୟୁବଳ ।।

ବିଶ୍ୱେଶ୍ୱରି ତ୍ୱଂ ପରିପାସି ବିଶ୍ୱଂ ବିଶ୍ୱାତ୍ମିକା ଧାରୟସୀତି ବିଶ୍ୱମ୍ ।
ବିଶ୍ୱେଶବନ୍ଦ୍ୟା ଭବତୀ ଭବନ୍ତି ବିଶ୍ୱାଶ୍ରୟା ଯେ ତ୍ୱୟି ଭକ୍ତିନମ୍ରାଃ ॥ ୩୧ ॥
ଦେବି ପ୍ରସୀଦ ପରିପାଳୟ ନୋଽରିଭୀତେ-
ର୍ନିତ୍ୟଂ ଯଥାସୁରବଧାଦଧୁନୈବ ସଦ୍ୟଃ ।
ପାପାନି ସର୍ବଜଗତାଂ ପ୍ରଶମଂ ନୟାଶୁ
ଉତ୍ପାତପାକଜନିତାଂଶ୍ଚ ମହୋପସର୍ଗାନ୍ ॥ ୩୨ ॥
ପ୍ରଣତାନାଂ ପ୍ରସୀଦ ତ୍ୱଂ ଦେବି ବିଶ୍ୱାର୍ତ୍ତିହାରିଣି ।
ତ୍ରୈଲୋକ୍ୟବାସିନାମୀଡ୍ୟେ ଲୋକାନାଂ ବରଦା ଭବ ॥ ୩୩ ॥

(ଫଳଶ୍ରୁତିଂ) ଶ୍ରୀଦେବ୍ୟୁବାଚ —

ବରଦାହଂ ସୁରଗଣା ବରଂ ଯନ୍ମନସେଚ୍ଛଥ
ତଂ ବୃଣୁଧ୍ୱଂ ପ୍ରୟଚ୍ଛାମି ଜଗତାମୁପକାରକମ୍ ॥

— ଦେବା ଊଚୁଃ —

ସର୍ବାବାଧା-ପ୍ରଶମନଂ ତ୍ରୈଲୋକ୍ୟସ୍ୟାଖିଳେଶ୍ୱରି ।
ଏବମେବ ତ୍ୱୟା କାର୍ଯ୍ୟମସ୍ମଦ୍ୱୈରିବିନାଶନମ୍ ॥

ଇତି ଶ୍ରୀମାର୍କଣ୍ଡେୟ ପୁରାଣେ ସାବର୍ଣ୍ଣିକେ ମନ୍ୱନ୍ତରେ
ଦେବୀ ମାହାତ୍ମ୍ୟେ ଶ୍ରୀ ନାରାୟଣୀସ୍ତୁତିଃ ସମାପ୍ତା ॥

---

ଦାବ-ଅନଳ ମଧ୍ୟେ ମଧ୍ୟେ । ତଥା ସାଗର ମଧ୍ୟେ ଥାଇ ॥
ଏ ବିଶ୍ୱ ବ୍ରହ୍ମାଣ୍ଡ ତୁହିତ । ପରିପାଳନ କରୁ ମାତ ॥ ୩୦
ଯେଣୁ ତୁ ବିଶ୍ୱର ଈଶ୍ୱରୀ । ପାଳୁ ବିଶ୍ୱକୁ ରକ୍ଷା କରି ॥
ବିଶ୍ୱ ସ୍ୱରୂପା ବୋଲି କରି । ବିଶ୍ୱକୁ ତୁହି ଅଛୁ ଧରି ॥
ବିଶ୍ୱେଶ-ବନ୍ଦନୀୟା ତୁହି । ଯେ ଭକ୍ତ ଭବରେ ନମ୍ର ହୋଇ ॥
କରଇ ବନ୍ଦନ ତୋହର । ଆଶ୍ରୟ ହୋଏ ସେ ବିଶ୍ୱର ॥ ୩୧
ଆମ୍ଭମାନଙ୍କ ଠାରେ ପୁଣ । ହେ ଦେବି ! ତୁହି ପ୍ରସନ୍ନ ॥
ଯେମନ୍ତ ଦୈତ୍ୟ ମାରି ଏବେ । ଆମ୍ଭଙ୍କୁ ରକ୍ଷା କଲୁ ଜବେ ॥
ତେମନ୍ତ ଶତ୍ରୁ ଭୟୁଁ ମାତ ! । ଉଦ୍ଧାର କରୁଥାଅ ନିତ୍ୟ ॥
ସମସ୍ତ-ଜଗତ-ଦୁରିତ । ପୁଣ ଉତ୍ପାତ-ପାପ ଜାତ- ॥
ପ୍ରବଳ ଉପଦ୍ରବ ମାନ । କର ମା ଆଶୁ ପ୍ରଶମନ ॥ ୩୨
ପ୍ରଣତ ଜନେ ସୁପ୍ରସନ୍ନା । ତୁହିଅଟି ବିଶ୍ୱାର୍ତ୍ତି ହରଣା ॥
ସକଳେ ବର ଦିଅ ଦୟା । କର ତ୍ରୈଲୋକ୍ୟ ବନ୍ଦନୀୟା ॥ ୩୩

# ଦେବ୍ୟପରାଧକ୍ଷମାପଣସ୍ତୋତ୍ରମ୍

ନ ମନ୍ତ୍ରଂ ନୋ ଯନ୍ତ୍ରଂ ତଦପି ଚ ନ ଜାନେ ସ୍ତୁତିମହୋ
ନ ଚାହ୍ୱାନଂ ଧ୍ୟାନଂ ତଦପି ଚ ନ ଜାନେ ସ୍ତୁତିକଥାଃ ।
ନ ଜାନେ ମୁଦ୍ରାସ୍ତେ ତଦପି ଚ ନ ଜାନେ ବିଲପନଂ
ପରଂ ଜାନେ ମାତସ୍ତ୍ୱଦନୁସରଣଂ କ୍ଲେଶହରଣମ୍ ॥ ୧ ॥
ବିଧେରଜ୍ଞାନେନ ଦ୍ରବିଣବିରହେଣାଲସତୟା
ବିଧେୟାଶକ୍ୟତ୍ୱାତ୍ତବ ଚରଣୟୋର୍ଯା ଚ୍ୟୁତିରଭୂତ୍ ।
ତଦେତତ୍ କ୍ଷନ୍ତବ୍ୟଂ ଜନନି ସକଲୋଦ୍ଧାରିଣି ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୨ ॥
ପୃଥିବ୍ୟାଂ ପୁତ୍ରାସ୍ତେ ଜନନି ବହବଃ ସନ୍ତି ସରଳାଃ
ପରଂ ତେଷାଂ ମଧ୍ୟେ ବିରଳତରଳୋଽହଂ ତବ ସୁତଃ ।
ମଦୀୟୋଽୟଂ ତ୍ୟାଗଃ ସମୁଚିତମିଦଂ ନୋ ତବ ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୩ ॥

---

ଅହୋ, ମୁଁ ମନ୍ତ୍ର ଯନ୍ତ୍ର ଜାଣେ ନାହିଁ । ଏପରିକି ସ୍ତୁତି ମଧ୍ୟ ଜାଣେ ନାହିଁ; ଆବାହନ ଏବଂ ଧ୍ୟାନ ଜାଣେ ନାହିଁ, କିପରି ସ୍ତୁତିବାଦ କରିବାକୁ ହୁଏ ତାହା ମଧ୍ୟ ଜାଣେ ନାହିଁ, ତୁମର ମୁଦ୍ରା ଜାଣେ ନାହିଁ କି ବିଳାପକରି କାତରତା କିପରି ପ୍ରକାଶ କରିବାକୁ ହୁଏ ତା' ବି ଜାଣେ ନାହିଁ; କିନ୍ତୁ ମାଆ ଏତିକି ମୁଁ ଜାଣେ ଯେ ତୁମକୁ ଅନୁସରଣ କଲେ ଦୁଃଖ ନାଶ ହୁଏ । ୧ ।

ଶାସ୍ତ୍ରୀୟ ବିଧିରେ ଅଜ୍ଞାନତା, ନିର୍ଧନତା, ଆଳସ୍ୟ ଓ କର୍ତ୍ତବ୍ୟାନୁଷ୍ଠାନରେ ଅକ୍ଷମତାଜନିତ ହେତୁ ତୁମର ଚରଣ ଯୁଗଳରେ ଯେଉଁ ତ୍ରୁଟି ହୋଇଅଛି, ହେ ଜନନୀ, ହେ ସକଳୋଦ୍ଧାରିଣୀ, ହେ ଶିବେ, ସେ ସମସ୍ତ କ୍ଷମା କର । କୁପୁତ୍ର ହୁଏତ ଜନ୍ମ ହୋଇପାରେ; ମାତ୍ର କୁମାତା କେବେହେଲେ କେଉଁଠି ହୋଇ ନ ପାରେ । ୨ ।

ହେ ଜନନୀ, ପୃଥିବୀରେ ତୁମର ବହୁତ ସରଳ ହୃଦୟ ସନ୍ତାନ ଅଛନ୍ତି; କିନ୍ତୁ ସେମାନଙ୍କ ମଧ୍ୟରେ ମୁଁ ତୁମର ଅତି ଅସ୍ଥିରଚିତ୍ତ ପୁତ୍ର । ମୋ ପକ୍ଷରେ ତୁମକୁ ଏହିଭଳି ତ୍ୟାଗ କରିବା ସ୍ୱାଭାବିକ ଅଟେ । ମାତ୍ର ତୁମ ପକ୍ଷରେ ତାହା ଉଚିତ ନୁହେଁ । କୁପୁତ୍ର ହୁଏତ ଜନ୍ମ ହୋଇପାରେ କିନ୍ତୁ କେଉଁଠି କୁମାତା କେବେହେଲେ ହୁଏ ନାହିଁ । ୩ ।

ଜଗନ୍ମାତର୍ମାତସ୍ତବ ଚରଣସେବା ନ ରଚିତା
ନ ବା ଦତ୍ତଂ ଦେବି ଦ୍ରବିଣମପି ଭୂୟସ୍ତବ ମୟା ।
ତଥାପି ତ୍ୱଂ ସ୍ନେହଂ ମୟି ନିରୁପମଂ ଯତ୍ ପ୍ରକୁରୁଷେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ॥ ୪ ॥
ପରିତ୍ୟକ୍ତା ଦେବା ବିବିଧବିଧିସେବାକୁଳତୟା
ମୟା ନିତ୍ୟଂ ନାନାବିଷୟସୁଖସକ୍ତେ ତୁ ବୟସି ।
ଇଦାନୀଂ ଚେନ୍ମାତସ୍ତବ ଯଦି କୃପା ନାପି ଭବିତା
ନିରାଲମ୍ବୋ ଲମ୍ବୋଦର-ଜନନି କଂ ଯାମି ଶରଣମ୍ ॥ ୫ ॥
ଶ୍ୱପାକୋ ଜଲ୍ପାକୋ ଭବତି ମଧୁପାକୋପମଗିରା
ନିରାତଙ୍କୋ ରଙ୍କୋ ବିହରତି ଚିରଂ କୋଟିକନକୈଃ ।
ତବାର୍ପଣେ କର୍ଣ୍ଣେ ବିଶତି ମନୁବର୍ଣ୍ଣେ ଫଳମିଦଂ
ଜନଃ କୋ ଜାନୀତେ ଜନନି ଜପନୀୟଂ ଜପବିଧୌ ॥ ୬ ॥
ଚିତାଭସ୍ମାଲେପୋ ଗରଳମଶନଂ ଦିକ୍‌ପଟଧରୋ
ଜଟାଧାରୀ କଣ୍ଠେ ଭୁଜଗପତିହାରୀ ପଶୁପତିଃ ।

---

ହେ ଜଗଜ୍ଜନନି, ହେ ମା, ମୋ ଦ୍ୱାରା ତୁମ ଚରଣ ସେବା ହୋଇ ନାହିଁ । ଅବା ହେ ଦେବି, ମୁଁ ତୁମକୁ ପ୍ରଚୁର ଧନରତ୍ନ ମଧ୍ୟ ପ୍ରଦାନ କରିନାହିଁ । ତଥାପି ତୁମେ ମୋ ପ୍ରତି ଅନୁପମ ସ୍ନେହ ପ୍ରକାଶ କରୁଅଛ । କୁପୁତ୍ର ହୁଏତ ଜନ୍ମ ହୋଇପାରେ ମାତ୍ର କୁମାତା କେବେହେଲେ ହୋଇ ନ ପାରେ । ୪ ।

ବହୁପ୍ରକାର ଅସ୍ଥିର ଏବଂ ସେବାବିଧିରେ ବ୍ୟସ୍ତ ଥାଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ମୁଁ ଦେବଗଣଙ୍କୁ ତ୍ୟାଗ କରିଅଛି । କିନ୍ତୁ ବର୍ତ୍ତମାନ ବୟୋଧିକ୍ୟରେ ମଧ୍ୟ ନିତ୍ୟ ନାନା ବିଷୟସୁଖରେ ଆସକ୍ତ ହୋଇଅଛି । ହେ ମା, ଏବେ ମଧ୍ୟ ଯଦି ମୋ ପ୍ରତି ତୁମର କୃପା ନ ହୁଏ ତେବେ ହେ ଗଣେଶଜନନି, ଆଶ୍ରୟହୀନ ମୁଁ କାହା ପାଖରେ ଶରଣ ପଶିବି ? । ୫ ।

କୁକୁରଭୋଜୀ ଚଣ୍ଡାଳ ମଧ୍ୟ ମଧୁପାକ ଫଳ ସଦୃଶ ବହୁ ସୁମିଷ୍ଟ ବାକ୍ୟ କହୁଥାଏ । ନିଃସ୍ୱ ବ୍ୟକ୍ତି କୋଟିସୁବର୍ଣ୍ଣାଧିକାରୀ ହୋଇ ଚିର ସମୟ ନିର୍ଭୟରେ ବିହାର କରେ – ହେ ଅପର୍ଣ୍ଣେ ତୁମର ମନ୍ତ୍ରାକ୍ଷର କାନରେ ପ୍ରବେଶ କଲେ ହିଁ ଏହିଭଳି ଫଳ ହୁଏ । ଜପ କଲେ ଯେ କି ଫଳ ହୁଏ ତାହା କିଏ କହିପାରିବ ? । ୬ ।

କପାଳୀ ଭୂତେଶୋ ଭଜତି ଜଗଦୀଶୈକପଦବୀଂ
ଭବାନି ତ୍ୱତ୍ପାଣିଗ୍ରହଣପରିପାଟୀଫଳମିଦମ୍ ॥ ୭ ॥
ନ ମୋକ୍ଷସ୍ୟାକାଙ୍କ୍ଷା ନ ଚ ବିଭବବାଞ୍ଛାପି ଚ ନ ମେ
ନ ବିଜ୍ଞାନାପେକ୍ଷା ଶଶିମୁଖି ସୁଖେଚ୍ଛାପି ନ ପୁନଃ ।
ଅତସ୍ତ୍ୱାଂ ସଂଯାଚେ ଜନନି ଜନନଂ ଯାତୁ ମମ ବୈ
ମୃଡାନୀ ରୁଦ୍ରାଣୀ ଶିବ ଶିବ ଭବାନୀତି ଜପତଃ ॥ ୮ ॥
ନାରାଧିତାସି ବିଧିନା ବିବିଧୋପଚାରୈଃ
କିଂ ରୁକ୍ଷଚିନ୍ତନପରୈର୍ନ କୃତଂ ବଚୋଭିଃ ।
ଶ୍ୟାମେ ତ୍ୱମେବ ଯଦି କିଞ୍ଚନ ମୟ୍ୟନାଥେ
ଧତ୍ସେ କୃପାମୁଚିତମମ୍ବ ପରଂ ତବୈବ ॥ ୯ ॥
ଆପତ୍ସୁ ମଗ୍ନଃ ସ୍ମରଣଂ ତ୍ୱଦୀୟଂ କରୋମି ଦୁର୍ଗେ କରୁଣାର୍ଣ୍ଣବେଶି ।
ନୈତଚ୍ଛଠତ୍ୱଂ ମମ ଭାବୟେଥାଃ କ୍ଷୁଧା-ତୃଷାର୍ତ୍ତା ଜନନୀଂ ସ୍ମରନ୍ତି ॥ ୧୦

---

ବିଷଭୋଜୀ, ଶ୍ମଶାନଭସ୍ମରେ ଭୂଷିତ, ଦିଗମ୍ବର, ଜଟାଧାରୀ, କଣ୍ଠରେ ସର୍ପମାଳାପରିହିତ, କପାଳୀ, ଭୂତପତି, ପଶୁପତି ମଧ୍ୟ ଯେ ଅଦ୍ୱିତୀୟ ଜଗଦୀଶ୍ୱରତ୍ୱ ପ୍ରାପ୍ତ ହୋଇଅଛନ୍ତି—ହେ ଭବାନୀ, ଏହା ତୁମର ପାଣିଗ୍ରହଣରୂପକ ନୈପୁଣ୍ୟବଶତଃ ହିଁ ହୋଇଅଛି । ୭ ।

ହେ ଶଶିମୁଖି, ମୋର ମୁକ୍ତି ଆକାଙ୍କ୍ଷା ନାହିଁ ଏବଂ ଧନସମ୍ପତ୍ତି ଇଚ୍ଛା ମଧ୍ୟ ନାହିଁ । ଜ୍ଞାନଲାଭ ପାଇଁ ଅପେକ୍ଷା ନାହିଁ କିମ୍ବା ସୁଖବାସନା ମଧ୍ୟ ନାହିଁ; ସୁତରାଂ ହେ ଜନନି, ତୁମ ନିକଟରେ ପ୍ରାର୍ଥନା କରୁଅଛି ଯେପରି ମୋର ଏହି ଜୀବନ "ମୃଡାନୀ, ରୁଦ୍ରାଣୀ ଶିବ, ଶିବ, ଭବାନୀ"—ଏହିଭଳି ଜପ କରି କରି ଅତିବାହିତ ହେଉ । ୮ ।

ବିଧିପୂର୍ବକ ବିବିଧ ସାମଗ୍ରୀ ଦ୍ୱାରା ତୁମର ପୂଜା କରି ନାହିଁ, ଭକ୍ତିହୀନ ଚିନ୍ତାର ଅନୁଗାମୀ ବାକ୍ୟରେ (ତର୍କରେ) ରତ ଥାଇ ମୁଁ କି ଅକାର୍ଯ୍ୟ ନ କରିଛି ? ହେ ଶ୍ୟାମା, ଅନାଥ ମୋ ପ୍ରତି ଏକମାତ୍ର ତୁମେ ହିଁ ଯଦି ଅଳ୍ପ ପରିମାଣ କୃପାକର, ତେବେ ମା, ତାହା ତୁମର ପକ୍ଷେ ହିଁ ସମୁଚିତ ହେବ । ୯ ।

ହେ ଦୁର୍ଗେ, ହେ କୃପାସାଗରାରେଶ୍ୱରି, ବିପଦରେ ପଡି ମୁଁ ତୁମକୁ ସ୍ମରଣ କରୁଅଛି—ଏହା ମୋର ଶଠତା ବୋଲି ମନେ କରିବ ନାହିଁ । କ୍ଷୁଧା ଓ ତୃଷାରେ କାତର ସନ୍ତାନ ମାଆକୁ ହିଁ ସ୍ମରଣ କରିଥାଏ । ୧୦ ।

ଜଗଦମ୍ବ ବିଚିତ୍ରମତ୍ର କିଂ ପରିପୂର୍ଣ୍ଣା କରୁଣାସ୍ତି ଚେନ୍ମୟି ।
ଅପରାଧପରମ୍ପରାବୃତ୍ତଂ ନ ହି ମାତା ସମୁପେକ୍ଷତେ ସୁତମ୍ ।। ୧୧ ।।
ମତ୍ସମଃ ପାତକୀ ନାସ୍ତି ପାପଘ୍ନୀ ତ୍ୱତ୍ସମା ନ ହି ।
ଏବଂ ଜ୍ଞାତ୍ୱା ମହାଦେବି ଯଥାଯୋଗ୍ୟଂ ତଥା କୁରୁ ।। ୧୨ ।।
ଇତି ଶ୍ରୀମତ୍ ପରମହଂସପରିବ୍ରାଜକାଚାର୍ଯ୍ୟ ଶ୍ରୀମଚ୍ଛଙ୍କରାଚାର୍ଯ୍ୟ-
ବିରଚିତଂ ଦେବ୍ୟପରାଧକ୍ଷମାପନସ୍ତୋତ୍ରଂ ସଂପୂର୍ଣ୍ଣମ୍ ।

---

## ଦୁର୍ଗା ଦ୍ୱାତ୍ରିଂଶତ୍—ନାମମାଳା

ଦୁର୍ଗା ଦୁର୍ଗାର୍ତ୍ତିଶମନୀ ଦୁର୍ଗାପଦ୍ବିନିବାରିଣୀ ।
ଦୁର୍ଗମଚ୍ଛେଦିନୀ ଦୁର୍ଗସାଧିନୀ ଦୁର୍ଗନାଶିନୀ ।।
ଦୁର୍ଗତୋଦ୍ଧାରିଣୀ ଦୁର୍ଗନିହନ୍ତ୍ରୀ ଦୁର୍ଗମାପହା ।
ଦୁର୍ଗମଜ୍ଞାନଦା ଦୁର୍ଗଦୈତ୍ୟଲୋକଦବାନଳା ।।
ଦୁର୍ଗମା ଦୁର୍ଗମାଲୋକା ଦୁର୍ଗମାତ୍ମସ୍ୱରୂପିଣୀ ।
ଦୁର୍ଗମାର୍ଗପ୍ରଦା ଦୁର୍ଗମବିଦ୍ୟା ଦୁର୍ଗମାଶ୍ରିତା ।।
ଦୁର୍ଗମଜ୍ଞାନସଂସ୍ଥାନା ଦୁର୍ଗମଧ୍ୟାନଭାସିନୀ ।
ଦୁର୍ଗମୋହା ଦୁର୍ଗମଗା ଦୁର୍ଗମାର୍ଥସ୍ୱରୂପିଣୀ ।।
ଦୁର୍ଗମାସୁର ସଂହନ୍ତ୍ରୀ ଦୁର୍ଗମାୟୁଧଧାରିଣୀ ।
ଦୁର୍ଗମାଙ୍ଗୀ ଦୁର୍ଗମତା ଦୁର୍ଗମ୍ୟା ଦୁର୍ଗମେଶ୍ୱରୀ ।
ଦୁର୍ଗଭୀମା ଦୁର୍ଗଭାମା ଦୁର୍ଗଭା ଦୁର୍ଗଦାରିଣୀ ।।
ନାମାବଳିମିମାଂ ଯସ୍ତୁ ଦୁର୍ଗାୟା ଜପ୍ତି ମାନବଃ ।
ପଠେତ୍ ସର୍ବଭୟାନ୍ମୁକ୍ତୋ ଭବିଷ୍ୟତି ନ ସଂଶୟଃ ।।

---

**ହେ ଜଗନ୍ମାତା, ମୋ ପ୍ରତି ଯଦି ତୁମର ପୂର୍ଣ୍ଣ କୃପାଭାବ ତାହାହେଲେ ଆଉ ବିଚିତ୍ର କ'ଣ ? ଶତ ଶତ ଅପରାଧରେ ଅପରାଧୀ ସନ୍ତାନକୁ ମଧ୍ୟ ମାଆ କେବେହେଲେ ଉପେକ୍ଷା କରେ ନାହିଁ । ୧୧ ।**

**ମୋ ଭଳି ପାପାତ୍ମା କେହି ନାହିଁ, ତୁମଭଳି ପାପନାଶିନୀ ମଧ୍ୟ ନାହାନ୍ତି । ହେ ମହାଦେବି, ଏହିପରି ଜାଣି ଯାହା ଉଚିତ ତାହା ହିଁ କର । ୧୨ ।**

---

## କାଳୀ :

କାଳୀ—ଦଶମହାବିଦ୍ୟାଙ୍କ ମଧ୍ୟରେ ପ୍ରଥମ ପ୍ରଧାନ ହେତୁ ଆଦ୍ୟା ନାମରେ ଅଭିହିତ । ଦିନେ ଶିବ ପରିହାସରେ ପାର୍ବତୀଙ୍କୁ କାଳୀ ବୋଲି କହି ଦେବାରୁ ଅଭିମାନିନୀ ପାର୍ବତୀ ରାଗିଯାଇ ଦଶଦିଗରେ ଦଶଟି ରୂପ ପ୍ରକାଶ କଲେ । ସେହି ଦଶ ଦିବ୍ୟ ମୂର୍ତ୍ତି ହିଁ ଦଶମହାବିଦ୍ୟା—କାଳୀ, ତାରା, ତ୍ରିପୁର ସୁନ୍ଦରୀ (ଷୋଡ଼ଶୀ), ଭୁବନେଶ୍ୱରୀ, ଭୈରବୀ, ବଗଳା, ଛିନ୍ନମସ୍ତା, ଧୂମାବତୀ, ମାତଙ୍ଗୀ ଓ କମଳା ।

ଉପର୍ଯ୍ୟୁକ୍ତ ଦଶମହାବିଦ୍ୟାଙ୍କ ମଧ୍ୟରୁ କାଳୀ, ତାରା, ଛିନ୍ନମସ୍ତା ପ୍ରଭୃତି, ଯେଉଁମାନେ କୃଷ୍ଣବର୍ଣ୍ଣ, ଉଗ୍ର, ପ୍ରଚଣ୍ଡ ସେମାନେ ହେଲେ କାଳୀକୁଳର ଅନ୍ତର୍ଗତ ଏବଂ କାଳୀ ହେଉଛନ୍ତି ଏହି ଶ୍ରେଣୀର ପ୍ରଥମ ଦେବତା । ଅନ୍ୟ ପକ୍ଷରେ ଷୋଡ଼ଶୀ, ଭୁବନେଶ୍ୱରୀଙ୍କ ପରି ଯେଉଁମାନେ ଦିବ୍ୟସୁନ୍ଦର, ସ୍ୱର୍ଣ୍ଣବର୍ଣ୍ଣ ଓ ସୌମ୍ୟ ସେମାନେ ହେଲେ ଶ୍ରୀ କୁଳର ଅନ୍ତର୍ଗତ । ମହାତ୍ରିପୁରସୁନ୍ଦରୀ ଷୋଡଶୀ ଏହି ଶ୍ରେଣୀର ପ୍ରଥମ ଦେବତା । ଭକ୍ତର ଭାବ ଅନୁସାରେ ଏକ ମହାଶକ୍ତି ଗୁଣ, କ୍ରିୟା ଓ ଇଚ୍ଛା ଭେଦରେ ଭିନ୍ନ ଭିନ୍ନ ଭାବରେ ପ୍ରକାଶ ପାଇଥାନ୍ତି ।

'କାଳୀ'ଙ୍କ କଥା ବିଶ୍ୱର କରାୟତ୍ତ । କେତେକାଳରୁ କେତେ ଭକ୍ତଙ୍କ ଅଭୀଷ୍ଟ ପୂରଣକାରିଣୀ ଏହି ମହାଶକ୍ତି କେତେ ଭାବରେ ମହା-ସମାରୋହରେ ପୂଜା ପାଉଛନ୍ତି । ରାମକୃଷ୍ଣ ପରମହଂସଙ୍କ ପରି ଦିବ୍ୟ ସାଧକ ଏହି ମହାମାୟାଙ୍କ ମାତୃଭକ୍ତି ଲୀଳାରେ ଆତ୍ମବିସ୍ମୃତ ହୋଇ ଯାଇଥିଲେ ।

**କାଳୀ**—ଅନନ୍ତ କାଳ ଶକ୍ତି । କାଳ ହେଉଛି ଅଖଣ୍ଡ ଏବଂ ଈ-କାର ହେଉଛି ଶକ୍ତି । ତେଣୁ ଅଖଣ୍ଡ ଅନନ୍ତ ଆକାଶର ଘନନୀଳିମା ହିଁ କାଳୀଙ୍କର କୃଷ୍ଣବର୍ଣ୍ଣ । ଆକାଶ ଦୂରରୁ ନୀଳ । ସର୍ବତ୍ର ବ୍ୟାପ୍ତ । ପାଖରେ ସେ କୃଷ୍ଣ ନୁହେ । ଠିକ୍ ଘନ ନୀଳଜଳରାଶି ଭଳି । କାଳୀ ସେହିପରି ଦୂରରୁ କଳା-ଭୟଙ୍କର ସଂହାର ଶକ୍ତି । ଭକ୍ତମାନଙ୍କ ନିକଟରେ ଅଭୟବରଦା କାରୁଣ୍ୟମୟୀ-ମାଆ ।

ଆଉ ଗୋଟିଏ ଦୃଷ୍ଟିରୁ ସକଳ ତେଜକୁ ଆହରଣ କରି ନିଜ ଭିତରେ ଧରି ରଖିବା ଶକ୍ତି କୃଷ୍ଣବର୍ଣ୍ଣର ସର୍ବାଧିକ। ସବୁକୁ ଧରିରଖେ ବୋଲି ତ ଆମେ କଳାଛତା ବ୍ୟବହାର କରିଥାଉ। ପୁଣି ଅନ୍ୟସବୁ ବର୍ଣ୍ଣ ପରିବର୍ତ୍ତିମୟ (Black will take no other hue)। ତେଣୁ କାଳୀଙ୍କ କୃଷ୍ଣବର୍ଣ୍ଣ ଶୁଦ୍ଧସତ୍ତ୍ୱଗୁଣାତ୍ମକ ଘନୀଭୂତ ତେଜୋମୟ ଅନନ୍ତ ଚିଦ୍‌ବ୍ରହ୍ମ ଶକ୍ତି। ପୁଣି କାଳ—ସ୍ୱୟଂ ଶିବ ହେଉଛନ୍ତି ଅଗ୍ନିସ୍ୱରୂପ। ସେହି ଅଗ୍ନିର ଦାହିକା ଶକ୍ତି ହେଉଛନ୍ତି କାଳୀ। ଗୋଟିଏ ଜାଳ ଜ୍ୱଳନଶୀଳ ଅଗ୍ନି ଭିତରେ ଦେଖନ୍ତୁ ଶିବଙ୍କୁ ଏବଂ ତା' ଉପରେ ନର୍ତ୍ତନଶୀଳ କୃଷ୍ଣବର୍ଣ୍ଣ ଶିଖାଟିକୁ ଲକ୍ଷ୍ୟ କରନ୍ତୁ। ସେ ହିଁ କାଳୀ। ଏହାକୁ ହିଁ ଲକ୍ଷ୍ୟ କରି ଶିବଙ୍କ ଉପରେ ନର୍ତ୍ତନରତା କାଳୀମୂର୍ତ୍ତିର ପରିକଳ୍ପନା।

ମୂର୍ତ୍ତିପୂଜା କରି ନ ପାରିଲେ ଗୋଟିଏ ରଖି ସେଥିରେ ଉପର୍ଯ୍ୟୁକ୍ତ ମୂର୍ତ୍ତିକୁ ଦେଖି ଯଥାବିଧି ପୂଜା କରନ୍ତୁ। ଫଳ ଅବଶ୍ୟମ୍ଭାବୀ। ମୂର୍ତ୍ତି-ଭାବ ମାନସପଟରେ ସୁଦୃଢ଼ ହୋଇଗଲେ ସେଇ ଭାବକୁ ଯନ୍ତ୍ରରେ ଯନ୍ତ୍ରିତ କରି ଅଷ୍ଟଦଳ ପଦ୍ମରେ ମହାଶକ୍ତି ତ୍ରିକୋଣର ବହ୍ନି ନିବଧତା ଲକ୍ଷ୍ୟ କରନ୍ତୁ ଅଥବା ଦେହରେ ସେ ସବୁକୁ ଆରୋପ କରି ତଦ୍‌ଭାବ ଭାବିତ ହୋଇ ତଲ୍ଲୀନ ହୁଅନ୍ତୁ। ରାମକୃଷ୍ଣ ଏହା ହିଁ ତ କରିଥିଲେ। ମା'ଙ୍କୁ ଦେବାକୁ ଯାଇ ପ୍ରସାଦ ନିଜେ ଖାଇ ଦେଉଥିଲେ। ଫୁଲମାଳ ନିଜ ଗଳାରେ ପକାଇ ଦେଉଥିଲେ। ଏ ସବୁ କିନ୍ତୁ ଆପେ ଆପେ ସ୍ୱତଃ ହେବା ଉଚିତ। ଏଥିରେ ଛଳନା ବା ଅଭିନୟ କ୍ଷତିକାରକ ହେବ। ତେଣୁ ସାଧନାରେ ସିଦ୍ଧି ପାଇଁ ଅଭିଜ୍ଞ ସଦ୍‌ଗୁରୁଙ୍କ ଆବଶ୍ୟକତା ବିଶେଷତଃ ତନ୍ତ୍ରମାର୍ଗରେ ଏକାନ୍ତ ଅପରିହାର୍ଯ୍ୟ।

ଠିକଏ ଧ୍ୟାନରେ ଦେଖନ୍ତୁ ନିର୍ଜନ ଶ୍ମଶାନରେ ମହାକାଳ ଶିବଙ୍କ ଉପରେ ଦେବୀ ନର୍ତ୍ତନରତା। ବାମ-ଊର୍ଦ୍ଧ୍ୱ ହସ୍ତରେ ଖଡ୍‌ଗ। ଅଧୋ-ହସ୍ତରେ ନୃ-ମୁଣ୍ଡ। ଦକ୍ଷିଣ-ଊର୍ଦ୍ଧ୍ୱ ହସ୍ତରେ ଅଭୟ ମୁଦ୍ରା ଏବଂ ଅଧୋହସ୍ତରେ ବରଦ-ମୁଦ୍ରା। ମୁକ୍ତକେଶୀ ଦିଗମ୍ବରୀ ଶ୍ୟାମବର୍ଣ୍ଣା ଦେବୀଙ୍କ ଗଳାରେ ନୃ-ମୁଣ୍ଡର ମାଳା, କାନରେ ଦୁଇଟି ଶିଶୁଶବ, କଟିରେ

ଝୁଲୁଥିବା ମଲାମଣିଷ ହାତର ଆବେଷ୍ଟନୀ ଏବଂ ଲହ ଲହ ଜିଭ ବାହାରି-ଥିବା ପାଟିର ଦୁଇ କଡ଼ରୁ ଦୁଇଧାର ଗଳିପଡ଼ୁଥିବା ରକ୍ତ ।

କି ଭୟଙ୍କର ମୂର୍ତ୍ତି । କାହିଁ ଏହିପରି ରୂପବର୍ଣ୍ଣନା ତ କୌଣସି ପୁରାଣରେ ନାହିଁ । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଦୁର୍ଗାସପ୍ତଶତୀର ପଞ୍ଚମ ଓ ସପ୍ତମ ଅଧ୍ୟାୟରେ କାଳୀଙ୍କ କଥା ଅଛି । ସେ ତ ଘୋରରୂପା, କ୍ଷାମୋଦରୀ, ଶୁଷ୍କ ମାଂସା–ଚାମୁଣ୍ଡା ଦେବୀ । ସେ ଶବାରୂଢ଼ା ନୁହନ୍ତି ।

ଆମ କାଳୀ ଦକ୍ଷିଣା । ବିପରୀତରତାତୁରା ଓ ପୀନୋନ୍ନତ ପୟୋଧରା । ବାମ ଊର୍ଦ୍ଧ୍ୱହସ୍ତର ଖଡ୍ଗ ଜ୍ଞାନର ପ୍ରତୀକ । ଏହାରି ଆଧାର ଛିନ୍ନ ମସ୍ତକ ବାମ ନିମ୍ନ ହସ୍ତରେ ରହି ଛିନ୍ନ-ଭବ-ବନ୍ଧନ ବା ମୁକ୍ତିକୁ ଦ୍ୟୋତିତ କରୁଛି । ଏହା ହିଁ ମହାଶଙ୍ଖ ଓ ମୁକ୍ତି । ନିର୍ଗୁଣ କାଳୀ ସଗୁଣ ଓ ସକ୍ରିୟ ହେଲେ ବିପରୀତ ରତାତୁରା ହୁଏ । ଠିକ୍ ସାଂଖ୍ୟର ପ୍ରକୃତିପୁରୁଷ-ସମ୍ବନ୍ଧ । ଅନ୍ଧ ତଥା ସକ୍ରିୟ କିନ୍ତୁ ଅଚେତନ ପୁରୁଷ ହିଁ ଏଠାରେ ଶିବ । ପଙ୍ଗୁପରି ନିଷ୍କ୍ରିୟ ଅଥଚ ସଚେତନ ପ୍ରକୃତି ହିଁ ଏଠାରେ କାଳୀ । ଶିବଙ୍କ ଉପରେ କାଳୀ ଅନ୍ଧ ପୁରୁଷ ଉପରେ ପଙ୍ଗୁ ପ୍ରକୃତିର ସିସୃକ୍ଷା ହିଁ ବିପରୀତ ରତି । ପୁରୁଷର ଉପସ୍ଥିତିରେ ହିଁ ପ୍ରକୃତି ଅନ୍ତରରେ ଅନନ୍ତ ଉତ୍ସାହ ହୁଏ ସୃଷ୍ଟି ପାଇଁ । ତେଣୁ ମା'ର ପୀନୋନ୍ନତ ପୟୋଧର ପାଳନ ଶକ୍ତିର ପ୍ରତୀକ । ନିଖିଳ ବିଶ୍ୱର ସକଳ ପ୍ରାଣୀ ତା'ର ସ୍ତନ୍ୟରେ ପୁଷ୍ଟ । ନିରାଭରଣା ଅନାବୃତା ସେ ମାୟାଶକ୍ତି । ମାୟାର ଦୁଇଟି ଶକ୍ତି-ବିକ୍ଷେପ ଓ ଆବରଣ । ଏ ସୃଷ୍ଟି ତା'ର ବିକ୍ଷେପ । ଏ ମୋହ ମମତା ତା'ର ଆବରଣ । ଯିଏ ସବୁକୁ ଆବୋରି ରହିଛି, ତା'ର ପୁଣି ଆଉ କିଏ ବା କ'ଣ ଆବରଣ ହୋଇପାରେ ?

ସେ ଶ୍ମଶାନବାସିନୀ । ଶ୍ମଶାନ-ବୈରାଗ୍ୟଭୂମି-ମହାକାଶ । ଏଠାରେ ମଣିଷର କାମ, କ୍ରୋଧ, ଲୋଭ, ମୋହ ସବୁ ଜଳିଯାଏ—ଭସ୍ମ ହୋଇଯାଏ । ଶମ-ଅଖଣ୍ଡ ଶାନ୍ତି ଏଠାରେ ଶାନ-ଶୟନ ବା ଅବସ୍ଥାନ କରିଥାଏ ବୋଲି ଶ୍ମଶାନ । ଏଠାରେ ଧନୀ-ଦରିଦ୍ର, ରାଜା ପ୍ରଜା ସବୁ ସମାନ—ସମ ଶମ । ସାଧକ ହୃଦୟରୁ କାମ, କ୍ରୋଧ ଜଳିଯାଇ ତା'ର ହୃଦୟ ଭେଦରହିତ ହେଲେ ତାହା ହିଁ ହୋଇଯାଏ ମା'ର ନିବାସ-

ଯୋଗ୍ୟ ଶ୍ମଶାନଭୂମି । ଅସ୍ଥି କଙ୍କାଳ ମୁଣ୍ଡମାଳ ହେଉଛି ମଣିଷ ସଜାଡ଼ିଥିବା ତା'ର ଦେହଟିର ଶେଷ ପରିଣାମ ଏବଂ ସେଥିପ୍ରତି ପ୍ରତ୍ୟବାୟୁ ଶୃଗାଳର କେତେ ଲୋଭ । ତେଣୁ ଶିବାଭିଃ ଘୋରରବାଭିଃ' —ପ୍ରତ୍ୟୟୁ ଶୃଗାଳର ଘୋର ରଡ ଭିତରେ ମଣିଷ ଶରୀରର ପାର୍ଥିବନ୍ତ୍ରକ ପରିଣାମକୁ ଦେଖି ଚେତନାରୂପକ ଶିଖାକୁ ପ୍ରଜ୍ୱଳିତ କରିବାକୁ ହେବ । ଚେତନାରୁ ହିଁ ଦେବୀଙ୍କ ଆବିର୍ଭାବ ।

ପୁଣି ଅନ୍ୟ ଦୃଷ୍ଟିରୁ ନିରୁତ୍ତର ତନ୍ତ୍ର ମତରେ 'ଶ୍ମଶାନଂ ଦ୍ୱିବିଧଂ ପ୍ରୋକ୍ତଂ ଚିତା ଯୋନିଃ ପ୍ରକୀର୍ତ୍ତିତମ୍'—ଚିତା ଓ ଯୋନି ଉଭୟ ଶ୍ମଶାନ । ତେଣୁ ଭାବଜଗତରେ ଦେବୀଙ୍କ ନିବାସ ପ୍ରଥମ ଶ୍ମଶାନ ଚିଦାକାଶ ଏବଂ ବସ୍ତୁ ଜଗତର ଦ୍ୱିତୀୟ ଶ୍ମଶାନ ମାତୃଶକ୍ତିରେ ଦେବୀଙ୍କ ଅବସ୍ଥାନ— 'ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ' ।

ଦେବୀ ଶଶିଶେଖର କାରଣ ବଶୀରୂପା ଦେବୀଙ୍କର ମସ୍ତକରେ ଚନ୍ଦ୍ର ଅଛନ୍ତି । ମାନ-ଆକାଶରେ ଚନ୍ଦ୍ର ଓ କୃଷ୍ଣା-କାଳୀଙ୍କ ଶୀର୍ଷ ଦେଶରେ ଚନ୍ଦ୍ର - ଉଭୟର ସମାନ ସ୍ଥିତି-ପ୍ରାକୃତିକ । ଚନ୍ଦ୍ର ମନର ପ୍ରତୀକ । ପୂଜାରେ ମନ ହିଁ ପ୍ରଧାନ ।

ଦେବୀ ମୁକ୍ତକେଶୀ । ସେ କୌଣସି ବନ୍ଧନ ଶୃଙ୍ଖଳାର ବଶବର୍ତ୍ତୀ ନୁହେ । ତେଣୁ ବିକାରରହିତା-ଅନିରୁଦ୍ଧ ସରସ୍ୱତୀ ।

ସେ ତ୍ରିନେତ୍ରା । ଦିନର ସୂର୍ଯ୍ୟ, ରାତିର ଚନ୍ଦ୍ର ଏବଂ ସବୁକାଳର ଅଗ୍ନି ତାଙ୍କର ନେତ୍ର । ଚନ୍ଦ୍ର-ଇଚ୍ଛା ଶକ୍ତିର, ସୂର୍ଯ୍ୟ ଜ୍ଞାନ ଶକ୍ତିର ଏବଂ ଅଗ୍ନି-କ୍ରିୟାଶକ୍ତିର ପ୍ରତୀକ ।

ସେ ମହାଘୋରବାଳାବତଂସା—ତାଙ୍କ କାନର ଅଳଙ୍କାର ଦୁଇଟି ଶିଶୁ-ଶବ । ଶିଶୁସୁଲଭ ସରଳ ଅଥଚ ଶବ ଭଳି ଅଚପଳ ସାଧକର ଶୁଦ୍ଧ ହୃଦୟ ଓ ଏକନିଷ୍ଠ ମନ ହିଁ ତାଙ୍କର ଭୂଷଣ ।

ସେ 'ସୃକ୍କଦ୍ୱୟ ଗଳଦ୍ରକ୍ତଧାରା'—ତାଙ୍କର ପାଟିର ଦୁଇକଡ଼ରୁ ଦୁଇଧାର ରକ୍ତ । ରଜୋଗୁଣର ପ୍ରତୀକ —ସେଥିରୁ ହିଁ ଏ ସୃଷ୍ଟିର ପରିପ୍ରକାଶ । ରକ୍ତ ଦେଇ ମା' ଗଢ଼ିଥାଏ ତାର ସନ୍ତାନକୁ ।

ପ୍ରକଟିତ ରଦନା—ଦାନ୍ତ ତାଙ୍କର ସତ୍ତ୍ୱଗୁଣର ପ୍ରତୀକ । ଲୋଲ ଜିହ୍ୱା—ରଜୋଗୁଣର ଦ୍ୟୋତକ । ମୁଖଗହ୍ୱର—ତମୋଗୁଣର ପ୍ରତୀକ ।

ତେଣୁ ସତ୍ତ୍ୱ-ଦନ୍ତ ତମୋଗୁଣକୁ ଆବଦ୍ଧ କରି ରଜୋଗୁଣାତ୍ମକ ଜିହ୍ୱାକୁ ଚପି ଧରି ଆୟତ୍ତାଧୀନ କରିଛ ।

ମା' ସ୍ମିତମୁଖୀ । ଏହା ନିତ୍ୟାନନ୍ଦ ସ୍ୱଭାବ ବ୍ରହ୍ମର ଲକ୍ଷଣ । ଆତ୍ମୀୟତା ପରିପ୍ରକାଶର ମାଧ୍ୟମ ହେଉଛି ସ୍ମିତହାସ । ମା' ଆମର; ସମସ୍ତେ ତା'ର ।

ଦେବୀ କଣ୍ଠାବସକ୍ତମୁଣ୍ଡାଳୀ-ଗଳଦ୍-ରୁଧିର-ଚର୍ଚ୍ଚିତା । କଣ୍ଠରେ ପଡ଼ିଥିବା ମୁଣ୍ଡମାଳାରୁ ଝରୁଥିବା ରକ୍ତରେ ସେ ସିକ୍ତ । ଏଠାରେ ମୁଣ୍ଡମାଳା ପଞ୍ଚାଶଦ୍ ମାତୃକାକ୍ଷରାତ୍ମକ ଅକ୍ଷମାଳା ବା ଶବ୍ଦବ୍ରହ୍ମର ପ୍ରତୀକ । ବ୍ରହ୍ମ ଶକ୍ତିର ରଜୋଗୁଣାତ୍ମକ ସର୍ଜନା କ୍ରିୟା ହିଁ ରକ୍ତକ୍ଷରଣ । ରକ୍ତ ଦେଇ ମନପ୍ରାଣ ଲଗାଇ ପ୍ରତ୍ୟେକ ସର୍ଜନ କ୍ରିୟାରେ ଆତ୍ମୋତ୍ସର୍ଗ କରିବା ହିଁ ତା'ର ଚର୍ଚ୍ଚା ।

'ଶବାନାଂ କରସଙ୍ଘାତୈଃ କୃତକାଞ୍ଚୀ'-ଶବମାନଙ୍କର ହାତ-ଗୁଡ଼ିକୁ ନେଇ ତା'ର କଟୀ ଦେଶର କାଞ୍ଚୀ ମେଖଳା । ହାତ ହେଉଛି କର୍ମଶକ୍ତିର ପ୍ରତୀକ । ଦେବୀ ଆତ୍ମା । ସେ ଚାଲିଗଲେ ଜୀବ ଶକ୍ତିହୀନ ଶବ ହୁଏ । ତା'ର କର୍ମକୁ ନେଇ ଦେବୀ ଗୁନ୍ଥି କାଞ୍ଚୀମେଖଳା କରେ । 'ଧର୍ମୋ ରକ୍ଷତି ରକ୍ଷିତଃ' – ଧର୍ମକୁ ରକ୍ଷାକଲେ ସେ ରକ୍ଷାକରେ । ଜୀବ ତା'ର ସୁକର୍ମ ଦ୍ୱାରା ଆତ୍ମଶକ୍ତି ଦେବୀର ମର୍ଯ୍ୟାଦା ରକ୍ଷାକଲେ ଦେବୀ ତାକୁ କାଞ୍ଚୀକରି ଶୋଭାପାଏ, ଦକ୍ଷିଣା ବା ପ୍ରସନ୍ନା ହୁଏ । ମା'ର ମର୍ଯ୍ୟାଦା ପୁଅ ହିଁ ରକ୍ଷାକରେ । ପୁଅର କର୍ମକୁ ନେଇ ମା' ସାର୍ଥକ ହୁଏ ଓ ସେ ମହାପୁରୀ ହୁଏ ।

ସେ 'ନିତ୍ୟ ଯୌବନବତୀ' କାଳୀଙ୍କର ବର୍ଣ୍ଣ କୃଷ୍ଣଙ୍କର ବର୍ଣ୍ଣ ଓ କନ୍ଦର୍ପର ବର୍ଣ୍ଣ-କଳା । କଳାର ଆକର୍ଷଣୀ ଶକ୍ତି ଯୌବନରେ ଅତ୍ୟଧିକ । ତେଣୁ କଳାକାଳୀ ଉଦ୍ଦାମ ଓ ନିତ୍ୟଯୌବନବତୀ । ସେ ବାଲ-ବାର୍ଦ୍ଧକ୍ୟ ଅବସ୍ଥାର ବଶବର୍ତ୍ତୀ ନୁହନ୍ତି । ତାଙ୍କର ଯୌବନର କ୍ଷୟ ନାହିଁ ବୋଲି ତାହା ନିତ୍ୟ ।

କୃଷ୍ଣଙ୍କର ବିଶ୍ୱରୂପ ଓ କାଳୀଙ୍କର କରାଳରୂପ ଭିତରେ କିଛି ପ୍ରଭେଦ ନାହିଁ । ଯେ କୃଷ୍ଣ ସେ କାଳୀ-ବୀଜମନ୍ତ୍ର ମଧ୍ୟ ଅଭିନ୍ନ । ରାଧା-

କୃଷ୍ଣ - ସାଭରଣ ଅପ୍ରାକୃତ ପ୍ରେମମୂର୍ତ୍ତି । ଶିବକାଳୀ–ନିରାଭରଣ ପ୍ରାକୃତ ଇଚ୍ଛା ମୂର୍ତ୍ତି, ପୁଅ ପାଖରେ ମା'ର ଲଜ୍ଜା ବା ସଙ୍କୋଚ କ'ଣ ? ମାକୁ ଦେଖି ପୁଅର ବିକାର ବା କାହିଁକି ହେବ ?

ଯେଉଁଠାରେ ଆଗୁରରେ ବାମତା ହେବ, ସାଧକ ଇନ୍ଦ୍ରିୟ ଭୋଗ ଲାଳସାରେ ମଦ୍ୟମାଂସାଦି ପଞ୍ଚ-ମ-କାରର ଅଶିବ ଦୁରୁପଯୋଗ ଦ୍ୱାରା ମା'କୁ ବାମପନ୍ଥୀ କରିବ ସେଠାରେ ମା'ର ବାମ ହସ୍ତର ଖଡ୍ଗ ପଶୁବଧରେ ଚଞ୍ଚଳ ହେବ । କିନ୍ତୁ ବାମ ମାର୍ଗର ସକଳ ବିକାର ଭିତରେ ଚାହିଁ ମଧ୍ୟ ଯଦି ସାଧକ ନିର୍ବିକାରରେ 'ପଶୁ' ପ୍ରବୃତ୍ତିକୁ ବଳିଦେଇ 'ବୀର' ହେବ, ତେବେ ମାର ଖଡ୍ଗ ତା'ର ଅଜ୍ଞାନ-ଶିର ନାଶରେ ସହାୟକ ହେବ । ବିଶେଷତଃ କମ୍ୟ-ଷଟ୍‌କର୍ମ ବାମ ମାର୍ଗର ଆଶ୍ରୟରେ ମା'କୁ ପ୍ରୀତ ବା ଅନୁକୂଳ କରାଇଲେ ସେ ଭକ୍ତର ମନୋବାଞ୍ଛାଭିପୂରକ ଦକ୍ଷିଣା ଦିଅନ୍ତି ବୋଲି ଦକ୍ଷିଣା କାଳୀ ।

କିନ୍ତୁ ଦକ୍ଷିଣାଗୁରରେ ମା'କୁ ଉନ୍ମୁଖୀ କଲେ ତା'ର ବରଦ ଓ ଅଭୟ ମୂର୍ତ୍ତି ସାଧକର ସର୍ବାଭୀଷ୍ଟ ପୂରଣକରି ଜୀବନକୁ ସାର୍ଥକ କରିଥାଏ ବୋଲି ସେ ଦକ୍ଷିଣା ମୂର୍ତ୍ତିରୂପା ଦକ୍ଷିଣ କାଳିକା ।

ବାମ (ଆଗୁର)ରେ ବାମର ପୂଜା, ଦକ୍ଷିଣ (ଆଗୁର)ରେ ଦକ୍ଷିଣର ପୂଜା ଓ ତଦନୁସାରେ ଫଳ । ଦକ୍ଷିଣକାଳିକାଙ୍କର ପ୍ରସିଦ୍ଧ 'କାଳୀ-କର୍ପୂର ସ୍ତବରାଜ'ର ଊନବିଂଶ ଶ୍ଲୋକରେ ଉଲ୍ଲିଖିତ ମାର୍ଜାର, ଉଷ୍ଟ୍ର, ମେଷ, ନର, ମହିଷ ଓ ଛାଗ ପ୍ରଭୃତିର ବଳି ବାମାଗୁରରେ ଯଥା-ଯଥ ଦିଆଗଲାବେଳେ ଦକ୍ଷିଣାଗୁରରେ ଏ ସବୁକୁ ଯଥାକ୍ରମେ ଲୋଭ, ମାତ୍ସର୍ଯ୍ୟ, ମୋହ, ମଦ, କ୍ରୋଧ ଓ କାମର ପ୍ରତୀକ ଭାବନାରେ ଏସବୁକୁ ବଳି ଦେଇ ଜୀବନକୁ ସୁଗଠିତ କରି ଆତ୍ମା ବା କାଳିକାଙ୍କୁ ଦକ୍ଷିଣ ବା ଅନୁକୂଳ କରିବା ପାଇଁ ଚେଷ୍ଟା କରାଯାଇଥାଏ ।

ଆଜିର ମହାନିଶାରେ ମାନବ ଯେତେବେଳେ ହିତାହିତ କିଛି ଦେଖିପାରୁନାହିଁ । ସେତେବେଳେ ଜ୍ଞାନ ଦୀପାବଳୀ ଦ୍ୱାରା ସଂସାରକୁ ଆଲୋକିତ କରି କାଳିକା ବା ଆତ୍ମାକୁ ଦକ୍ଷିଣ ବା ଅନୁକୂଳ କରିବାହିଁ ଦକ୍ଷିଣା କାଳିକା ପୂଜା ।

———

# ଦକ୍ଷିଣକାଳିକାସ୍ତୋତ୍ରମ୍

କର୍ପୂରମଧ୍ୟମାନ୍ତ୍ୟସ୍ୱରପରିରହିତଂ ସେନ୍ଦୁବାମାକ୍ଷିଯୁକ୍ତଂ
ବୀଜଂ ତେ ମାତରେତତ୍ ତ୍ରିପୁରହରବଧୂ ତ୍ରିଃକୃତଂ ଯେ ଜପନ୍ତି ।
ତେଷାଂ ଗଦ୍ୟଂ ଚ ପଦ୍ୟଂ ଚ ମୁଖକୁହରାଦୁଲ୍ଲସନ୍ତ୍ୟେବ ବାଚଃ
ସ୍ୱଚ୍ଛନ୍ଦଂ ଧ୍ୱାନ୍ତଧାରାଧରରୁଚିରୁଚିରେ ସର୍ବସିଦ୍ଧିଂ ଗତାନାମ୍ ॥୧॥

---

ହେ ମାତଃ, କର୍ପୂର (କ୍-ଅ ର୍-ପ୍-ଊ-ର୍-ଅ) ଶବ୍ଦର ପ୍ରଥମ ବର୍ଣ୍ଣ (କ୍) ଓ ଅନ୍ତ୍ୟ ବର୍ଣ୍ଣ (ର୍) ସ୍ୱର (ଅ, ଊ, ଅ) ସହିତ ବର୍ଜିତ ହେଲାପରେ ବଳକା ରହୁଥିବା କ୍ ର୍ ରେ ଇନ୍ଦୁ (ଁ) ଓ ଈ-କାର (ୀ) ଯୁକ୍ତ ହେଲାପରେ ତୁମର ବୀଜ 'କ୍ରୀଁ' ହୁଏ । ହେ କୃଷ୍ଣମେଘବର୍ଣ୍ଣ ତ୍ରିପୁରହରବଧୂ ! ଉକ୍ତ 'କ୍ରୀଁ' ବୀଜକୁ ଯେଉଁମାନେ ତିନଥର (କ୍ରୀଁ କ୍ରୀଁ କ୍ରୀଁ) ଜପ କରନ୍ତି । ସର୍ବସିଦ୍ଧି ପ୍ରାପ୍ତ ସେମାନଙ୍କର ମୁଖବିବରରୁ ସ୍ୱଚ୍ଛନ୍ଦ ଭାବରେ ଗଦ୍ୟ ପଦ୍ୟ ମୟ ବାକ୍ୟ ନିଃସୃତ ହୁଏ ।

ମାତଃ—'ମା-ମାନେରୁ ତୃଚ୍-ପ୍ରତ୍ୟୟ' ଦ୍ୱାରା ନିଷ୍ପନ୍ନ ମାତୃ ଶବ୍ଦର ସଂବୋଧନରେ 'ମାତଃ' । ତେଣୁ ଯେ ସାଧକର ସୁଖଭୋଗ ଅଭିଳାଷକୁ ନେଇ ସୁଖ ଏବଂ ଦୁଃଖନିବୃତ୍ତିକୁ ନେଇ ମୋକ୍ଷ ମାପିକରି ବା ବସ୍ତୁକରି ପ୍ରଦାନ କରିଥାଏ ସେହି ମାତା (ମାନ-ପୂଜାୟାମ ଧାତୁରୁ ନିଷ୍ପନ୍ନ ହେତୁ ସେ ପୂଜନୀୟା ଅଟେ ।

ତ୍ରିପୁରହରବଧୂ— ତ୍ରିପୁର ହେଉଛନ୍ତି ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀର । ଏଥିରେ ଜନ୍ମମରଣ ବା ଏହାକୁ ହରଣ କରୁଥିବାରୁ ଶିବଙ୍କ ନାମ 'ହର' । ତାଙ୍କର ଶକ୍ତି ଭାବରେ 'ଶିବଶକ୍ତିଙ୍କ ଅଭିନ୍ନ ହୋଇଥିବା ଯୋଗୁଁ କାଳୀଙ୍କୁ ସଂବୋଧନ କରାଯାଇଛି (ତ୍ରିପୁରହରବଧୂ)

'କ୍ରୀଁ' ଜପ – ଏଠାରେ ଜପ ଗୁରୁମୁଖଗମ୍ୟ ଅଟେ । କାଳି ତୋପନିଷତ୍ତିରେ ସର୍ବଦା କାଳୀଙ୍କୁ ଅତ୍ମାରୂପରେ ଧ୍ୟାନ କରିବା ପାଇଁ କୁହାଯାଇଛି—'ସର୍ବଦା କାଳିକାରୂପମାତ୍ମାନଂ ବିଭାବୟେତ୍' । 'କ୍ରୀଁ'— ଏହି ବୀଜର କ-କାର, ଈ-କାର, ର-କାର ଓ ମ-କାର ଯଥାକ୍ରମେ ଧର୍ମ, ଅର୍ଥ, କାମ ଓ ମୋକ୍ଷପ୍ରଦାନ କରନ୍ତି ବୋଲି ନୀଳତନ୍ତ୍ର (୬।୧୫)ରେ କୁହାଯାଇଛି—'କକାରଂ ଧର୍ମଦଂ ଦେବ ଈକାରଂ ଚାର୍ଥଦାୟକଂ, ରକାରଂ କାମଦଂ କାନ୍ତେ ମକାରଂ ମୋକ୍ଷ

ଈଶାନଃ ସେନ୍ଦୁବାମ ଶ୍ରବଣପରଗତୋ ବୀଜମନ୍ୟନ୍ମହେଶି
ଦ୍ୱନ୍ଦ୍ୱଂ ତେ ମନ୍ଦଚେତା ଯଦି ଜପତି ଜନୋ ବାରମେକଂ କଦାଚିତ୍ ।
ଜିତ୍ୱା ବାଗୀଶମୀଶଂ ଧନଦମପି ଚିରଂ ମୋହୟନ୍ନମ୍ବୁଜାକ୍ଷୀ-
ବୃନ୍ଦଂ ଚନ୍ଦ୍ରାର୍ଦ୍ଧଚୂଡ଼େ ପ୍ରଭବତି ସ ମହାଘୋରବାଳାବତଂସେ ॥୨॥

---

ଦାୟକମ୍' । ତନ୍ତ୍ରକଳ୍ପଦ୍ରୁମ ଅନୁସାରେ - 'କ' ହେଉଛି 'ତେଜୋମୟୀ ଚଞ୍ଚଳା' ବା ଜ୍ଞାନ । ଏହା ଅଗ୍ନିବୀଜ 'ର' ସହିତ ଯୁକ୍ତ ହୋଇ ଅଧିକ ସ୍ପନ୍ଦର ହୋଇଛି । ଲକ୍ଷ୍ମୀବୀଜ 'ଈ'କାର ସାଧକର ସକଳ କାମନା ପୂରଣ କଲାବେଳେ ବିନ୍ଦୁ (ଁ) କୈବଲ୍ୟ ପ୍ରଦାନ କରିଥାଏ ।

ସର୍ବସିଦ୍ଧି—ଏଠାରେ ଅଣିମା, ଲଘିମାଦି ଅଷ୍ଟସିଦ୍ଧି ବୁଝିବାକୁ ହେବ ।

ଧ୍ୱାନ୍ତଧାରାଧରରୁଚିର—ଯେପରି କୃଷ୍ଣମେଘ ଅମୃତବାରି ଧାରା ବର୍ଷଣ କରି ଆତପକ୍ଲିଷ୍ଟ ଧରାକୁ ଶାନ୍ତ ସୁଶୀତଳ କରିଥାଏ, ସେହିପରି ମା' କାଳୀଙ୍କର କରୁଣାଧାରା ତ୍ରିତାପ (ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ)କ୍ଲିଷ୍ଟ ସାଧକର ସକଳ ତାପ ହରଣ କରିଥାଏ ॥ ୧ ॥

ହେ ମା' ତୁମେ ସମସ୍ତଙ୍କ ଈଶ୍ୱରୀ ହେତୁ 'ମହେଶୀ' । ତୁମର ଚୂଡ଼ା ବା ମସ୍ତକର ଶୀର୍ଷ ଦେଶରେ ଅର୍ଦ୍ଧଚନ୍ଦ୍ର ଭୂଷଣ ରୂପେ ଅବସ୍ଥିତ । ତୁମର କାନରେ ଦୁଇଟି ଶିଶୁଶବ ଅଳଙ୍କାର ରୂପରେ ଭୟ ଉତ୍ପାଦନ କରୁଛି । ହେ ମା' ! ତୁମର ( ସେନ୍ଦୁ—ବାମଶ୍ରବଣ-ପରଗତ ) ଚନ୍ଦ୍ରବିନ୍ଦୁ ଓ ଈକାରଯୁକ୍ତ 'ଈଶାନ) ହକାର ବୀଜ ଦ୍ୱୟ (ହୂଁ ହୂଁ) ଯଦି କେହି ଅଜ୍ଞଲୋକ କେବେ ଥରେ ଜପ କରେ, ତେବେ ସେ ବାକ୍ର ଅଧିପତି ବୃହସ୍ପତିଙ୍କୁ ବିଦ୍ୟାରେ ଏବଂ ଧନର ଅଧିପତି କୁବେରଙ୍କୁ ଧନରେ ଜୟ କରି ପଦ୍ମନୟନା ନାରୀମାନଙ୍କୁ ନିଜ ଗୁଣରେ ମୋହିତ କରିଥାଏ ।

'କଦାଚିତ୍ ଜପତି' —ଏଥିରୁ ଶୌଚାଶୌଚ ନିର୍ବିଶେଷରେ ରାସ୍ତାରେ ଗଲାବେଳେ କେଉଁଠି ଠିଆ ହୋଇଥିଲାବେଳେ ବା ବସିଥିଲାବେଳେ ଜାଗ୍ରତ୍ ସ୍ୱପ୍ନ, ସୁଷୁପ୍ତି ଅବସ୍ଥାରେ ଯେ କୌଣସି ସମୟରେ ମା'ଙ୍କର ମନ୍ତ୍ରର ମାନସ ଜପ ଗୁରୁମୁଖଗମ୍ୟ ଉପାୟରେ କରାଯାଇପାରେ ।

'ସେନ୍ଦୁବାମଶ୍ରବଣପରଗତୋ'— 'ଇନ୍ଦୁ' ଦେଉଛି 'ଇନ୍ଦ'—ଐଶ୍ୱର୍ଯ୍ୟରୁ ନିଷ୍ପନ୍ନ । 'ବାମ' ଶବ୍ଦର ଅର୍ଥ ସୁନ୍ଦର । ସ୍ରୁ(ଶ୍ରୁ)ବଣ ଶବ୍ଦର ଅର୍ଥ କ୍ଷରଣ । ତେଣୁ ଅମୃତର କ୍ଷରଣ ବା ଅମୃତତ୍ୱ ସହ ଐଶ୍ୱର୍ଯ୍ୟ ଲାଭ ହେଉଛି ଏହାର ତାତ୍ପର୍ଯ୍ୟ ॥ ୨ ॥

ଈଶୋ ବୈଶ୍ୱାନରସ୍ଥଃ ଶଶଧରବିଲସଦ୍ ବାମନେତ୍ରେଣ ଯୁକ୍ତୋ
ବୀଜଂ ତେ ଦ୍ୱନ୍ଦ୍ୱମନ୍ୟଦ୍ୱିଗଳିତ-ଚିକୁରେ କାଳିକେ ଯେ ଜପନ୍ତି ।
ଦ୍ୱେଷ୍ଟାରଂ ଘ୍ନନ୍ତି ତେ ଚ ତ୍ରିଭୁବନମପି ତେ ବଶ୍ୟଭାବଂ ନୟନ୍ତି
ସୃକ୍‌କଦ୍ୱନ୍ଦ୍ୱାସ୍ରଧାରାଦ୍ୱୟଧରବଦନେ ଦକ୍ଷିଣେ କାଳିକେତି ॥ ୩ ॥

---

ହେ ବିଗଳିତଚିକୁରେ (ମୁକ୍ତକେଶୀ ଉପାଧିରହିତା ନିର୍ବିକାରା) ! ହେ କାଳିକା (ଭୁକ୍ତିମୁକ୍ତି ଫଳପ୍ରଦା ଅନାଦ୍ୟନନ୍ତା ଶବ୍ଦବ୍ରହ୍ମରୂପା ! ତୁମର ଦୁଇଓଷ୍ଠ ପ୍ରାନ୍ତରୁ ଦୁଇଧାର ରକ୍ତ ବିଗଳିତ ହେଉଛି । (ବୈଶ୍ୱାନରସ୍ଥ ବା ତେଜୋମୟ) 'ର'-କାର ଯୁକ୍ତ (ଶଶଧର ବିଲସତ୍) ଚନ୍ଦ୍ରକଳା (ँ) ଶୋଭିତ ବାମନେତ୍ର (ୀ) ଯୁକ୍ତ (ଈଶୋ) ହ-କାର ବୀଜ ଦ୍ୱୟ (ହ୍ରୀଁ ହ୍ରୀଁ) ସହ 'ଦକ୍ଷିଣେ କାଳିକେ' ବୋଲି ଯେଉଁମାନେ ଜପ କରନ୍ତି, ସେମାନେ ଶତ୍ରୁମାନଙ୍କୁ ନାଶ କରନ୍ତି ଓ ତ୍ରିଲୋକକୁ ବଶୀଭୂତ କରନ୍ତି ॥

କାଳିକା ... ତନ୍ତ୍ରାଭିଧାନ ଅନୁସାରେ କ ବ୍ରହ୍ମ; ଅ ଅନନ୍ତ, ଲ-ଆତ୍ମା, ଇ-ସ୍ରଷ୍ଟା, କ-ବ୍ରହ୍ମ, ଅ ଅନନ୍ତ । ତେଣୁ କାଳିକା ହେଉଛନ୍ତି ଅନାଦ୍ୟନନ୍ତ ସ୍ରଷ୍ଟା ବ୍ରହ୍ମ ଆତ୍ମା । ଅନ୍ୟ ଭାବରେ କହିଲେ, 'କଳୟତୀତି କାଳଃ'—ସମଗ୍ର ସଂସାରକୁ କବଳିତ କରୁଥିବାରୁ ମହାଦେବ ହେଉଛନ୍ତି 'କାଳ' । ତାଙ୍କ ସହ (ଦାମ୍ପତ୍ୟ) କ୍ରୀଡ଼ା କରି ଶୋଭା ପାଉଥିବାରୁ କାଳିକା (କାଳ+ଇକନ୍+ଆ) ଦେବୀ ହେଉଛନ୍ତି ମହାଦେବୀ ।

ଅସ୍ରଧାରାଦ୍ୱୟଧର ବଦନା — ରକ୍ତ ହେଉଛି ରଜୋଗୁଣର ପ୍ରତୀକ । ତେଣୁ ରଜୋଗୁଣର ପୂର୍ଣ୍ଣ ନିବୃତ୍ତି ହେତୁ ଶୁଦ୍ଧ ସତ୍ତ୍ୱ ରୂପରେ ଭକ୍ତମାନଙ୍କ ପ୍ରତି ଅନୁକୂଳ ଭାବରେ ବିରାଜିତା ମା' ଦକ୍ଷିଣକାଳିକା ।

ବୀଜଦ୍ୱନ୍ଦ୍ୱ — 'ହ୍ରୀଁ' ବୀଜରେ ହ-କାର ଶିବ ର-କାର ଅଗ୍ନି ଓ ଈ-କାରଶକ୍ତି ଥିବାରୁ ଏହା ଶିବଶକ୍ତ୍ୟାତ୍ମକ । ଦେବୀ ଗୀତା ଅନୁସାରେ ହ ସ୍ଥୂଳ ଶରୀର, ର ସୂକ୍ଷ୍ମ ଶରୀର ଓ ଈ-କାରଣ ଶରୀର ହେଲେ ଦେବୀ ହେଉଛନ୍ତି ତୁରୀୟ 'ହ୍ରୀଁ'କାର ।

ଦକ୍ଷିଣେ କାଳିକେ — ନିର୍ବାଣତନ୍ତ୍ର (୧୦।୪୯-୫୦)ରେ କୁହାଯାଇଛି— 'ଦକ୍ଷିଣସ୍ୟାଂ ଦିଶି ସ୍ଥାନେ ସଂସ୍ଥିତଶ୍ଚ ରବେଃ ସୁତଃ କାଳୀନାମ୍ନା ପଳାୟତେ ଭୀତିଯୁକ୍ତଃ ସମନ୍ତତଃ, ଅତଃ ସା ଦକ୍ଷିଣା ନାମ୍ନା ତ୍ରିଷୁ ଲୋକେଷୁ ଗୀୟତେ — ଦକ୍ଷିଣ ଦିଗରେ ଅବସ୍ଥିତ ରବିପୁତ୍ର ଯମ କାଳୀ-ନାମ ଶୁଣି ଭୟରେ ପଳାଇଥାନ୍ତି ବୋଲି କାଳୀଙ୍କୁ କୁହାଯାଏ ଦକ୍ଷିଣା । ଅନ୍ୟ ପ୍ରକାରେ କହିଲେ ଯଜ୍ଞ-

ବର୍ଗାଦ୍ୟଂ ବହ୍ନିସଂସ୍ଥଂ ବିଧୁରତିଲଳିତଂ ତତ୍ତ୍ରୟଂ କୂର୍ଚ୍ଚଯୁଗ୍ମଂ
ଲଜ୍ଜାଦ୍ୱନ୍ଦ୍ୱଞ୍ଚ ପଶ୍ଚାତ୍ ସ୍ମିତମୁଖି ତଦଧଷ୍ଠଦ୍ୱୟଂ ଯୋଜୟିତ୍ୱା ।
ମାତର୍ଯେ ଯେ ଜପନ୍ତି ସ୍ମରହରମହିଳେ ଭାବୟନ୍ତଃ ସ୍ୱରୂପଂ
ତେ ଲକ୍ଷ୍ମୀଲାସ୍ୟଲୀଳା କମଳଦଳଦୃଶଃ କାମରୂପା ଭବନ୍ତି ॥ ୫ ॥
ପ୍ରତ୍ୟେକଂ ବା ଦ୍ୱୟଂ ବା ତ୍ରୟମପି ଚ ପରଂ ବୀଜମତ୍ୟନ୍ତଗୁହ୍ୟଂ
ତ୍ୱନ୍ନାମ୍ନା ଯୋଜୟିତ୍ୱା ସକଳମପି ସଦା ଭାବୟନ୍ତୋ ଜପନ୍ତି ।
ତେଷାଂ ନେତ୍ରାରବିନ୍ଦେ ବିହରତି କମଳା ବକ୍ତ୍ରଶୁଭ୍ରାଂଶୁବିମ୍ବେ
ବାଗ୍‌ଦେବୀ ଦେବି ! ମୁଣ୍ଡସ୍ରଗତିଶୟଲସତ୍କଣ୍ଠି ପୀନସ୍ତନାଢ୍ୟେ ॥୬॥

---

ପଦୟୋଃ ଖ୍ୟାତନାମ୍’— ଆକାଶ, ପୃଥିବୀ ଓ ଜଳ – ଏହି ତିନ ସ୍ଥାନର ମାତା ସେ ତ୍ର୍ୟମ୍ବକ । ( ତ ) ଏହାଛଡ଼ା ତୋଡ଼ଳତନ୍ତ୍ର (୧ । ୦) କହେ - ‘ସ୍ୱର୍ଗେ ମର୍ତ୍ତ୍ୟେ ଚ ପାତାଳେ ଯା ଗୃହଦ୍ୟା ଭୁବନେଶ୍ୱରୀ, ଏତାସୁ ରମ୍ୟତେ ଯେନ ତ୍ର୍ୟମ୍ବକସ୍ତେନ କଥ୍ୟତେ’—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଭୁବନର ଈଶ୍ୱରୀଙ୍କ ସହ ରମଣ କରୁଥିବାରୁ ତାଙ୍କର ନାମ ତ୍ର୍ୟମ୍ବକ ॥ ୪ ॥

ହେ ସ୍ମିତମୁଖୀ, ମଦନାନ୍ତକବିମୋହିନୀ ମା’ ! ତୁମର ସ୍ୱରୂପକୁ ଧ୍ୟାନକରି (ବହ୍ନିସଂସ୍ଥ) ର-କାର ବିଶିଷ୍ଟ (ବିଧୁ ଚନ୍ଦ୍ରବିନ୍ଦୁ ଓ (ରତି) ଘଦ୍ଦି ଈକାର (ଲଳିତ) ଶୋଭିତ (ବର୍ଗାଦ୍ୟ) କ-କାର (ତତ୍ତ୍ରୟଂ) ତ୍ରୟ ବା କ୍ରୀଁ, କ୍ରୀଁ, କ୍ରୀଁ, (ପଶ୍ଚାତ୍) ପଛରେ (କୂର୍ଚ୍ଚଯୁଗ୍ମ) ହୂଁ ହୂଁ ଓ (ଲଜ୍ଜା ଦ୍ୱନ୍ଦ୍ୱ) ହ୍ରୀଁ, ହ୍ରୀଁ,—ଏହି ବୀଜ ଦ୍ୱୟ ଏବଂ ତା’ପରେ (ଠ-ଦ୍ୱୟଂ) ‘ସ୍ୱାହା’ ଯୋଗକରି ଯେଉଁମାନେ ଜପ କରନ୍ତି ସେମାନଙ୍କ ନେତ୍ର ଲକ୍ଷ୍ମୀଙ୍କ ନୃତ୍ୟନୀତା ହେଉଥିବା ପଦ୍ମପାଙ୍ଖୁଡ଼ା ପରି ସୁନ୍ଦର ହୁଏ ଏବଂ ସେମାନେ ନିଜ ଇଚ୍ଛାନୁସାରେ ଦେହଧାରଣ କରିପାରନ୍ତି ॥ ୫ ॥

ହେ ମୁଣ୍ଡମାଳାଶୋଭିତା ପୀନପୟୋଧରା, ଦେବୀ ! ଯେଉଁମାନେ ତୁମକୁ ଧ୍ୟାନ କରି ତୁମର ବୀଜମନ୍ତ୍ରରୁ ଗୋଟିଏ (କ୍ରୀଁ ବା ଦୁଇଟି (ହ୍ରୀଁ, ହ୍ରୀଁ, ବା ହୂଁ, ହୂଁ,) କମ୍ବା ତିନୋଟି (କ୍ରୀଁ, କ୍ରୀଁ, କ୍ରୀଁ,) ଏହିପରି ଅଥବା ଗୋଟିଏ ପର୍ଯ୍ୟାୟର କ୍ରୀଁ କ୍ରୀଁ କ୍ରୀଁ ଦ୍ୱିତୀୟ ପର୍ଯ୍ୟାୟର ହୂଁ, ହୂଁ, କମ୍ବା ତୃତୀୟ ପର୍ଯ୍ୟାୟର ହ୍ରୀଁ, ହ୍ରୀଁ, ଏହିପରି, ଅଥବା ତୁମର ନାମ ଯୋଗକରି ସମସ୍ତ ମନ୍ତ୍ର (କ୍ରୀଁ, କ୍ରୀଁ, କ୍ରୀଁ, ହୂଁ, ହୂଁ, ହ୍ରୀଁ, ହ୍ରୀଁ, ଦକ୍ଷିଣେ କାଳିକେ କ୍ରୀଁ, କ୍ରୀଁ, କ୍ରୀଁ, ହୂଁ, ହୂଁ, ହ୍ରୀଁ, ହ୍ରୀଁ, ସ୍ୱାହା) ଥରେ, ଦୁଇଥର, ତିନଥର ବା ସବୁବେଳେ ଜପ କରନ୍ତି, ସେମାନଙ୍କ ନେତ୍ର-ପଦ୍ମରେ ଲକ୍ଷ୍ମୀ, ମୁଖଚନ୍ଦ୍ରରେ ସରସ୍ୱତୀ ନିବାସ କରନ୍ତି । ୬ ॥

ଗତାସୂନାଂ ବାହୁପ୍ରକରକୃତକାଞ୍ଚୀପରିଲସ-
ନ୍ନିତମ୍ବାଂ ଦିଗ୍‌ବସ୍ତ୍ରାଂ ତ୍ରିଭୁବନବିଧାତ୍ରୀଂ ତ୍ରିନୟନାମ୍ ।
ଶ୍ମଶାନସ୍ଥେ ତଲ୍ପେ ଶବହୃଦି ମହାକାଳସୁରତ-
ପ୍ରଯୁକ୍ତାଂ ତ୍ୱାଂ ଧ୍ୟାୟନ୍ ଜନନି ଜଡ଼ଚେତା ଅପି କବିଃ ॥୭॥
ଶିବାଭିର୍ଘୋରାଭିଃ ଶବନିବହମୁଣ୍ଡାସ୍ଥିନିକରୈଃ
ପରଂ ସଙ୍କୀର୍ଣ୍ଣାୟାଂ ପ୍ରକଟିତଚିତାୟାଂ ହରବଧୂମ୍ ।
ପ୍ରବିଷ୍ଟାଂ ସନ୍ତୁଷ୍ଟାମୁପରିସୁରତେନାତିଯୁବତୀଂ
ସଦା ତ୍ୱାଂ ଧ୍ୟାୟନ୍ତି କ୍ୱଚିଦପି ନ ତେଷାଂ ପରିଭବଃ ॥୮॥
ବଦାମସ୍ତେ କିଂ ବା ଜନନି ବୟମୁଚ୍ଚୈର୍ଜଡ଼ଧିୟଃ
ନ ଧାତା ନାପୀଶୋ ହରିରପି ନ ତେ ବେତ୍ତି ପରମମ୍ ।
ତଥାପି ତ୍ୱଦ୍‌ଭକ୍ତିର୍ମୁଖରୟତି ଚାସ୍ମାକମମିତେ
ତଦେତତ୍ କ୍ଷନ୍ତବ୍ୟଂ ନ ଖଳୁ ପଶୁରୋଷଃ ସମୁଚିତଃ ॥୯॥

---

ହେ ମା' ! ମୃତ ଜୀବମାନଙ୍କର ହସ୍ତ ସମୂହ ତୁମର ନିତମ୍ବ ଦେଶରେ କାଞ୍ଚୀପରି ଶୋଭାପାଉଛି । ତୁମେ ଦିଗମ୍ବରା (ନିରାବରଣା ବା ଉଲଗ୍ନା), ତ୍ରିଭୁବନର ସୃଷ୍ଟି ଓ ସ୍ଥିତି କାରିଣୀ, (ଭୂତ-ବର୍ତ୍ତମାନ-ଭବିଷ୍ୟତ୍ ରୂପକ) ତ୍ରିନୟନ ମହା ପ୍ରଳୟ-କାଳରେ ଶ୍ମଶାନରେ ଶବ (ଶିବ ବା ନିଷ୍କ୍ରିୟ ବ୍ରହ୍ମଙ୍କ ହୃଦୟ ଶଯ୍ୟାର ଆଧାର) ହୃଦରେ ଅବସ୍ଥାନ ପୂର୍ବକ ମହାକାଳ ବା ପରମ ଶିବଙ୍କ ସହ ଅଭିନ୍ନତାବଶତଃ ପରମାନନ୍ଦ ସମ୍ଭୋଗ କ୍ରୀଡାରେ ନିମଗ୍ନ ତୁମର ସଚ୍ଚିଦାନନ୍ଦ ଶକ୍ତିରୂପକୁ ଯେଉଁମାନେ ଧ୍ୟାନ କର ବୁଦ୍ଧିହୀନ ଲୋକ ମଧ୍ୟ କବି ବା ପଣ୍ଡିତ ହୋଇଥାଏ ।।୭।।

ଭୟଙ୍କର ରବ କରୁଥିବା ଶୃଗାଳମାନଙ୍କ ଦ୍ୱାରା ପରିବୃତ, ଶବମାନଙ୍କର ମୁଣ୍ଡ * ଓ ଅସ୍ଥି ପରିପୂର୍ଣ୍ଣ ଜଳନ୍ତା ଚିତା ମଧ୍ୟରେ ପ୍ରବିଷ୍ଟା, ମହାକାଳଙ୍କ ସହ ବିପରୀତ ରତିରେ ସଂତୁଷ୍ଟା ନିତ୍ୟଯୁବତୀ ହରବଧୂଙ୍କୁ ଯେ ଧ୍ୟାନକରେ ତା'ର କେଉଁଠାରେ ପରାଜୟ ହୁଏନାହିଁ ।।୮।।

ହେ ଜନନୀ ! ତୁମର ତତ୍ତ୍ୱ ବ୍ରହ୍ମା, ଶିବ ଓ ବିଷ୍ଣୁଙ୍କ ମଧ୍ୟ ଭଲରୂପେ ଜଣାନାହିଁ । ମୁଁ ମୂଢ଼ମତି ତୁମର ଅବା କି ସ୍ତବ କରିବି ? ହେ ଅମିତେ ! ତଥାପି ତୁମପ୍ରତି ମୋର ଭକ୍ତି ମୋତେ ମୁଖର କରୁଛି ତୁମର ସ୍ତୁତିକରିବାକୁ । ମୋର ଏ ଦୋଷ କ୍ଷମାକର । ପଶୁ ବା ମାୟାବଦ୍ଧ ଜୀବପ୍ରତି କୋପ କରିବା ବେଦବେଦ୍ୟୋଲ ବ୍ରହ୍ମସ୍ୱରୂପା ତୁମର ଉଚିତ ନୁହେଁ ।୯।

---

* ବୃତ୍ତକଣ୍ଠେ ନୃକରୋଟୀସ୍ତଂ ଧୂର୍ଜଟେ ଯା ବିଲସତେ ।
ସର୍ବେଷାମନ୍ତର୍ଦଗ୍ଧାନାଂ ସା ସୃଷ୍ଟିଂ ସ୍ୱଜମାଳିକା (କାଶୀଖଣ୍ଡ ୧୩।୧୩୧)

ସମନ୍ତାଦାପୀନସ୍ତନଜଘନଧୃଗ୍‌ଯୌବନବତୀ—
ରତାସକ୍ତୋ ନକ୍ତଂ ଯଦି ଜପତି ଭକ୍ତସ୍ତବ ମନୁମ୍‌ ।
ବିବାସାସ୍ତ୍ୱାଂ ଧ୍ୟାୟନ୍‌ ଗଳିତଚିକୁରସ୍ତସ୍ୟ ବଶଗାଃ
ସମସ୍ତାଃ ସିଦ୍ଧୌଘା ଭୁବି ଚିରତରଂ ଜୀବତି କବିଃ ॥ ୧୦ ॥
ସମାଃ ସୁସ୍ଥୀଭୂତୋ ଜପତି ବିପରୀତାଂ ଯଦି ସଦା
ବିଚିନ୍ତ୍ୟ ତ୍ୱାଂ ଧ୍ୟାୟନ୍‌ ଅତିଶୟମହାକାଳସୁରତାମ୍‌ ।
ତଦା ତସ୍ୟ କ୍ଷୌଣୀତଳବିହରମାଣସ୍ୟ ବିଦୁଷଃ
କରାମ୍ଭୋଜେ ବଶ୍ୟା ହରବଧୂ ମହାସିଦ୍ଧିନିବହାଃ ॥ ୧୧ ॥
ପ୍ରସୂତେ ସଂସାରଂ ଜନନି ଭବତୀ ପାଳୟତି ଚ
ସମସ୍ତଂ କ୍ଷିତ୍ୟାଦି ପ୍ରଳୟସମୟେ ସଂହରତି ଚ ।
ଅତସ୍ତ୍ୱଂ ଧାତାଽପି ତ୍ରିଭୁବନପତିଃ ଶ୍ରୀପତିରପି
ମହେଶୋଽପି ପ୍ରାୟଃ ସକଳମପି କିଂ ସ୍ତୌମି ଭବତୀମ୍‌ ॥ ୧୨ ॥

---

ଯଦି କୌଣସି ଭକ୍ତ (ସମାଧିରୂପକ) ନିଶାକାଳରେ ମାୟାବରଣଶୂନ୍ୟ ଓ ଯୋଗାନନ୍ଦମଗ୍ନ ହୋଇ ସର୍ବଜୀବପାଳିକା ଓ ସର୍ବଜୀବୈକଜନନୀ ମୂଳାଧାରସ୍ଥା କୁଣ୍ଡଳିନୀଶକ୍ତି ସହିତ ନିଜର ଜୀବାତ୍ମାକୁ ପରମାତ୍ମାରେ ସମ୍ୟକ-ପ୍ରକାରେ ବିଲୀନ କରି ସାଯୁଜ୍ୟ ରସାସ୍ୱାଦରେ ମଗ୍ନ ହୋଇ ତୁମକୁ ଧ୍ୟାନ କରି କରି ତୁମର ମନ୍ତ୍ର ଜପ କରେ, ତେବେ ନିଖିଳ ସିଦ୍ଧି ତାର କରାୟତ୍ତ ହୁଏ ଏବଂ ସେ ଜୀବନ୍ମୁକ୍ତ ହୋଇ ପୃଥିବୀରେ ଦୀର୍ଘକାଳ ବିଚରଣ କରେ ।

ବାମାଚାରୀଗଣ ଏହାକୁ ଅକ୍ଷରଶଃ ବୁଝି 'ମୈଥୁନ ସାଧନ' କହନ୍ତି । ସେମାନେ ରାତିରେ ପୀନପୟୋଧରା ଘନଜଘନା ଯୁବତୀମାନଙ୍କ ସହ ବିବସ୍ତ୍ର ଓ ମୁକୁଳିତକେଶ ହୋଇ ରତ କରି ତୁମକୁ ଧ୍ୟାନ କରନ୍ତି ଓ ତୁମର ମନ୍ତ୍ର ଜପ କରନ୍ତି । ତଦ୍ଦ୍ୱାରା ସେମାନେ ଅଷ୍ଟସିଦ୍ଧି ପ୍ରାପ୍ତ ହୁଅନ୍ତି ॥ ୧୦

ହେ ହରବଧୂ ! କେହି ଯଦି ନିଷ୍ଠାଚିତ୍ତରେ ମହାକାଳ ସହିତ ଅତ୍ୟନ୍ତ ଅଭିନ୍ନ ଅଥଚ ସୃଷ୍ଟ୍ୟୁନ୍ମୁଖୀ ତୁମକୁ ନିରନ୍ତର ଏକବର୍ଷ କାଳ ଧ୍ୟାନ କରି ତୁମର ମନ୍ତ୍ର ଜପ କରେ, ତେବେ ସକଳ ମହାସିଦ୍ଧି ସେ ଧରାତଳବିହାରୀ ବିଦ୍ୱାନ୍‌ର କରକମଳଗତ ହୁଅନ୍ତି ॥ ୧୧ ॥

ହେ ମା' ! ତୁମେ ଜଗତ୍ ପ୍ରପଞ୍ଚ ସୃଷ୍ଟି କର, ପାଳନ କର ଓ ପ୍ରଳୟ କାଳରେ ପୃଥିବ୍ୟାଦି ସବୁକୁ ସଂହାର କର । ଏଣୁ ତୁମେ ହିଁ ବିଧାତା ବ୍ରହ୍ମା, ତୁମେ ହିଁ ତ୍ରିଭୁବନ ପତି ବିଷ୍ଣୁ ଓ ତୁମେ ହିଁ ରୁଦ୍ର—ସବୁ କିଛି । ତୁମର ମୁଁ କି ସ୍ତୁତି କରିବି ? ॥ ୧୨ ॥

ଅନେକେ ସେବନ୍ତେ ଭବଦଧିକ ଗୀର୍ବାଣନିବହାନ୍
ବିମୂଢାସ୍ତେ ମାତଃ କିମପି ନହି ଜାନନ୍ତି ପରମମ୍ ।
ସମାରାଧ୍ୟାମାଦ୍ୟାଂ ହରିହରବିରିଞ୍ଚ୍ୟାଦିବିବୁଧୈଃ
ପ୍ରପନ୍ନୋଽସ୍ମି ସ୍ୱୈରଂ ରତିରସମହାନନ୍ଦରସିକାମ୍ ॥ ୧୩ ॥
ଧରିତ୍ରୀ କୀଲାଲଂ ଶୁଚିରପି ସମୀରୋଽପି ଗଗନଂ
ତ୍ୱମେକା କଲ୍ୟାଣୀ ଗିରିଶରମଣୀ କାଳି ସକଲମ୍ ।
ସ୍ତୁତିଃ କା ତେ ମାତର୍ନିଜକରୁଣୟା ମାମଗତିକଂ
ପ୍ରସନ୍ନା ତ୍ୱଂ ଭୂୟା ଭବମନୁ ନ ଭୂୟାନ୍ମମ ଜନୁଃ ॥ ୧୪ ॥
ଶ୍ମଶାନସ୍ଥଃ ସ୍ୱସ୍ଥୋ ଗଳିତଚିକୁରୋ ଦିକ୍‌ପଟଧରଃ
ସହସ୍ରଂ ତ୍ୱର୍କାଣାଂ ନିଜଗଳିତବୀର୍ଯ୍ୟେଣ କୁସୁମମ୍ ।
ଜପଂସ୍ତ୍ୱତ୍‌-ପ୍ରତ୍ୟେକଂ ମନୁମପି ତବ ଧ୍ୟାନନିରତୋ
ମହାକାଳି ସ୍ୱୈରଂ ସ ଭବତି ଧରିତ୍ରୀପରିବୃଢଃ ॥ ୧୫ ॥

---

ଅନେକ ଲୋକ ତୁମଠାରୁ ଅଧିକ ଐଶ୍ୱର୍ଯ୍ୟଶାଳୀ ଦେବତାମାନଙ୍କୁ ଭଜନ କରନ୍ତି । ମା' ! ସେମାନେ ମୂର୍ଖ ଅଟନ୍ତି, ପରମତତ୍ତ୍ୱ କ'ଣ ଜାଣନ୍ତି ନାହିଁ । ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କ ଦ୍ୱାରା ସମ୍ୟକ୍ ଭାବରେ ପୂଜିତା ତଥା ଜଗତର ସୃଷ୍ଟି, ପାଳନ ଓ ସଂହାର ଲୀଳାରେ ଆନନ୍ଦଯୁକ୍ତା ଆଦ୍ୟା ମହାଶକ୍ତି କାଳୀଙ୍କଠାରେ ଶରଣ ପଶୁଛି । (ଏଠାରେ ଆଦ୍ୟା କହିଲେ 'ମଦ୍ୟ' ବୋଲି ବାମାଚାରୀଗଣ ଗ୍ରହଣ କରନ୍ତି) ॥ ୧୩ ॥

ହେ କାଳି ! ତୁମେ କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ – ସବୁ ଅଟ । ତୁମେ କଲ୍ୟାଣବିଧାୟିନୀ ଗିରିଶରମଣୀ ଏକା (ବା ଅଦ୍ୱିତୀୟା) ହେଲେ ହେଁ ସର୍ବରୂପରେ ବିରାଜିତା । ହେ ମା ! ତୁମର କି ସ୍ତୁତି କରିବ ? ତୁମେ ନିଜ କୃପା ବଶତଃ ନିରାଶ୍ରୟ ମୋ ପ୍ରତି ପ୍ରସନ୍ନ ହୁଅ—ଯେପରି ଏ ଜନ୍ମ ପରେ ମୁଁ ଆଉ ଜନ୍ମ ହେବି ନାହିଁ ॥ ୧୪ ॥

ହେ ମହାକାଳୀ ! ଯେଉଁ ସାଧକ ମୁକ୍ତକେଶ ବା ବିଗତଶୃଙ୍ଖଳ ହୋଇ ଚିତ୍ତବୃତ୍ତି ନିରୋଧ ପୂର୍ବକ ଦିଗମ୍ବର ବା ସର୍ବୋପାଧିବର୍ଜିତ ହୋଇ ଶ୍ମଶାନସ୍ଥ (ଶ୍ମଶାନରେ ଯେପରି ସ୍ଥୂଳବସ୍ତୁର ଲୟ ହୁଏ, ସେହିପରି ସକଳ ବସ୍ତୁର ଲୟ-ସ୍ଥଳ ବ୍ରହ୍ମରେ ମନୋନିବେଶ କରି) ବା ବ୍ରହ୍ମପରାୟଣ ଓ ସ୍ୱସ୍ଥ ବା ଆତ୍ମସ୍ଥ ହୋଇ ତୁମକୁ ଧ୍ୟାନ କରି ତୁମର ପ୍ରତି ମନ୍ତ୍ର ଜପବେଳେ ନିଜର ସହସ୍ରାରରୁ କ୍ଷରିତ ଅମୃତରେ ସିକ୍ତ କରି ହଜାରେ ଅର୍କ-ପୁଷ୍ପ ପ୍ରଦାନ କରେ ସେ ଅନାୟାସରେ

ଗୃହେ ସମ୍ମାର୍ଜନ୍ୟାଃ ପରିଗଳିତବୀର୍ଯ୍ୟଂ ହି ଚିକୁରଂ
ସମୂଳଂ ମଧ୍ୟାହ୍ନେ ବିତରତି ଚିତାୟାଂ କୁଜଦିନେ ।
ସମୁଚ୍ଚାର୍ଯ୍ୟ ପ୍ରେମ୍ଣା ମନ୍ତ୍ରମପି ସକୃତ୍ କାଳି ସତତଂ
ଗଜାରୂଢୋ ଯାତି କ୍ଷିତିପରିବୃଢଃ ସତ୍କବିବରଃ ॥ ୧୬ ॥
ସ୍ୱପୁଷ୍ପୈରାକୀର୍ଣ୍ଣଂ କୁସୁମଧନୁଷୋ ମନ୍ଦିରମହୋ
ପୁରୋ ଧ୍ୟାୟନ୍ ଧ୍ୟାୟନ୍ ଯଦି ଜପତି ଭକ୍ତସ୍ତବ ମନୁମ୍ ।
ସଗନ୍ଧର୍ବଶ୍ରେଣୀପତିରପି କବିତ୍ୱାମୃତନଦୀ –
ନଦୀନଃ ପର୍ଯ୍ୟନ୍ତେ ପରମପଦଲୀନଃ ପ୍ରଭବତି ॥ ୧୭ ॥

---

ସମଗ୍ର ପୃଥିବୀର ଅଧୀଶ୍ୱର ହୁଏ । ଏଠାରେ ଅର୍କ ବା ଆଦିତ୍ୟଙ୍କ ସ୍ଥାନ ରବି ହେତୁ ଚିତ୍ତବୃତ୍ତି ରୂପକ କୁସୁମ ଅର୍ଥାତ୍ ଦୟା, କ୍ଷମା, ପ୍ରଭୃତି କୋମଳ ମାନସିକ ବୃତ୍ତିସମୂହ ଗ୍ରହଣ କରିବାକୁ ହେବ ।

ବାମାଗୁରୁମାନେ ଏହାର ଆକ୍ଷରିକ ଅର୍ଥ କରି ଶ୍ମଶାନରେ ଦିଗମ୍ବର ହୋଇ ମୁକ୍ତବାଳ ମୁକୁଳା କରି ନିଜର ଗଳିତ ବୀର୍ଯ୍ୟରେ ଅର୍କ (କେତେକଙ୍କ ମତରେ ମନ୍ଦାର) ଫୁଲକୁ ବୁଡ଼ାଇ ମନ୍ତ୍ରଜପ ଓ ଧ୍ୟାନ ପୂର୍ବକ ଦେବୀଙ୍କୁ ଅର୍ପଣ କରନ୍ତି ॥ ୧୫ ॥

ହେ କାଳୀ (କାଳ ନିରୋଧିକା ପରିନିର୍ବାଣ କଳା) ! ଯେଉଁ ଲୋକ ମଙ୍ଗଳ ମୁହୂର୍ତ୍ତରେ ମଧ୍ୟାହ୍ନ ସଦୃଶ ପ୍ରଖର ଜ୍ଞାନାଲୋକରେ ତୁମର ମନ୍ତ୍ରକୁ ଭକ୍ତିର ସହିତ ଉଚ୍ଚାରଣ କରି ଶଷ୍ପସନ୍ତର୍ଭୀ ଚିତା ବା ଚିଦଗ୍ନିରେ ସଂବୃକ୍ତି (ସମ୍ମାର୍ଜନୀର ନାମ ଶୁଦ୍ଧ କରିବା । ତେଣୁ ଏଠାରେ ସଂଶୁଦ୍ଧି) ପ୍ରସୂତ ଆନନ୍ଦାମୃତକୁ ଏବଂ ସହେତୁକ ନିବୃତ୍ତିସମ୍ଭୂତ (ସମୂଳ ଚିକୁର ବା ସହେତୁକ ଅବିଦ୍ୟା ନାମ ସହ କେଶ ପ୍ରାୟ ଚିତ୍ତବୃତ୍ତି)କୁ ଅର୍ପଣ କରେ, ସେ ଅବଶ୍ୟ ପୃଥିବୀପତି ହୋଇ ସର୍ବଦା ଗଜାରୋହଣ ପୂର୍ବକ ପରିଭ୍ରମଣ କରେ ଓ ସତ୍କବି ହୁଏ ।

ବାମାଗୁରୁଗଣ ଏହାର ଆକ୍ଷରିକ ଅର୍ଥ ଅନୁସାରେ ମଙ୍ଗଳବାର ମଧ୍ୟାହ୍ନରେ ସମୂଳ କେଶ (ଏଠାରେ କେଶର ଅର୍ଥ ଭଗ ବା ଯୋନି) ଓ ନିଜର ଗଳିତ ବୀର୍ଯ୍ୟକୁ ଗୃହିଣୀରେ ନେଇ ମନ୍ତ୍ରପାଠ ପୂର୍ବକ ଚିତାରେ ପକାନ୍ତି । ପୁଣି ଶ୍ଳୋକରେ ବ୍ୟବହୃତ ଗୃହେ ଶବ୍ଦକୁ ମନ୍ତ୍ରଅଗୃହେ ଓ ସମ୍ମାର୍ଜନୀକୁ ଶିଶ୍ନ ବା ଲିଙ୍ଗ ବୋଲି ଅର୍ଥ କରି ମଧ୍ୟ ଅନୁରୂପ କ୍ରିୟା କରିଥାଆନ୍ତି ॥ ୧୬ ॥

ହେ ମା ! ଯଦି କୌଣସି ଭକ୍ତ (ସ୍ୱ ପୁଷ୍ପୈଃ ଆକୀର୍ଣ୍ଣଂ) ରକ୍ତବର୍ଣ୍ଣର ନିଜ ତେଜ ଦ୍ୱାରା ଉଦ୍ଭାସିତ ( କୁସୁମଧନୁଷଃ ମନ୍ଦିରଂ—କାମଦେବଙ୍କ ମନ୍ଦିର

ତ୍ରିପଞ୍ଚାରେ ପୀଠେ ଶବଶିବହୃଦି ସ୍ମେରବଦନାଂ
ମହାକାଳେନୋଚ୍ଚୈର୍ମଦନରସଲାବଣ୍ୟନିରତାମ୍ ।
ସମାସକ୍ତୋ ନକ୍ତଂ ସ୍ୱୟମପି ରତାନନ୍ଦନିରତୋ
ଜନୋ ଯୋ ଧ୍ୟାୟେତ୍ତ୍ୱାମପି ଜନନି ସ ସ୍ୟାତ୍ ସ୍ମରହରଃ ॥ ୧୮ ॥

---

ଅର୍ଥାତ୍) ମୂଳାଧାରସ୍ଥ ତ୍ରିକୋଣ ମଣ୍ଡଳକୁ ଧ୍ୟାନକରି ତୁମର ମନ୍ତ୍ର ଜପ କଲେ, ତେବେ ସେ ଇନ୍ଦ୍ରସ୍ଥ ଗନ୍ଧର୍ବମାନଙ୍କ ଅଧୀଶ୍ୱର ଓ କବିତାମୃତ ନଦୀର ଆଧାର ବା ସାଗର ହୁଏ । ଶେଷରେ ପରମପଦ ପ୍ରାପ୍ତ ହୋଇ ନିର୍ବାଣ ଲାଭ କରେ ।

ବାମାଗ୍ରୁମାନେ ଏହାର ଅକ୍ଷରଜ ଅର୍ଥ କରି ମଦନମନ୍ଦିରକୁ ସ୍ୱୟମ୍ଭୂ-କୁସୁମ ଦ୍ୱାରା ମଣ୍ଡିତ କରନ୍ତି । ଏଠାରେ ପୁଷ୍ପ କହିଲେ ଋତୁକାଳୀନ ରକ୍ତ । ମାତୃକାଭେଦ ତନ୍ତ୍ର ଅନୁସାରେ ଅବିବାହିତ କନ୍ୟାର ପ୍ରଥମ ରଜଃ । ତେଣୁ ସାଧକ ରତ ସମ୍ପୃକ୍ତରେ ଶକ୍ତିଙ୍କୁ ରଖି ତାଙ୍କର ରୁଧିରସିକ୍ତ ଯୋନିକୁ ଅବଲୋକନ କରି ମନ୍ତ୍ର ଜପ କରନ୍ତି ॥ ୧୭ ॥

ହେ ମା' ! ଯେଉଁ ଲୋକ ନିଶାକାଳରେ ନିଜେ (ସମାସକ୍ତ ଏକାଗ୍ରଚିତ୍ତ ହୋଇ (ରତାନନ୍ଦନିରତଃ) ଜୀବାତ୍ମା ଓ ପରମାତ୍ମାର ମିଳନ ଜନିତ ଆନନ୍ଦରେ ମଗ୍ନ ହୋଇ (ହୃଦୟସ୍ଥ) ପଞ୍ଚଦଶକୋଣଯୁକ୍ତ କାଳୀଯନ୍ତ୍ରରେ* ଶବ ରୂପକ ନିର୍ଗୁଣ ବ୍ରହ୍ମଙ୍କ ଉପରେ ସଗୁଣାଖ୍ୟ ମହାକାଳଙ୍କ ସହିତ ବିପରୀତ ଭାବେ ମିଳନ ହେବାରୁ ସ୍ମିତମୁଖୀ ଆନନ୍ଦ ଓ ବିଳାସରେ ନିରତା ହାସ୍ୟମୟୀ ତୁମକୁ ଧ୍ୟାନ କରେ ସେ ମଦନାନ୍ତକ ଶିବଙ୍କ ସଦୃଶ ହୁଏ ।

---

* କାଳୀତନ୍ତ୍ରୋକ୍ତ କାଳୀଯନ୍ତ୍ରର ମଧ୍ୟରେ ପରମ ନିର୍ବାଣକଳା ରୂପ ବ୍ରହ୍ମବୀଜ କ୍ରୀଂ । ଏହାର ବାହାରେ ଅଛି ବିନ୍ଦୁ ପ୍ରତିବିମ୍ବଚୈତନ୍ୟାତ୍ମିକା ଅହଂବ୍ରହ୍ମାସ୍ମି'—ଇତ୍ୟାକାର ବୃତ୍ତି । ଏହା କାର୍ଯ୍ୟ ନିର୍ବାଣ କଳା ମାୟାବୀଜ 'ହ୍ରୀଂ' ରୂପକ ବୈନ୍ଦବଚକ୍ର । ଏହାପରେ ପଞ୍ଚତ୍ରିକୋଣର ପଞ୍ଚଦଶ—ଅର ବା କୋଣରେ କାଳୀ, କପାଳିନୀ କୁଲ୍ଲା, କୁରୁକୁଲ୍ଲା ପ୍ରଭୃତି ଅନ୍ତରଙ୍ଗା ପଞ୍ଚଦଶ ଶକ୍ତି । ଏମାନେ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣର ଜ୍ଞାପିକା । ଏହାର ବାହାରେ ବିକ୍ଷେପ-ଆବରଣାତ୍ମକ ଅନାଦି ଦୁରତ୍ୟୟ ଅଜ୍ଞାନ ଉପହିତ କଟସ୍ଥ ଲକ୍ଷଣ ହୂଁ' ବୀଜାଖ୍ୟ ବୃତ୍ତି । ଏହାର ବାହାରେ ଅଷ୍ଟଦଳ ପଦ୍ମରେ ବ୍ରହ୍ମାଣୀ, ନାରାୟଣୀ, ମହେଶ୍ୱରୀ ପ୍ରଭୃତି ଅଷ୍ଟନାୟିକା, ଏମାନେ ହିଁ ଗୀତା (୭।୪)ରେ କଥିତ ଅଷ୍ଟ ଅପରାପ୍ରକୃତିର ବୋଧିକା । ଏହା ବାହାରେ ଭୂପୁର ହେଉଛି ପଞ୍ଚୀକୃତ ବ୍ରହ୍ମାଣ୍ଡ ।

ସଲୋମାସ୍ଥି ସ୍ୱୈରଂ ପଲଲମପି ମାର୍ଜାରମସିତେ
ପରଞ୍ଚୌଷ୍ଟ୍ରଂ ମୈଷଂ ନରମହିଷୟୋଶ୍ଛାଗମପି ବା ।
ବଲିଂ ତେ ପୂଜାୟାମପି ବିତରତାଂ ମର୍ତ୍ତ୍ୟବସତାଂ
ସତାଂ ସିଦ୍ଧିଃ ସର୍ବା ପ୍ରତିପଦମପୂର୍ବା ପ୍ରଭବତି ॥ ୧୯ ॥
ବଶୀ ଲକ୍ଷଂ ମନ୍ତ୍ରଂ ପ୍ରଜପତି ହବିଷ୍ୟାଶନରତୋ
ଦିବା ମାତର୍ଯୁଷ୍ମଚ୍ଚରଣଯୁଗଳଧ୍ୟାନନିପୁଣଃ ।
ପରଂ ନକ୍ତଂ ନଗ୍ନୋ ନିଧୁବନବିନୋଦେନ ଚ ମନୁଂ
ଜପେଲ୍ଲକ୍ଷଂ ସ ସ୍ୟାତ୍ ସ୍ମରହରସମାନଃ କ୍ଷିତିତଳେ ॥ ୨୦ ॥

---

ଏହି ଶ୍ଳୋକ ଅନୁସାରେ ବାମାଚାରୀଗଣ ନିଜେ ରତିକ୍ରିୟାରେ ଲିପ୍ତ ହୋଇ ଆନନ୍ଦ ଭୋଗ କାଳରେ ବିପରୀତରତା ଦେବୀଙ୍କ ଆନନ୍ଦମୟୀ ମୂର୍ତ୍ତିକୁ ଧ୍ୟାନକରି ମନ୍ତ୍ର ଜପ କରିଥାଆନ୍ତି ॥ ୧୮ ॥

ହେ ଅସିତେ (ଅତି ଦୂର ହେତୁ ନିତ୍ୟମୁକ୍ତା, ଆକାଶରୂପିଣୀ ଶ୍ୟାମା) ! ତୁମର ପୂଜାରେ ଛେଳି (କାମ), ନର (ଲୋଭ), ମହିଷ (କ୍ରୋଧ), ମେଣ୍ଢା (ମୋହ) ଓଟ (ମଦ), ବିଲେଇ (ମାତ୍ସର୍ଯ୍ୟ) ଙ୍କ ମାଂସକୁ ଅସ୍ଥି ଓ ଲୋମ ସହିତ (ଅର୍ଥାତ୍ ଷଡ଼୍ରିପୁଙ୍କ ସ୍ଥୂଳ, ସୂକ୍ଷ୍ମ ଓ ଅତିସୂକ୍ଷ୍ମ ବୃତ୍ତି ସମୂହ ରୂପ) ଉତ୍ସର୍ଗ କଲେ ପ୍ରଦାନକାରୀ ସାଧୁ ମାନଙ୍କର ପ୍ରତିପଦରେ ଅଭୂତ ସିଦ୍ଧି ସମ୍ଭବ ହୋଇଥାଏ । (ଯେଉଁମାନେ ନିଜର କାମ କ୍ରୋଧାଦି ଷଡ଼୍ରିପୁଙ୍କୁ ବଳିଦେବା ନ ବୁଝି ଆକ୍ଷରିକ ଅର୍ଥରେ ବିଲେଇ ପ୍ରଭୃତି ମାରନ୍ତି ସେମାନେ ଅ-ପୂର୍ବ-ସିଦ୍ଧି ଅର୍ଥାତ୍ ସିଦ୍ଧି ପୂର୍ବରେ ଅ-ଲାଗିଥିବା ଅର୍ଥାତ୍ 'ଅସିଦ୍ଧି'ର ଅଧିକାରୀ ହୁଅନ୍ତି) ।

ବାମାଚାରୀଗଣ ଏହାକୁ ଭିତ୍ତି କରି ଉପର୍ଯ୍ୟୁକ୍ତ ପ୍ରାଣୀ ବଧ କରିଥାଆନ୍ତି ॥୧୯॥

ହେ ମା' ! ଯେଉଁ ଜିତେନ୍ଦ୍ରିୟ ବ୍ୟକ୍ତି ଦିନରେ ହବିଷ୍ୟାନ୍ନ ଭୋଜନ କରି ତୁମର ପାଦପଦ୍ମ ଧ୍ୟାନପୂର୍ବକ ଲକ୍ଷେ ମନ୍ତ୍ର ଜପ କରେ ଏବଂ ରାତିରେ (ନଗ୍ନଃ ... ଅର୍ଥାତ୍) ସର୍ବବନ୍ଧନବିନିର୍ମୁକ୍ତ ହୋଇ (ନିଧୁବନବିନୋଦେନ ଅର୍ଥାତ୍) କୁଳକୁଣ୍ଡଳିନୀ ସହିତ ପରମାତ୍ମାଙ୍କ ମିଳନଜନିତ ଆନନ୍ଦ ଉପଭୋଗ କରି* ଲକ୍ଷେ ମନ୍ତ୍ର ଜପ କରେ, ସେ ଧରାଧାମରେ ଶିବ ସଦୃଶ ଆନନ୍ଦଶୀଳ ଯୋଗୀ ହୁଏ ॥ ୨୦ ॥

---

* ଏ ବିଷୟରେ କୁଳାର୍ଣ୍ଣବତନ୍ତ୍ରର ସ୍ମରଣୀୟ ବାକ୍ୟ ହେଉଛି –
ପରଶକ୍ତ୍ୟାତ୍ମମିଥୁନ ସଂଯୋଗାନନ୍ଦନିର୍ଭରଃ ।
ଯ ଆସ୍ତେ ମୈଥୁନଂ ତତ୍ସ୍ୟାଦପରେ ସ୍ତ୍ରୀନିଷେବକାଃ ॥

ଇଦଂ ସ୍ତୋତ୍ରଂ ମାତସ୍ତବ ମନୁସମୁଦ୍ଧାରଣଜନୁଃ
ସ୍ୱରୂପାଖ୍ୟଂ ପାଦାମ୍ବୁଜ ଯୁଗଳପୂଜାବିଧିଯୁତମ୍ ।
ନିଶାର୍ଦ୍ଧେ ବା ପୂଜାସମୟମଧି ବା ଯସ୍ତୁ ପଠତି
ପ୍ରଳାପସ୍ତସ୍ୟାପି ପ୍ରସରତି କବିତ୍ୱାମୃତରସଃ ॥ ୨୧ ॥
କୁରଙ୍ଗାକ୍ଷୀବୃନ୍ଦଂ ତମନୁସରତି ପ୍ରେମତରଳଂ
ବଶସ୍ତସ୍ୟ କ୍ଷୌଣୀପତିରପି କୁବେର ପ୍ରତିନିଧିଃ ।
ରିପୁଃ କାଲାକାରଂ କଲୟତି ଚ ତଂ କେଳିକଲୟା
ଚିରଂ ଜୀବନ୍ମୁକ୍ତଃ ସ ଭବତି ଚ ଭକ୍ତଃ ପ୍ରତିଜନୁଃ ॥ ୨୨ ॥

—

## କାଳ୍ୟପରାଧକ୍ଷମାପନସ୍ତୋତ୍ରମ୍

ପ୍ରାଗ୍ ଦେହସ୍ଥୋ ଯଦାହଂ ତବ ଚରଣଯୁଗଂ ନାଶ୍ରିତୋ ନାର୍ଚ୍ଚିତୋଽହଂ
ତେନାହଂ ଦୁଃଖବର୍ଗୈର୍ଜଠରଜନକୈର୍ବାଧ୍ୟମାନୋ ବଳିଷ୍ଠଃ ।
ମାତ୍ୱା ଜନ୍ମାନ୍ତରଂ ମେ ପୁନରିହ ଭବିତା କ୍ୱାଶ୍ରୟୋ ନୈବ ଜାନେ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଳେ ॥ ୧ ॥

---

(ଫଳଶ୍ରୁତି)—ହେ ମା' ! ତୁମର ମନ୍ତ୍ରୋଦ୍ଧାର, ତୁମ ପାଦପଦ୍ମ ଯୁଗ୍ମର ପୂଜା ଓ ତୁମର ସ୍ୱରୂପ ବର୍ଣ୍ଣନା ସମ୍ବଳିତ ଏହି ସ୍ତୋତ୍ର ଯେଉଁ ଲୋକ ଅର୍ଦ୍ଧ-ରାତ୍ରିରେ ବା ପୂଜା ସମୟରେ ଉଚ୍ଚସ୍ୱରରେ ପଢ଼ିବ, ତା' ମୁହଁରୁ ବାହାରିବା ପ୍ରଳାପସମୂହ ମଧ୍ୟ ଅର୍ଥାତ୍ ସମସ୍ତ ବାକ୍ୟ କବିତାରୂପକ ଅମୃତରସ ଆକାରରେ ପ୍ରବାହିତ ହେବ ॥ ୨୧ ॥

ପ୍ରେମଚଞ୍ଚଳା ମୃଗନୟନା ରମଣୀଗଣ ତାହାର ଅନୁଗତ ହେବେ । ରାଜାମାନେ ତା'ର ବଶୀଭୂତ ହେବେ । ସେ କୁବେର ସଦୃଶ ଧନବାନ୍ ହେବ । ଶତ୍ରୁମାନେ ତାକୁ କାଳ ବା ଯମ ସଦୃଶ ମନେ କରିବେ । ସେ ଚିରକାଳ ଆନନ୍ଦ ସମ୍ଭୋଗରେ ଜୀବନଯାପନ କରି ଜୀବନ୍ମୁକ୍ତ ହେବ ॥ ୨୨ ॥

ପୂର୍ବଜନ୍ମରେ ମୁଁ ଦେହ ଧରି ଯେତେବେଳେ ଜନ୍ମ ହୋଇଥିଲି ତୁମର ଚରଣ ଦ୍ୱୟକୁ ଆଶ୍ରୟ କରି ପୂଜା କରିନାହିଁ । ତେଣୁ ଏବେ ପୁଣି ଜନ୍ମ ହେବା ପାଇଁ ମାତୃଗର୍ଭରେ ରହି ଅନେକ ଦୁଃଖ ଭୋଗୁଛି । ଅନ୍ୟ ଜନ୍ମରେ ମୋର ପୁଣି କିଏ ଆଶ୍ରୟ ହେବ ଜାଣେନାହିଁ । ହେ ପ୍ରକଟିତବଦନା ଭୟଙ୍କରୀ ଅଭୀଷ୍ଟପ୍ରଦା ମା' ମୋର ଅପରାଧ କ୍ଷମାକର ॥ ୧ ॥

ବାଲ୍ୟେ ବାଲାଭିଲାଷୈର୍ଜଡ଼ିତ ଜଡ଼ମତିର୍ବାଲଲୀଳାପ୍ରସକ୍ତୋ
ନ ତ୍ୱାଂ ଜାନାମି ମାତଃ କଳି କଳୁଷହରାଂ ଭୋଗମୋକ୍ଷୈକଦାତ୍ରୀମ୍ ।
ନାଚାରୋ ନାପି ପୂଜା ନ ଚ ଯଜନ-କଥା ନ ସ୍ମୃତିର୍ନୈବ ସେବା
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଲେ ॥ ୨ ॥
ପ୍ରାପ୍ତୋଽହଂ ଯୌବନଂ ଚେଦ୍ ବିଷଧର-ସଦୃଶୈରିନ୍ଦ୍ରିୟୈର୍ଦଷ୍ଟଗାତ୍ରୋ
ନଷ୍ଟପ୍ରଜ୍ଞଃ ପରସ୍ତ୍ରୀପରଧନହରଣେ ସର୍ବଦା ସାଭିଲାଷଃ ।
ତ୍ୱତ୍ପାଦାମ୍ଭୋଜଯୁଗ୍ମଂ କ୍ଷଣମପି ମନସା ନ ସ୍ମୃତୋଽହଂ କଦାପି
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଲେ ॥ ୩ ॥
ପ୍ରୌଢ଼େ ପ୍ରୌଢ଼ାଭିଳାଷୈଃ ସୁତଦୁହିତୃକଳତ୍ରାର୍ଥମନ୍ନାଦିଚେଷ୍ଟୈଃ
କ୍ୱ ପ୍ରାପ୍ସ୍ୟାମି କ୍ୱ ଯାମୀତ୍ୟନୁଦିନମନୁଦିନଂ ଚିନ୍ତୟା ଜୀର୍ଣ୍ଣଦେହଃ ।
ନୋ ତେ ଧ୍ୟାନଂ ନ ଚାସ୍ଥା ନ ଚ ଭଜନବିଧିର୍ନାମସଂକୀର୍ତ୍ତନଂ ବା
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଲେ ॥ ୪ ॥

---

ବାଲ୍ୟାବସ୍ଥାରେ ବାଳକୋଚିତ ବାସନାରେ ଆକୃଷ୍ଟ ହୋଇ ବୁଦ୍ଧି ହରାଇ ବାଳକ୍ରୀଡାରେ ଜଡିତ ହୋଇଥିଲି । ହେ ମା', କଳିକଳୁଷହାରିଣୀ ଓ ଅଦ୍ୱିତୀୟା ଭୁକ୍ତି ମୁକ୍ତିପ୍ରଦାୟିନୀ ତୁମକୁ ଜାଣିନାହିଁ । ସଦାଚାର, ପୂଜା, ଯଜ୍ଞ ପ୍ରସଙ୍ଗ ପ୍ରଭୃତି କିଛି କରିନାହିଁ । ତୁମର ସ୍ମରଣ ମନନ ମଧ୍ୟ କରିନାହିଁ । ଦେଖିବାକୁ ପ୍ରକଟିତବଦନା ଓ ଭୟଙ୍କରୀ ହେଲେ ହେଁ ଅଭୀଷ୍ଟଦାୟିନୀ ହେ ମା', ମୋର ଅପରାଧ କ୍ଷମାକର ॥ ୨ ॥

ଯେତେବେଳେ ମୋର ଯୌବନ ଆସିଲା, ବିଷଧର ସର୍ପ ସଦୃଶ ମୋର ଇନ୍ଦ୍ରିୟଗଣ ମୋତେ ଦଂଶନ କରିବାକୁ ଲାଗିଲେ । ମୁଁ ବୁଦ୍ଧି ହରାଇ ପରସ୍ତ୍ରୀ ଓ ପରଧନ ହରଣରେ ସର୍ବଦା ଅଭିଳାଷ ରଖିଲି । ତୁମର ପାଦପଦ୍ମ ଯୁଗଳ କ୍ଷଣକ ପାଇଁ ହେଲେ ମନରେ କେବେ ସ୍ମରଣ କରିନାହିଁ । ପ୍ରକଟିତବଦନା ଭୟଙ୍କରୀ ହେଲେହେଁ ହେ ଅଭୀଷ୍ଟଦାୟିନୀ ମା', ମୋ ଅପରାଧ କ୍ଷମାକର ॥ ୩ ॥

ପ୍ରୌଢ଼ ବୟସରେ (ବୁଢ଼ା ହୋଇଗଲେ ଆଉ ପାରିବ ନାହିଁ ବୋଲି) ଅଧିକ ଅଭିଳାଷ ନେଇ ପୁଅ, ଝିଅ, ସ୍ତ୍ରୀମାନଙ୍କ ପାଇଁ ଅନ୍ନଛତ୍ରର ବ୍ୟବସ୍ଥା କରିବାରେ ନିରତ ରହିଲି । କୁଆଡେ ଯିବି, କୁଆଡୁ ପାଇବି—ବୋଲି ଦିନରାତି ସବୁବେଳେ ଚିନ୍ତା କରି କରି ଦେହ ଜୀର୍ଣ୍ଣ ହୋଇଗଲା । ତୁମର ଧ୍ୟାନ କରିନାହିଁ କି ତୁମଠାରେ ଆସ୍ଥା (ବିଶ୍ୱାସ) ରଖିନାହିଁ କି ପୂଜାବିଧି କି ତୁମ ନାମ କୀର୍ତ୍ତନ ମନରେ ମଧ୍ୟ କରିନାହିଁ । ପ୍ରକଟିତବଦନା ଭୟଙ୍କରୀ ହେଲେ ହେଁ ହେ ଅଭୀଷ୍ଟଦାୟିନୀ ମା, ମୋ ଅପରାଧ କ୍ଷମାକର ॥ ୪ ॥

ବୃଦ୍ଧତ୍ୱେ ବୁଦ୍ଧିହୀନଃ କୃଶବିବଶତନୁଃ ଶ୍ୱାସକାସାତିସାରୈଃ
କର୍ଣ୍ଣଘ୍ରାଣାକ୍ଷିହୀନଃ ପ୍ରଗଳିତଦଶନଃ କ୍ଷୁତ୍ପିପାସାଭିଭୂତଃ ।
ପଶ୍ଚାତ୍ତାପେନ ଦଗ୍ଧୋ ମରଣମନୁଦିନଂ ଧ୍ୟେୟମାତ୍ରଂ ନ ଚାନ୍ୟତ୍
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥ ୫ ॥

କୃତ୍ୱା ସ୍ନାନଂ ଦିନାଦୌ କ୍ୱଚିଦପି ସଲିଳଂ ନାହୃତଂ ନୈବ ପୁଷ୍ପଂ
ତେ ନୋ ନୈବେଦ୍ୟାଦି ଚେଷ୍ଟା କ୍ୱଚିଦପି ଚ କୃତା ନୈବ ଭାବୋ ନ ଭକ୍ତିଃ ।
ନ ନ୍ୟାସୋ ନୈବ ପୂଜା ନ ଚ ଗୁଣକଥନଂ ନାପି ଚର୍ଚ୍ଚା କୃତା ତେ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥ ୬ ॥

ଜାନାମି ତ୍ୱାଂ ନ ରୂପଂ ଭବଭୟଶମନୀଂ ସର୍ବସିଦ୍ଧିପ୍ରଦାତ୍ରୀଂ
ନିତ୍ୟାନନ୍ଦୋଦୟେଶାଂ ନିଗମଫଳମୟୀଂ ନିତ୍ୟଲୀଳୋଦୟାଢ୍ୟାମ୍ ।
ମିଥ୍ୟାକାର୍ଯ୍ୟାଭିଳାଷୈରନୁଦିନମଭିତଃ ପୀଡିତୋ ଦୁଃଖସଙ୍ଘୈଃ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥ ୭ ॥

---

ବୃଦ୍ଧାବସ୍ଥାରେ ବୁଦ୍ଧି ଭ୍ରଂଶ ହେଲା । ଶ୍ୱାସ, କାଶ ଓ ଅତିସାର ପ୍ରଭୃତି ରୋଗରେ ମୋର ଶରୀର ଶୀର୍ଣ୍ଣ ଓ ଅବସାନ ହୋଇଗଲା । କର୍ଣ୍ଣ, ନାସିକା, ଆଖି ନଷ୍ଟ ହେଲା ଓ ଦାନ୍ତ ପଡ଼ିଗଲା । ବର୍ତ୍ତମାନ ଭୋକ ଶୋଷରେ ମୁଁ ଅଭିଭୂତ, ପଶ୍ଚାତ୍ତାପରେ ଦଗ୍ଧ ହୋଇ ପ୍ରତିଦିନ ମରଣକୁ ଖୋଜୁଛି ବସିଛି । ପ୍ରକଟିତରଦନା ହେତୁ ଭୟଙ୍କରୀ ହେଲେ ହେ ଅଭୀଷ୍ଟଦାୟିନୀ ହେ ମାଁ ! ମୋର ଅପରାଧ କ୍ଷମାକର ॥ ୫ ॥

କେବେହେଲେ ପ୍ରଭାତରେ ପୁଷ୍ପଚୟନ କରିନାହିଁ କି ସ୍ନାନ କରି ପୂଜା ପାଇଁ ଜଳ ଆଣି ନାହିଁ କିମ୍ବା ନୈବେଦ୍ୟ ବାଢ଼ିନାହିଁ । କେବେହେଲେ ସେଥିପାଇଁ ମୋର ଭାବ କି ଭକ୍ତି ମଧ୍ୟ ହୋଇନାହିଁ । ମୁଁ ନ୍ୟାସ, ପୂଜା, ଗୁଣକୀର୍ତ୍ତନ, ତୁମ ବିଷୟ ଚର୍ଚ୍ଚା କିଛି କରିନାହିଁ । ପ୍ରକଟିତରଦନା ଭୟଙ୍କରୀ ଅଭୀଷ୍ଟଦାୟିନୀ ହେ ମାଁ ! ମୋର ଅପରାଧ କ୍ଷମାକର ॥ ୬ ॥

ସଂସାରଭୟବିନାଶିନୀ, ସର୍ବସିଦ୍ଧିପ୍ରଦାୟିନୀ, ନିତ୍ୟାନନ୍ଦବିଧାୟିନୀ, ଶାସ୍ତ୍ରାର୍ଥସ୍ୱରୂପିଣୀ, ନିତ୍ୟଲୀଳାମୟୀ ଓ ଦୟାମୟୀ ତୁମକୁ ମୁଁ ଜାଣିନାହିଁ । ବୃଥାକାର୍ଯ୍ୟରେ ଆସକ୍ତ ହେତୁ ସର୍ବଦା ସବୁ ଦିଗରୁ ଦୁଃଖ ଦ୍ୱାରା ପୀଡ଼ିତ । ପ୍ରକଟିତରଦନା ହେତୁ ଭୟଙ୍କରୀ ହେଲେ ହେଁ ଅଭୀଷ୍ଟଦାୟିନୀ ହେ ମାଁ ! ମୋର ଅପରାଧ କ୍ଷମାକର ॥ ୭ ॥

କାଳାଭ୍ରଶ୍ୟାମଳାଙ୍ଗୀ ବିଗଳିତଚିକୁରା ଖଡ୍‌ଗମୁଣ୍ଡାଭିରାମା
ତ୍ରାସତ୍ରାଣେଷ୍ଟଦାତ୍ରୀ କୁଣପକୁଳଶିରୋମାଳିନୀ ଦୀର୍ଘନେତ୍ରା ।
ସଂସାରସ୍ୟୈକସାରା ମନସି ନ ଚ କଦା ଭାବିତା ଭାବନାଭିଃ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତଦଦନେ କାମରୂପେ କରାଳେ ॥ ୮ ॥
ବ୍ରହ୍ମାବିଷ୍ଣୁସ୍ତଥେଶଃ ପରିଣମତି ସଦା ତ୍ୱତ୍ପଦାମ୍ଭୋଜଯୁଗ୍ମଂ
ଭାଗ୍ୟାଭାବାନ୍ନ ଶୃଦ୍ଧଂ ଭବଜନନି ଭବତ୍‌ପାଦପଦ୍ମଂ ଭଜାମି ।
ନିତ୍ୟଂ ଲୋଭପ୍ରମୋହୈଃ କୃତବିବଶମତିଃ କାମୁକସ୍ତ୍ୱାଂ ପ୍ରୟାଚେ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥ ୯ ॥
ରାଗଦ୍ୱେଷପ୍ରମତ୍ତଃ କଳୁଷଯୁତତନୁଃ କାମଭୋଗ-ପ୍ରଲୁବ୍‌ଧଃ
କାର୍ଯ୍ୟାକାର୍ଯ୍ୟାବିଚାରୀ କୁଳମତିରହିତଃ କୌଳସଙ୍ଗୈର୍ବିହୀନଃ ।
କ୍ୱ ଧ୍ୟାନଂ ତେ କ୍ୱ ଚାର୍ଚ୍ଚା କ୍ୱ ଚ ମନ୍ତ୍ର ଜପନଂ ନୈବ କିଞ୍ଚିତ୍‌କୃତୋଽହଂ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥ ୧୦ ॥

---

ସଜଳ ମେଘଭଳି ଶ୍ୟାମଳାଙ୍ଗୀ, ଆଲୁଳାୟିତ କେଶା, (ବାମ ହସ୍ତ ଦ୍ୱୟରେ) ଖଡ୍‌ଗ ଓ ମୁଣ୍ଡ ଧରି ସୁନ୍ଦର ଦେଖାଯାଉଥିବା (ଦକ୍ଷିଣ ହସ୍ତଦ୍ୱୟରେ) ବରାଭୟ ମୁଦ୍ରା ଧାରଣ କରିଥିବା, ଶବମୁଣ୍ଡମାଳିନୀ, ଦୀର୍ଘନୟନା, ସଂସାରର ସାରଭୂତା ତୁମକୁ ମନରେ କେବେହେଲେ ଧ୍ୟାନଧାରଣାଦି ଭାବନାରେ ଭାବି ନାହିଁ । ପ୍ରକଟିତରଦନା ହେଉ ଭୟଙ୍କରୀ ହେଲେ ହେଁ ଅଭୀଷ୍ଟଦାୟିନୀ ହେ ମା' ! ମୋର ଅପରାଧ କ୍ଷମାକର ॥ ୮ ॥

ତୁମର ପାଦପଦ୍ମ ଯୁଗଳରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସବୁବେଳେ ପ୍ରଣାମ କରନ୍ତି । ହେ ଜଗଜ୍ଜନନି ! ମୋର ଭାଗ୍ୟ ନାହିଁ ବୋଲି ମୁଁ ତୁମର ପାଦପଦ୍ମକୁ ଭଜନ କରୁନାହିଁ । କାମୁକ ମୁଁ ସର୍ବଦା ଲୋଭମୋହରେ ବଶ ହୋଇ ତୁମକୁ ପ୍ରାର୍ଥନା କରୁଛି—ହେ ମା' ! ଭୟଙ୍କରୀ ପ୍ରକଟିତରଦନା ଅଭୀଷ୍ଟଦାୟିନୀ—ମୋର ଅପରାଧ କ୍ଷମାକର ॥ ୯ ॥

ମୁଁ ରାଗ ଓ ଦ୍ୱେଷ ଯୋଗୁଁ ବିବେକହୀନ । ମୋର ଶରୀର ପାପମୟ । ମୁଁ କାମଭୋଗରେ ଆସକ୍ତ କର୍ତ୍ତବ୍ୟାକର୍ତ୍ତବ୍ୟବିଚାରହୀନ, କୁଳାଚାରଶୂନ୍ୟ* ଓ କୌଳସଙ୍ଗରହିତ** । ନାହିଁ ତୁମର ଧ୍ୟାନ, ନାହିଁ ତୁମର ଚର୍ଚ୍ଚା,

---

*କୁଳ - ଅସ୍ମରେ ବନସ୍ୟୋ ବଦ୍ୟା ପ୍ରତଷ୍ଠା ତୀର୍ଥଦର୍ଶନମ୍ ।
ନିଷ୍ଠାବୃତ୍ତିସ୍ତପୋଦାନଂ ନବଧା କୁଳଲକ୍ଷଣମ୍ ॥
**କୌଳ — ଦ୍ରବ୍ୟଭାବରତଃ କୌଳଃ ସର୍ବତ୍ର ସମଦର୍ଶନଃ । (କୁଳାର୍ଣ୍ଣବ)

ରୋଗୀ ଦୁଃଖୀ ଦରିଦ୍ରଃ ପରବଶକୃପଣଃ ପାଂଶୁଳଃ ପାପଚେତା
ନିଦ୍ରାଳସ୍ୟପ୍ରସକ୍ତଃ ସ୍ୱଜଠରଭରଣେ ସର୍ବଦା ବ୍ୟାକୁଳାତ୍ମା ।
କିଂ ତେ ପୂଜାବିଧାନଂ କ୍ୱ ଚ ମନୁଜପନଂ କ୍ୱାନୁରାଗଃ କ୍ୱ ଚେଷ୍ଟା
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଳେ ॥ ୧୧ ॥
ମିଥ୍ୟାବ୍ୟାମୋହରାଗୈଃ ପରିବୃତମନସଃ କ୍ଳେଶସଙ୍ଘାବୃତସ୍ୟ
କ୍ଷୁତ୍ତୃଡ୍‌ନିଦ୍ରାନ୍ୱିତସ୍ୟ ସ୍ମରଣବିରହିଣଃ ପାପକୃତ୍ୟପ୍ରବୃତ୍ତେଃ ।
ଦାରିଦ୍ର୍ୟସ୍ୟ କ୍ୱ ଧର୍ମଃ କ୍ୱ ଚ ଭଜନବିଧିଃ କ୍ୱ ସ୍ଥିତିଃ ସାଧୁସଙ୍ଗେ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଳେ ॥ ୧୨ ॥
ମାତସ୍ତାତସ୍ୟ ଦେହାଜ୍ଜନନି ଜଠରଗସ୍ତାବଦାଲବ୍‌ଧଦେହ-
ସ୍ତ୍ୱଂ କର୍ତ୍ରୀ କାରୟିତ୍ରୀ କରଣଗୁଣମୟୀ କର୍ମହେତୁସ୍ୱରୂପା ।
ତ୍ୱଂ ବୁଦ୍ଧିଶ୍ଚିତ୍ତସଂସ୍ଥା ଜଗଦିଦମଖିଳଂ ତ୍ୱାମୃତେନାସ୍ତି ମାତଃ
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତବଦନେ କାମରୂପେ କରାଳେ ॥ ୧୩ ॥

---

ନାହିଁ ତୁମର ମନ୍ତ୍ର ଜପ ? ଏ ସବୁ ଥାଉଁ ଥାଉଁ ମୁଁ କରୁନାହିଁ । ପ୍ରକଟିତ-ବଦନା, ଭୟଙ୍କରୀ ହେଲେ ହେଁ ଅଭୀଷ୍ଟଦାୟିନୀ ହେ ମା' ! ମୋର ଅପରାଧ କ୍ଷମାକର ॥ ୧୦ ॥

ମୁଁ ରୋଗୀ, ଦୁଃଖୀ ଦରିଦ୍ର, ପରାଧୀନ, ଅଧମ, ମଳିନଶରୀର, ପାପିଷ୍ଠ, ନିଦ୍ରା ଓ ଆଳସ୍ୟରେ ରତ ଏବଂ ନିଜର ଉଦର ପୂରଣରେ ସତତ ସଚେଷ୍ଟ । ତୁମର ପୂଜାବିଧାନ ମୁଁ ଜାଣେନାହିଁ । ତୁମର ମନ୍ତ୍ରଜପ, ତୁମପ୍ରତି ଅନୁରାଗ ବା ଭକ୍ତି ଓ ତୁମଠାରେ ବିଶ୍ୱାସ ତ ଦୂର କଥା । ହେ ପ୍ରକଟିତବଦନା ଭୟଙ୍କରୀ ହେଲେହେଁ ଅଭୀଷ୍ଟପୂରଣକାରିଣୀ ମା' ! ମୋର ଅପରାଧ କ୍ଷମାକର ॥ ୧୧ ॥

ମିଥ୍ୟା, ମୋହ, ଅନୁରାଗରେ ବିପର୍ଯ୍ୟସ୍ତ ମନ, (ଅବିଦ୍ୟା-ଅସ୍ମିତା-ରାଗ-ଦ୍ୱେଷ-ଅଭିନିବେଶଃ ପଞ୍ଚ) କ୍ଳେଶର ଆବରଣରେ କ୍ଷୁଧା, ତୃଷା ଓ ନିଦ୍ରା ଯୁକ୍ତ ହୋଇ ତୁମକୁ ଭୁଲି ଯାଇଛି ଓ ପାପକର୍ମରେ ପ୍ରବୃତ୍ତ ହୋଇଛି । ମୁଁ ଦାରିଦ୍ର୍ୟ-ଗ୍ରସ୍ତ । ମୋର ନା ଧର୍ମ ନା ପୂଜା ନା ସାଧୁସଙ୍ଗ—କୁଆଡୁ ହେବ ? ହେ ପ୍ରକଟିତବଦନା ଭୟଙ୍କରୀ ଅଭୀଷ୍ଟଦାୟିନୀ ମା' ! ମୋର ଦୋଷ କ୍ଷମାକର ॥୧୨॥

ହେ ମା, ମୁଁ ପିତାଙ୍କ ଦେହରୁ ମାତାଙ୍କ ଗର୍ଭକୁ ଯାଇ, ଏ ଦେହ ଲାଭ କରିଛି । କର୍ତ୍ତା, କରଣ ଓ କର୍ମ ସର୍ବାବସ୍ଥାରେ ତୁମେ ହିଁ ରହିଛ କାରଣ ରୂପରେ । ତୁମେ ହିଁ ବୁଦ୍ଧି ରୂପରେ ଚିତ୍ତରେ ଅବସ୍ଥାନ କର । ତୁମ ବିନା ଏ ସମସ୍ତ ଜଗତରେ ଅନ୍ୟ କିଛି ନାହିଁ । ହେ ମା' ପ୍ରକଟିତବଦନା, ଭୟଙ୍କରୀ, ଅଭୀଷ୍ଟ ପ୍ରଦାୟିନୀ ! ମୋ ଅପରାଧ କ୍ଷମାକର ॥୧୩॥

ତ୍ୱଂ ଭୂମିସ୍ତ୍ୱଂ ଜଲୌଘସ୍ତ୍ୱମସି ହୁତବହୋ ଗନ୍ଧବାହସ୍ତ୍ୱମେବ
ତ୍ୱଞ୍ଚାକାଶୋ ମନଶ୍ଚ ପ୍ରକୃତିରପି ମହାନ୍ ପୂର୍ବିକାହଂ କୃତିଶ୍ଚ ।
ଆତ୍ମାପ୍ୟେବାସି ମାତଃ ପରମିହ ଭବତୀ ତ୍ୱତ୍ପରଂ ନୈବକିଞ୍ଚିତ୍
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥୧୪॥
ତ୍ୱଂ କାଳୀ ତ୍ୱଂ ଚ ତାରା ତ୍ୱମସି ଗିରିସୁତା ସୁନ୍ଦରୀ ଭୈରବୀ ତ୍ୱଂ
ତ୍ୱଂ ଦୁର୍ଗା ଛିନ୍ନମସ୍ତା ତ୍ୱମସି ଚ ଭୁବନା ତ୍ୱଞ୍ଚ ଲକ୍ଷ୍ମୀ ଶିବା ତ୍ୱମ୍ ।
ମାତଙ୍ଗୀ ତ୍ୱଞ୍ଚ ଧୂମା ତ୍ୱମସି ଚ ବଗଳା ମଙ୍ଗଳା ହିଙ୍ଗୁଳାଖ୍ୟା
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତରଦନେ କାମରୂପେ କରାଳେ ॥୧୫॥
ସ୍ତୋତ୍ରେଣାନେନ ଦେବୀଂ ପରିଣମତି ଜନୋ ଯଃ ସଦା ଭକ୍ତିଯୁକ୍ତୋ
ଦୁଷ୍ଟଂ ଦ୍ରିଂ କୁର୍ଗସଘ ପରିତରତି ସମୁଦ୍‌ବଗ୍ନା ନାଶମେତି ।
ନାଧିବ୍ୟାଧିଃ କଦା ଚିତ୍ ଯଦି ଭବତି ପୁନଃ ସର୍ବଦା ସାପରାଧଃ
ସର୍ବଂ ତତ୍ କାମରୂପା ତ୍ରିଭୁବନଜନନୀ କ୍ଷାମୟେତ୍ ପୁତ୍ରବୁଦ୍ଧ୍ୟା ॥୧୬॥

---

ହେ ମା' ! ତୁମେ ହିଁ କ୍ଷିତି ଅପ, ତେଜ, ମରୁତ୍ ଓ ବ୍ୟୋମ-ପଞ୍ଚ ମହାଭୂତ । ତୁମେ ହିଁ ମନ, ଅହଙ୍କାର, ମହତ୍ତ୍ୱ ଓ ପ୍ରକୃତି । ତୁମେ ହିଁ ଆତ୍ମା ଓ ପରମାତ୍ମା * । ତୁମଠାରୁ ଶ୍ରେଷ୍ଠ ଆଉ କେହି ନାହିଁ । ପ୍ରକଟିତରଦନା ହେତୁ ଭୟଙ୍କରୀ ହେଲେହେଁ ଅଭୀଷ୍ଟ ପ୍ରଦା ହେ ମା' ମୋ ଦୋଷ କ୍ଷମାକର ॥୧୦॥

ତୁମେ (୧) କାଳୀ, (୨) ତାରା, ପାର୍ବତୀ, (୩) ଷୋଡଶୀ (ସୁନ୍ଦରୀ ଲଳିତା) (୫) ଭୈରବୀ, ଦୁର୍ଗା, (୬) ଛିନ୍ନମସ୍ତା, (୪) ଭୁବନେଶ୍ୱରୀ, (୧୦) ଲକ୍ଷ୍ମୀ, ଶିବାନୀ, (୯) ମାତଙ୍ଗୀ, (୭) ଧୂମାବତୀ (୮) ବଗଳା, ମଙ୍ଗଳା, ହିଙ୍ଗୁଳା-ସବୁକିଛି । ପ୍ରକଟିତ ବଦନା ହେତୁ ଭୟଙ୍କରୀ ହେଲେ ହେଁ ଅଭୀଷ୍ଟଦାୟିନୀ ହେ ମା' ! ମୋର ଅପରାଧ କ୍ଷମାକର ॥୧୫॥

ଯେଉଁ ଲୋକ ଭକ୍ତିର ସହିତ ଏହି ସ୍ତୋତ୍ର ପାଠ କରି ଦେବୀଙ୍କୁ ପ୍ରଣାମ

---

* ସାଂଖ୍ୟୋକ୍ତ ଚତୁର୍ବିଂଶତି ତତ୍ତ୍ୱ ତୁମେ ଓ ପୁରୁଷ ମଧ୍ୟ ତୁମେ-
ମହାଭୂତାନ୍ୟହଂକାରୋ ବୁଦ୍ଧିରବ୍ୟକ୍ତମେବ ଚ ।
ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ ॥

(୧-୧୦) : ଦଶ ମହାବିଦ୍ୟା-
(୧) କାଳୀ (୨) ତାରାମହାବିଦ୍ୟା (୩) ଷୋଡଶୀ (୪) ଭୁବନେଶ୍ୱରୀ
(୫) ଭୈରବୀ (୬) ଛିନ୍ନମସ୍ତା ଚ ବିଦ୍ୟା (୭) ଧୂମାବତୀ ତଥା ।
(୮) ବଗଳା ସିଦ୍ଧବିଦ୍ୟା ଚ (୯) ମାତଙ୍ଗୀ (୧୦) କମଲାତ୍ମିକା
ଏତା ଦଶ ମହାବିଦ୍ୟାଃ ସିଦ୍ଧବିଦ୍ୟାଃ ପ୍ରକୀର୍ତ୍ତିତାଃ ॥

ଜେତା ବକ୍ତା କବୀଶୋ ଭବତି ଧନପତିର୍ଦ୍ଦାନଶୀଳୋ ଦୟାତ୍ମା
ନିଷ୍ପାପୋ ନିଷ୍କଳଙ୍କଃ କୁଳପତିକୁଶଳଃ ସତ୍ୟବାଗ୍ ଧାର୍ମିକଶ୍ଚ ।
ନିତ୍ୟାନନ୍ଦୋ ଗୁଣାଢ୍ୟଃ ପଶୁଗୁଣବିମୁଖଃ ସତ୍ପଥାଚାରଶୀଳଃ
ସଂସାରାବ୍ଧିଂ ସୁଖେନ ପ୍ରତରତି ଗିରିଜାପାଦପଦ୍ମାବଲମ୍ବାତ୍ ॥୧୭॥

ଇତି ଶ୍ରୀମତ୍ ପରମହଂସ ପରିବ୍ରାଜକାଚାର୍ଯ୍ୟ-ଶ୍ରୀମଚ୍ଛଙ୍କରାଚାର୍ଯ୍ୟ-ବିରଚିତଂ
କାଳ୍ୟପରାଧକ୍ଷମାପନ ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

—

କରେ ସେ କୁଷ୍ମାଣ୍ଡ ଓ ସଙ୍କଟଗୁଡ଼ିକୁ ଅତିକ୍ରମ କରିଯାଏ । ତା'ର ଉଦ୍‌ବେଗ ନାଶ ହୁଏ । ତା'ର ଆଧି (ମନକ୍ଲେଶ) ଓ ବ୍ୟାଧି (ଶରୀର ପୀଡ଼ା) ରହେ ନାହିଁ । ଏପରି କି ସେ ଯତ ସର୍ବଦା ଅପରାଧ କରିବସେ, ତେବେ ବି ସେ ସବୁକୁ କାମରୂପା ତ୍ରିଭୁବନ ଜନନୀ ପୁଅ ଦୋଷ କରିଛି ବୋଲି କ୍ଷମା କରିଦିଅନ୍ତି ॥୧୬॥

ଏହି ସ୍ତବ ପାଠ ଫଳରେ ଲୋକ ବିଜୟୀ, ବକ୍ତା, କବିଶ୍ରେଷ୍ଠ, ଧନୀ ଦାନୀ, ଦୟାଳୁ, ନିଷ୍ପାପ, ନିଷ୍କଳଙ୍କ, କୁଳାଚାର କୁଶଳ, ସତ୍ୟବାଦୀ, ଧାର୍ମିକ, ନିତ୍ୟାନନ୍ଦମୟ, ସର୍ବଗୁଣାଲଂକୃତ, ପଶୁଭାବ ବର୍ଜିତ, ସତ୍‌ପଥାବଲମ୍ବୀ ଓ ସଦାଚାରୀ ହୋଇ ପାର୍ବତୀଙ୍କ ପାଦପଦ୍ମକୁ ଆଶ୍ରାକରି ସଂସାର ସାଗର ସୁଖରେ ପାରି ହୋଇଯାଏ ॥୧୭॥

—

କାଳୀ କଳ୍ପାନ୍ତକାଳାନଳସଦୃଶଜଟାବଦ୍ଧଚେଲାଦ୍ୟୁମାନ୍ —
ତ୍ରିନେତ୍ରାତଃ ଶୈତ୍ୟଜାତସ୍ୱପନପରବଶାଧ୍ୱାପ୍ତନିଦ୍ରାନ୍ଧକାରେଃ ।
ବକ୍ଷଃପୀଠେ ନିଧାୟ ସ୍ୱଚରଣମହହ ସ୍ୱେଶବସ୍ତ୍ରୋପଶଷ୍ଟାନ୍ତ୍ର
ପାଦୌ ନ୍ୟସ୍ତୌ ମୟୈତୌ ପ୍ରଦିଶତୁ କୁଶଳଂ ଦକ୍ଷକନ୍ୟେବ ଦୋଷାତ୍ ॥ ୧ ॥
ଯା ଲୀଳା ମୁରଳୀବିନୋଦମଧୁରୈଃ ଶ୍ରୀରାଧିକାବଲ୍ଲଭେ
ଯା ସୂରୈଃ ପ୍ରଭୟା ପ୍ରକାଶିତଜଗଦ୍ ଯାର୍ଦ୍ଧାଙ୍ଗକାମାଙ୍ଗନା ।
ଯା ସ୍କନ୍ଦେ ସ୍ୱସୁମେବ ନନ୍ଦନତୟା ହେରମ୍ବରୂପାମ୍ବିକା
ତାଂ ତ୍ୱାଂ କାଳବଲାସଲ୍ଲଲସତନୁଂ ବନ୍ଦେ ତ୍ରିଲୋକପ୍ରସୂମ୍ ॥ ୨ ॥
ମହାକାଳସ୍ୟୋରଃ ସ୍ଥଳକୁସୁମଶଯ୍ୟାଧିଶୟିତା
ପରାନନ୍ଦଭ୍ରାନ୍ତା ଜିତଜଳଦକାନ୍ତା ବ୍ରସୁମିତା ।
ଲତା କାଚିତ୍ ଶ୍ୟାମା ଶିରସି ଧୃତସୋମାର୍ଦ୍ଧସୁଷମା
ହୃଦାରାମେ ସା ମେ ଫଳତୁ କୁଳକୈବଲ୍ୟମହିମା ॥ ୩ ॥

## ତାରା :

କାଳୀକୁଳର ଅନ୍ୟତମ ଅଭୀଷ୍ଟଦାୟିନୀ ପ୍ରତ୍ୟକ୍ଷ ଦେବୀ ହେଉଛନ୍ତି 'ତାରା'। ଏହାଙ୍କୁ ଅନେକ ବୌଦ୍ଧ ଅବଲୋକିତେଶ୍ୱରଙ୍କ ଶକ୍ତି 'ତାରା' ବୋଲି ମନେକରନ୍ତି। ମହାଯାନ ବୌଦ୍ଧ ସଂପ୍ରଦାୟରେ ସେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କ ମା' ଭାବରେ ପ୍ରସିଦ୍ଧ। ଜୈନ ଧର୍ମରେ ମଧ୍ୟ ଦେବୀ ତାରା ଅଛନ୍ତି। ହେମଚନ୍ଦ୍ରଙ୍କ ଅଭିଧାନ ଚିନ୍ତାମଣିରେ ନବମ ଜିନ ସୁବିଧି-ନାଥଙ୍କ ଶାସନ ଦେବତା ଥିଲେ ସୁତାରକା ବା ସୁତାରା ବୋଲି ଉଲ୍ଲେଖ ଅଛି। ପରବର୍ତ୍ତୀକାଳରେ ଏମାନଙ୍କର ସାମ୍ୟ ଯୋଗୁଁ ସମନ୍ୱୟ ହୋଇଥିଲେ ହେଁ ହିନ୍ଦୁତନ୍ତ୍ରର ତାରା ସେମାନଙ୍କଠାରୁ ସ୍ୱତନ୍ତ୍ର। କଳିଯୁଗରେ କାଳୀଙ୍କ ପରି ତାରା ମଧ୍ୟ ପ୍ରତ୍ୟକ୍ଷ ସିଦ୍ଧିଦାତ୍ରୀ ମହାଦେବୀ।

ସଂସାରାର୍ଣ୍ଣବରୁ ତାରଣ କରିଥିବାରୁ ତାରକତ୍ୱାତ୍ ତାରା ସ୍ମୃତା) 'ତାରା' ନାମରେ ଅଭିହିତ। ଭୋଗମୋକ୍ଷପ୍ରଦା ଏହି ମହାଦେବୀ ଉଗ୍ର ବିପଦରୁ ରକ୍ଷା କରୁଥିବାରୁ ତାଙ୍କର ହିଁ ନାମ ଉଗ୍ରତାରା। ସେ ଅବଲୀଳା ବା ଅନାୟାସରେ ବାକ୍‌ଶକ୍ତି ଓ ବିଦ୍ୟା ପ୍ରଦାନ କରୁଥିବାରୁ 'ନୀଳସରସ୍ୱତୀ' ନାମରେ ମଧ୍ୟ ପ୍ରସିଦ୍ଧା।*

ଥରେ ଭଗବତୀ ପାର୍ବତୀ ଭଗବାନ୍ ଶଙ୍କରଙ୍କୁ ପ୍ରଶ୍ନ କଲେ - ହେ ସର୍ବେଶ୍ୱର, ସର୍ବରହସ୍ୟା'ଭିଜ୍ଞ' ପ୍ରଭୁ ! କେଉଁ ବିଦ୍ୟା ବଳରେ ବ୍ୟାସଦେବ ମହାଭାରତାଦି ଅସଂଖ୍ୟ ଗ୍ରନ୍ଥ ପ୍ରଣୟନ କରିପାରିଥିଲେ ? ଏହାର ଉତ୍ତରରେ ଭଗବାନ୍ ଶିବ 'ତାରା'ଙ୍କ ପ୍ରସାଦରୁ ବ୍ୟାସ ଅଖଣ୍ଡ କବିତ୍ୱ ଓ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ ବୋଲି କହିଥିଲେ। ତେଣୁ ବିଧିବଦ୍ଧ ଭାବରେ ପୁରଶ୍ଚରଣ ପୂର୍ବକ ଗୁରୁଦତ୍ତ ତାରା ମନ୍ତ୍ରର ଏକନିଷ୍ଠ ସତ୍ୟବାକ୍ ସାଧକ ଯଦି ଶ୍ରେଷ୍ଠ 'ବଟ' ଖଣ୍ଡିକୁ ମନ୍ତ୍ର ବା

---

* ନୀଳତ୍ୱା ବାକ୍‌ପ୍ରଦା ଚେତି ତେନ 'ନୀଳସରସ୍ୱତୀ'।
ତାରକତ୍ୱାତ୍ ସଦା 'ତାରା' ସୁଖମୋକ୍ଷପ୍ରଦାୟିନୀ।
ଉଗ୍ରାପତ୍ତାରିଣୀ ଯସ୍ମାଦ୍ 'ଉଗ୍ରତାରା' ପ୍ରକୀର୍ତ୍ତିତା॥

ଘିଅରେ ବୁଡ଼ାଇ* ତାହାଦ୍ୱାରା ସତ୍ୟବାକ୍ 'ତାରା'ଙ୍କ ମୀଳସ୍ୱସ୍ତ ବୀଜମନ୍ତ୍ରକୁ ଶିଶୁ ଜନ୍ମ ହେବାର ତିନିଦିନ ମଧ୍ୟରେ ତା'ର ଜିହ୍ୱା ଉପରେ ଲେଖିଦିଅନ୍ତି, ତେବେ ସେ ଶିଶୁ ନିଶ୍ଚୟ ଅସାଧାରଣ ବିଦ୍ୱାନ୍ ହେବ ।

ତାରାଙ୍କର ମନ୍ତ୍ର ଅନେକ । କିନ୍ତୁ ସେଥିମଧ୍ୟରୁ ପ୍ରଣବ, ମାୟା, ବଧୂ, କୂର୍ଚ୍ଚ ଓ ଅସ୍ତ୍ର (ଓଁ ହ୍ରୀଁ ସ୍ତ୍ରୀଂ ହୂଁ ଫଟ୍)—ଏହି ପଞ୍ଚାକ୍ଷର ମହାବିଦ୍ୟା ଅତି ପ୍ରସିଦ୍ଧ । ଏଥିରୁ କେବଳ ତିନୋଟି ବୀଜାକ୍ଷର (ହ୍ରୀଁ ସ୍ତ୍ରୀଂ ହୂଂ) ହେଉଛି ମୀଳସରସ୍ୱତୀ ମନ୍ତ୍ର । ଏହା ହିଁ ତାରା-କୁଳ୍ଲୁକା ନାମରେ ପ୍ରଖ୍ୟାତ । ପଞ୍ଚାକ୍ଷର ମହାବିଦ୍ୟାରୁ ପ୍ରଣବକୁ ବାଦ୍ ଦେଲେ ବାକି ଚାରୋଟି (ହ୍ରୀଂ ସ୍ତ୍ରୀଂ ହୂଂ ଫଟ୍) ବୀଜାକ୍ଷର 'ଏକଜଟା'ଙ୍କ ମନ୍ତ୍ର । କେତେକଙ୍କ ମତରେ ମହର୍ଷି ବଶିଷ୍ଠ ମହାଚୀନ ବା ତିବ୍ବତ ଯାଇ 'ସ୍ତ୍ରୀଂ' ବୀଜ ବଦଳରେ 'ହ୍ରୀଂ' ବୋଲି ଜପ କରିବାରୁ ତାରା ପ୍ରସନ୍ନ ହେଲେ ନାହିଁ । ତେଣୁ ମହର୍ଷି ବଶିଷ୍ଠ ଅଭିଶାପ ଦେଲେ । ପରେ ଭଗବତୀ ପ୍ରସନ୍ନା ହୋଇ 'ହ୍ରୀଂ' ବୀଜ ବଦଳରେ 'ସ୍ତ୍ରୀଂ' ଜପ କରିବାକୁ ଆଦେଶ ଦେଲେ । ତେଣୁ ତାରା ମନ୍ତ୍ର ଜପବେଳେ ବଶିଷ୍ଠକୃତ ଶାପ ମୋଚନ କରିବାକୁ ହୁଏ । ତାରାଭକ୍ତିସୁଧାର୍ଣ୍ଣବ ମତରେ କୃଷ୍ଣାବତାର ହେବାପରେ ଏହି ବିଦ୍ୟା ଶାପ ବିମୁକ୍ତ ହୋଇ କଳିଯୁଗରେ ଅଶେଷ ଫଳପ୍ରଦାରୂପେ ପ୍ରସିଦ୍ଧ ।

ଭଗବତୀ ତାରାଙ୍କ ମନ୍ତ୍ରର ପ୍ରଥମାକ୍ଷର ଓଁ-କାରରୁ ତାଙ୍କର ବ୍ରହ୍ମରୂପତା ସିଦ୍ଧ ହୁଏ । ତେଣୁ ସେ ତତ୍ତ୍ୱ-ସ୍ୱରୂପିଣୀ ବା ପ୍ରଣବରୂପା ଅଟନ୍ତି । ହ-କାରରୁ ତାଙ୍କର ପ୍ରକାଶମାନତା, ରେଫ (ର-କାର)ରୁ ତାଙ୍କର ଅଜ୍ଞାନନିବୃତ୍ତିଶୀଳତା ଉଭୟରେ ବିନ୍ଦୁଯୁକ୍ତ ଈ-କାର ଦେବା-ପରେ ଯେଉଁ ମହାବୀଜ (ହ୍ରୀଂ) ହୁଏ, ସେ ଶବ୍ଦବ୍ରହ୍ମର ପ୍ରକାଶକ, କୂର୍ଚ୍ଚ

* ଜାତମାତ୍ରସ୍ୟ ବାଳସ୍ୟ ଦଶପତ୍ରିତସ୍ୟାଦିଧଃ ।
ଜିହ୍ୱାୟାଂ ବିଲିଖେନ୍ମନ୍ତ୍ରଂ ମଧ୍ୱାଜ୍ୟାଭ୍ୟାଂ ଶଳାକୟା ॥

(ହୂଂ) ପ୍ରବୋଧରୂପ ବା ଜ୍ଞାନ ସ୍ୱରୂପ ଏବଂ ଅସ୍ତ୍ର (ଫଟ୍) ହେଉଛି ଜଡ଼ତା ବା ମୂର୍ଖତାର ବିନାଶକ ।*

ଏହି ତାରଙ୍କ ମନ୍ତ୍ରଦ୍ରଷ୍ଟା ଋଷି ହେଉଛନ୍ତି—ଅକ୍ଷୋଭ୍ୟ, ଛନ୍ଦ—ବୃହତୀ, ଦେବତା-ତାରା, ବୀଜ-ହୂଂ, ଶକ୍ତି-ଫଟ୍, କୀଳକ-ବାକବର୍ଣ୍ଣ । ଚତୁର୍ବିଧ ପୁରୁଷାର୍ଥ ପ୍ରାପ୍ତି ସକାଶେ ଏହାର ବିନିଯୋଗ କରାଯାଏ । ମତାନ୍ତରରେ ସ୍ତ୍ରୀଂ-ବୀଜ, ହୂଂ-ଶକ୍ତି ଏବଂ ସ୍ତ୍ରୀଂ-କୀଳକ ବୋଲି ମଧ୍ୟ ପ୍ରୟୋଗ କରାଯାଏ । ଷଡ଼୍‌ଦୀର୍ଘମାୟାବୀଜରେ ଏହାଙ୍କର ଷଡ଼ଙ୍ଗନ୍ୟାସ ଧ୍ୟାନ କରାଯାଏ—

ପ୍ରତ୍ୟାଲୀଢ଼ ପଦାଂ ଘୋରାଂ ମୁଣ୍ଡମାଳାବିଭୂଷିତାମ୍,
ଖର୍ବାଂ ଲମ୍ବୋଦରୀଂ ଭୀମାଂ ବ୍ୟାଘ୍ରଚର୍ମାବୃତାଂ କଟୌ ।
ନବଯୌବନସମ୍ପନ୍ନାଂ ପଞ୍ଚମୁଦ୍ରାବିଭୂଷିତାମ୍ ।
ଚତୁର୍ଭୁଜାଂ ଲଲଜ୍ଜିହ୍ୱାଂ ମହାଭୀମାଂ ବରପ୍ରଦାମ୍ ॥
ଖଡ୍‌ଗକର୍ତ୍ତ୍ରିଧରାଂ ସବ୍ୟେ ବାମେ ମୁଣ୍ଡୋତ୍ପଲାନ୍ୱିତାମ୍ ।
ପିଙ୍ଗୋଗ୍ରୈକଜଟାଂ ଧ୍ୟାୟେନ୍ମୌଳାବକ୍ଷୋଭ୍ୟଭୂଷିତାମ୍
ବାଲାର୍କମଣ୍ଡଳାକାରଲୋଚନତ୍ରୟ ଭୂଷିତାମ୍ ।
ପ୍ରଜ୍ୱଳଚ୍ଚିତୃଭୂମଧ୍ୟଗତାଂ ଦଂଷ୍ଟ୍ରାକରାଳିନୀମ୍ ।
ସାବେଶସ୍ମେରବଦନାମସ୍ତ୍ୟଳଂକାରଭୂଷିତାମ୍ ।
ବିଶ୍ୱବ୍ୟାପକ ତୋୟାନ୍ତେ ଶ୍ୱେତପଦ୍ମୋପରିସ୍ଥିତାମ୍ ॥

ଅର୍ଥାତ୍ ବାମପାଦକୁ ଆଗକୁ ବଢ଼ାଇ ଛିଡ଼ା ହୋଇଥିବା ଉଗ୍ର, ମୁଣ୍ଡମାଳାବିଭୂଷିତା, ଖର୍ବକାୟା, ଲମ୍ବୋଦରୀ, ଭୟଙ୍କରୀ, କଟିରେ ବ୍ୟାଘ୍ର-

---

* ପ୍ରଣବାଦ୍ ବ୍ରହ୍ମରୂପା ସା ସୋଽହଂ ତତ୍ତ୍ୱସ୍ୱରୂପିଣୀ ।
ବ୍ୟୋମ୍ନା ପ୍ରକାଶମାନା ହ୍ରୀଂ ତ୍ରସମାନା ତ୍ୱମଗ୍ନିନା ॥
ତୟୋର୍ବିସର୍ଗ ଇକାରେ ବିନ୍ଦୁନା ଭ୍ରାନ୍ତିନ୍ନି ମତା ।
ତପକାରଃ ସର୍ବପାପଘ୍ନୋ ରେଫସ୍ତତ୍ତ୍ୱ ପ୍ରକାଶକଃ ॥
ବିନ୍ଦୁମାଲୀ ମହାବୀଜଂ ଶବ୍ଦବ୍ରହ୍ମ ପ୍ରକାଶକମ୍ ।
ହୂଁ ପ୍ରବୋଧରୂପଂ ସ୍ୟାଦସ୍ତ୍ରଂ ଜାଡ୍ୟ ବିନାଶକମ୍ ।
ଏବଂ ଯୋ ବେତ୍ତି ଶୁଦ୍ଧାତ୍ମା ସ ତୁ ସାକ୍ଷାନ୍ମହେଶ୍ୱରଃ ॥

ତମ୍ଭ ପରିହିତା, ନବଯୌବନା, ପଞ୍ଚମୁଦ୍ରାନ୍ୱିତା, ଚତୁର୍ଭୁଜା, ଲହଲହ ଜିଭ ବାହାର କରୁଥିବା, ଅତି ବିଶାଳ, ବରଦା, ଡାହାଣ ହାତରେ ଖଡ୍‌ଗ ଓ କତୁରୀ, ବାମ ହାତରେ ମୁଣ୍ଡ ଓ କମଳ ଧାରଣ କରିଥିବା, ପିଙ୍ଗଳ ଓ ଉଗ୍ର ଏକଜଟା ଥିବା, ମୁଣ୍ଡରେ ଭୂଷଣରୂପେ ଅକ୍ଷୋଭ୍ୟ ରହିଥିବା, ବାଳାରୁଣ ପରି ନେତ୍ରତ୍ରୟ ବିଭୂଷିତା, ଶ୍ମଶାନର ଜଳନ୍ତା ଚିତା ଭିତରେ ବିକରାଳ ଦାନ୍ତଥିବା ଏବଂ ଆବେଗବଶତଃ ସ୍ମିତହାସ୍ୟ କରୁଥିବା, ଅସ୍ଥିକୁ ଭୂଷଣରୂପେ ଧାରଣ କରିଥିବା, ବିଶ୍ୱବ୍ୟାପ୍ତ ଜଳ ମଧ୍ୟରେ ଶ୍ୱେତ କମଳ ଉପରେ ଆସୀନା 'ତାରା'ଙ୍କୁ ଧ୍ୟାନ କରିବା ଉଚିତ୍ ।

ଧନୁର୍ଦ୍ଧର ବୀରମାନେ ପାଦର ପାଞ୍ଚପ୍ରକାର ନିକ୍ଷେପ ଦ୍ୱାରା ଶରସନ୍ଧାନ କରିଥାନ୍ତି । ସେଥିରୁ ବାମଜଂଘ ଆଗକୁ ରଖି ଡାହାଣ ଜଂଘ ପଛକୁ ରଖିବା ଅବସ୍ଥାକୁ କୁହାଯାଏ 'ପ୍ରତ୍ୟାଳୀଢ଼', ଡାହାଣ ଜଂଘକୁ ଆଗକୁ ବଢାଇ ବାମଜଂଘକୁ ପଛରେ ରଖିବାକୁ କୁହାଯାଏ 'ଆଳୀଢ଼' । ଉଭୟପାଦକୁ ସମାନଭାବରେ ରଖିବା ହେଉଛି 'ସମପାଦ' । ଦୁଇପାଦକୁ ଓସାରି ରଖିବା ହେଉଛି 'ବୈଶାଖ' ଏବଂ ଦୁଇପାଦକୁ ଗୋଲାକୃତରେ ରଖିବା ହେଉଛି 'ମଣ୍ଡଳ' । ମା' ତାରା ଶବ ଉପରେ ପ୍ରତ୍ୟାଳୀଢ଼ ପଦାରେ ଅର୍ଥାତ୍ ବାମପାଦ ଆଗକୁ ବଢ଼ାଇ ଠିଆ ହୋଇ ଥାଆନ୍ତି । ତାଙ୍କର ଅନ୍ୟତମ ପ୍ରସିଦ୍ଧ ଧ୍ୟାନ ଶ୍ଳୋକ ହେଉଛି—

ପ୍ରତ୍ୟାଳୀଢ଼ ପଦାଂଘ୍ରି ଶବହୃଦ୍ ଘୋରଟ୍ଟହାସା ପରା
ଖଡ୍‌ଗେନ୍ଦୀବରକର୍ତ୍ରିଖର୍ପରଭୁଜା ହୁଂକାର ବୀଜୋଦ୍ଭବା ।
ଖର୍ବା ନୀଳବିଶାଳପିଙ୍ଗଳଜଟାଜୂଟୈକନାଗୈର୍ଯୁତା
ଜାଡ଼୍ୟଂ ନ୍ୟସ୍ୟ କପାଳକେ ତ୍ରିଜଗତାଂ ହନ୍ତ୍ୟୁଗ୍ରତାରା ସ୍ୱୟମ୍ ॥

ଯେ ଶବରୂପ ଶିବଙ୍କ ବକ୍ଷୋଦେଶରେ ପ୍ରତ୍ୟାଳୀଢ଼ ପାଦରଖି ଅତି ଉଚ୍ଚରେ ଅଟ୍ଟହାସ୍ୟ କରୁଛନ୍ତି, ଯାହାଙ୍କର ଦକ୍ଷିଣ ଊର୍ଦ୍ଧ୍ୱହସ୍ତରେ ଖଡ୍‌ଗ, ବାମ ଊର୍ଦ୍ଧ୍ୱହସ୍ତରେ ନୀଳୋତ୍ପଳ, ଦକ୍ଷିଣ ଅଧୋହସ୍ତରେ କତୁରୀ

ଏବଂ ବାମ ଅଧୋହସ୍ତରେ ଖର୍ପର ରହିଛି । ହୂଂକାର ବୀଜରୁ ଯାହାଙ୍କର ଉତ୍ପତ୍ତି, ଯେ ଖଟ୍ଵାଙ୍ଗଧୃତ’ ଯାହାଙ୍କର ମସ୍ତକରେ ନାଗବଳୟିତ ବିଶାଳ ପିଙ୍ଗଳ ଏକ ଜଟା ରହିଛି, ଯେ ନୀଳବର୍ଣ୍ଣା, ସେହି ପରମା ଦେବୀ ଉଗ୍ରତାରା ତ୍ରିଜଗତର ଜଡ଼ତା ନାଶ କରନ୍ତୁ ।

ଓଡ଼ିଶାରେ ଉଗ୍ରତାରାଙ୍କ ପ୍ରସିଦ୍ଧ ମନ୍ଦିର ‘ଭୁଷଣ୍ଡପୁର’ ନିକଟରେ ଅବସ୍ଥିତ । ସାଧକମାନେ ଦେବୀଙ୍କ ମନ୍ତ୍ରଜପରେ ସିଦ୍ଧିଲାଭ କରିବା ସକାଶେ ମହାଶଙ୍ଖର ମାଳା ବ୍ୟବହାର କରିଥାଆନ୍ତି । ନରକପାଳ ଖଣ୍ଡରେ ତିଆରି ଏହି ମାଳା ନମିଳିଲେ ସ୍ଫଟିକ ମାଳା ବ୍ୟବହାର କରା-ଯାଇପାରେ । ଗୁରୁଦତ୍ତ ମନ୍ତ୍ରର ବିଧିପୂର୍ବକ ଲକ୍ଷ ଜପ କଲେ ପୁରଶ୍ଚରଣ ହୋଇଥାଏ । ମନ୍ତ୍ର ଜପ ପରେ ନୀଳକମଳ (ତଦଭାବେ ବିଲ୍ୱପତ୍ର)କୁ ଘୃତାପ୍ଲୁତ କରି ଦଶାଂଶ ହୋମ କରିବାକୁ ହୁଏ । କୃଷ୍ଣ-ଅଗୁରୁ ମିଶ୍ରିତ ସୁଗନ୍ଧିତ ଜଳରେ ଦଶାଂଶ ତର୍ପଣ, ତା’ର ଦଶାଂଶ ଅଭିଷେକ ଓ ତା’ର ଦଶାଂଶ ବ୍ରାହ୍ମଣଭୋଜନ କରାଇଲେ ମନ୍ତ୍ରସିଦ୍ଧି ହୁଏ । କଳିଯୁଗରେ ସିଦ୍ଧିସକାଶେ ଚତୁର୍ଗୁଣ ଜପ ଆବଶ୍ୟକ । ତାରାଙ୍କ ମନ୍ତ୍ର ଜପବେଳେ ଅକ୍ଷୋଭ୍ୟଙ୍କ ମନ୍ତ୍ର (ଅଂ ମଂ ଅକ୍ଷୋଭ୍ୟାୟ ସ୍ୱାହା ସ୍ତ୍ରୀଂ) ଜପ କରିବା ଉଚିତ । ଏ ବିଷୟରେ ଅନ୍ୟାନ୍ୟ କଥା ଗୁରୁମୁଖଗମ୍ୟ ଅଟେ । ଶେଷରେ ଏତିକି କୁହାଯାଇପାରେ—

‘ନହି ତାରା ସମା କାଚିଦ୍ ଦେବତା ସିଦ୍ଧିଦାୟିନୀ’ ।

## ତାରାଷ୍ଟକ-ସ୍ତୋତ୍ରମ୍

ମାତର୍ନୀଳସରସ୍ୱତି ପ୍ରଣମତାଂ ସୌଭାଗ୍ୟ-ସମ୍ପତ୍ପ୍ରଦେ
ପ୍ରତ୍ୟାଳୀଢ଼ପଦସ୍ଥିତେ ଶବହୃଦି ସ୍ମେରାନନାମ୍ଭୋରୁହେ ।
ଫୁଲ୍ଲେନ୍ଦୀବରଲୋଚନତ୍ରୟଯୁତେ କର୍ତ୍ତ୍ରୀଂ କପାଲୋତ୍ପଲେ
ଖଡ୍ଗଞ୍ଚାଦଧତୀ ତ୍ୱମେବ ଶରଣଂ ତ୍ୱାମୀଶ୍ୱରୀମାଶ୍ରୟେ ॥ ୧ ॥

---

ହେ ମା’ ନୀଳସରସ୍ୱତି ! ତୁମକୁ ପ୍ରକୃଷ୍ଟ ଭାବରେ ନମସ୍କାର କରୁଥିବା ଭକ୍ତମାନଙ୍କୁ ତୁମେ ସମ୍ପଦ ପ୍ରଦାନ କରିଥାଅ । ତୁମେ ଶବରୂପୀ ଶିବଙ୍କ ବକ୍ଷୋଦେଶରେ ବାମ ପଦ ପ୍ରସାରଣ ପୂର୍ବକ ଦକ୍ଷିଣ ପଦ ସଂକୋଚ କରି

ବାଗୀଶ୍ୱରି ଭକ୍ତକଳ୍ପଲତିକେ ସର୍ବାର୍ଥସିଦ୍ଧିପ୍ରଦେ
ଗଦ୍ୟପ୍ରାକୃତପଦ୍ୟଜାତରଚନାସର୍ବଜ୍ଞସିଦ୍ଧିପ୍ରଦେ ।
ନୀଳେନ୍ଦୀବରଲୋଚନତ୍ରୟଯୁତେ କାରୁଣ୍ୟବାରାଂନିଧେ
ସୌଭାଗ୍ୟାମୃତବର୍ଷଣେନ କୃପୟା ସିଞ୍ଚ ତ୍ୱମସ୍ମାଦୃଶମ୍ ॥ ୨ ॥
ଖର୍ବେ ଗର୍ବସମୂହ-ପୂରିତତନୋ ସର୍ପାଦିବେଶୋଜ୍ଜ୍ୱଳେ
ବ୍ୟାଘ୍ରତ୍ୱକ୍-ପରୀତ-ସୁନ୍ଦରକଟିବ୍ୟାଧୂତ-ଘଣ୍ଟାଙ୍କିତେ ।
ସଦ୍ୟଃକୃତ୍ତଗଳଦ୍ରଜଃ ପରିମିଳନ୍ମୁଣ୍ଡଦ୍ୱୟୀମୂର୍ଦ୍ଧଜ-
ଗ୍ରନ୍ଥି ଶ୍ରେଣି-ନୃମୁଣ୍ଡଦାମ-ଲଳିତେ ଭୀମେ ଭୟଂ ନାଶୟ ॥ ୩ ॥
ମାୟାନଙ୍ଗବିକାରରୂପଲଳନା ବିନ୍ଦ୍ୱର୍ଦ୍ଧଚନ୍ଦ୍ରାତ୍ମିକେ
ହୁଁ ଫଟ୍ କାରମୟି ତ୍ୱମେବଶରଣଂ ମନ୍ତ୍ରାତ୍ମିକେ ମାଦୃଶଃ ।
ମୂର୍ତ୍ତିସ୍ତେ ଜନନି ତ୍ରିଧାମଘଟିତା ସ୍ଥୂଳାତି ସୂକ୍ଷ୍ମା ପରା
ବେଦାନାଂ ନ ହି ଗୋଚରା କଥମପି ପ୍ରାପ୍ତାଂ ନୁ ତାମାଶ୍ରୟେ ॥ ୪ ॥

---

'ପ୍ରତ୍ୟାଳୀଢ଼' ଅବସ୍ଥାରେ ଠିଆ ହୋଇଥାଅ । ତୁମର ମୁଖପଦ୍ମରେ ସ୍ମିତହାସ୍ୟ ଶୋଭାପାଉଛି, ତୁମର ନେତ୍ରତ୍ରୟ ପ୍ରସ୍ଫୁଟିତ ନୀଳକମଳ ପରି, କର୍ତ୍ତ୍ରୀ ନର-କପାଳ, ପଦ୍ମ ଓ ଖଡ୍ଗ ଧାରଣ କରିଥିବା ଈଶ୍ୱରୀ ତୁମେ ହିଁ ମୋର ଶରଣ ॥ ୧ ॥

ହେ ବାକ୍ୟର ଅଧୀଶ୍ୱରୀ (ବିଦ୍ୟା-ବାକ୍) ନୀଳ ସରସ୍ୱତୀ ! ତୁମେ ଭକ୍ତର ଅଭିଳାଷ ପୂରଣ କରିବାରେ କଳ୍ପଲତା ଭଳି ସମସ୍ତ ସିଦ୍ଧି ପ୍ରଦାୟିନୀ ଅଟ । ତୁମେ ଗଦ୍ୟ ପଦ୍ୟ ଓ ପ୍ରାକୃତ ଭାଷାରେ ରଚନାଶକ୍ତି ଓ ସର୍ବଜ୍ଞତା-ସିଦ୍ଧି ପ୍ରଦାନ କରିଥାଅ । ନୀଳ ପଦ୍ମ ପରି ତୁମର ତିନୋଟି ଚକ୍ଷୁ ଦେଖିବାକୁ ସୁନ୍ଦର । ତୁମେ ଦୟାର ସାଗର ଅଟ । ମୋପରି ଭାଗ୍ୟହୀନ ଶୁଷ୍କ ମଣିଷଟି ଉପରେ ତୁମେ ସୌଭାଗ୍ୟ ରୂପକ ଅମୃତ ବର୍ଷା କର ॥ ୨ ॥

ତୁମେ ଆକୃତିତଃ ଖର୍ବ ବା ବାମନ ) ହେଲେ ମଧ୍ୟ ଗର୍ବରେ ଉନ୍ନତ ଅଟ । ତୁମେ ସର୍ପ ବିଭୂଷିତ ହୋଇଛ । ତୁମ କଟିଦେଶରେ ବ୍ୟାଘ୍ରଚର୍ମ ଓ ଦୋଳାୟମାନ ଘଣ୍ଟା ଶୋଭାପାଉଛି । ତୁମର ଗଳାରେ ସଦ୍ୟ ହଣା ଯାଇଥିବା ରକ୍ତ ଝରୁଥିବା ନୃମୁଣ୍ଡ ଓ ସେ ମୁଣ୍ଡଗୁଡ଼ିକର ବାଳକୁ ବାନ୍ଧି ଗଣ୍ଠି ପକାଇ ମାଳା କରି ପିନ୍ଧିଥିବାରୁ ତୁମେ ଭୟଙ୍କର ଦେଖାଯାଉଛ । ତୁମକୁ ଦେଖି ମୋର ଭୟ ଜାତ ହେଉଛି । ମୋର ଭୟ ନାଶ କର ॥ ୩ ॥

ହେ ମା' ! ତୁମେ '(ମାୟା) ହ୍ରୀଂ, (ଅନଙ୍ଗ) ସ୍ତ୍ରୀଂ ହୂଂ ଫଟ୍' ମନ୍ତ୍ରମୟୀ ଅଟ । ତୁମେ ହିଁ ମୋର ଆଶ୍ରୟ । ହେ ଜନନୀ ! ତୁମର ମୂର୍ତ୍ତି ଚନ୍ଦ୍ର, ସୂର୍ଯ୍ୟ

ତ୍ୱତ୍ ପାଦାମ୍ବୁଜସେବୟା ସୁକୃତିନୋ ଗଚ୍ଛନ୍ତି ସାଯୁଜ୍ୟତାଂ
ତସ୍ୟ ଶ୍ରୀପରମେଶ୍ୱର-ତ୍ରିନୟନ-ବ୍ରହ୍ମାଦି-ସାମ୍ୟାତ୍ମନଃ ।
ସଂସାରାମ୍ବୁଧିମଜ୍ଜନେ ପଟୁତନୁର୍ଦେବେନ୍ଦ୍ରମୁଖ୍ୟାନ୍ ସୁରାନ୍
ମାତସ୍ତ୍ୱତ୍ ପଦସେବନେ ହି ବିମୁଖାନ୍ କୋ ମନ୍ଦଧୀଃ ସେବତେ ॥ ୫ ॥
ମାତସ୍ତ୍ୱତ୍ ପଦ-ପଙ୍କଜ-ଦ୍ୱୟ-ରଜୋମୁଦ୍ରାଙ୍କକୋଟୀରିଣ—
ସ୍ତେ ଦେବା ଜୟସଙ୍ଗରେ ବିଜୟିନୋ ନିଃଶଙ୍କମଙ୍କେ ଗତାଃ ।
ଦେବୋଽହଂ ଭୁବନେ ନ ମେ ସମ ଇତି ସ୍ପର୍ଦ୍ଧାଂ ବହନ୍ତଃ ପରେ
ତତ୍ତୁଲ୍ୟଂ ନିୟତଂ ଯଥାଶୁଚିରବୀ ନାଶଂ ବ୍ରଜନ୍ତି ସ୍ୱୟମ୍ ॥ ୬ ॥
ତ୍ୱନ୍ନାମସ୍ମରଣାତ୍ ପଳାୟନପରାନ୍ ଦ୍ରଷ୍ଟୁଞ୍ଚ ଶକ୍ତା ନ ତେ
ଭୂତପ୍ରେତପିଶାଚରାକ୍ଷସଗଣା ଯକ୍ଷାଶ୍ଚ ନାଗାଧିପାଃ ।
ଦୈତ୍ୟା ଦାନବପୁଙ୍ଗବାଶ୍ଚ ଖଚରା ବ୍ୟାଘ୍ରାଦିକା ଜନ୍ତବୋ
ଡାକିନ୍ୟଃ କୁପିତାନ୍ତକାଶ୍ଚ ମନୁଜଂ ମାତଃ କ୍ଷଣଂ ଭୂତଳେ ॥ ୭ ॥

---

ଓ ଅଗ୍ନି—ଏହି ତିନି ତେଜଦ୍ୱାରା ଘଟିତ ତଥା ସ୍ଥୂଳ, ସୂକ୍ଷ୍ମ ଓ ପର ଭେଦରେ ତ୍ରିବିଧ । ତୁମେ ସ୍ଥୂଳ ହେଲେ ମଧ୍ୟ ଅତି ସୂକ୍ଷ୍ମ । ବେଦ ତୁମର ବର୍ଣ୍ଣନା କରିବାରେ ଅସମର୍ଥ । ତୁମକୁ ସମସ୍ତେ ସ୍ତୁତି କରନ୍ତି । କୌଣସି ପ୍ରକାରେ ସେତେବେଳେ ତୁମକୁ ପାଇଅଛୁ ତୁମର ହିଁ ଆଶ୍ରୟ ଗ୍ରହଣ କରୁଛୁ ॥ ୪ ॥

ତୁମର ପାଦପଦ୍ମ ସେବା କରି ପୁଣ୍ୟବାନ୍ ଲୋକ ସାଯୁଜ୍ୟ ମୁକ୍ତି ଲାଭ କରନ୍ତି । ବିଷ୍ଣୁ, ଶିବ, ବ୍ରହ୍ମା ପ୍ରଭୃତିଙ୍କ ସମାନ ସେହି ଲୋକର ତୁଳନା କ'ଣ କରିବା ? ମା' ! ତୁମର ପାଦସେବା କରିବାରେ ବିମୁଖ ଇନ୍ଦ୍ରପ୍ରମୁଖ ଦେବତା-ମାନଙ୍କୁ ସଂସାର ସାଗରରେ ବୁଡ଼ିବାରେ ପ୍ରବୀଣ ମୂର୍ଖ ମଣିଷ କାହିଁକି ଭଜନ କରୁଛୁ ? ॥ ୫ ॥

ହେ ମା' ! ଯେଉଁ ସକଳ ଦେବତା ତୁମର ଚରଣ କମଳର ଧୂଳି ଦେଇ ନିଜ ମସ୍ତକର କିରୀଟକୁ ଅନୁରଞ୍ଜିତ କରିଥା'ନ୍ତି, ସଂଗ୍ରାମରେ ବିଜୟୀ ସେମାନେ ନିଃଶଙ୍କଭାବରେ ତୁମର କୋଳରେ ବସି ତୁମର ସ୍ନେହ ପାଇଥାଆନ୍ତି । ଆଉ ଯେଉଁମାନେ 'ମୁଁ ସମଗ୍ର ଭୁବନରେ ଏକମାତ୍ର ଦେବତା ଏବଂ ମୋ ସମାନ ଅଉ କେହି ନାହିଁ' ବୋଲି ସ୍ପର୍ଦ୍ଧା କରନ୍ତି ସେମାନେ ଅଗ୍ନି ଯେପରି ଜଳି ଲିଭି ଯାଏ ଓ ସୂର୍ଯ୍ୟ ଉଦୟ ହୋଇ ଅସ୍ତମିତ ହୁଏ, ସେହିପରି ବା ସେମାନଙ୍କ ଭଳି ନିଜେ ବିନାଶ ପ୍ରାପ୍ତ ହୁଅନ୍ତି ॥ ୬ ॥

ହେ ମା' ! ତୁମର ନାମ ସ୍ମରଣ କଲେ ଭୂତ ପ୍ରେତ, ପିଶାଚ, ରାକ୍ଷସ ଯକ୍ଷ, ନାଗାଧିପତି, ଦୈତ୍ୟ, ଦାନବ ଶ୍ରେଷ୍ଠ, ଖେଚର, ବ୍ୟାଘ୍ର ପ୍ରଭୃତି ଜନ୍ତୁ

ଲକ୍ଷ୍ମୀଃ ସିଦ୍ଧଗଣାଶ୍ଚ ପାବକମୁଖାଃ ସିଦ୍ଧାସ୍ତଥା ବୈରିଣାଂ
ସ୍ତମ୍ଭଶ୍ଚାପି ରଣାଙ୍ଗନେ ଗଜଘଟାସ୍ତମ୍ଭସ୍ତଥା ମୋହନମ୍ ।
ମାତସ୍ତ୍ୱତ୍ ପଦସେବୟା ଖଳୁନୃଣାଂ ସିଧ୍ୟନ୍ତି ତେ ତେ ଗୁଣାଃ
କାନ୍ତିଃ କାନ୍ତମନୋଭବସ୍ୟ ଭବତି କ୍ଷୁଦ୍ରୋଽପି ବାଚସ୍ପତିଃ ॥ ୮ ॥

ଫଳଶ୍ରୁତି — ତାରାଷ୍ଟକମିଦଂ ପୁଣ୍ୟଂ ଭକ୍ତିମାନ୍ ଯଃ ପଠେନ୍ନରଃ
ପ୍ରାତର୍ମଧ୍ୟାହ୍ନକାଳେ ଚ ସାୟାହ୍ନେ ନିୟତଃ ଶୁଚିଃ ।
ଲଭତେ କବିତାଂ ଦିବ୍ୟାଂ ସର୍ବଶାସ୍ତ୍ରାର୍ଥବିଦ୍ ଭବେତ୍ ॥
ଲକ୍ଷ୍ମୀମନଶ୍ୱରାଂ ପ୍ରାପ୍ୟ ଭୁକ୍ତ୍ୱା ଭୋଗାନ୍ ଯଥେପ୍ସିତାନ୍,
କୀର୍ତ୍ତିଂ କାନ୍ତିଞ୍ଚ ନୈରୁଜ୍ୟଂ ସର୍ବେଷାଂ ପ୍ରିୟତାଂ ବ୍ରଜେତ୍ ।
ବିଖ୍ୟାତିଞ୍ଚାପି ଲୋକେଷୁ ପ୍ରାପ୍ୟାନ୍ତେ ମୋକ୍ଷମାପ୍ନୁୟାତ୍ ॥
ଇତିଶ୍ରୀ ନୀଳତନ୍ତ୍ରେ ତାରାଷ୍ଟକ-ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

---

ଡାକିନୀଗଣ ଓ ଭୂତ ଯମ ମଧ୍ୟ ପଳାୟନ କରନ୍ତି । ତୁମର ନାମ ସ୍ମରଣ କରୁଥିବା ଲୋକଙ୍କୁ କେବେହେଲେ କ୍ରୂର ଦୃଷ୍ଟିରେ ଦେଖିବା ପାଇଁ ସେମାନେ ସମର୍ଥ ହୁଅନ୍ତି ନାହିଁ ॥ ୭ ॥

ହେ ମା' ! ତୁମର ପଦସେବା ଦ୍ୱାରା ଲକ୍ଷ୍ମୀ ଲାଭ ହୁଏ । ସିଦ୍ଧ ଗନ୍ଧର୍ବ ଓ ଅଗ୍ନିମୁଖ ଦେବତାମାନେ ସିଦ୍ଧ ହୁଅନ୍ତି । ଶତ୍ରୁମାନଙ୍କ ସ୍ତମ୍ଭନ ହୁଏ । ଯୁଦ୍ଧ କ୍ଷେତ୍ରରେ ଶତ୍ରୁ ଗଜମାନଙ୍କର ସ୍ତମ୍ଭ ହୁଏ । ଶତ୍ରୁ ଓ ଗଜ — ସମସ୍ତେ ମୋହ ହୁଅନ୍ତି । ସୌନ୍ଦର୍ଯ୍ୟରେ କନ୍ଦର୍ପଙ୍କୁ ଜୟ କରିବା ଶକ୍ତି ପ୍ରଭୃତି ବହୁ ଗୁଣ ପ୍ରାପ୍ତ ହୋଇଥାଏ । ତୁମର ପାଦସେବା କରି ସାଧାରଣ ଲୋକ ବୃହସ୍ପତିଙ୍କ ପରି ସମ୍ମାନ ପ୍ରାପ୍ତ ହୋଇଥାଏ ॥ ୮ ॥

ଯେଉଁ ବ୍ୟକ୍ତି ଭକ୍ତିର ସହିତ ପବିତ୍ର ଭାବରେ ପ୍ରାତଃ, ମଧ୍ୟାହ୍ନ ଓ ସନ୍ଧ୍ୟାରେ ଏହି ପୁଣ୍ୟ ତାରାଷ୍ଟକ ପାଠ କରେ, ସେ ଦିବ୍ୟ କବିତା ରଚନାର ଶକ୍ତି ପାଏ, ସକଳ ଶାସ୍ତ୍ରର ଅର୍ଥ ବୁଝିପାରେ । ଚିରସ୍ଥାୟୀ ସଂପଦ ଲାଭ କରି, ଯଥେଚ୍ଛ ସୁଖ ଭୋଗ କରି କୀର୍ତ୍ତି, କାନ୍ତି ଓ ଆରୋଗ୍ୟ ଲାଭ କରେ । ସେ ସକଳର ପ୍ରିୟପାତ୍ର ହୁଏ । ସର୍ବତ୍ର ବିଖ୍ୟାତ ହୁଏ । ଶେଷରେ ମୋକ୍ଷ ଲାଭକରେ ।

## ଷୋଡଶୀ ( ଲଳିତା ମହାତ୍ରିପୁରସୁନ୍ଦରୀ ) :

ପରାଶକ୍ତି ରାଜରାଜେଶ୍ୱରୀ ମହାତ୍ରିପୁରସୁନ୍ଦରୀ ଷୋଡଶୀ ନିଖିଳ ଲାଳିତ୍ୟ, ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ନିଧାନ ଅନନ୍ତ ମହାଶକ୍ତି । ଏହାଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ଆଚାର୍ଯ୍ୟ ଶଙ୍କରଙ୍କ କଣ୍ଠରୁ ନିଃସୃତ ହୋଇଥିଲା ତ୍ରିଲୋକସୁନ୍ଦରୀଙ୍କ ସୌନ୍ଦର୍ଯ୍ୟର ବର୍ଣ୍ଣନାରେ ଉଚ୍ଛଳ 'ସୌନ୍ଦର୍ଯ୍ୟଲହରୀ' । ଏହା ଭାବ, ଭାଷା ଓ ତନ୍ତ୍ର ଦୃଷ୍ଟିରୁ ଏକ ଅନବଦ୍ୟ ଓ ଅନୁପମ ସୃଷ୍ଟି । କୁହାଯାଏ—ଗୌରୀ ଶଙ୍କରଙ୍କ ଦର୍ଶନ ସକାଶେ କୈଳାସ ଯାଇଥିବା ଆଚାର୍ଯ୍ୟ ଶଙ୍କର ପରାଶକ୍ତିଙ୍କ ବିଷୟରେ ଜାଣିବାକୁ ଚାହିଁବାରୁ ଏହି ଗ୍ରନ୍ଥରତ୍ନଟି ଭଗବାନ୍ ଶଙ୍କରଙ୍କଠାରୁ ପାଇଥିଲେ । ତାକୁ ଆଣିବା ବେଳେ ବାଟରେ ପୋଥିଟି ଉପରେ ନନ୍ଦୀଙ୍କ ଦୃଷ୍ଟି ପଡିଲା ଏବଂ ସେ ଶଙ୍କରଙ୍କଠାରୁ ଟାଣି କିଛି ଅଂଶ ଖାଇଦେଲେ । ଶଙ୍କରଙ୍କ ହାତରେ ପ୍ରଥମ ୪୧ଟି ମାତ୍ର ଶ୍ଳୋକ ରହିଲା । ଶକ୍ତିତତ୍ତ୍ୱ ଓ ଶାକ୍ତ ସାଧନାର ଗଭୀର ରହସ୍ୟ ବର୍ଣ୍ଣନାମୂଳକ ଏହି ଅଂଶଟିକୁ ନିଜ ପାଖରେ ରଖିପାରି-ଥିବାରୁ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ତେଣୁ ସେ ଅଂଶଟି 'ଆନନ୍ଦଲହରୀ' ନାମରେ ମଧ୍ୟ ପରିଚିତ ହେଲା । ଉତ୍ତରାର୍ଦ୍ଧର ୫୯ଶ୍ଳୋକ ଦେବୀଙ୍କ ସୌନ୍ଦର୍ଯ୍ୟମୂଳକ ଆ-ଶିଖ-ନଖ ବର୍ଣ୍ଣନା ଭଗବତୀ ଦର୍ଶନପ୍ରାପ୍ତ ଆଚାର୍ଯ୍ୟ ଶଙ୍କରଙ୍କ ନିଜ ରଚନା । ସେ ଦେବୀଙ୍କୁ ଯେପରି ଦେଖିଛନ୍ତି ଏଥିରେ ସେପରି ଲେଖିଛନ୍ତି । ଏହି ରଚନାରେ ଆଚାର୍ଯ୍ୟ ଶଙ୍କରଙ୍କ ଉପରେ ତାଙ୍କ ଗୁରୁ ଗୋବିନ୍ଦପାଦଙ୍କ ଗୁରୁ ଗୌଡ଼ପାଦଙ୍କ ପ୍ରଣୀତ 'ସୁଭଗୋଦୟ ସ୍ତବ'ର ପ୍ରଭାବ ମଧ୍ୟ ପରିଲକ୍ଷିତ ହୁଏ । ଏପରି ପ୍ରାଚୀନ ଇତିହାସ-ପୁରୁଷଙ୍କ ବର୍ଣ୍ଣନା ବୋଧହୁଏ ଆଉ କୌଣସି ଦେବଦେବୀଙ୍କ ବିଷୟରେ ସୁଲଭ ନୁହେ ।

ଲଳିତା ଚେତନା ରାଜ୍ୟର ଏକ ମହାର୍ଘ ତତ୍ତ୍ୱ । ଅଖଣ୍ଡ ଆନନ୍ଦ ଓ ଅବାଧ ସନ୍ତୋଷର ସହିତ ସକଳ ସୌନ୍ଦର୍ଯ୍ୟର ପୂଜା ହିଁ ସୁନ୍ଦରୀ ପୂଜା ଏବଂ ତଦ୍ଦ୍ୱାରା ଜୀବନକୁ ନିତ୍ୟ ଲଳିତ ଓ କମନୀୟ କରିବା ହିଁ ଏହାର ଉଦ୍ଦେଶ୍ୟ । ତେଣୁ କୁହାଯାଇଛି—

**ଯତ୍ରାସ୍ତି ଭୋଗୋ ନହି ତତ୍ର ମୋକ୍ଷୋ, ଯତ୍ରାସ୍ତି ମୋକ୍ଷୋ ନହି ତତ୍ର ଭୋଗଃ ।**
**ଶ୍ରୀସୁନ୍ଦରୀ ସେବନତତ୍ପରାଣାଂ ଭୋଗଶ୍ଚ ମୋକ୍ଷଶ୍ଚ କରସ୍ଥ ଏବ ॥**

—ଯେଉଁଠି ଭୋଗ ଅଛି, ସେଠାରେ ମୋକ୍ଷନାହିଁ । ଯେଉଁଠି ମୋକ୍ଷ ଅଛି, ସେଠାରେ ଭୋଗ ନାହିଁ । କିନ୍ତୁ ସୁନ୍ଦରୀ ଲଳିତାଙ୍କ ଉପାସକ-ମାନଙ୍କ ପକ୍ଷରେ ଭୋଗ ଓ ମୋକ୍ଷ ଉଭୟ ହାତର କଥା—ସେମାନେ ଯାହା ଇଚ୍ଛା କରିବେ ତାହା ପାଇବେ ।

ରାଜରାଜେଶ୍ୱରୀ ଷୋଡ଼ଶୀ ଲଳିତା ପରାଶକ୍ତି, ପରଂବ୍ରହ୍ମ—ଗୁହ୍ୟାତିଗୁହ୍ୟ ପରମରହସ୍ୟମୟୀ ମହାବିଦ୍ୟା । ଏହାଙ୍କର ମନ୍ତ୍ରକୁ କୁହା-ଯାଏ ମନ୍ତ୍ରରାଜ 'ଶ୍ରୀବିଦ୍ୟା' ଏବଂ ଯନ୍ତ୍ରକୁ କୁହାଯାଏ ଯନ୍ତ୍ରରାଜ 'ଶ୍ରୀଚକ୍ର' । 'ଶ୍ରୀଚକ୍ର' ଦର୍ଶନ ହିଁ ଅନେକ ପୁଣ୍ୟର ପରିଣାମବଶତଃ ସମ୍ଭବ ହୋଇଥାଏ । ଏହି ଶିବଶକ୍ତିଙ୍କ ଯୁଗଳ ବିଗ୍ରହ ନବାବରଣାତ୍ମକ ଏହି ଯନ୍ତ୍ର ନବମୂଳତ୍ରିକୋଣର ସମାହାର ହୋଇଥିବାରୁ ଏହାକୁ ନବଯୋନିଯନ୍ତ୍ର ମଧ୍ୟ କୁହାଯାଏ । ଏହାର ଅଂଶବିଶେଷକୁ ନେଇ ହିଁ ଅନ୍ୟାନ୍ୟ ଦେବ-ଦେବୀଙ୍କ ଯନ୍ତ୍ର କଳ୍ପନା କରାଯାଇଥିବାରୁ 'ଶ୍ରୀଯନ୍ତ୍ର' ଯଥାର୍ଥତଃ ଯନ୍ତ୍ରରାଜ । ଏହି ଯନ୍ତ୍ରରେ ଅନ୍ୟାନ୍ୟ ଦେବତାଙ୍କ ପୂଜା କରାଯାଇପାରେ । ଏପରିକି ଏଥିର ନବ-ଆବରଣ ପୂଜାର ଅନୁସରଣରେ ଅନ୍ୟାନ୍ୟ ଦେବଦେବୀଙ୍କ ଆବରଣ ପୂଜା ପରିକଳ୍ପିତ ହୋଇଥିବାରୁ ଏହାଙ୍କ ପ୍ରାଚୀନତା ପରମ୍ପରା-ସିଦ୍ଧ ପ୍ରମାଣିତ ହୁଏ । ଏହାଙ୍କର ମନ୍ତ୍ର ମଧ୍ୟ ଅତ୍ୟନ୍ତ ଅର୍ଥପୂର୍ଣ୍ଣ ଓ ରହସ୍ୟମୟ । ଏହି ମନ୍ତ୍ର ବୈଦିକ ରହସ୍ୟପୂର୍ଣ୍ଣ ଭାଷାରେ ଗୁମ୍ଫିତ । ଏଥିରୁ ଗାୟତ୍ରୀ ସହ ଅନ୍ୟାନ୍ୟ ସବୁ ଦେବତାଙ୍କ ମନ୍ତ୍ର ନିଷ୍ପନ୍ନ ହୁଏ । ଏହି ଏକମନ୍ତ୍ର ସର୍ବାର୍ଥ ସିଦ୍ଧିରେ ସହାୟକ ହେତୁ ଏହା 'ମନ୍ତ୍ରରାଜ' । କାଞ୍ଚୀର କାମାକ୍ଷୀ, ମଦୁରାଇର ମୀନାକ୍ଷୀ, କନ୍ୟାକୁମାରୀ ପ୍ରଭୃତି ସ୍ଥାନରେ ଦେବୀଙ୍କ ବିଧିବଦ୍ଧ ପୂଜା ଅନୁଷ୍ଠାନ ହୋଇଥାଏ । କାଶୀର ଅନ୍ନପୂର୍ଣ୍ଣାଙ୍କ ଆଗରେ କୁଙ୍କୁମାବୃତ ମହାମେରୁ ଚକ୍ରରାଜଙ୍କ ପୂଜା ହିଁ ହୋଇଥାଏ । ଆମର ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀଚକ୍ର ବା ଶ୍ରୀଯନ୍ତ୍ର ହିଁ ମୁଖ୍ୟ । ପ୍ରତ୍ୟେକ ଶଙ୍କର ପୀଠରେ ଏହି ଶ୍ରୀଯନ୍ତ୍ରର ରହସ୍ୟମୟ ପୂଜା ବିଦ୍ୱାନ୍ ପୀଠାଧୀଶ୍ୱର ଆଚାର୍ଯ୍ୟଗଣ ହିଁ କରିଥାଆନ୍ତି । ବିଦ୍ୟାରଣ୍ୟ ଏହି ବିଦ୍ୟାର ମନ୍ତ୍ରଟିକୁ

ବଳରେ ବିଜୟନଗର ସାମ୍ରାଜ୍ୟ ପ୍ରତିଷ୍ଠା କରିଥିବାରୁ, ତାଙ୍କର ପୀଠ ଶୃଙ୍ଗଗିରିର ପୀଠାଧୀଶ ଶଙ୍କର ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରତିଦଶହରା ଦିନ ରାଜବେଶ ପରିଧାନ କରି—ସେ ସାମ୍ରାଜ୍ୟର ପ୍ରତିଷ୍ଠାନୁଶାସନର ସ୍ମୃତି ରକ୍ଷା କରୁଛନ୍ତି ।

ବ୍ରହ୍ମରୂପା ପରାଶକ୍ତି ଲଳିତାଙ୍କ ସର୍ବବ୍ୟାପକତା ବିଷୟରେ ବହ୍ୱୃଚୋପନିଷଦ୍‌ରେ ଉଲ୍ଲେଖ ଅଛି—

‘‘ସୈବାତ୍ମା ତତୋଽନ୍ୟଦସତ୍ୟମନାତ୍ମା । ଅତ ଏଷା ବ୍ରହ୍ମ ସଂବିତ୍ତି ର୍ଭାବାଭାବକଳାବିନିର୍ମୁକ୍ତା ଚିଦ୍‌ବିଦ୍ୟାଦ୍ୱିତୀୟ ବ୍ରହ୍ମ ସଂବିତ୍ତିଃ । ସଚ୍ଚିଦାନନ୍ଦ-ଲହରୀ ମହାତ୍ରିପୁରସୁନ୍ଦରୀ ବହିରନ୍ତରନୁପ୍ରବିଶ୍ୟ ସ୍ୱୟମେକୈବ ବିଭାତି । ଯଦସ୍ତି ସନ୍ମାତ୍ରମ୍ । ଯଦ୍‌ବିଭାତି ଚିନ୍ମାତ୍ରମ୍ । ଯତ୍ ପ୍ରିୟମାନନ୍ଦଂ ତଦେତତ୍ ସର୍ବାକାରା ମହାତ୍ରିପୁରସୁନ୍ଦରୀ । ତ୍ୱଂ ଚାହଂ ଚ ସର୍ବଂ ବିଶ୍ୱଂ ସର୍ବଦେବତା । ଇତରତ୍ ସର୍ବଂ ମହାତ୍ରିପୁରସୁନ୍ଦରୀ ।

ସତ୍ୟମେକଂ ଲଳିତାଖ୍ୟଂ ବସ୍ତୁ ତଦଦ୍ୱିତୀୟମଖଣ୍ଡାର୍ଥଂ ପରଂବ୍ରହ୍ମ ।’’

ସେ ହିଁ ଆତ୍ମା । ତା’ଛଡ଼ା ଆଉ ସବୁ ଅସତ୍ୟ ଓ ଅନାତ୍ମା ଅଟନ୍ତି । ଏଣୁ ସେ ବ୍ରହ୍ମବିଦ୍ୟାସ୍ୱରୂପା, ଭାବାଭାବକଳାବିନିର୍ମୁକ୍ତ, ଚିନ୍ମୟୀ, ବିଦ୍ୟାଶକ୍ତି, ଅଦ୍ୱିତୀୟ ବ୍ରହ୍ମର ବୋଧିକା ତଥା ସତ୍; ଚିତ୍ ଓ ଆନନ୍ଦ-ରୂପକ ଲହରୀ ଯୁକ୍ତା ମହାତ୍ରିପୁରସୁନ୍ଦରୀ । ସେ ହିଁ ବାହାରେ ଓ ଭିତରେ ରହି ସ୍ୱୟଂ ଏକାକୀ (ନିଜର ଅସ୍ତି, ଭାତି ଓ ପ୍ରିୟ—ଏହି ତିନି ରୂପରେ) ଶୋଭା ପାଉଛନ୍ତି । ଯାହା ଅଛି ତାହା ସତ୍-ମାତ୍ର । ଯାହା ପ୍ରକାଶ ପାଉଛି ତାହା ଚିତ୍-ମାତ୍ର । ଯାହା ପ୍ରିୟ ତାହା ହିଁ ଆନନ୍ଦ । ଏହିପରି ମହାତ୍ରିପୁରସୁନ୍ଦରୀ ସବୁପ୍ରକାରେ ବିରାଜିତ । ତୁ, ମୁଁ, ସମଗ୍ର ବିଶ୍ୱ ଓ ସକଳ ଦେବତା ତଥା ଅନ୍ୟ ସବୁକିଛି ମହାତ୍ରିପୁରସୁନ୍ଦରୀ । ଲଳିତା ନାମକ ବସ୍ତୁ ହିଁ ଏକମାତ୍ର ସତ୍ୟ, ଅଦ୍ୱିତୀୟ ଓ ଅଖଣ୍ଡ ପରଂବ୍ରହ୍ମତତ୍ତ୍ୱ ଅଟେ ।

ସ୍ୱାତ୍ମଶକ୍ତି ଶ୍ରୀବିଦ୍ୟା ହିଁ ଲଳିତା କାମେଶ୍ୱରୀ ମହାତ୍ରିପୁରସୁନ୍ଦରୀ । ସେ ମହାକାମେଶ୍ୱରଙ୍କ ଅଙ୍କରେ ବିରାଜମାନା । ଉପାଧିରହିତ ଶୁଦ୍ଧ

ସ୍ୱାତ୍ମା ହିଁ ମହାକାମେଶ୍ୱର ଅଟନ୍ତି । ସଦାନନ୍ଦରୂପ ଉପାଧିଯୁକ୍ତ ସ୍ୱାତ୍ମା ହେଉଛନ୍ତି ପରଦେବତା ମହାତ୍ରିପୁରସୁନ୍ଦରୀ କାମେଶ୍ୱରୀ ଲଳିତା । ସାରକଥା ହେଲା, 'ସ୍ୱ' ଅର୍ଥାତ୍ ଉପାସକର ଆତ୍ମା, ଅନ୍ତର୍ଯ୍ୟାମୀ ସଦାନନ୍ଦ-ଉପାଧିପୂର୍ଣ୍ଣ ହିଁ ଲଳିତା ଅଟନ୍ତି । ସତ୍ ତ୍ୱ, ଚିତ୍-ତ୍ୱ ଓ ଆନନ୍ଦସ୍ୱରୂପ ଧର୍ମତ୍ରୟ ନିର୍ମୁକ୍ତ ଧର୍ମୀ କେବଳ ସେହି ସ୍ୱାତ୍ମା ଶ୍ରୀବିଦ୍ୟା ଲଳିତାଙ୍କ ଆଧାରଭୂତ ମହାକାମେଶ୍ୱର । ପରଦେବତା 'ସ୍ୱାତ୍ମ'ଠାରୁ ଅଭିନ୍ନ ହେଲେ ମଧ୍ୟ ଅନ୍ତଃକରଣୋପାଧିକ ଆତ୍ମା ଅଟେ 'ଉପାସକ' ଏବଂ ସଦାନନ୍ଦୋପାଧିପୂର୍ଣ୍ଣ ଆତ୍ମା ହେଉଛି 'ଉପାସ୍ୟ' ଓ ସର୍ବଥା ନିରୁପାଧିକ ଆତ୍ମା ଅଟନ୍ତି ମହାକାମେଶ୍ୱର । 'ଏଠାରେ 'ନିରୁପାଧିକ' କହିଲେ 'କେବଳତ୍ୱ' ଏବଂ 'ସଦାନନ୍ଦପୂର୍ଣ୍ଣ' କହିଲେ 'ଧର୍ମବିଶିଷ୍ଟତ୍ୱ' ବୋଲି ବୁଝିବାକୁ ହେବ । ଏଠାରେ ବିଶିଷ୍ଟ ଓ କେବଳ ଅବୟବ ଓ ଅବୟବୀ ସମ୍ବନ୍ଧଯୁକ୍ତ । ଏଥିରେ କାମେଶ୍ୱର କାମେଶ୍ୱରୀଙ୍କ ଲୌହିତବର୍ଣ୍ଣକୁ ଧ୍ୟାନ କରାଯାଏ । ଏହାର ରହସ୍ୟ ଭାବନୋପନିଷଦ୍‌ରେ ବର୍ଣ୍ଣିତ ହୋଇଛି— ଲୌହିତ୍ୟ-ମେତସ୍ୟ ସର୍ବସ୍ୟ ବିମର୍ଶଃ—ମହାକାମେଶ୍ୱର, ଲଳିତା ଓ ସ୍ୱୟଂ(ମୁଁ)— ଏହି ତିନିର ବିମର୍ଶ ବା ସ୍ୱାତ୍ମାରେ ଅନୁସନ୍ଧାନ କରିବା ହେଉଛି ଲଳିତାଙ୍କ ରକ୍ତବର୍ଣ୍ଣର ଭାବନା । ଏ ବିଷୟରେ ଅନ୍ୟାନ୍ୟ ରହସ୍ୟ ଗୁରୁମୁଖରୁ ହିଁ ଜଣାଯାଏ ଏବଂ ଅପ୍ରକାଶ୍ୟ ଅଟେ । ଏହା ଏକ ଅତି ଉଚ୍ଚକୋଟିର ଶୁଦ୍ଧସତ୍ତ୍ୱ ଭାବର ପରମ ତତ୍ତ୍ୱ । ଏହାଙ୍କର ସ୍ୱରୂପ ଧ୍ୟାନ ହେଉଛି—

ବାଲାର୍କମଣ୍ଡଳାଭାସାଂ ଚତୁର୍ବାହୁଂ ତ୍ରିଲୋଚନାମ୍ ।
ପାଶାଙ୍କୁଶ ଶରାଂଶ୍ଚାପଂ ଧାରୟନ୍ତୀଂ ଶିବାଂ ଶ୍ରୟେ ॥

ସେ ଦେଖିବାକୁ ଉଦୟକାଳୀନ ସୂର୍ଯ୍ୟ ପରି ଅତ୍ୟଧିକ ଅରୁଣ ବର୍ଣ୍ଣ, ତ୍ରିଲୋଚନା, ଚତୁର୍ଭୁଜା ଏବଂ ତାଙ୍କର ଆୟୁଧ ହେଉଛି ପାଶ, ଅଙ୍କୁଶ, ଧନୁ ଓ ଶର । ତାଙ୍କର ଊର୍ଦ୍ଧ୍ୱ ବାମହସ୍ତରେ ଆଖୁଦଣ୍ଡର ଧନୁ ହେଉଛି ମନ ଏବଂ ଦକ୍ଷିଣ ଊର୍ଦ୍ଧ୍ୱହସ୍ତରେ ପଞ୍ଚପୁଷ୍ପ ଶର ହେଉଛନ୍ତି ପଞ୍ଚତନ୍ମାତ୍ର ବା ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ । ନିମ୍ନ ବାମହସ୍ତର ପାଶ ହେଉଛି ରାଗର ପ୍ରତୀକ ଏବଂ ନିମ୍ନ ଦକ୍ଷିଣ ହସ୍ତର ଅଙ୍କୁଶ ହେଉଛି କ୍ରୋଧର ସଂକେତ ।

ଦେବୀଙ୍କ ସିଂହାସନର ଚାରିଖୁରା ହେଉଛନ୍ତି ବ୍ରହ୍ମା, ବିଷ୍ଣୁ, ଶିବ ଓ ରୁଦ୍ର ଏବଂ ଆଧାରପଟା ହେଉଛନ୍ତି ସଦାଶିବ । ଏମାନେ ସ୍ୱତନ୍ତ୍ର ଅବସ୍ଥାରେ 'ପଞ୍ଚପ୍ରେତ' ନାମରେ କଥିତ । କାରଣ (ପ୍ରକୃଷ୍ଟ) ଆତ୍ମା (ଇତ) ଗତ ହେଲାପରେ ସ୍ୱତନ୍ତ୍ର ଶରୀର ଯେପରି ପ୍ରେତ ହୁଏ ଦେବୀ ଲଳିତାଙ୍କ ଲାଳିତ୍ୟ ଓ ଲାଳନ ବିନା ସେମାନେ ପ୍ରେତ ଅଟନ୍ତି । ତାଙ୍କ ନିର୍ଦ୍ଦେଶରେ ସେମାନେ ଯେତେବେଳେ ସୃଷ୍ଟି; ସ୍ଥିତି, ଲୟ, ନିଗ୍ରହ ଓ ଅନୁଗ୍ରହ ରୂପକ ପଞ୍ଚକୃତ୍ୟର ବୃଂହଣ ବା ବର୍ଦ୍ଧନ କରନ୍ତି, ସେତେ-ବେଳେ ସେମାନେ 'ବ୍ରହ୍ମା' ବା 'ପଞ୍ଚବ୍ରହ୍ମ' ନାମରେ ଅଭିହିତ ହୁଅନ୍ତି । ସୌନ୍ଦର୍ଯ୍ୟଲହରୀରେ ତେଣୁ କୁହାଯାଇଛି—

ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁମ୍ ।
ନ ଚେଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁମପି ॥

ଶକ୍ତିଙ୍କ ସହିତ ଯୁକ୍ତ ହେଲେ ହିଁ ଶିବଙ୍କ ପ୍ରଭୁତ୍ୱ ଆସେ । ସେ ଦେବଦେବ ହୁଅନ୍ତି । ନଚେତ୍ ତାଙ୍କ ବିନା ସେହି ଦେବ ଶିବ ହଲଚଲ ହେବାକୁ ମଧ୍ୟ ସମର୍ଥ ନୁହନ୍ତି ।

ସଂସାରରେ ସବୁଠାରୁ ଅଧିକ ସୁନ୍ଦର ଓ ଶୋଭା ସଂପନ୍ନ ବୋଲି ତାଙ୍କର ନାମ 'ଲଳିତା' —ଲୋକାନତୀତ୍ୟ ଲଳତେ (ଶୋଭତେ) ଲଳିତା ତେନ ଗୀୟତେ' (ପଦ୍ମପୁରାଣମ୍) । ଲଳିତା ସହସ୍ରନାମ ଭାଷ୍ୟରେ ମଧ୍ୟ କୁହାଯାଇଛି-'ଲଳିତଂ ଶୃଙ୍ଗାରଭାବଜନ୍ୟଃ କ୍ରିୟାବିଶେଷଃ ତଦ୍‌ବତୀ ଲଳିତା । ତେନ ଶୃଙ୍ଗାରରସପ୍ରଧାନେୟଂ ମୂର୍ତ୍ତିରିତି ଧ୍ୱନିତମ୍ ଏଥିରୁ ଲଳିତା ଶୃଙ୍ଗାରରସପ୍ରଧାନା ମହାଦେବୀ ମହାତ୍ରିପୁର ସୁନ୍ଦରୀ ଅଟନ୍ତି ।

ଏହାଙ୍କର ପ୍ରସିଦ୍ଧ ପ୍ରଭାବଶାଳୀ ଯନ୍ତ୍ରରାଜ ବିନ୍ଦୁ, ତ୍ରିକୋଣ ଅଷ୍ଟକୋଣ, ଦୁଇଟି ଦଶକୋଣ, ଚତୁର୍ଦ୍ଦଶକୋଣ, ଅଷ୍ଟଦଳ ପଦ୍ମ, ତିନିବୃତ୍ତ ଓ ତିନି ଭୂପୁରର ସମାହାରରେ କଳ୍ପିତ । ତେଣୁ କୁହାଯାଇଛି—

ବିନ୍ଦୁ-ତ୍ରିକୋଣ-ବସୁକୋଣ-ଦଶାରଯୁଗ୍ମ-ମନ୍ୱସ୍ରନାଗଦଳସଂଯୁତ ଷୋଡଶାରମ୍ ।
ବୃତ୍ତତ୍ରୟଂ ଚ ଧରଣୀ ସଦନ ତ୍ରୟଂ ଚ ଶ୍ରୀଚକ୍ରମେତଦୁଦିତଂ ପରଦେବତାୟାଃ ॥

ଏହାର ପ୍ରଥମ ଭୂପୁରରେ ଅଣିମା, ଲଘିମା, ମହିମା; ଈଶିତ୍ୱ, ବଶିତ୍ୱ, ପ୍ରାକାମ, ଭୁକ୍ତି, ଇଚ୍ଛା, ପ୍ରାପ୍ତି ଓ ସର୍ବକାମ—ଏହି ଦଶସିଦ୍ଧି ଦେବୀ, ଦ୍ୱିତୀୟ ଭୂପୁରରେ ବ୍ରାହ୍ମୀ, ମାହେଶ୍ୱରୀ, ବୈଷ୍ଣବୀ, ବାରାହୀ, ମାହେନ୍ଦ୍ରୀ, ଚାମୁଣ୍ଡା ଓ ମହାଲକ୍ଷ୍ମୀ—ଏହି ଅଷ୍ଟ ମାତୃକା ଦେବୀ, ତୃତୀୟ ଭୂପୁରରେ ସର୍ବସଂକ୍ଷୋଭିଣୀ; ସର୍ବବିଦ୍ରାବଣୀ, ସର୍ବାକର୍ଷିଣୀ; ସର୍ବବଶଂକରୀ, ସର୍ବୋନ୍ମାଦିନୀ, ସର୍ବମହାଙ୍କୁଶା, ସର୍ବଖେଚରୀ; ସର୍ବଯୋନି, ସର୍ବବୀଜା ସର୍ବତ୍ରିଖଣ୍ଡା-ଏହି ଦଶ ମହାଶକ୍ତିଙ୍କୁ ନେଇ ପ୍ରକଟ ଯୋଗିନୀଙ୍କ ଏହା ହେଉଛି 'ତ୍ରୈଲୋକ୍ୟମୋହନଚକ୍ର' ନାମକ ପ୍ରଥମ-ଆବରଣ । ତାପରେ ଷୋଡ଼ଶଦଳରେ କାମାକର୍ଷିଣୀ, ବୁଦ୍ଧ୍ୟାକର୍ଷିଣୀ, ଅହଙ୍କାରାକର୍ଷିଣୀ, ଶବ୍ଦାକର୍ଷିଣୀ; ସ୍ପର୍ଶାକର୍ଷିଣୀ, ରୂପାକର୍ଷିଣୀ, ରସାକର୍ଷିଣୀ, ଗନ୍ଧାକର୍ଷିଣୀ, ଚିତ୍ତାକର୍ଷିଣୀ, ଧୈର୍ଯ୍ୟାକର୍ଷିଣୀ, ସ୍ମୃତ୍ୟାକର୍ଷିଣୀ, ନାମାକର୍ଷିଣୀ, ବୀଜାକର୍ଷିଣୀ, ଆତ୍ମାକର୍ଷିଣୀ, ଅମୃତାକର୍ଷିଣୀ, ଶରୀରାକର୍ଷିଣୀ—ଏହି ଷୋଡ଼ଶ ଗୁପ୍ତଯୋଗିନୀଙ୍କୁ ନେଇ 'ସର୍ବାଶାପରିପୂରକ ଚକ୍ର' ହେଉଛି ଦ୍ୱିତୀୟ ଆବରଣ । ତାପରେ ଅଷ୍ଟ ଦଳରେ ଅନଙ୍ଗକୁସୁମା, ଅନଙ୍ଗମେଖଳା, ଅନଙ୍ଗମଦନା, ଅନଙ୍ଗମଦନାତୁରା, ଅନଙ୍ଗରେଖା, ଅନଙ୍ଗବେଗିନୀ, ଅନଙ୍ଗାଙ୍କୁଶା ଓ ଅନଙ୍ଗମାଳିନୀ—ଏହି ଅଷ୍ଟ ଗୁପ୍ତତର ଯୋଗିନୀଙ୍କୁ ନେଇ 'ସର୍ବସଂକ୍ଷୋଭଣ ଚକ୍ର' ହେଉଛି ତୃତୀୟ ଆବରଣ । ତାପରେ ଚତୁର୍ଦ୍ଦଶକୋଣରେ ସର୍ବସଂକ୍ଷୋଭିଣୀ, ସର୍ବବିଦ୍ରାବିଣୀ, ସର୍ବାକର୍ଷିଣୀ, ସର୍ବାହ୍ଲାଦିନୀ, ସର୍ବସଂମୋହିନୀ ସର୍ବସ୍ତମ୍ଭିଣୀ ସର୍ବଜୃମ୍ଭିଣୀ, ସର୍ବବଶଂକରୀ; ସର୍ବରଞ୍ଜିନୀ, ସର୍ବୋନ୍ମାଦିନୀ, ସର୍ବାର୍ଥସାଧିନୀ, ସର୍ବସଂପତ୍ତିପୂରଣୀ, ସର୍ବମନ୍ତ୍ରମୟୀ, ସର୍ବଦ୍ୱନ୍ଦ୍ୱକ୍ଷୟଂକରୀ—ଏହି ଚତୁର୍ଦ୍ଦଶ ସଂପ୍ରଦାୟ ଯୋଗିନୀଙ୍କୁ ନେଇ 'ସର୍ବସୌଭାଗ୍ୟଦାୟକ ଚକ୍ର' ହେଉଛି ଚତୁର୍ଥ ଆବରଣ । ତାପରେ ବହିର୍ଦ୍ଦଶାରରେ ସର୍ବସିଦ୍ଧିପ୍ରଦା, ସର୍ବସଂପତ୍ପ୍ରଦା, ସର୍ବପ୍ରିୟଙ୍କରୀ, ସର୍ବମଙ୍ଗଳକାରିଣୀ ସର୍ବକାମପ୍ରଦା, ସର୍ବଦୁଃଖବିମୋଚନୀ, ସର୍ବମୃତ୍ୟୁପ୍ରଶମନୀ, ସର୍ବବିଘ୍ନନିବାରିଣୀ, ସର୍ବାଙ୍ଗସୁନ୍ଦରୀ, ସର୍ବସୌଭାଗ୍ୟଦାୟିନୀ—ଏହି ଦଶ କୁଳୋତ୍ତୀର୍ଣ୍ଣ ଯୋଗିନୀଙ୍କୁ ନେଇ ସର୍ବାର୍ଥସାଧକଚକ୍ର ହେଉଛି ପଞ୍ଚମ ଆବରଣ । ତାପରେ ଅନ୍ତର୍ଦ୍ଦଶାରରେ ସର୍ବଜ୍ଞା, ସର୍ବଶକ୍ତି, ସର୍ବୈଶ୍ୱର୍ଯ୍ୟପ୍ରଦା, ସର୍ବଜ୍ଞାନମୟୀ, ସର୍ବବ୍ୟାଧିବିନାଶିନୀ, ସର୍ବାଧାରସ୍ୱରୂପା, ସର୍ବପାପହରା, ସର୍ବାନନ୍ଦମୟୀ,

ସର୍ବରକ୍ଷାସ୍ୱରୂପିଣୀ, ସର୍ବେପ୍‌ସିତପ୍ରଦା—ଏହି ଦଶ ନିଗର୍ଭଯୋଗିନୀଙ୍କୁ ନେଇ ସର୍ବରକ୍ଷାକରଚକ୍ର ହେଉଛି ଷଷ୍ଠ ଆବରଣ । ତାପରେ ଅଷ୍ଟ କୋଣରେ ବଶିନୀ, କାମେଶ୍ୱରୀ, ମୋଦିନୀ, ବିମଳା, ଅରୁଣା, ଜୟିନୀ, ସର୍ବେଶ୍ୱରୀ, କୌଳିନୀ—ଏହି ଅଷ୍ଟ ବାଗ୍‌ଦେବୀ ରହସ୍ୟଯୋଗିନୀଙ୍କୁ ନେଇ ସର୍ବରୋଗହରଚକ୍ର ହେଉଛି ସପ୍ତମ ଆବରଣ । ତାପରେ ତ୍ରିକୋଣର ଚତୁଃପାର୍ଶ୍ୱରେ ବାଣ-ଦେବୀ, ଚାପଦେବୀ, ପାଶ-ଦେବୀ ଓ ଅଙ୍କୁଶ-ଦେବୀ—ଏହି ଚତୁଃଅସ୍ତ୍ରଦେବୀ ତଥା ତ୍ରିକୋଣରେ ଥିବା ମହାକାମେଶ୍ୱରୀ, ମହାବଜ୍ରେଶ୍ୱରୀ ଓ ମହାଭଗମାଳିନୀ—ଏହି ତିନି ଅତିରହସ୍ୟ ଯୋଗିନୀଙ୍କୁ ନେଇ ସର୍ବସିଦ୍ଧିପ୍ରଦଚକ୍ର ହେଉଛି ଅଷ୍ଟମ ଆବରଣ । ଶେଷରେ ବିନ୍ଦୁରେ ମହାତ୍ରିପୁରସୁନ୍ଦରୀ ପରାପରରହସ୍ୟ ଯୋଗିନୀଙ୍କୁ ନେଇ ସର୍ବାନନ୍ଦମୟଚକ୍ର ହେଉଛି ନବମ ଆବରଣ । ଏହିପରି ନବଚକ୍ରାତ୍ମକ ନବମ ଆବରଣରେ ଷଡ଼ଙ୍ଗଦେବୀ ଓ ଏମାନଙ୍କର ଏକୀଭୂତ ମହାଶକ୍ତିଙ୍କୁ ମିଶାଇ ଅଷ୍ଟୋତ୍ତରଶତ ଦିବ୍ୟଶକ୍ତିଙ୍କ ଏକତ୍ର ସମାବେଶରେ ମହାବିଭବମୟ ଶ୍ରୀଚକ୍ର ସମ୍ବନ୍ଧରେ କୁହାଯାଇଛି—

**ଅଷ୍ଟୌ ଦଶାଷ୍ଟାଦଶ-ଷୋଡଶକାଷ୍ଟଭାପି ପଶ୍ଚାଚତୁର୍ଦ୍ଦଶାପି ତତୋ ଦଶାଷ୍ଟୌ ।**
**ପଶ୍ଚାଚତୁଷ୍ଟୟମପି ତ୍ରିତୟଂ ଚ ଷଟ୍‌କଂ ତ୍ୱଷ୍ଟୋତ୍ତରଶତମସ୍ତୀହ୍ୟମଚି ତ୍ୱମେବା ॥**

ଏହିପରି ଅଷ୍ଟୋତ୍ତର ଶତ ଦେବତାଙ୍କ ଅର୍ଚ୍ଚନା ଏଥିରେ ସମ୍ପନ୍ନ ହୋଇଥାଏ । ଲେଖକର ଗୁରୁପୀଠ ମଣ୍ଡିକାଗିରି (ତିରୁଇଙ୍ଗୋଇମଲାଇ, ତାମିଲନାଡ଼ୁ) ଗୁପ୍ତାପୀଠରେ ପ୍ରତି ପୂର୍ଣ୍ଣିମା ଦିନ ଚତୁଃଷଷ୍ଟି ଉପଚାରରେ ମହାସମାବେଶରେ ରାଜରାଜେଶ୍ୱରୀଙ୍କ ପୂଜା ତତ୍ରତ୍ୟ ବ୍ରହ୍ମଚାରିଣୀ ସଂନ୍ୟାସିନୀ ଯୋଗିନୀମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥାଏ ।

ଷୋଡ଼ଶୀଙ୍କ 'ଲଳିତା ସହସ୍ରନାମ' ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ରହସ୍ୟ ସହସ୍ରନାମ । ଏ ବିଷୟରେ ଲେଖକର ସ୍ୱତନ୍ତ୍ର ପୁସ୍ତକରୁ ଅନ୍ୟାନ୍ୟ ବିଷୟ ଆଗ୍ରହୀ ପାଠକ ଜାଣିପାରନ୍ତି । ଲଳିତାଙ୍କ ନାମ ତ୍ରିଶତୀ ଉପରେ ଆଚାର୍ଯ୍ୟ ଶଙ୍କରଙ୍କ ଭାଷ୍ୟ ରହିଛି । ତାହା କିନ୍ତୁ କେବଳ ଦୀକ୍ଷିତ ସାଧକ-ମାନଙ୍କ ସକାଶେ ଉଦ୍ଦିଷ୍ଟ । ଏ ଦେବୀଙ୍କ ପୂଜାରେ ମଧ୍ୟ କେବଳ ଦୀକ୍ଷିତ ଲୋକର ହିଁ ଅଧିକାର । ଏଥିରେ ଗୁରୁ, ମନ୍ତ୍ର ଓ ଦେବତାଙ୍କର ଐକ୍ୟ ସମ୍ଭାବନା କରାଯାଏ । ଏହାର ସାଧନାରେ ସାଧକର ସକଳ କଲ୍ୟାଣ ସାଧିତ ହୋଇଥାଏ ।

**ଜୟ ରାଜେଶ୍ୱରୀ ଶ୍ରୀ ରାଜେଶ୍ୱରୀ ରାଜରାଜେଶ୍ୱରୀ ପାହିମାମ୍ ।**
**ତ୍ରିପୁରସୁନ୍ଦରୀ ତ୍ରିପୁରସୁନ୍ଦରୀ ତ୍ରିପୁରସୁନ୍ଦରୀ ରକ୍ଷମାମ୍ ॥**

# କଲ୍ୟାଣବୃଷ୍ଟିସ୍ତବ

କଲ୍ୟାଣବୃଷ୍ଟିଭିରିବାମୃତପୂରିତାଭି
ର୍ଲକ୍ଷ୍ମୀସ୍ୱୟଂବରଣମଙ୍ଗଳଦୀପିକାଭିଃ ।
ସେବାଭିରମ୍ବ ତବ ପାଦସରୋଜମୂଲେ-
ନାକାରି କିଂ ମନସି ଭାଗ୍ୟବତାଂ ଜନାନାମ୍ ॥୧॥
ଏତାବଦେବ ଜନନି ସ୍ପୃହଣୀୟମାସ୍ତେ
ତ୍ୱଦ୍‌ବନ୍ଦନେଷୁ ସଲିଲସ୍ଥଗିତେ ଚ ନେତ୍ରେ ।
ସାଂନିଧ୍ୟମୁଦ୍ୟଦରୁଣାୟୁତସୋଦରସ୍ୟ
ତ୍ୱଦ୍‌ବିଗ୍ରହସ୍ୟ ପରୟା ସୁଧୟାପ୍ଲୁତସ୍ୟ ॥୨॥
ଈଶତ୍ୱନାମକଲୁଷାଃ କତି ବା ନ ସନ୍ତି
ବ୍ରହ୍ମାଦୟଃ ପ୍ରତିଭବଂ ପ୍ରଳୟାଭିଭୂତାଃ ।
ଏକଃ ସ ଏବ ଜନନି ସ୍ଥିରସିଦ୍ଧିରାସ୍ତେ
ୟଃ ପାଦୟୋସ୍ତବ ସକୃତ୍ ପ୍ରଣତିଂ କରୋତି ॥୩॥
ଲବ୍‌ଧ୍ୱା ସକୃତ୍ତ୍ରିପୁରସୁନ୍ଦରି ତାବକୀନଂ
କାରୁଣ୍ୟକନ୍ଦଳିତକାନ୍ତିଭରଂ କଟାକ୍ଷମ୍ ।
କନ୍ଦର୍ପକୋଟିସୁଭଗାସ୍ତ୍ୱୟି ଭକ୍ତିଭାଜଃ
ସଂମୋହୟନ୍ତି ତରୁଣୀର୍ଭୁବନତ୍ରୟେଽପି ॥୪॥

---

ହେ ମା' ! ଅମୃତ ପରିପୂର୍ଣ୍ଣ କଲ୍ୟାଣ ବର୍ଷା । ଯଳ ଭଳି, ଲକ୍ଷ୍ମୀ ସ୍ୱୟଂବରଣ ଉତ୍ସବ ସକାଶେ ମଙ୍ଗଳଦୀପ ପରି ଯେଉଁ ସେବା-ଦ୍ୱାରା ତୁମର ପାଦ-ପଦ୍ମରେ ଭକ୍ତ ଥିବା ଲୋକର ମନରେ କ'ଣ ବା ନକରେ ? ଅର୍ଥାତ୍ ତାର ସମସ୍ତ ମନସ୍କାମନା ପୂର୍ଣ୍ଣ କରେ ॥୧॥

ହେ ଜନନୀ ତୁମର ନେତ୍ର ଦ୍ୱୟ (ଲାବଣ୍ୟ) ଜଳରେ ଫୁଟିଥିବା ପଦ୍ମପରି ସୁନ୍ଦର । ଉଦୟକାଳୀନ ଅରୁଣ ପରି କାନ୍ତି ସଂପନ୍ନ ତୁମର ଅମୃତମୟ ମୂର୍ତ୍ତି ସମୀପରେ ବନ୍ଦନା କଲାବେଳେ ମୋର ନେତ୍ର ଦ୍ୱୟ ଅଶ୍ରୁଜଳରେ ପରିପୂର୍ଣ୍ଣ ହେଉଛି ॥୨॥

ହେ ମା ! ପ୍ରତ୍ୟେକ ଭବରେ କଳୁଷିତ ବ୍ରହ୍ମାଦି କେତେ ନା କେତେ ଦେବତା ଅଛନ୍ତି । ସେମାନେ ପ୍ରତିଯୁଗରେ ପ୍ରଳୟାଦିରେ ଅଭିଭୂତ ବା ବିନଷ୍ଟ ହୋଇ ଯାଆନ୍ତି । କିନ୍ତୁ ସେହି ଏକ ବ୍ୟକ୍ତି ସ୍ଥିର ସିଦ୍ଧିଯୁକ୍ତ ହୋଇ ବିଦ୍ୟମାନ ରହେ, ଯେ ଥରେ ତୁମର ଚରଣରେ ପ୍ରଣାମ କରିଥାଏ ॥୩॥

ହେ ତ୍ରିପୁରସୁନ୍ଦରୀ ! ଭକ୍ତ ଉପରେ ତୁମର କରୁଣା ରୂପକ ଅଙ୍କୁରଯୁକ୍ତ

ହ୍ରୀଂକାରମେବ ତବ ନାମ ଗୃଣନ୍ତି ବେଦା
ମାତସ୍ତ୍ରିକୋଣନିଲୟେ ତ୍ରିପୁରେ ତ୍ରିନେତ୍ରେ ।
ତ୍ୱତ୍ସଂସ୍ମୃତୌ ଯମଭଟାଭିଭବଂ ବିହାୟ
ଦୀବ୍ୟନ୍ତି ନନ୍ଦନ ବନେ ସହ ଲୋକପାଳୈଃ ॥୫॥
ହନ୍ତୁଃ ପୁରମଧିଗଳଂ ପରିପୀୟମାନଃ
କ୍ରୂରଃ କଥଂ ନ ଭବିତା ଗରଳସ୍ୟ ବେଗଃ ।
ନାଶ୍ୱାସନାୟ ଯଦି ମାତରିଦଂ ତବାର୍ଦ୍ଧଂ
ଦେହସ୍ୟ ଶଶ୍ୱଦମୃତାପ୍ଳୁତଶୀତଳସ୍ୟ ॥୬॥
ସର୍ବଜ୍ଞତାଂ ସଦସି ବାକ୍‌ପଟୁତାଂ ପ୍ରସୂତେ
ଦେବି ତ୍ୱଦଙ୍ଘ୍ରି ସରସୀରୁହୟୋଃ ପ୍ରଣାମଃ ।
କିଂ ଚ ସ୍ଫୁରନ୍ମୁକୁଟମୁଜ୍ଜ୍ୱଳମାତପତ୍ରଂ
ଦ୍ୱେ ଚାମରେ ଚ ମହତୀଂ ବସୁଧାଂ ଦଦାତି ॥୭॥
କଳ୍ପଦ୍ରୁମୈରଭିମତ ପ୍ରତିପାଦନେଷୁ
କାରୁଣ୍ୟ ବାରିଧିଭିରମ୍ବ ଭବତ୍କଟାକ୍ଷୈଃ ।
ଆଲୋକୟ ତ୍ରିପୁରସୁନ୍ଦରି ମାମନାଥଂ
ତ୍ୱୟ୍ୟେବ ଭକ୍ତିଭରିତଂ ତ୍ୱୟି ବଦ୍ଧ ତୃଷ୍ଣମ୍ ॥୮॥

---

ସୁନ୍ଦର କଟାକ୍ଷ ଥରେ ପାତ ହେଲେ, ସେ କୋଟିଏ କନ୍ଦର୍ପ ପରି ସୌନ୍ଦର୍ଯ୍ୟ ଶାଳୀ ହୋଇଯାଏ ଓ ତ୍ରିଭୁବନର ଯୁବତୀମାନଙ୍କୁ ବିମୋହିତ କରେ ॥୪॥

ହେ ମା' ତ୍ରିପୁର ସୁନ୍ଦରୀ ! ତୁମେ ତ୍ରିନେତ୍ରା ଓ (ଶ୍ରୀଚକ୍ର ମଧ୍ୟସ୍ଥ) ତ୍ରିକୋଣରେ ବାସକର । ତୁମର ନାମ 'ହ୍ରୀଂ' ବୋଲି ବେଦ କହେ । ସେହି ନାମ ଯାହାର ସ୍ମୃତିରେ ଆସିଗଲା ସେ ଯମ ଦୂତମାନଙ୍କ ଭୟକୁ ତ୍ୟାଗକରି ଲୋକପାଳକମାନଙ୍କ ସହିତ ନନ୍ଦନବନରେ ବିହାର କରେ ॥୫॥

ହେ ମା' ! ତୁମର ଅମୃତ ପରିପ୍ଲୁତ ନିତ୍ୟ ଶୀତଳ ଶରୀର ଅର୍ଦ୍ଧାଙ୍ଗ ରୂପେ ଯାହା ଯଦି ଆଶ୍ୱାସନା ଦାୟକ ନ ହୋଇଥାନ୍ତା, ତେବେ ବିଷପାନ କରିଥିବା ଶିବଙ୍କ ପ୍ରତି ଗରଳର ପ୍ରକୋପ କେତେ କ୍ରୂର ହୋଇ ନ ଥାନ୍ତା ? ଅର୍ଥାତ୍ ଅମୃତମୟୀ ତୁମେ ଅର୍ଦ୍ଧାଂଶରେ ନ ଥିଲେ ଶିବ ଗରଳ ଜ୍ୱାଳା ସହି ପାରି ନଥାନ୍ତେ ॥୬॥

ହେ ଦେବୀ ! ତୁମର ପାଦପଦ୍ମରେ କରାଯିବା ପ୍ରଣାମ ସର୍ବଜ୍ଞତା ଓ ସଭାରେ ବାକ୍‌ପଟୁତା ଉତ୍ପନ୍ନ କରେ । ତା' ସହ ଉଦ୍ଭାସିତ ମୁକୁଟ, ଶ୍ୱେତଛତ୍ର, ଚାମର ଦ୍ୱୟ ଓ ବିଶାଳ ବସୁଧା ବା ସାମ୍ରାଜ୍ୟ ମଧ୍ୟ ପ୍ରଦାନ କରେ ॥୭॥

ହେ ମା ତ୍ରିପୁର ସୁନ୍ଦରୀ : ମୁଁ ତୁମର ଭକ୍ତିରେ ପରିପୂର୍ଣ୍ଣ ଅଟେ ଓ

ହନ୍ତେତରେଷ୍ୱପି ମନାଂସି ନିଧାୟ ଚୈବ
ଭକ୍ତିଂ ବହନ୍ତି କିଲ ପାମରଦୈବତେଷୁ ।
ତ୍ୱାମେବ ଦେବି ମନସା ସମନୁସ୍ମରାମି
ତ୍ୱାମେବ ନୌମି ଶରଣଂ ଜନନି ତ୍ୱମେବ ॥ ୯ ॥
ଲକ୍ଷ୍ୟେଷୁ ସତ୍ସ୍ୱପି କଟାକ୍ଷନିରୀକ୍ଷଣାନା-
ମାଲୋକୟ ତ୍ରିପୁରସୁନ୍ଦରି ମାଂ କଦାଚିତ୍ ।
ନୂନଂ ମୟା ତୁ ସଦୃଶଃ କରୁଣୈକପାତ୍ରଂ
ଜାତୋ ଜନିଷ୍ୟତି ଜନୋ ନ ଚ ଜାୟତେ ବା ॥ ୧୦ ॥
ହ୍ରୀଂ ହ୍ରୀମିତି ପ୍ରତିଦିନଂ ଜପତାଂ ତବାଖ୍ୟାଂ
କିଂ ନାମ ଦୁର୍ଲଭମିହ ତ୍ରିପୁରାଧିବାସେ ।
ମାଲାକିରୀଟମଦବାରଣମାନନୀୟାଂ
ସ୍ତାନ୍ ସେବତେ ବସୁମତୀ ସ୍ୱୟମେବ ଲକ୍ଷ୍ମୀଃ ॥ ୧୧ ॥
ସଂପତ୍କରାଣି ସକଲେନ୍ଦ୍ରିୟନନ୍ଦନାନି
ସାମ୍ରାଜ୍ୟଦାନନିରତାନି ସରୋରୁହାକ୍ଷି ।
ତ୍ୱଦ୍‌ବନ୍ଦନାନି ଦୁରିତାହରଣୋଦ୍ୟତାନି
ମାମେବ ମାତରନିଶଂ କଳୟନ୍ତୁ ନାନ୍ୟମ୍ ॥ ୧୨ ॥

---

ତୁମକୁ ହିଁ ସୁତୃଷ୍ଣ ନୟନରେ ଅନାଇ ରହିଛୁ । ଏଣୁ ତୁମେ ଏହି ଅନାଥପ୍ରତି କୃପା କଳ୍ପବୃକ୍ଷସଦୃଶ ଓ କରୁଣାସାଗର ସ୍ୱରୂପ କଟାକ୍ଷପାତ କରି ଅବଲୋକନକର ॥୮॥

ହେ ଦେବୀ ! ଦୁଃଖର କଥା ଅନ୍ୟମାନେ ତୁମକୁ ଛାଡ଼ି ଅନ୍ୟାନ୍ୟ ନୀଚ ଦେବତାଙ୍କଠାରେ ମନ ଲଗାଇ ଭକ୍ତି କରୁଛନ୍ତି । କିନ୍ତୁ ମୁଁ ମନ ଓ ବଚନରେ ତୁମକୁ ହିଁ ସ୍ମରଣ କରୁଛି । ତୁମକୁ ହିଁ ପ୍ରଣାମ କରୁଛି । ତୁମେ ହିଁ ଜଗତର ଶରଣ ॥ ୯ ॥

ହେ ତ୍ରିପୁରସୁନ୍ଦରୀ ! ଦେଖିବା ପାଇଁ ତୁମ ଆଖି ଆଗରେ ଲକ୍ଷେ ବସ୍ତୁ ଥିଲେ ମଧ୍ୟ କୌଣସି ପ୍ରକାରେ ମୋ ଆଡ଼େ ଟିକିଏ ଦୃଷ୍ଟି ଦିଅ । କାରଣ ମୋ ପରି କରୁଣାର ପାତ୍ର ବୋଧହୁଏ ଜନ୍ମ ହୋଇ ନଥିଲେ କି ହେବେ ନାହିଁ କି ହେଉନାହାନ୍ତି ॥ ୧୦ ॥

ହେ ତ୍ରିପୁରାଧିବାସିନୀ ମା ! 'ହ୍ରୀଂ ହ୍ରୀଂ' ବୋଲି (ତୁମର ବୀଜମନ୍ତ୍ରକୁ) ପ୍ରତିଦିନ ଜପ କରୁଥିବା ଲୋକଙ୍କୁ ଏହି ଜଗତରେ କ'ଣ ବା ଦୁର୍ଲ୍ଲଭ ? ମାଳା, କିରୀଟ ଓ ମତ୍ତହସ୍ତୀ ଦ୍ୱାରା ସମାନିତ ତାଙ୍କୁ ବସୁମତୀ ଲକ୍ଷ୍ମୀ ସେବାକରନ୍ତି ॥୧୧॥

ହେ ପଦ୍ମନୟନା ! ତୁମର ବନ୍ଦନା ବା ପୂଜା ସଂପତ୍ତି ପ୍ରଦାନ

କଲ୍ପୋପସଂହୃତିଷୁ କଲ୍ପିତତାଣ୍ଡବସ୍ୟ
ଦେବସ୍ୟ ଖଣ୍ଡପରଶୋଃ ପରଭୈରବସ୍ୟ ।
ପାଶାଙ୍କୁଶୈକ୍ଷବଶରାସନପୁଷ୍ପବାଣା
ସା ସାକ୍ଷିଣୀ ବିଜୟତେ ତବ ମୂର୍ତ୍ତିରେକା ॥ ୧୩ ॥
ଲଗ୍ନଂ ସଦା ଭବତୁ ମାତରିଦଂ ତବାର୍ଦ୍ଧଂ
ତେଜଃ ପରଂ ବହୁଳକୁଙ୍କୁମପଙ୍କଶୋଣମ୍ ।
ଭାସ୍ୱତ୍କିରୀଟମମୃତାଂଶୁକଳାବତଂସଂ-
ମଧ୍ୟେ ତ୍ରିକୋଣନିଲୟଂ ପରମାମୃତାର୍ଦ୍ରମ୍ ॥ ୧୪ ॥
ହ୍ରୀଂକାରମେବ ତବ ଧାମ ତଦେବ ରୂପଂ
ତ୍ୱନ୍ନାମ ଦୁର୍ଲଭମିହ ତ୍ରିପୁରେ ଗୃଣନ୍ତି ।
ତ୍ୱତ୍ତେଜସା ପରିଣତଂ ବିୟଦାଦିଭୂତଂ
ସୌଖ୍ୟଂ ତନୋତି ସରସୀରୁହସଂଭବାଦେଃ ॥ ୧୫ ॥

---

କରିଥାଏ, (ସୂକ୍ଷ୍ମଭୋଗ ପ୍ରଦାନ ଦ୍ୱାରା) ସମସ୍ତ ଇନ୍ଦ୍ରିୟମାନଙ୍କ ପରିତୃପ୍ତି ବିଧାନ କରିଥାଏ, ସାମ୍ରାଜ୍ୟ ପ୍ରଦାନ କରିଥାଏ ଏବଂ ପାପସମୂହକୁ ନଷ୍ଟ କରିବା ପାଇଁ ଉଦ୍ୟତ ହୋଇଥାଏ । ହେ ମା ! ସେ ସବୁ ଆଉ କାହାକୁ ନୁହେଁ ମତେ ହିଁ ସବୁବେଳେ ମିଳୁଥାଉ ॥ ୧୨ ॥

କଳ୍ପର ସଂହାର ବା ପ୍ରଳୟକାଳରେ ତାଣ୍ଡବନୃତ୍ୟ କରୁଥିବା ଖଣ୍ଡପରଶୁ ଦେବାଧିଦେବ ପରମେଶ୍ୱର ଶଙ୍କରଙ୍କ ସାକ୍ଷୀ ଭାବରେ ପାଶ, ଅଙ୍କୁଶ, ଇକ୍ଷୁଧନୁ ଓ ପୁଷ୍ପଶର ଧାରଣ କରିଥିବା ତୁମର ମୂର୍ତ୍ତି ହିଁ ଶୋଭାପାଉଥିଲା ॥ ୧୩ ॥

ହେ ମା, ତୁମର ଏହି ଅର୍ଦ୍ଧାଙ୍ଗ, ଯାହାକି ପରମ ତେଜୋମୟ ଅତ୍ୟଧିକ କୁଙ୍କୁମଚୂର୍ଣ୍ଣରେ ରଞ୍ଜିତ ହୋଇ ଅରୁଣ ବର୍ଣ୍ଣ, ଉଜ୍ଜ୍ୱଳ କିରୀଟ ଦ୍ୱାରା ସୁଶୋଭିତ, ଚନ୍ଦ୍ରକଳାରେ ବିଭୂଷିତ, ଅତ୍ୟଧିକ ଅମୃତରେ ଆର୍ଦ୍ର, ମଧ୍ୟ-ତ୍ରିକୋଣରେ ନିବାସୀ ସବୁବେଳେ (ସେ ଶିବଙ୍କ ଦେହରେ ଓ ମୋ ମନରେ) ଲଗ୍ନ ରହନ୍ତୁ ॥ ୧୪ ॥

ହେ ପଦ୍ମାଳୟା ! ହ୍ରୀଂକାର ହେଉଛି ତୁମର ନିବାସସ୍ଥାନ । ସେହି ହ୍ରୀଂ-କାର ହିଁ ହେଉଛି ତୁମର ରୂପ । ତିନି ଭୁବନରେ ତୁମର ଦୁର୍ଲଭ ନାମ ସମସ୍ତେ ଜପ କରନ୍ତି । ତୁମ ତେଜରୁ ଉତ୍ପନ୍ନ ଆକାଶାଦି ପଞ୍ଚମହାଭୂତ ବ୍ରହ୍ମା (ବିଷ୍ଣୁ, ଶିବ) ପ୍ରଭୃତିଙ୍କ ସୁଖର ବିସ୍ତାର କରୁଛି ॥ ୧୫ ॥

ହ୍ରୀଂକାରତ୍ରୟସଂପୁଟେନ ମହତା ମନ୍ତ୍ରେଣ ସଂଧାପିତଂ
ସ୍ତୋତ୍ରଂ ଯଃ ପ୍ରତିବାସରଂ ତବପୁରୋ ମାତର୍ଜପେନ୍ମନ୍ତ୍ରବିତ୍ ।
ତସ୍ୟ କ୍ଷୋଣିଭୁଜୋ ଭବନ୍ତି ବଶଗା ଲକ୍ଷ୍ମୀଶ୍ଚିରସ୍ଥାୟିନୀ
ବାଣୀ ନିର୍ମଳସୂକ୍ତିଭାରଭରିତା ଜାଗର୍ତ୍ତି ଦୀର୍ଘଂ ବୟଃ ॥ ୧୬ ॥

ଇତି ଶ୍ରୀମତ୍ପରମହଂସପରିବ୍ରାଜକାଚାର୍ଯ୍ୟସ୍ୟ ଶ୍ରୀଗୋବିନ୍ଦଭଗବତ୍ପୂଜ୍ୟପାଦ-
ଶିଷ୍ୟସ୍ୟ ଶ୍ରୀମଚ୍ଛଙ୍କରଭଗବତଃ କୃତୌ କଲ୍ୟାଣବୃଷ୍ଟିସ୍ତବଃ ସଂପୂର୍ଣ୍ଣଃ ॥

—

## ଆନନ୍ଦ ଲହରୀ

ଭବାନି ସ୍ତୋତୁଂ ତ୍ୱାଂ ପ୍ରଭବତି ଚତୁର୍ଭିର୍ନ ବଦନୈଃ
ପ୍ରଜାନାମୀଶାନସ୍ତ୍ରିପୁରମଥନଃ ପଞ୍ଚଭିରପି ।
ନ ଷଡ୍ଭିଃ ସେନାନୀର୍ଦଶଶତମୁଖୈରପ୍ୟହିପତି-
ସ୍ତଦାନ୍ୟେଷାଂ କେଷାଂ କଥୟ କଥମସ୍ମିନ୍ନବସରଃ ॥ ୧ ॥
ଘୃତକ୍ଷୀରଦ୍ରାକ୍ଷାମଧୁମଧୁରିମା କୈରପି ପଦୈ-
ର୍ବିଶିଷ୍ୟାନାଖ୍ୟେୟୋ ଭବତି ରସନାମାତ୍ରବିଷୟଃ ।
ତଥା ତେ ସୌନ୍ଦର୍ଯ୍ୟଂ ପରମଶିବଦୃଙ୍ମାତ୍ରବିଷୟଃ
କଥଂକାରଂ ବ୍ରୂମଃ ସକଲନିଗମାଗୋଚରଗୁଣେ ॥ ୨ ॥

---

ହେ ମା' ! ଯେଉଁ ମନ୍ତ୍ରଜ୍ଞ ହ୍ରୀଂକାର ଦ୍ୱାରା ସଂପୁଟିତ ମହାମନ୍ତ୍ରରେ ସଂଘାଟିତ ଏହି ସ୍ତୋତ୍ରକୁ ପ୍ରତିଦିନ ତୁମ ସମ୍ମୁଖରେ ବାରମ୍ବାର ପାଠକରେ, ତାହାର ରାଜାମାନେ ବଶ ହୁଅନ୍ତି ଓ ଲକ୍ଷ୍ମୀ ଚିରସ୍ଥାୟୀ ହୁଏ । ତାହାର ବାଣୀ ନିର୍ମଳ ସୂକ୍ତି ଓ ଭବରେ ପରିପୂର୍ଣ୍ଣ ହୁଏ । ସେ ଦୀର୍ଘାୟୁ ହୁଏ ।। ୧୬ ।।

—

ହେ ମା ଭବାନୀ ! ପ୍ରଜାପତି ବ୍ରହ୍ମା ଚତୁର୍ମୁଖରେ, ତ୍ରିପୁରାରି ଶିବ ପଞ୍ଚମୁଖରେ, ଦେବତାମାନଙ୍କ ସେନାପତି କାର୍ତ୍ତିକେୟ ଷଟ୍ମୁଖରେ ଏବଂ ନାଗରାଜ ବାସୁକୀ ସହସ୍ର ମୁଖରେ ମଧ୍ୟ ତୁମର ସ୍ତବ କରିବା ପାଇଁ ଅସମର୍ଥ । ତେବେ କିଏ ଏହି ସ୍ତୁତି କରିବା; ବିଷୟରେ ଆଉ କାହାର ସୁବିଧା ଅଛି ? ୧।।

ହେ ମା' ! ସକଳ ଶାସ୍ତ୍ର ମଧ୍ୟ ତୁମର ଗୁଣାବଳୀ ଜାଣିବାରେ ଅସମର୍ଥ । ଘୃତ କ୍ଷୀର, ଦ୍ରାକ୍ଷା, ମଧୁ—ଏମାନଙ୍କ ମଧୁରତା କେବଳ ଜିଭରେ ଚାଖି ଜାଣି ହେବ ସିନା ଭାଷାରେ ବୁଝାଇହେବ ନାହିଁ । ସେହିପରି ତୁମର ସୌନ୍ଦର୍ଯ୍ୟ କେବଳ ପରମ ଶିବଙ୍କ ଦର୍ଶନର ବିଷୟ ସିନା ତାକୁ ବଚନରେ କିପରି ପ୍ରକାଶ କରିବ ? ୨ ।।

ମୁଖେ ତେ ତାମ୍ବୂଳଂ ନୟନଯୁଗଳେ କଜ୍ଜ୍ୱଳକଳା
ଲଲାଟେ କାଶ୍ମୀରଂ ବିଲସତି ଗଳେ ମୌକ୍ତିକଲତା ।
ସ୍ଫୁରତ୍କାଞ୍ଚୀ ଶାଟୀ ପୃଥୁକଟିତଟେ ହାଟକମୟୀ
ଭଜାମି ତ୍ୱାଂ ଗୌରୀଂ ନଗପତିକିଶୋରୀମବିରତମ୍ ॥ ୩ ॥
ବିରାଜନ୍ମନ୍ଦାର ଦ୍ରୁମକୁସୁମହାରସ୍ତନତଟୀ —
ନଦଦ୍ୱୀଣାନାଦ ଶ୍ରବଣବିଲସତ୍କୁଣ୍ଡଳଗୁଣା ।
ନତାଙ୍ଗୀ ମାତଙ୍ଗୀ ରୁଚିରଗତିଭଙ୍ଗୀ ଭଗବତୀ
ସତୀ ଶମ୍ଭୋରମ୍ଭୋରୁହଚଟୁଳଚକ୍ଷୁର୍ବିଜୟତେ ॥ ୪ ॥
ନବୀନାର୍କଭ୍ରାଜନ୍ମଣିକନକଭୂଷାପରିକରୈ —
ର୍ବୃତାଙ୍ଗୀ ସାରଙ୍ଗୀରୁଚିରନୟନାଙ୍ଗୀକୃତଶିବା ।
ତଡିତ୍ପୀତା ପୀତାମ୍ବରଲଳିତମଞ୍ଜୀରସୁଭଗା
ମମାପର୍ଣ୍ଣା ପୂର୍ଣ୍ଣା ନିରବଧିସୁଖୈରସ୍ତୁ ସୁମୁଖୀ ॥ ୫ ॥

---

ହେ ମା' ! ତୁମର ତୁଣ୍ଡରେ ପାନର ରକ୍ତିମା ଆଖିର ଦୁଇଧାରରେ କଜ୍ଜ୍ୱଳର କାଳିମା, ଲଲାଟରେ କୁଙ୍କୁମ, ଗଳାରେ ମୁକ୍ତାର ହାର ଶୋଭାପାଉଛି । ବିପୁଳ ନିତମ୍ବଦେଶରେ ସୁନାର କାଞ୍ଚୀମେଖଳା ଓ କଟିରେ ଶାଢ଼ୀ ଶୋଭାପାଉଛି । ଗୌରବର୍ଣ୍ଣା ପର୍ବତତନୟା ତୁମକୁ ମୁଁ ସବୁବେଳେ ଭଜନ କରୁଛି ॥ ୩ ॥

ତୁମର ବକ୍ଷଦେଶରେ ମନ୍ଦାର ପୁଷ୍ପର ହାର ଶୋଭାପାଉଛି । ବୀଣାର ଝଙ୍କାର କର୍ଣ୍ଣରେ ଦୋଳାୟମାନ କୁଣ୍ଡଳର ଗୁଣ ପ୍ରାପ୍ତ ପ୍ରତୀତ ହୁଏ (କାରଣ, ବୀଣା କୋଡଦେଶରୁ କର୍ଣ୍ଣ ପର୍ଯ୍ୟନ୍ତ ଲମ୍ବି ରହିଥିବାରୁ ସ୍ୱର କୁଣ୍ଡଳର ନା ବୀଣାର ସନ୍ଦେହ ହୁଏ) । (ସ୍ତନଭାରରେ) ତୁମେ ନତାଙ୍ଗୀ (ବା ନଇଁପଡ଼ିଛ) । ହସ୍ତିନୀ ପରି ତୁମର ଗମନଭଙ୍ଗୀ ମନ୍ଥର ହେତୁ ସୁନ୍ଦର ଅଟେ । ତୁମେ ଷଡୈଶ୍ୱର୍ଯ୍ୟ ଯୁକ୍ତା ଭଗବତୀ ଅଟ । ତୁମେ ଶମ୍ଭୁ ବା ଶିବଙ୍କର ଗୃହିଣୀ ସତୀ ଅଟ । ତୁମର ଆଖି ପଦ୍ମପରି ସୁନ୍ଦର । ତୁମେ ବିଜୟ ଲାଭ କର ॥୪॥

ଯେ ଉଦୟମାନ ସୂର୍ଯ୍ୟ ପରି ପଦ୍ମରାଗମଣି ଓ ସୁବର୍ଣ୍ଣ ଅଲଙ୍କାରମାନଙ୍କରେ ବିଭୂଷିତ, ହରିଣୀ ପରି ସୁନ୍ଦର ନୟନ ହୋଇଥିବାଯୋଗୁ ଶିବ ଯାହାଙ୍କୁ ଅଙ୍ଗୀକାର କରୁଛନ୍ତି ବା ଗ୍ରହଣ କରିଛନ୍ତି, ଯେ ବିଜୁଳି ପରି ପୀତାମ୍ବର ପରିହିତା ଓ ନୂପୁର ଦ୍ୱାରା ଶୋଭିତା—ସେହି ସତତ ସୁଖପୂର୍ଣ୍ଣା ଅପର୍ଣ୍ଣା ମୋ ପ୍ରତି ସୁମୁଖୀ ହୁଅନ୍ତୁ ॥୫॥

ହିମାଦ୍ରେଃ ସଂଭୂତା ସୁଲଳିତକରୈଃ ପଲ୍ଲବଯୁତା
ସୁପୁଷ୍ପା ମୁକ୍ତାଭିର୍ଭ୍ରମରକଳିତା ଚାଳକଭରୈଃ ।
କୃତସ୍ଥାଣୁସ୍ଥାନା କୁଚଫଳନତା ସୂକ୍ତିସରସା
ରୁଜାଂ ହନ୍ତ୍ରୀ ଗନ୍ତ୍ରୀ ବିଳସତି ଚିଦାନନ୍ଦଲତିକା ॥ ୬ ॥
ସପର୍ଣ୍ଣାମାକୀର୍ଣ୍ଣାଂ କତିପୟଗୁଣୈଃ ସାଦରମିହ
ଶ୍ରୟନ୍ତ୍ୟନ୍ୟେ ବଲ୍ଲୀଂ ମମ ତୁ ମତିରେବଂ ବିଳସତି ।
ଅପର୍ଣ୍ଣୈକା ସେବ୍ୟା ଜଗତି ସକଳୈର୍ଯତ୍ପରିବୃତଃ
ପୁରାଣୋଽପି ସ୍ଥାଣୁଃ ଫଳତି କିଳ କୈବଲ୍ୟପଦବୀମ୍ ॥ ୭ ॥
ବିଧାତ୍ରୀ ଧର୍ମାଣାଂ ତ୍ୱମସି ସକଳାମ୍ନାୟଜନନୀ
ତ୍ୱମର୍ଥାନାଂ ମୂଳଂ ଧନଦନମନୀୟାଙ୍ଘ୍ରିକମଳେ ।
ତ୍ୱମାଦିଃ କାମାନାଂ ଜନନି କୃତକନ୍ଦର୍ପବିଜୟେ
ସତାଂ ମୁକ୍ତେର୍ବୀଜଂ ତ୍ୱମସି ପରମବ୍ରହ୍ମମହିଷୀ ॥ ୮ ॥

---

ହିମାଳୟରୁ ଉତ୍ପନ୍ନ ହୋଇଥିବା, ସୁନ୍ଦର କରରୂପକ ପଲ୍ଲବ (ବା ପତ୍ର)ରେ ଶୋଭା ପାଉଥିବା ମୁକ୍ତା ରୂପକ ପୁଷ୍ପରେ ଭୂଷିତ ହୋଇଥିବା, ଅଳକାବଳି (ବା ଚୂର୍ଣ୍ଣ କୁନ୍ତଳ) ରୂପକ ଭ୍ରମର ଥିବା ସ୍ଥାଣୁ (ଶିବ ଓ ଲଣ୍ଡାବୃକ୍ଷ)ଙ୍କୁ ଆଶ୍ରୟ କରି ରହିଥିବା, ସ୍ତନରୂପକ ଫଳ ଭାରରେ ନଇଁ ପଡ଼ିଥିବା, ଉତ୍ତମ ବାଣୀ ବା ବଚନରେ ସରସ ହୋଇଥିବା (ସକଳ ସଂସାର) ରୋଗର ବିନାଶକାରିଣୀ ଏକ ଚେତନା ଓ ଆନନ୍ଦମୟୀ (ଚଳନଶୀଳା) ଲତା ରୂପରେ ଦେବୀ ଶୋଭା ପାଉଛନ୍ତି ॥ ୬ ॥

ଅନ୍ୟଲୋକେ କୌଣସି ଗୁଣଯୁକ୍ତ ସପର୍ଣ୍ଣା (ବା ପତ୍ରଥିବା) ଲତା ପ୍ରତି ଆକୃଷ୍ଟ ହୋଇଥାଆନ୍ତି । ମୋ ମତରେ ଜଗତରେ ସମସ୍ତେ ଅପର୍ଣ୍ଣାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କର ସେବା କରିବା ଉଚିତ । କାରଣ (ଜନ୍ମରହିତ ହେବାରୁ) ପୁରାତନ ସ୍ଥାଣୁ (ବା ଶିବ ତଥା ଲଣ୍ଡାବୃକ୍ଷ) ମଧ୍ୟ ତାଙ୍କ (ସତୀ ପାର୍ବତୀଙ୍କ) ଦ୍ୱାରା ପରିବେଷ୍ଟିତ ହୋଇ ମୋକ୍ଷଫଳର ଅଧିକାରୀ ହୋଇଛନ୍ତି ॥ ୭ ॥

ସମସ୍ତ ଶାସ୍ତ୍ରର ସୃଷ୍ଟିକର୍ତ୍ତ୍ରୀ ତୁମେ ସକଳ ଧର୍ମର ବିଧାତ୍ରୀ ବା ବିଧାନକାରିଣୀ ଅଟ । ତୁମର ପାଦପଦ୍ମରେ ଧନପତି କୁବେର ପ୍ରଣାମ କରନ୍ତି । ହେ ଜନନୀ ! ତୁମେ କାମନାର ମୂଳ କାରଣ ଅଟ । ତୁମେ କନ୍ଦର୍ପଙ୍କୁ ମଧ୍ୟ ଜୟ କରିଛ । ତୁମେ ସାଧୁମାନଙ୍କର ମୁକ୍ତିର ମୂଳ କାରଣ । ତୁମେ ହିଁ ପରଂବ୍ରହ୍ମଙ୍କ ଶକ୍ତି ଅଟ ॥ ୮ ॥

ପ୍ରଭୂତା ଭକ୍ତିସ୍ତେ ଯଦପି ନ ମମାଲୋଲମନସ-
ସ୍ତ୍ୱୟା ତୁ ଶ୍ରୀମତ୍ୟା ସଦୟମବଲୋକ୍ୟୋଽହମଧୁନା ।
ପୟୋଦଃ ପାନୀୟଂ ଦିଶତି ମଧୁରଂ ଚାତକମୁଖେ
ଭୃଶଂ ଶଙ୍କେ କୈର୍ବା ବିଧିଭିରନୁନୀତା ମମ ମତିଃ ॥ ୯ ॥
କୃପାପାଙ୍ଗାଲୋକଂ ବିତର ତରସା ସାଧୁଚରିତେ
ନ ତେ ଯୁକ୍ତୋପେକ୍ଷା ମୟି ଶରଣଦୀକ୍ଷାମୁପଗତେ ।
ନ ଚେଦିଷ୍ଟଂ ଦଦ୍ୟାଦନୁପଦମହୋ କଳ୍ପଲତିକା
ବିଶେଷଃ ସାମାନ୍ୟୈଃ କଥମିତରବଲ୍ଲୀ ପରିକରୈଃ ॥ ୧୦ ॥
ମହାନ୍ତଂ ବିଶ୍ୱାସଂ ତବ ଚରଣପଙ୍କେରୁହଯୁଗେ
ନିଧାୟାନ୍ୟନ୍ନୈବାଶ୍ରିତମିହ ମୟା ଦୈବତମୁମେ ।
ତଥାପି ତ୍ୱଚ୍ଚେତୋ ଯଦି ମୟି ନ ଜାୟେତ ସଦୟଂ
ନିରାଲମ୍ବୋ ଲମ୍ବୋଦରଜନନି କଂ ଯାମି ଶରଣମ୍ ॥ ୧୧ ॥
ଅୟଃ ସ୍ପର୍ଶେ ଲଗ୍ନଂ ସପଦି ଲଭତେ ହେମପଦବୀଂ
ଯଥା ରଥ୍ୟାପାଥଃ ଶୁଚି ଭବତି ଗଙ୍ଗୌଘମିଳିତମ୍ ।

---

ମା' ! ଚଞ୍ଚଳମନା ମୋର ଯଦ୍ୟପି ତୋଠାରେ ଅଧିକ ଭକ୍ତି ନାହିଁ, ତଥାପି ଶ୍ରୀମତୀ ତୁମର ସଦୟ ଦୃଷ୍ଟିପାତ ମୋ ଉପରେ ହେଉ । (ଦେଖ) ଚାତକ ଭକ୍ତି କରୁ କି ନ କରୁ, ମେଘ କିନ୍ତୁ ଚାତକର ମୁଖରେ ମଧୁର ଜଳ ବୃଷ୍ଟି କରିଥାଏ । କେଉଁ ବିଧାତା ଦ୍ୱାରା ମୋର ବୁଦ୍ଧି ଏହିପରି ଚାଳିତ ହେଉଛି – ଏହି ଶଙ୍କା ମୁଁ ବିଶେଷ ଭାବରେ କରୁଛି ॥ ୯ ॥

ହେ ସାଧୁଚରିତା ! ତୁମେ ଶୀଘ୍ର ମୋ ଉପରେ କୃପାକଟାକ୍ଷପାତ କର । ତୁମଠାରେ ଶରଣ ପଶିଥିବା ମତେ ଉପେକ୍ଷା କରିବା ତୁମ ପକ୍ଷରେ ଉଚିତ ନୁହେଁ । କଳ୍ପଲତା ଯଦି ସଙ୍ଗେ ସଙ୍ଗେ ଅଭୀଷ୍ଟ ପ୍ରଦାନ ନ କରେ, ତା'ହେଲେ ଅନ୍ୟାନ୍ୟ ଲତାଠାରୁ ତା ର ବୈଶିଷ୍ଟ୍ୟ କେଉଁ ରହିବ ଓ ସେ କିପରି ବିଶିଷ୍ଟ ଗୁଣ ସମ୍ପନ୍ନ ହେବ ? ॥ ୧୦ ॥

ହେ ଉମା ! ତୁମର ପାଦପଦ୍ମରେ ବଡ ବିଶ୍ୱାସ କରି ମୁଁ ଅନ୍ୟ ଦେବତାମାନଙ୍କୁ ଆଶ୍ରୟ କରି ନାହିଁ । ତଥାପି ତୁମେ ଯଦି ମୋ ପ୍ରତି ଦୟା ନ କର, ତେବେ ହେ ଲମ୍ବୋଦରଜନନୀ ! ଆଶ୍ରୟହୀନ ମୁଁ ଆଉ କାହାର ଶରଣ ପଶିବି ? ॥ ୧୧ ॥

ଯେପରି ସ୍ପର୍ଶମଣିରେ ଥରେ ଲାଗି ଲୁହା ସୁନା ହୋଇଯାଏ ଏବଂ ରାସ୍ତାର ଜଳ ଗଙ୍ଗାର ଜଳ ପ୍ରବାହରେ ମିଶି ପବିତ୍ର ହୋଇଯାଏ, ସେହିପରି ଅଶୁଚିର

ତଥା ତତ୍ତ୍ୱପ୍ରାପ୍ତୈରନ୍ତମଲଜନମନ୍ତର୍ମମ ଯଦ
ଭୂସ୍ତି ପ୍ରେମ୍ଣା ସକ୍ତଂ କଥମିବ ନ ଜାୟେତ ବିମଲମ୍ ॥ ୧୨ ॥
ତ୍ୱଦନ୍ୟସ୍ମାଦିଚ୍ଛାବିଷୟ ଫଲଲାଭେ ନ ନିୟମ-
ସ୍ତ୍ୱମର୍ଥାନାମିଚ୍ଛାଧିକମପି ସମର୍ଥା ବିତରଣେ ।
ଇତି ପ୍ରାହୁଃ ପ୍ରାଞ୍ଚଃ କମଲଭବନାଦ୍ୟାସ୍ତ୍ୱୟି ମନ-
ସ୍ତ୍ୱଦାସକ୍ତଂ ନକ୍ତଂ ଦିବମୁଚିତମୀଶାନି କୁରୁ ତତ୍ ॥୧୩॥
ସ୍ଫୁରନ୍ନାନାରତ୍ନସ୍ଫଟିକମୟଭିତ୍ତି ପ୍ରତିଫଲ—
ତ୍ତ୍ୱଦାକାରଂ ଚଞ୍ଚଚ୍ଛଶଧରକଳାସୌଧଶିଖରମ୍ ।
ମୁକୁନ୍ଦବ୍ରହ୍ମେନ୍ଦ୍ରପ୍ରଭୃତିପରିବାରଂ ବିଜୟତେ
ତବାଗାରଂ ରମ୍ୟଂ ତ୍ରିଭୁବନମହାରାଜ ଗୃହିଣି ॥ ୧୪ ॥
ନିବାସଃ କୈଳାସେ ବିଧିଶତମଖାଦ୍ୟାଃ ସ୍ତୁତିକରାଃ
କୁଟୁମ୍ବଂ ତ୍ରୈଲୋକ୍ୟଂ କୃତକରପୁଟଃ ସିଦ୍ଧିନିକରଃ ।
ମହେଶଃ ପ୍ରାଣେଶସ୍ତଦବନିଧରାଧୀଶତନୟେ
ନ ତେ ସୌଭାଗ୍ୟସ୍ୟ କ୍ୱଚିଦପି ମନାଗସ୍ତି ତୁଲନା ॥ ୧୫ ॥

---

(ସେହି ସେହି) ପାପରେ ମଳିନ ମୋର ଅନ୍ତଃକରଣ ତୁମର ପ୍ରେମ (ଭକ୍ତି)ରେ ମଗ୍ନ ହେଲେ ପରେ କିପରି ବା ନିର୍ମଳ ନ ହେବ ? ॥ ୧୨ ॥

ହେ ଈଶପତ୍ନୀ ! ତୁମଛଡ଼ା ଅନ୍ୟ ଦେବତାମାନଙ୍କ ଦ୍ୱାରା ଯେ ମୋର ଅଭିଳାଷ ପୂର୍ଣ୍ଣ ହେବ, ସେପରି କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ । କିନ୍ତୁ ତୁମେ ଇଚ୍ଛାକଲେ ଅଭିଳଷିତଠୁ ଅଧିକ ଫଳ ପ୍ରଦାନ କରିପାର । ଏ କଥା ପ୍ରାଚୀନ ବ୍ରହ୍ମାଦି ଦେବତାମାନେ କହିଛନ୍ତି । ତେଣୁ ତୁମଠାରେ ମୋର ମନ ଯେପରି ଦିନରାତି ସବୁବେଳେ ଆସକ୍ତ ରହେ, ସେହିପରି ଉଚିତ କାର୍ଯ୍ୟ ତୁମେ କର ॥୧୩

ହେ ତ୍ରିଭୁବନେଶ୍ୱରଙ୍କ ଗୃହିଣୀ ! ତୁମର ନିବାସ ଗୃହଭିତ୍ତି (କାନ୍ଥ) ସମୁଜ୍ଜ୍ୱଳ ମଣି ଓ ସ୍ଫଟିକାଦିରେ ନିର୍ମିତ । ତେଣୁ ତୁମର ରୂପ ସେଥିରେ ସବୁବେଳେ ପ୍ରତିଫଳିତ ହୁଏ । ସେହି ଅଟ୍ଟାଳିକାର ଶିଖର ଉପରେ ଚନ୍ଦ୍ରକଳା ପ୍ରତିଫଳିତ ହୋଇ ଶୋଭା ପାଉଥାଏ । ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ପ୍ରଭୃତି ପରିଜନ ସେଠାରେ ଉପସ୍ଥିତ ଥାଆନ୍ତି । ତୁମର ସେହି ମନୋହର ନିବାସସ୍ଥଳ ଶୋଭାଧିକ୍ୟରେ ସର୍ବଶ୍ରେଷ୍ଠ ଅଟେ ॥ ୧୪ ॥

ହେ ମା' ! ତୁମେ ହେଉଛ ପର୍ବତରାଜ ହିମାଳୟଙ୍କ କନ୍ୟା । ତୁମର ନିବାସ ହେଉଛି କୈଳାସ, ବ୍ରହ୍ମା ଓ ଇନ୍ଦ୍ର ପ୍ରଭୃତି ଦେବତା ତୁମର ସ୍ତୁତି-ପାଠକ, ତ୍ରିଲୋକର ସମସ୍ତେ ତୁମର ପରିବାର, ଅଣିମାଦି ଅଷ୍ଟସିଦ୍ଧି (ତୁମର

ବୃଷୋ ବୃଦ୍ଧୋ ଯାନଂ ବିଷମଶନମାଶା ନିବସନଂ
ଶ୍ମଶାନଂ କ୍ରୀଡ଼ାଭୂ ର୍ଭୁଜଗନିବହୋ ଭୂଷଣବିଧିଃ ।
ସମଗ୍ରା ସାମଗ୍ରୀ ଜଗତି ବିଦିତୈବ ସ୍ମରରିପୋ—
ର୍ଯଦେତସ୍ୟୈଶ୍ୱର୍ଯ୍ୟଂ ତବ ଜନନି ସୌଭାଗ୍ୟମହିମା ॥ ୧୬ ॥
ଅଶେଷ ବ୍ରହ୍ମାଣ୍ଡପ୍ରଳୟବିଧିନୈସର୍ଗିକମତିଃ
ଶ୍ମଶାନେଷ୍ୱାସୀନଃ କୃତଭସିତଲେପଃ ପଶୁପତିଃ ।
ଦଧୌ କଣ୍ଠେ ହାଳାହଳମଖିଳଭୂଗୋଳକୃପୟା
ଭବତ୍ୟାଃ ସଂଗତ୍ୟାଃ ଫଳମିତି ଚ କଲ୍ୟାଣି କଳୟେ ॥ ୧୭ ॥
ତ୍ୱଦୀୟଂ ସୌନ୍ଦର୍ଯ୍ୟଂ ନିରତିଶୟମାଲୋକ୍ୟ ପରୟା
ଭିୟୈବାସୀଦ୍ ଗଙ୍ଗା ଜଳମୟତନୁଃ ଶୈଳତନୟେ ।
ତଦେତସ୍ୟାସ୍ତସ୍ମାଦ୍ ବଦନକମଳଂ ବୀକ୍ଷ୍ୟ କୃପୟା
ପ୍ରତିଷ୍ଠାମାତନ୍ୱନ୍ନିଜଶିରସି ବାସେନ ଗିରିଶଃ ॥ ୧୮ ॥

---

ଆଦେଶ ପାଳନ ପାଇଁ) ତୁମ ଆଗରେ ହାତଯୋଡ଼ି ରହିଛନ୍ତି, ଦେବଦେବ ମହାଦେବ ତୁମର ପ୍ରାଣପତି, ତୁମର ସୌଭାଗ୍ୟର ସାମାନ୍ୟ ତୁଳନା ମଧ୍ୟ କୌଣସିଠାରେ କେବେ ହୋଇ ନ ପାରେ ॥ ୧୫ ॥

ହେ ମା' ! ବାହନ—ବୁଢ଼ା ବଳଦ, ଖାଦ୍ୟ—ବିଷ, ବସ୍ତ୍ର ଦିଙ୍ମଣ୍ଡଳ ବା ଦଶ ଦିଗ, କ୍ରୀଡ଼ାସ୍ଥଳ—ଶ୍ମଶାନ, ଭୂଷଣ – ସର୍ପ—ଏତିକ ମାତ୍ର ସ୍ମରାରି ଶିବଙ୍କର ସମ୍ପତ୍ତି, ଏହା ସମସ୍ତେ ଜାଣନ୍ତି । ଏପରି ସ୍ଥଳେ ସେ ଯେ ଐଶ୍ୱର୍ଯ୍ୟଶାଳୀ ମହେଶ୍ୱର, ଏହା କେବଳ ତୁମର ସୌଭାଗ୍ୟର ମହିମା ॥ ୧୬ ॥

ହେ କଲ୍ୟାଣକାରିଣୀ ! ଅଖିଳ ବ୍ରହ୍ମାଣ୍ଡର ପ୍ରଳୟ ବା ସଂହାର କରିବା ଯାହାର ସବୁବେଳେ ଇଚ୍ଛା, ଯେ ରୁକ୍ଷ ଶ୍ମଶାନରେ ରହନ୍ତି ଯେ ଶୁଷ୍କ ଭସ୍ମ ବୋଳି ହୋଇଥାଆନ୍ତି, ଯେ ଜୀବ'ସ୍ତ ପଶୁମାନଙ୍କର ପତି—ସେ ଅଖିଳ ବ୍ରହ୍ମାଣ୍ଡ ପ୍ରତି କୃପା କରି କଣ୍ଠରେ ହାଳାହଳ ବା ବିଷ ଧାରଣ କଲେ । ଏତେ ରୁକ୍ଷ ସଂହାରକର୍ତ୍ତା ରୁଦ୍ରଙ୍କର ଦୟା ଭାବ ଆସିଲା କୁଆଡ଼ୁ ? ମୁଁ ଭାବୁଛି ଦୟାମୟୀ ତୁମର ସଂଗତି ବା ସାନ୍ନିଧ୍ୟର ହିଁ ଏହା ହେଉଛି ଫଳ ॥ ୧୭ ॥

ହେ ଶୈଳ ତନୟା ! ତୁମର ଅତିଶୟ ସୌନ୍ଦର୍ଯ୍ୟ ଦେଖି ଅତି ଭୟରେ ଗଙ୍ଗା ଜଳମୟ ଶରୀର ହୋଇଗଲେ । ତାଙ୍କର ମଳିନ ମୁଖପଦ୍ମ ଦେଖି ଶିବ କୃପା କରି ତାଙ୍କୁ ନିଜ ମସ୍ତକରେ ସ୍ଥାନ ଦେଇ ତାଙ୍କର ପ୍ରତିଷ୍ଠା ବା ଗୌରବ ବୃଦ୍ଧି କରୁଛନ୍ତି (ନହେଲେ ଗଙ୍ଗାଙ୍କର ତୁମ ତୁଳନାରେ ନିଜର ବୋଲି କିଛି ପ୍ରତିଷ୍ଠା ବା ଗୌରବ ନାହିଁ) ॥ ୧୮ ॥

ବିଶାଳ ଶ୍ରୀଖଣ୍ଡଦ୍ରବମୃଗମଦାକୀର୍ଣ୍ଣଘୁସୃଣ-
ପ୍ରସୂନବ୍ୟାମିଶ୍ରଂ ଭଗବତି ତବାଭ୍ୟଙ୍ଗସଲିଲମ୍ ।
ସମାଦାୟ ସ୍ରଷ୍ଟା ଚଳିତପଦପାଂସୂନ୍ନିଜକରୈଃ
ସମାଧତ୍ତେ ସୃଷ୍ଟିଂ ବିବୁଧପୁରପଙ୍କେରୁହଦୃଶାମ୍ ॥ ୧୯ ॥
ବସନ୍ତେ ସାନନ୍ଦେ କୁସୁମିତଲତାଭିଃ ପରିବୃତେ
ସ୍ଫୁରନ୍ନାନାପଦ୍ମେ ସରସି କଳହଂସାଳିସୁଭଗେ ।
ସଖୀଭିଃ ଖେଲନ୍ତୀଂ ମଳୟପବନାନ୍ଦୋଳିତଜଳେ
ସ୍ମରେଦ୍ୟସ୍ତ୍ୱାଂ ତସ୍ୟ ଜ୍ୱରଜନିତପୀଡ଼ାପସରତି ॥ ୨୦ ॥

ଇତି ଶ୍ରୀମତ୍ପରମହଂସପରିବ୍ରାଜକାଚାର୍ଯ୍ୟସ୍ୟ ଶ୍ରୀଗୋବିନ୍ଦଭଗବତ୍ ପୂଜ୍ୟପାଦ-ଶିଷ୍ୟସ୍ୟ ଶ୍ରୀମଚ୍ଛଙ୍କରଭଗବତଃ କୃତୌ ଆନନ୍ଦଲହରୀ ସଂପୂର୍ଣ୍ଣା ॥

## ସୌନ୍ଦର୍ଯ୍ୟଲହରୀତଃ ଶ୍ଲୋକପଞ୍ଚକମ୍—

ସୁଧାସିନ୍ଧୋର୍ମଧ୍ୟେ ସୁରବିଟପିବାଟୀ ପରିବୃତେ
ମଣିଦ୍ୱୀପେ ନୀପୋପବନବତି ଚିନ୍ତାମଣିଗୃହେ ।
ଶିବାକାରେ ମଞ୍ଚେ ପରମଶିବପର୍ଯ୍ୟଙ୍କନିଳୟାଂ
ଭଜନ୍ତି ତ୍ୱାଂ ଧନ୍ୟାଃ କତିଚନ ଚିଦାନନ୍ଦଲହରୀମ୍ ॥ ୧ ॥
କ୍ୱଣତ୍କାଞ୍ଚୀଦାମା କରିକଲଭକୁମ୍ଭସ୍ତନନତା
ପରିକ୍ଷୀଣାମଧ୍ୟେ ପରିଣତଶରଚ୍ଚନ୍ଦ୍ରବଦନା ।

---

ହେ ଭଗବତୀ ! ଉତ୍ତମ ଚନ୍ଦନ, କସ୍ତୁରୀ, କୁଙ୍କୁମ ଓ ସୁବାସିତ ପୁଷ୍ପମିଶ୍ରିତ ତୁମର ସ୍ନାନଜଳ ଓ ଗତିଶୀଳ ଚଞ୍ଚଳଚରଣର ଧୂଳିକଣାକୁ ବ୍ରହ୍ମା ସ୍ୱହସ୍ତରେ ସଂଗ୍ରହ କରି ସ୍ୱର୍ଗପୁରର ପଦ୍ମନୟନା ନାରୀମାନଙ୍କୁ ସୃଷ୍ଟି କରିଛନ୍ତି ॥ ୧୯ ॥

ହେ ଦେବୀ ! ବସନ୍ତ ଋତୁରେ ପୁଷ୍ପିତ ଲତାମାନଙ୍କ ଦ୍ୱାରା ବେଷ୍ଟିତ ପ୍ରସ୍ଫୁଟିତ ବିବିଧ ପଦ୍ମ ଶୋଭିତ, କଳହଂସ ଓ ଭ୍ରମର କୂଜନର ସଂସ୍ପର୍ଶରେ ସୁଶୋଭିତ, ମଳୟ ପବନ ଦ୍ୱାରା ଚଞ୍ଚଳ ଜଳପୂର୍ଣ୍ଣ ସରୋବରରେ ସଖୀମାନଙ୍କ ସହ କ୍ରୀଡ଼ା କରୁଥିବା ତୁମକୁ ଯେ ସ୍ମରଣ କରେ ତାହାର ( ସଂସାର ) ଜ୍ୱର ହେତୁକ ପୀଡ଼ା ଦୂର ହୋଇଯାଏ ॥ ୨୦ ॥

ହେ ମା’ ! ଅମୃତସାଗରମଧ୍ୟବର୍ତ୍ତୀ କଳ୍ପବୃକ୍ଷବାଟିକାପରିବୃତ ମଣିମୟ ଦ୍ୱୀପରେ କଦମ୍ବବୃକ୍ଷସୁଶୋଭିତ ଉପବନ ଥିବା ଚିନ୍ତାମଣି ଗୃହରେ ବ୍ରହ୍ମା, ବିଷ୍ଣୁ, ରୁଦ୍ର ଓ ଶିବ ଖୁରରୂପେ ଏବଂ ସଦାଶିବ ଆଧାରଫଳକ ରୂପେ ଥିବା ପଲଙ୍କରେ ଉପବିଷ୍ଟା ଚିଦାନନ୍ଦଲହରୀ ସ୍ୱରୂପା ତୁମକୁ କେତେକ ଭଜନ କରି ଧନ୍ୟ ହୁଅନ୍ତି ॥୧

ତୁମର କଟୀରେ ଶବ୍ଦାୟମାନ କାଞ୍ଚୀମେଖଳା; ବକ୍ଷୋଦେଶରେ ହସ୍ତୀ-ଶାବକର କୁମ୍ଭ ପରି ସ୍ତନଭାର; କଟୀଦେଶ କୃଶ; ମୁଖ ପୂର୍ଣ୍ଣଚନ୍ଦ୍ର ପରି ସୁନ୍ଦର;

ଧନୁର୍ବାଣାନ୍ ପାଶଂ ସୃଣିମପି ଦଧାନା କରତଲୈଃ
ପୁରସ୍ତାଦାସ୍ତାଂ ନଃ ପୁରମଥିତୁରାହୋ ପୁରୁଷିକା ॥ ୨ ॥
ହରିସ୍ତ୍ୱାମାରାଧ୍ୟ ପ୍ରଣତଜନ ସୌଭାଗ୍ୟଜନନୀଂ
ପୁରାନାରୀ ଭୂତ୍ୱା ପୁରରିପୁମପି କ୍ଷୋଭମନୟତ୍ ।
ସ୍ମରୋଽପି ତ୍ୱାଂ ନତ୍ୱା ରତିନୟନ ଲେହ୍ୟେନ ବପୁଷା
ମୁନୀନାମପ୍ୟନ୍ତଃ ପ୍ରଭବତି ହି ମୋହାୟ ମହତାମ୍ ॥ ୩ ॥
ଧନୁଃ ପୌଷ୍ପଂ ମୌର୍ବୀ ମଧୁକରମୟୀ ପଞ୍ଚବିଶିଖା
ବସନ୍ତଃ ସାମନ୍ତୋ ମଳୟମରୁଦାୟୋଧନରଥଃ ।
ତଥାପ୍ୟେକଃ ସର୍ବଂ ହିମଗିରିସୁତେ କାମପି କୃପା—
ମପାଙ୍ଗାତ୍ତେ ଲବ୍ଧ୍ୱା ଜଗଦିଦମନଙ୍ଗୋ ବିଜୟତେ ॥ ୪ ॥
ତ୍ୱଦନ୍ୟଃ ପାଣିଭ୍ୟାମଭୟବରଦୋ ଦୈବତଗଣ—
ସ୍ତ୍ୱମେକା ନୈବାସି ପ୍ରକଟିତବରାଭୀତ୍ୟଭିନୟା ।
ଭୟାତ୍ ତ୍ରାତୁଂ ଦାତୁଂ ଫଳମପି ଚ ବାଞ୍ଛା ସମଧିକଂ
ଶରଣ୍ୟେ ଲୋକାନାଂ ତବ ହି ଚରଣାବେବ ନିପୁଣୌ ॥ ୫ ॥

---

ହାତରେ ଅଛି ଇକ୍ଷୁଧନୁ, ପୁଷ୍ପଶର, ପାଶ ଓ ଅଙ୍କୁଶ । ତୁମେ ସଦା ଷୋଡଶୀ ହୋଇ ତ୍ରିପୁରାରି ଶିବଙ୍କ ଗର୍ବଗଞ୍ଜନା । ଆମ ଆଗରେ ଦେଖାଦିଅ ॥ ୨ ॥

ଭକ୍ତମାନଙ୍କ ସୌଭାଗ୍ୟପ୍ରଦା ଶ୍ରୀଚକ୍ରରୂପା ତ୍ରିପୁରସୁନ୍ଦରୀ) ଦେବୀଙ୍କୁ ଆରାଧନା କରିହରି ମୋହିନୀ ରୂପରେ ତ୍ରିପୁରାରି ଶିବଙ୍କ ମନକୁ ମଧ୍ୟ ଆନ୍ଦୋଳିତ କରିପାରିଥିଲେ । କନ୍ଦର୍ପ ତୁମକୁ ପୂଜା କରି ରତିଲୋଭନୀୟ ନିଜ ଶରୀର ଦ୍ୱାରା ମୁନିମାନଙ୍କୁ ମଧ୍ୟ ମୋହିତ କରିପାରୁଛି ॥ ୩ ॥

ଦେଖ ତା'ର ଧନୁ ପୁଷ୍ପରେ ତିଆରି, ଗୁଣ ପୁଣି ଭ୍ରମରମାଳା, ଶର ବୋଲି ମାତ୍ର ପାଞ୍ଚଟି ସଚିବ ହୋଇଛି ବସନ୍ତ, ଯୁଦ୍ଧରଥ ହୋଇଛି ମଳୟ ପବନ ଏବଂ ସେ ନିଜେ ଅଙ୍ଗହୀନ ଅନଙ୍ଗ । ତଥାପି ହେ ହିମାଳୟନନ୍ଦିନୀ ! ତୁମ କୃପାକଟାକ୍ଷ ଲାଭକରି ସେ ଜଗତକୁ ଜୟ କରୁଛି ॥ ୪ ॥

ତୁମଛଡ଼ା ଅନ୍ୟ ଦେବତାମାନେ ଦୁଇହାତରେ ଅଭୟ ଓ ବରଦମୁଦ୍ରା ପ୍ରଦର୍ଶନ କରୁଛନ୍ତି । ତୁମେ କେବଳ ପ୍ରକାଶ୍ୟ ଭାବରେ ବରାଭୟ ଦେବାର ଅଭିନୟ କରୁନାହଁ । କାରଣ, ହେ ତ୍ରିଲୋକଶରଣ୍ୟା ! ଭୟରୁ ତ୍ରାଣ କରିବା ଓ ବାଞ୍ଛିତ ଫଳ ପ୍ରଦାନ କରିବା ପାଇଁ ତୁମର ପଦଦ୍ୱୟ ହିଁ ସମର୍ଥ ॥ ୫ ॥

---




# M/s. S. B. Nayak

**A· Class Contractor**

Plot No. 15
ChintamanIswar Colony
BBSR-751006

---

# ପୃଷ୍ଠଭୂମି

କୌଶଳ ବାବୁ ଆମ ପାଖରେ ନାହାନ୍ତି । ୧୯୮୪ ମସିହା ଅଗଷ୍ଟ ୩୦ ତାରିଖ ଦିନ ସଂସାରର ସବୁ ମାୟା ମମତା ଓ ବନ୍ଧନକୁ ଛିନ୍ନକରି, ସ୍ତ୍ରୀ, ପିଲା, ବନ୍ଧୁ ପରିଜନ, ସମସ୍ତଙ୍କ ଆଖିରେ ଲୁହର ବନ୍ୟା ଛୁଟାଇ ସେ ଚାଲିଗଲେ । ଆଜି ସ୍ମୃତି ପରିଷଦରେ ବସି ତାଙ୍କ କଥା ଆଲୋଚନା କଲାବେଳେ ଆଖିରେ ଲୁହ ଆସୁଛି । କେତେ ଆଶା ଓ ବିଶ୍ୱାସ ନେଇ ସେ ତାଙ୍କର ସାଧାରଣ ଜୀବନ ଆରମ୍ଭ କରିଥିଲେ । ଦେଶର ବିଭେଦକାରୀ ମତ ବିରୁଦ୍ଧରେ ଲଢ଼େଇ କରିବାକୁ ଅଣ୍ଟାଭିଡ଼ିଥିଲେ । ଆଇନଜୀବୀ ଭାବରେ ପ୍ରତିଷ୍ଠା ତାଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ ନ ଥିଲା । ଅବହେଳିତ, ନିଷ୍ପେଷିତ ଲୋକମାନଙ୍କ ପାଇଁ ତାଙ୍କ ହୃଦୟରେ ଭରିରହିଥିଲା ଅସୀମ ବ୍ୟଥା ଓ ବେଦନା । କୁ-ଶାସନ ଓ ଭ୍ରଷ୍ଟାଚାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ସେ ଥିଲେ ସଙ୍କଳ୍ପବଦ୍ଧ । ପ୍ରଭୁ ଶ୍ରୀକୃଷ୍ଣଙ୍କ ଦୟାରୁ ଜୀବନରେ ସବୁ ସାଫଲ୍ୟ ମିଳିଥିଲା । ଶେଷରେ ଜନ ସେବାରେ ନିଜକୁ ପୂର୍ଣ୍ଣଭାବରେ ନିୟୋଜିତ କରିବାକୁ ସେ ଆଗେଇ ଆସୁଥିଲେ । କିନ୍ତୁ କାଳ ସହିଲା ନାହିଁ । ଭଗବାନ ତାଙ୍କୁ ଆମ ପାଖରୁ ସବୁଦିନ ପାଇଁ ଛଡ଼ାଇନେଲେ ।

ବନ୍ଧୁ କୌଶଳଙ୍କର ଅମ୍ଳାନ ସ୍ମୃତିକୁ ଜୀବନ୍ତ ରଖିବାପାଇଁ 'ନାରାୟଣ କୌଶଲ୍ୟ ସ୍ମୃତି ପରିଷଦ' ଗଠିତ ହୋଇଛି । ସମାଜର ବିଭିନ୍ନ କ୍ଷେତ୍ରରେ କାମ କରୁଥିବା ତାଙ୍କର ବହୁ ଘନିଷ୍ଠ ବନ୍ଧୁଙ୍କ ସହଯୋଗରେ ସ୍ମୃତି କମିଟି ତାର କାର୍ଯ୍ୟକ୍ରମ ଆରମ୍ଭ କରିଛି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଚନ୍ଦ୍ରମଣୀଶ୍ୱର ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟରେ ପ୍ରତିବର୍ଷ ଶ୍ରାଦ୍ଧ ବାସରରେ ତାଙ୍କର ସ୍ମୃତି ସ୍ମରଣ କରାଯାଉଅଛି । ପ୍ରତିବର୍ଷର ଗଣେଶ ପୂଜା ଦିନ ସ୍କୁଲର ଶ୍ରେଷ୍ଠ ଛାତ୍ରୀଙ୍କୁ ସ୍ମୃତି କମିଟି ତରଫରୁ ପୁରସ୍କୃତ କରାଯାଉଛି । ବିଭିନ୍ନ ଗଠନମୂଳକ କାର୍ଯ୍ୟକ୍ରମ ହାତକୁ ନେବାକୁ ସ୍ମୃତି କମିଟି ସ୍ଥିର କରିଛି । ପ୍ରକାଶିତ ମହାମେଧାନନ୍ଦନାଥଙ୍କ 'ନିତ୍ୟ ପୂଜା ବିଧାନ ଓ ସ୍ତବରତ୍ନ' ହେଉଛି 'ନାରାୟଣ ସ୍ମୃତିରେ ପ୍ରଥମ ଅର୍ଘ୍ୟ' ।

ଏପରି ଏକ ଗ୍ରନ୍ଥର ଆବଶ୍ୟକତା କେବଳ ଆମର ଓଡ଼ିଆ ଭାଷାରେ କାହିଁକି ଅନ୍ୟାନ୍ୟ ଭାଷାରେ ମଧ୍ୟ ଦୁର୍ଲ୍ଲଭ । ପାଠକମାନେ ଉପକୃତ ହେଲେ, ଏହିପରି ଅଧିକ ଅନେକ ଯୋଜନା ମାଧ୍ୟମରେ କୌଶଲ୍ୟ ସ୍ମୃତି ପରିଷଦ ସମାଜ, ସାହିତ୍ୟ ଓ ସଂସ୍କୃତିର ହିତ ସାଧନରେ ଅଧିକ ଅଗ୍ରସର ହେବ । ଏଥିପାଇଁ ସାହାଯ୍ୟ, ସହଯୋଗ ଓ ସଦିଚ୍ଛା କାମନା କରୁଛି । (ଇତି)

ଗଣେଶ ଚତୁର୍ଥୀ
ତା ୨୮ ଅଗଷ୍ଟ ୧୯୮୭

ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ
ସଭାପତି, ନାରାୟଣ କୌଶଲ୍ୟ ସ୍ମୃତି ପରିଷଦ
ଶବରସାହି, ଭୁବନେଶ୍ୱର

# ৺ ନାରାୟଣ କଉଶଲ



ତା ୩ ଫେବୃଆରୀ ୧୯୨୯ ଆବିର୍ଭାବ ✻ ତିରୋଭାବ ତା ୩୦ ଅଗଷ୍ଟ ୧୯୮୪

---

ନାରାୟଣ ତୁମେ ନାରାୟଣ ଧାମେ ଗଲଗଲ
କୃଷ୍ଣ ଭକ୍ତିରେ ଥରଇ କଣ୍ଠ ଗଲ ଭୁଲି,
ସଂସାର ସବୁ ବନ୍ଧନ
ତୁମର ସ୍ମୃତିରେ ପ୍ରଦୀପ ଜଳାଇ କରୁ ଦେଖ ବନ୍ଦ ବନ୍ଦନ।

---

ନାରାୟଣ କୌଶଲ୍ୟ ସ୍ମୃତି ପରିଷଦ
(ରେଜିଷ୍ଟର୍ଡ଼ ନଂ ୧୨୧୨-୯୯/୮୬-୮୭)

**(ସଭାପତି)** ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ. (କାର୍ଯ୍ୟକାରୀ ସଭାପତି) ଶୈଳବାଳା କଉଶଲ. (ସମ୍ପାଦକ)ଡକ୍ଟର ଗଙ୍ଗାଧର ବଳ, (କୋଷାଧ୍ୟକ୍ଷ) ଶ୍ରୀ କାମିନୀ ମୋହନ ସାମନ୍ତରାୟ (ସଭ୍ୟବୃନ୍ଦ)ସର୍ବଶ୍ରୀ ଗଙ୍ଗାଧର ପାଣିଗ୍ରାହୀ, ଗୋବର୍ଦ୍ଧନ ପଟ୍ଟନାୟକ, ଲିଙ୍ଗରାଜ ପଣ୍ଡା, ବାମଦେବ ଆଚାର୍ଯ୍ୟ, ରାମ ନାରାୟଣ ମଲ୍ଲ, ନନ୍ଦ ନନ୍ଦନ ଦାସ, ଧନପତି ରାମ ଗୁପ୍ତା ହରେକୃଷ୍ଣ ସାହୁ, ପ୍ରଶାନ୍ତ କୁମାର ଶତପଥୀ, ନିତ୍ୟାନନ୍ଦ ମହାନ୍ତି, ବଂଶୀଧର ଖଟୁଆ, ସୁଭାଷଚନ୍ଦ୍ର ସାମନ୍ତରାୟ, ଅମରେନ୍ଦ୍ର ମହାନ୍ତି, ରଜନୀ ରଞ୍ଜନ ମହାନ୍ତି, ସିଦ୍ଧାର୍ଥ କୁମାର ଦାସ, ଶ୍ରୀମତୀ ସନ୍ଧ୍ୟାରାଣୀ ଦାସ।

ଶ୍ରୀ ସତ୍ୟବାଦୀ ନାୟକ

# ୰ ନାରାୟଣ ବରଶଲ



ତା ୩ ଫେବୃଆରୀ ୧୯୨୯ ଅଂରେଜି ✻୫ ରୋହବ ୮ । ୩୦ ଅଗଷ୍ଟ ୧୯୮୪

---

ନାରାୟଣ ତୁମେ ନାରାୟଣ ଧାମେ ଗଲଚାଲି
କୃଷ୍ଣ ଭକ୍ତିରେ ଅରାଇ କଣ୍ଠ ଗଲ ଭୁଲି,
ସଂସାର ସବୁ ବନ୍ଧନ
ତୁମରି ସ୍ମୃତିରେ ପ୍ରଦୀପ ଜଳାଇ କରୁ ଦେଖି ବନ୍ଧୁ ବନ୍ଦନ ।

---

ନାରାୟଣ କୌଶଲ୍ୟ ସ୍ମୃତି ପରିଷଦ
(ରେଜିଷ୍ଟ୍ରର୍ଡ ନଂ ୧୨୧୨-୯୯/୮୬-୮୭)

(ସଭାପତି) ଶ୍ରୀ ବସ୍ତ୍ରଭୂଷଣ ହରିଚନ୍ଦନ, (କାର୍ଯ୍ୟକାରୀ ସଭାପତି) ଶୈଳବାଳା ବରଶଲ, (ସମ୍ପାଦକ) ଡକ୍ଟର ଗଙ୍ଗାଧର ବଳ, (କୋଷାଧ୍ୟକ୍ଷ) ଶ୍ରୀ କାମିନୀ ମୋହନ ସାମନ୍ତରାୟ (ସଭ୍ୟବୃନ୍ଦ) ସର୍ବଶ୍ରୀ ଗଙ୍ଗାଧର ପାଣିଗ୍ରାହୀ, ଗୋବର୍ଦ୍ଧନ ପଟ୍ଟନାୟକ, ଲିଙ୍ଗରାଜ ପଣ୍ଡା, ବାମଦେବ ଆଚାର୍ଯ୍ୟ, ରାମ ନାରାୟଣ ମଲ୍ଲ, ନନ୍ଦ ନନ୍ଦନ ଦାସ, ଧନପତି ରାମ ରାଉ, ହରେକୃଷ୍ଣ ସାହୁ, ପ୍ରଦୀପ କୁମାର ଶତପଥୀ, ନିତ୍ୟାନନ୍ଦ ମହାନ୍ତି, ବଂଶୀଧର ଖୁଣ୍ଟିଆ, ସୁଭାଷଚନ୍ଦ୍ର ସାମନ୍ତରାୟ, ଅମରେନ୍ଦ୍ର ମହାନ୍ତି, ରଜନୀ ରଞ୍ଜନ ମହାନ୍ତି, ସିଦ୍ଧାର୍ଥ କୁମାର ଦାସ, ଶ୍ରୀମତୀ ହନ୍ୟାରାଣୀ ଦାସ ।

ଶ୍ରୀ ସତ୍ୟବାଦୀ ନାୟକ